# ଢେଙ୍କାନାଳ ସାହିତ୍ୟର ଇତିହାସ

ଡକ୍ଟର ଶରତ୍ ଚନ୍ଦ୍ର ପତି

ଲେଙ୍କା ପ୍ରକାଶନ
ଢେଙ୍କାନାଳ

ଢେଙ୍କାନାଳ ସାହିତ୍ୟର ଇତିହାସ

ଲେଖକ : ଡକ୍ଟର ଶରତ୍ ଚନ୍ଦ୍ର ପତି
(ଏମ୍.ଏ., ଏମ୍.ଫିଲ୍., ପିଏଚ୍.ଡି, ଏନ୍.ଇ.ଟି)

ପ୍ରକାଶକ : ସୁଧାକର ଲେଙ୍କା
ଲେଙ୍କା ପ୍ରକାଶନ, ଢେଙ୍କାନାଳ

ପ୍ରଥମ ପ୍ରକାଶ : ୨୨ ଅକ୍ଟୋବର, ବିଜୟା ଦଶମୀ-୨୦୧୫

ମୁଦ୍ରଣ : ପ୍ରିଣ୍ଟ୍ ଏନ୍ ପ୍ରିଣ୍ଟ୍ ଡିଜିଟାଲ୍, ଢେଙ୍କାନାଳ

ମୂଲ୍ୟ : ୨୫୦ ଟଙ୍କା


ପ୍ରାପ୍ତିସ୍ଥାନ : ଲେଙ୍କା ବୁକ୍‌ଷ୍ଟୋର
ମହାବୀର ବଜାର, ଢେଙ୍କାନାଳ



DHENKANALA SAHITYARA ETIHASH
(A History of Dhenkanal Literature)

Written by : Dr. Sarat Chandra Pati
(M.A., M.Phil., Ph.D., N.E.T)

Published by : Sudhakar Lenka
Lenka Prakashana, Dhenkanal)

First Edition : 22 Oct., Bijayadashami-2015

Printed by : Print 'n' Print Digital, Dhenkanal

Price . ₹ 250.00


Available at : Lenka Book Store
Mahavir Bazar, Dhenkanal



# ସମର୍ପଣ

ଯାହାଙ୍କର ଅଦୃଶ୍ୟ ଇଚ୍ଛା ଓ ଇଙ୍ଗିତରେ ମୋର ଧରାବତରଣର ଜନ୍ମଲଗ୍ନ ସ୍ଥିରହେଲା, ସେହି ସୃଷ୍ଟି ନିୟନ୍ତା ମୋର ଆରାଧ୍ୟ ଦେବତା ଦେବ ଦେବ ମହାଦେବ ମଙ୍ଗଳମୟ ଶିବ; ଯାହାଙ୍କ ଔରସରେ ମୁଁ ପବିତ୍ର ମାତୃଗର୍ଭରେ ସ୍ଥାନିତ ହେଲି, ସେହି ମହାନ୍ ସୁ-ପୁରୁଷ ମୋର ପିତା- ସ୍ୱାଧୀନତା ସଂଗ୍ରାମୀ କାହ୍ନୁଚରଣ ପତି; ଯିଏ ମୋତେ ଗର୍ଭରେ ଧାରଣକରି ଭୂମିଷ୍ଠ କରାଇ ଆଲୋକକୁ ଆଣିଲେ ସେହି ସ୍ନେହମୟୀ ମା' ସ୍ୱର୍ଗୀୟା ପାର୍ବତୀ ଦେବୀ; ଯିଏ ମୋତେ ଜ୍ଞାନର ଆଲୋକ ଦାନକରି ଜୀବନର ଏକ ନିର୍ଦ୍ଦିଷ୍ଟ ଦିଶା ପ୍ରଦାନ କଲେ, ମୋର ସେହି ପରମ ପୂଜ୍ୟ ଗୁରୁଦେବ ପ୍ରଫେସର ଡକ୍ଟର ଆଶୁତୋଷ ପଟ୍ଟନାୟକ; ମୋର ସାମାଜିକ ରୂପାନ୍ତରଣରେ ସହାୟହୋଇ ଯିଏ ମୋତେ ପିତୃସ୍ନେହର ଅନନ୍ୟ ସ୍ୱାଦ ଚଖାଇଲେ, ସେହି ଅନ୍ୟତମ ପିତା ମୋର ଶ୍ୱଶୁର ସ୍ୱର୍ଗତ ବୈକୁଣ୍ଠନାଥ ମିଶ୍ର ଓ ମୋର ସ୍ନେହମୟୀ ମାତୃସ୍ୱରୂପା ଭାଉଜ ସ୍ୱର୍ଗୀୟା ପ୍ରମିଳାଦେବୀଙ୍କ ପଦପଙ୍କଜ ତଳେ ମୋର ଏହି 'ଢେଙ୍କାନାଳ ସାହିତ୍ୟର ଇତିହାସ' ଗ୍ରନ୍ଥଟିକୁ ସମର୍ପଣ କରୁଅଛି ।

ଅଧମ ସନ୍ତାନ

**ଶରତ୍**



# ଅଭିମତ

ଅଧ୍ୟାପକ ଶରତ୍ ଚନ୍ଦ୍ର ପତିଙ୍କର ଲିଖିତ ଏହି ପୁସ୍ତକଟି ଏକ ତଥ୍ୟଭିତ୍ତିକ କଳାକୃତି । ଓଡ଼ିଆ ସାହିତ୍ୟକୁ ଢେଙ୍କାନାଳ ଜିଲ୍ଲାର ସାରସ୍ୱତ ସ୍ରଷ୍ଟାମାନଙ୍କର ଅବଦାନ ହିଁ ଏହି ପୁସ୍ତକଟିର ଆଲୋଚ୍ୟ ବିଷୟବସ୍ତୁ । କାବ୍ୟ-କବିତା, ଗଳ୍ପ-ଉପନ୍ୟାସ, ପ୍ରବନ୍ଧ-ସମାଲୋଚନା, ନାଟକ-ଏକାଙ୍କିକା ପ୍ରଭୃତି ବିଭିନ୍ନ ବିଭାବକୁ ନେଇ ଏକ ଭାଷାର ସାହିତ୍ୟ ସମୃଦ୍ଧ ହୋଇଥାଏ । ଓଡ଼ିଆଭାଷା ଏକ ଶାସ୍ତ୍ରୀୟ ଓ ସମୃଦ୍ଧ ଭାଷା । ଉପର ସୂଚିତ ପ୍ରତ୍ୟେକ ବିଭାଗରେ ଓଡ଼ିଆ ଭାଷାର ରାଶି ରାଶି ପୁସ୍ତକ ଉପଲବ୍ଧ । ସେହି ପୃଷ୍ଠଭୂମିରେ ଓଡ଼ିଆ ସାହିତ୍ୟର ଜନ୍ମଲଗ୍ନରୁ ଆଜିପର୍ଯ୍ୟନ୍ତ ଢେଙ୍କାନାଳର କେଉଁ ଲେଖକମାନେ ସେମାନଙ୍କର ମହାର୍ଘ ଅବଦାନ ଦ୍ୱାରା ଏହି ଭାଷା-ସାହିତ୍ୟକୁ ସମୃଦ୍ଧ, ଋଦ୍ଧିମନ୍ତ ଓ ପ୍ରାଣବନ୍ତ କରିଛନ୍ତି- ତାହାହିଁ ଏହି ପୁସ୍ତକଟିର ପ୍ରତିପାଦ୍ୟ ବିଷୟ । ଢେଙ୍କାନାଳ ଜିଲ୍ଲାର ଯେଉଁ ଲେଖକ-ଲେଖିକାମାନେ ସାହିତ୍ୟର ବିଭିନ୍ନ ବିଭାବରେ ନିଜର କୃତିତ୍ୱ ରଖିପାରିଛନ୍ତି; ସେମାନଙ୍କର ଜୀବନୀ ଓ ସାରସ୍ୱତ କୀର୍ତ୍ତିର ତଥ୍ୟଭିତ୍ତିକ ବିଶଦ ବିବରଣୀ ଲେଖକ ଏହି ପୁସ୍ତକଟିରେ ପ୍ରଦାନ କରିଛନ୍ତି । ବସ୍ତୁତଃ ଏହି ପୁସ୍ତକଟିର ସାହିତ୍ୟିକ ଗୁରୁତ୍ୱ ଓ ମୂଲ୍ୟବୋଧ ଯେତିକି ରହିଛି; ତା' ଠାରୁ ଅଧିକ ଐତିହାସିକ ମହତ୍ୱ ମଧ୍ୟ ରହିଛି । ବିଶେଷକରି 'ସାହିତ୍ୟର ଇତିହାସ' ଗବେଷଣାକ୍ଷେତ୍ରରେ ଏହି ପୁସ୍ତକଟି ଅନେକ ତଥ୍ୟ ଯୋଗାଇ ପାରିବ । ଲେଖକ ପୁସ୍ତକର ଆରମ୍ଭରେ ଢେଙ୍କାନାଳର ଭୌଗୋଳିକ ସ୍ଥିତି, ତା'ର ସାଂସ୍କୃତିକ ପ୍ରେକ୍ଷାପଟ୍ଟ ଓ ରାଜନୈତିକ ଇତିହାସର ଆଲୋଚନା କରିଛନ୍ତି । ସ୍ୱାଧୀନତାପ୍ରାପ୍ତି ପୂର୍ବରୁ ପ୍ରାୟ ପାଞ୍ଚଶତାବ୍ଦୀ ଧରି ଢେଙ୍କନାଳ ମାଟି କେଉଁ ରାଜବଂଶ ବା ରାଜାଙ୍କ ଦ୍ୱାରା ଶାସିତହୋଇଥିଲା, ତାହାର ଐତିହାସିକ ବିବରଣୀ ଦେଇଛନ୍ତି । ଢେଙ୍କାନାଳ ଜିଲ୍ଲାର ସାରସ୍ୱତ ସାଧକମାନଙ୍କର ବିବରଣୀ ଓ କୃତିତ୍ୱର ମୂଲ୍ୟାଙ୍କନ କରିବା ପୂର୍ବରୁ ଲେଖକ ଢେଙ୍କନାଳର ଭୌଗୋଳିକ, ଐତିହାସିକ, ସାଂସ୍କୃତିକ ଓ ସାମାଜିକ ଦୃଶ୍ୟପଟ୍ଟର ଏକ ମୋଟାମୋଟି ଚିତ୍ର ଦେବାକୁ ପ୍ରୟାସ କରିଛନ୍ତି । ଢେଙ୍କାନାଳ ମାଟିରେ ଓଡ଼ିଆ ସାହିତ୍ୟର ଉନ୍ମେଷ, କ୍ରମବିକାଶ ଓ ସମୃଦ୍ଧି କିପରି ଲୋକ ସାହିତ୍ୟ, ଅଭିଲେଖ ବା ଶିଳାଲେଖ ସାହିତ୍ୟ ଓ ଲିଖିତ ସାହିତ୍ୟଦ୍ୱାରା ପରିପୁଷ୍ଟ ହୋଇଛି, ତାହାର ବିଶ୍ଳେଷଣ ଲେଖକ କରିଛନ୍ତି । ପଦ୍ୟସାହିତ୍ୟ କ୍ଷେତ୍ରରେ ବିଭିନ୍ନ ଲୋକଗୀତ, ପଦାବଳୀ,

ଢଗଢମାଳି, ସଂଗୀତ, ପୁରାଣ, କାର୍ବ୍ୟ-କବିତା, ଧର୍ମୀୟ ସନ୍ଥସାହିତ୍ୟ ଓ ଗଦ୍ୟସାହିତ୍ୟ କ୍ଷେତ୍ରରେ ଲୋକକଥା, କିମ୍ବଦନ୍ତୀ, ଗଳ୍ପ, ଉପନ୍ୟାସ, ପ୍ରବନ୍ଧ-ସମାଲୋଚନା, ନାଟକ ପ୍ରଭୃତି ସାହିତ୍ୟର ବିଭିନ୍ନ ବିଭାବ ବିଷୟରେ ଆଲୋକପାତ କରିଛନ୍ତି । ଓଡ଼ିଆ ସାହିତ୍ୟର କ୍ରମବିକାଶ ଧାରାରେ ଯେଉଁ ପ୍ଲାବନମାନ ଆସିଛି ତାହାର ସୂଚନା ଦେବାସହିତ ପ୍ରତି ଯୁଗର ବୈଶିଷ୍ଟ୍ୟ ବିଷୟରେ କିଛି ଆଲୋକପାତ କରିଛନ୍ତି । ପ୍ରଚୀନ, ମଧ୍ୟଯୁଗ, ରୀତିଯୁଗଠାରୁ ଆରମ୍ଭକରି ଆଧୁନିକ ଓ ଉତ୍ତର-ଆଧୁନିକ ଯୁଗଦେଇ ଓଡ଼ିଆ ସାହିତ୍ୟର ବିକାଶଧାରାର ଏକ ଚିତ୍ର ପ୍ରଦାନ କରିଛନ୍ତି । ଓଡ଼ିଆ ସାହିତ୍ୟର କ୍ରମବିକାଶ ଓ ପ୍ରତ୍ୟେକ ଯୁଗର ବୈଶିଷ୍ଟ୍ୟ ଭିତ୍ତିରେ ଢେଙ୍କାନାଳର କେଉଁ ସାହିତ୍ୟିକଙ୍କର ବିଶିଷ୍ଟ ଅବଦାନ ରହିଛି ତାହା ଦର୍ଶାଇଛନ୍ତି । ଢେଙ୍କାନାଳ ମାଟିର ଯେଉଁ ପ୍ରଥିତଯଶା ଲେଖକ ଓ ସାହିତ୍ୟିକ ଗଣ ଓଡ଼ିଆ ସାହିତ୍ୟ ସମ୍ଭାରକୁ ସମୃଦ୍ଧ, ଋଦ୍ଧିମନ୍ତ କରିଛନ୍ତି, ସେମାନଙ୍କର ସୂଚନା ଦେବାସହିତ ସାରସ୍ୱତ କୃତି ଗୁଡ଼ିକର ଆଲୋଚନା ଓ ମୂଲ୍ୟାଙ୍କନ କରିଛନ୍ତି । ବିଶେଷକରି ଦୀନକୃଷ୍ଣ ଦାସ, ବ୍ରଜନାଥ ବଡ଼ଜେନା, ରାଧାମୋହନ ଗଡ଼ନାୟକ, ଅଖିଳମୋହନ ପଟ୍ଟନାୟକଙ୍କ ପରି ଓଡ଼ିଆ ସାହିତ୍ୟର ପ୍ରବୀଣ ଲେଖକମାନଙ୍କର ଅବଦାନ କିପରି ଓଡ଼ିଆ ସାହିତ୍ୟକୁ ନାନାଭାବେ ଋଦ୍ଧିମନ୍ତ କରିଛି, ତାହା ଦର୍ଶାଇଛନ୍ତି । ସେହିପରି ଅନ୍ନଦାଶଙ୍କର ରାୟ, ଗୋଲକବିହାରୀ ଧଳ, ନନ୍ଦିନୀ ଶତପଥୀ, ନୃସିଂହଚରଣ ପଣ୍ଡା, ନୃସିଂହପ୍ରସାଦ ତ୍ରିପାଠୀ, ନାଟ୍ୟକାର ଦିଲ୍ଲୀଶ୍ୱର ମହାରଣା, ହେତୁବାଦୀ ସାହିତ୍ୟ ସ୍ରଷ୍ଟା ଧନେଶ୍ୱର ସାହୁ, ଶିଶୁ ସାହିତ୍ୟିକ ଆଁନନ୍ଦଚନ୍ଦ୍ର ପହି ପ୍ରମୁଖ ସ୍ରଷ୍ଟା କିପରି ନିଜର ସାରସ୍ୱତ ପ୍ରତିଭାର ପ୍ରଭା ବଳରେ ଓଡ଼ିଆ ସାହିତ୍ୟର ଦିଗ-ଦିଗନ୍ତକୁ ସମୃଦ୍ଧ, ଋଦ୍ଧିମନ୍ତ, ରୁଚିର ଓ ବର୍ଣ୍ଣୋତ୍ସବମୟ କରିପାରିଛନ୍ତି, ତାହା ଲେଖକ ଦର୍ଶାଇଛନ୍ତି । ଲେଖକଙ୍କର ସବୁଠାରୁ ବଡ଼ ଅବଦାନ ହେଉଛି- ବହୁ ସାଧାରଣ ଲେଖକଙ୍କର କୃତି ବିଷୟରେ ତଥ୍ୟ ସଂଗ୍ରହକରି ତାଙ୍କ ରଚନାର ସୂଚନାଦେବା । କିଏ କବିତା ବହିଟିଏ, ନାଟକଟିଏ କିମ୍ବା କେତୋଟି ପ୍ରବନ୍ଧ, ଗଳ୍ପ ଲେଖିଛନ୍ତି ଓ ସଂସାରରୁ ବିଦାୟ ନେଇ ଗଲେଣି, ସେମାନଙ୍କର ଯତ୍‌କିଞ୍ଚିତ୍ ପ୍ରକାଶିତ ବହିଖଣ୍ଡେ-ଦୁଇଖଣ୍ଡ ରହିଛି, ସେମାନଙ୍କୁବି ଏ ବହିରେ ସ୍ଥାନ ଦେଇଛନ୍ତି । ମୋଟ ଉପରେ ବହୁ ଅତୀତରୁ ସାଂପ୍ରତିକ ସମୟ ପର୍ଯ୍ୟନ୍ତ ଢେଙ୍କାନାଳ ଜିଲ୍ଲାର ଯେଉଁମାନେ ଓଡ଼ିଆ ସାହିତ୍ୟର କୌଣସି ନା' କୌଣସି ବିଭାଗରେ କଲମଚାଳନା କରିଛନ୍ତି ସେମାନଙ୍କର ତଥ୍ୟ ଲେଖକ ପୁସ୍ତକଟିରେ ଦେବାକୁ ଉଦ୍ୟମ କରିଛନ୍ତି । ହୁଏତ ଢେଙ୍କାନାଳ ଜିଲ୍ଲାର ସମସ୍ତ ଲେଖକ ମାନଙ୍କର ନାମ ଓ ସେମାନଙ୍କର କୃତି ଯେ' ଏଥିରେ ରହିଛି ତାହା

କୁହାଯାଇ ପାରିବନାହିଁ, ତେବେ ଯେତେଦୂର ସମ୍ଭବ ବହୁଲେଖକ ଓ ସେମାନଙ୍କର କୃତିର ବିବରଣୀ ସ୍ଥାନିତ ହୋଇଛି । ଏତେ ତଥ୍ୟ ସଂଗ୍ରହ କରିବା, ଲେଖକମାନଙ୍କର ପ୍ରକାଶିତ କୃତି ସବୁ ପଢି ସେସବୁ ବିଷୟରେ ସଂକ୍ଷିପ୍ତ ମନ୍ତବ୍ୟ ରଖିବା ନିଶ୍ଚୟ କଷ୍ଟକର ବ୍ୟାପାର । ଲେଖକଙ୍କୁ ଏଥିପାଇଁ ବହୁଶ୍ରମ ଓ ସମୟ ବ୍ୟୟ କରିବାକୁ ପଡ଼ିଥିବ ।

ଅଧ୍ୟାପକ ପତି ତାଙ୍କର ଏହି ପୁସ୍ତକଟିରେ ଲେଖକମାନଙ୍କୁ ସ୍ଥାନିତ କରିବାରେ ଗୋଟିଏ ମାନଦଣ୍ଡ ସ୍ଥିର କରିଛନ୍ତି । ଜନ୍ମ ଆଧାରରେ ଲେଖକମାନଙ୍କୁ ସଜାଇଛନ୍ତି । ନାମାନୁଯାୟୀ, କୃତି ଅନୁଯାୟୀ ମାନଦଣ୍ଡ ହୁଏତ ନେଇପାରିଥାନ୍ତେ, ତେବେ ଜନ୍ମ-ମାନଦଣ୍ଡଟି ଲେଖକଙ୍କୁ ଅଧିକ ସହଜ ମନେ ହୋଇଛି । ଅଧ୍ୟାପକ ପତି ଉତ୍ତର ଆଧୁନିକ ସାହିତ୍ୟ ପରିଚ୍ଛେଦରେ ଅନେକ ପ୍ରବୀଣ ଲେଖକ ମାନଙ୍କସହିତ କେତେକ ଯୁବ ଲେଖକଙ୍କର ନାମ ଉଲ୍ଲେଖ କରିଛନ୍ତି । ଯେଉଁମାନଙ୍କର ସାହିତ୍ୟ ସର୍ଜନାର ସୁଦୀର୍ଘ ଭବିଷ୍ୟତ ରହିଛି । ଏମାନଙ୍କ ମଧ୍ୟରୁ କେହି କେହି ଭବିଷ୍ୟତରେ ଓଡ଼ିଆ ସାହିତ୍ୟରେ କିଛି ଗୁରୁତ୍ୱପୂର୍ଣ୍ଣ ସ୍ଥାନ ମଧ୍ୟ ନେଇପାରନ୍ତି , ଏହି ସମ୍ଭାବନା ବି ରହିଛି । ଲେଖକ ଏ ସମସ୍ତ ବିଷୟରେ ସୁ-ଚିନ୍ତିତ ମନ୍ତବ୍ୟ ରଖିଛନ୍ତି ।

ଏହି ପୁସ୍ତକଟି ସେପରି ବିଶ୍ଳେଷଣାତ୍ମକ ନୁହେଁ, ବରଂ ମୁଖ୍ୟତଃ ତଥ୍ୟଭିତ୍ତିକ ହୋଇଛି । କୌଣସି ଏକ ବିଶ୍ୱକୋଶ (ଏନ୍ ସାଇକ୍ଲୋପିଡ଼ିଆ) ଭିତରେ ରହିଥିବା ତଥ୍ୟଭଳି ଏଥିରେ ଢେଙ୍କାନାଳ ଜିଲ୍ଲାର ଲେଖକ-ଲେଖିକାଙ୍କ ବିଷୟରେ ଅନେକ ତଥ୍ୟ ରହିଛି । ଅଧ୍ୟାପକ ପତି ଏତେ ତଥ୍ୟ ସଂଗ୍ରହକରି ପୁସ୍ତକଟିକୁ ପ୍ରକାଶକରିବାରେ ଯେଉଁ ଶକ୍ତି ଓ ସମୟ ବିନିଯୋଗ କରିଛନ୍ତି, ସେଥିପାଇଁ ସେ ଅତ୍ୟନ୍ତ ଧନ୍ୟବାଦାର୍ହ । ମୁ ଲେଖକଙ୍କର ଉଜ୍ଜ୍ୱଳମୟ ସାରସ୍ୱତ ଭବିଷ୍ୟତ କାମନା କରୁଛି ।

**ଧନେଶ୍ୱର ସାହୁ**
ଅବସରପ୍ରାପ୍ତ ଅଧ୍ୟାପକ
ଦର୍ଶନ ବିଭାଗ



# ଅଭିମତ

ମାତୃଭୂମି ଓ ମାତୃଭାଷା ମଣିଷପାଇଁ ସବୁଠାରୁ ବେଶୀ ଆପଣାର, ପ୍ରିୟ । ଏହାର ଦାନ ଆମପାଇଁ ଅମାପ, ଅତୁଳନୀୟ । ମାତୃଋଣ ସୁଝିବା ମଣିଷ ପକ୍ଷରେ ସାଧ୍ୟାତୀତ । ତଥାପି ସେ ଏଇ ମାତୃଋଣ ସୁଝିବାପାଇଁ ମାନସିକ ସ୍ତରରେ ପ୍ରସ୍ତୁତି କରିଥାଏ । ମାତ୍ର ବେଳେ ବେଳେ ସାଂସାରୀକ ମୋହ, ମାୟା ଓ ବସ୍ତୁଗତ ଆକର୍ଷଣ ତାକୁ ନିଜର ମହାନ୍ କର୍ତ୍ତବ୍ୟ ଓ ଲକ୍ଷ୍ୟ ପଥରୁ ବିଚ୍ୟୁତ କରାଇଥାଏ । ଯେଉଁମାନେ ନିଜ ଜୀବଦ୍ଦଶାରେ ଆତ୍ମକୈନ୍ଦ୍ରିକ ସ୍ୱାର୍ଥ, ମାୟା-ମୋହର ବନ୍ଧନ ଓ ବସ୍ତୁସର୍ବସ୍ୱ ମାନସିକତାରୁ ଦୂରେଇ ରହି ମାତୃଋଣ ପରିଶୋଧ ର ସାଧୁ ପ୍ରୟାସ କରିଥାନ୍ତି, ସେମାନଙ୍କ ପ୍ରତି ସ୍ୱତଃପ୍ରବୃତ୍ତ ଭାବରେ ଐଶୀ-ଆଶୀର୍ବାଦ ଝରିପଡ଼ିଥାଏ । ଡକ୍ଟର ଶରତ୍ ଚନ୍ଦ୍ର ପତି ଏଇ ମାତୃଋଣ ପରିଶୋଧ କରିବାର ଲକ୍ଷ୍ୟ ଓ ନିଶାରେ ଯେପରି କଷ୍ଟ ସ୍ୱୀକାର କରି ଏହି 'ଢେଙ୍କାନାଳ ସାହିତ୍ୟର ଇତିହାସ' ଗ୍ରନ୍ଥ ରଚନା ପାଇଁ ଉଦ୍ୟମ କରିଛନ୍ତି, ତାହା ମାତୃଋଣ ପରିଶୋଧର ଏକ ଜ୍ୱଳନ୍ତ ଉଦାହରଣ । ଢେଙ୍କାନାଳର ସୁଦୀର୍ଘ ରାଜନୈତିକ ପ୍ରେକ୍ଷାପଟ୍ଟ ଓ ସାଂସ୍କୃତିକ ପୃଷ୍ଠଭୂମି ଉପରେ ସେ ଏହି ଗ୍ରନ୍ଥଟି ରଚନା କରିବାର ଆସ୍ପର୍ଦ୍ଧା କରିଛନ୍ତି । ଯାହାକି ଏକ ପଥୀକୃତ ଉଦ୍ୟମର ଦାବୀରଖେ । ଏଇ ମାଟିର ମହାନ୍, ସୁଦୀର୍ଘ ସାଂସ୍କୃତିକ ଓ ସାରସ୍ୱତ ପରମ୍ପରା, ଏଇ ମାଟିର ପ୍ରାୟ ଦୁଇଶତ ପ୍ରାଚୀନ-ଅର୍ବାଚୀନ ଲେଖକ ମାନଙ୍କ ସହିତ ସେମାନଙ୍କର କ୍ରମ ବିଲୁପ୍ତ ସୃଷ୍ଟି ସମ୍ଭାରର ପ୍ରାମାଣିକ, ଐତିହାସିକ ତଥ୍ୟ ସମ୍ବଳିତ ଆଲୋଚନା ଓ ବିଶ୍ଳେଷଣ କରିଛନ୍ତି ।

'ଢେଙ୍କାନାଳ ସାହିତ୍ୟର ଇତିହାସ' ଶୀର୍ଷକ ଏହି ଗ୍ରନ୍ଥଟି ସାତଗୋଟି ଅଧ୍ୟାୟରେ ବିଭକ୍ତ ହୋଇଛି । 'ପ୍ରଥମ ଅଧ୍ୟାୟ'ରେ ପ୍ରାଚୀନ ଢେଙ୍କାନାଳ ରାଜ୍ୟ, ଢେଙ୍କାନାଳ ଗଡ଼ଜାତ ଓ ଆଧୁନିକ ଢେଙ୍କାନାଳର ସୃଷ୍ଟି ଇତିହାସ, ତା'ର ରାଜନୈତିକ ପ୍ରେକ୍ଷାପଟ୍ଟ ଓ ସାଂସ୍କୃତିକ ଐତିହ୍ୟର ପ୍ରାମାଣିକ, ଐତିହାସିକ ତଥ୍ୟ ଓ ତତ୍ତ୍ୱପୂର୍ଣ୍ଣ ଆଲୋଚନା କରାଯାଇଛି । 'ଦ୍ୱିତୀୟ ଅଧ୍ୟାୟ' ରେ ଢେଙ୍କାନାଳର ପ୍ରାଚୀନ ସାହିତ୍ୟ ଶୀର୍ଷକରେ ଏ ମାଟିର ମହନୀୟ, ପ୍ରତିଭାଧର ସ୍ରଷ୍ଟା ଓ ସେମାନଙ୍କର ମହାର୍ଘ ସୃଷ୍ଟି-ସଂପଦର ଅନୁଶୀଳନ ଓ ଆକଳନ କରାଯାଇଛି । 'ତୃତୀୟ ଅଧ୍ୟାୟ' ରେ ମଧ୍ୟଯୁଗୀୟ ଗୀତିକାବ୍ୟର ପୃଷ୍ଠଭୂମିରେ ଢେଙ୍କାନାଳ ମାଟିର ମହାନ୍ ସାରସ୍ୱତ ସ୍ରଷ୍ଟା ଓ ସେମାନଙ୍କ କୃତି ସମୂହର ସବିଶେଷ ଆଲୋଚନା

କରାଯାଇଛି । 'ଚତୁର୍ଥ ଓ ପଞ୍ଚମ ଅଧ୍ୟାୟ' ରେ ଆଧୁନିକ ସଭ୍ୟତା, ସଂସ୍କୃତି ଓ ଜୀବନବୋଧର ପୃଷ୍ଠଭୂମି ଉପରେ ଆଧୁନିକ ଯୁଗର ଢେଙ୍କାନାଳ ମାଟିର ସ୍ରଷ୍ଟା ଓ ସେମାନଙ୍କର ସୃଷ୍ଟିରାଜି ସଂପର୍କରେ ପ୍ରାମାଣିକ, ତଥ୍ୟପୂର୍ଣ୍ଣ ଅନୁଶୀଳନ ଓ ଆଲୋଚନା କରାଯାଇଛି । 'ଷଷ୍ଠ ଅଧ୍ୟାୟ' ରେ ଆଧୁନିକୋତ୍ତର ଭାରତୀୟ ସାହିତ୍ୟର ପ୍ରେକ୍ଷାପଟ୍ଟରେ ଢେଙ୍କାନାଳ ମାଟିର ଉତ୍ତର-ଆଧୁନିକ ସ୍ରଷ୍ଟା, ସୃଷ୍ଟି ଓ ସେହି ଯୁଗର ଅନ୍ୟକତିପୟ ଲେଖକ ମାନଙ୍କ ସଂପର୍କରେ ସବିଶେଷ ଅନୁଶୀଳନ ଓ ଆକଳନ କରାଯାଇଛି । 'ସପ୍ତମ ଅଧ୍ୟାୟ' ରେ ଢେଙ୍କାନାଳ ମାଟିରେ ମହିମାଧର୍ମ ର ଉନ୍ମେଷ-ବିକାଶ ସହିତ ମହିମାଧର୍ମ-ସାହିତ୍ୟ ସଂପର୍କରେ ସଂକ୍ଷେପରେ ବହୁ ତଥ୍ୟପୂର୍ଣ୍ଣ, ତାତ୍ତ୍ୱିକ ଆଲୋଚନା କରାଯାଇଛି ।

ସାହିତ୍ୟ ମୁଖ୍ୟତଃ ଦୁଇଟି ଶ୍ରେଣୀର । ଗୋଟିଏ କଳ୍ପନା ପ୍ରସୂତ ସୃଜନଶୀଳ ସାହିତ୍ୟ ଓ ଅନ୍ୟଟି ପ୍ରାମାଣିକ, ତଥ୍ୟପୂର୍ଣ୍ଣ ଗବେଷଣାତ୍ମକ ସାହିତ୍ୟ । ପ୍ରଥମ ଶ୍ରେଣୀର ସାହିତ୍ୟ ସୃଷ୍ଟିପାଇଁ ଜୀବନ ଭିତରେ ଯାବତୀୟ କାର୍ଯ୍ୟକରୁଥିବା ସମୟରେ ମଧ କଳ୍ପନା ରାଜ୍ୟରେ ସାହିତ୍ୟ ଦାନାବାନ୍ଧି ଚାଲିଥାଏ ଓ ଅବକାଶ ସମୟରେ ତାକୁ ଲିପିବଦ୍ଧ କରାଯାଇଥାଏ । ମାତ୍ର-ଦ୍ୱିତୀୟ ପ୍ରକାର ଗବେଷଣାତ୍ମକ, ପ୍ରାମାଣିକ ସାହିତ୍ୟ ସୃଷ୍ଟିପାଇଁ ଏ ସୁଯୋଗ ନାହିଁ । ଏଥିପାଇଁ ବର୍ଷ ବର୍ଷଧରି ନିରବଚ୍ଛିନ୍ନ ଭାବରେ ତଥ୍ୟ ସଂଗ୍ରହ, ପାଣ୍ଡୁଲିପି, ଗ୍ରନ୍ଥ ଅଧ୍ୟୟନ, ଅନୁଶୀଳନର ଆବଶ୍ୟକତା ରହିଛି । ଏଥିପାଇଁ ପର୍ଯ୍ୟାପ୍ତ ଶ୍ରମ, ସମୟ, ସମର୍ପଣ ଭାବନା ଓ ସତ୍ୟ ନିଷ୍ଠାର ଆବଶ୍ୟକତା ପଡ଼ିଥାଏ । ଯେଉଁମାନେ ଏହି ଦ୍ୱିତୀୟ ପ୍ରକାରର ସାହିତ୍ୟ ସାଧକ ସେମାନେ ପ୍ରକୃତରେ ମାଟିର ସନ୍ତାନ ଓ ନମସ୍ୟ ।

ଚଳନ୍ତି ସମୟରେ ଆଧୁନିକ ପ୍ରଯୁକ୍ତି ବିଦ୍ୟାର ବହୁଳ ପ୍ରସାର କାରଣରୁ ମଣିଷ ପାଖରେ ବିଶେଷତଃ ଯୁବ ସମାଜ ଭିତରେ ଅଳ୍ପରେ ଅଧିକ ହାସଲ କରିବାର ନିଶା ବଢିଯାଇଛି । ଟେବ୍‌ଲେଟ୍, ଇଣ୍ଟରନେଟ୍, ମୋବାଇଲ୍ ଜରିଆରେ ପୃଥିବୀର ବହୁତଥ୍ୟ ଓ ଜ୍ଞାନ ଅକ୍ଳେଶରେ ଉପଲବ୍ଧ ହୋଇପାରୁଥିବାରୁ ପୁସ୍ତକଟିଏ ସଂଗ୍ରହକରି ତାକୁ ପଢି ମନନ, ଚିନ୍ତନ, ଅନୁଶୀଳନ କରିବାର ଯେଉଁ ଶ୍ରଦ୍ଧା ଓ ଅଧବସାୟ ଦରକାର, ତାହା କ୍ରମଶଃ କମି କମି ଆସୁଛି । ଏହି ନିଷ୍କଠନ କ୍ରିୟା ଏକ ପ୍ରକାର ସାଂସ୍କୃତିକ ନିରକ୍ଷରତା (Cultural illitcracy) ରୋଗକୁ ପ୍ରୋତ୍ସାହିତ କରିଚାଲିଛି । ଯାହାକି ଭବିଷ୍ୟତ ସମୟ ଓ ଉତ୍ତର ପୀଢ଼ୀଙ୍କପାଇଁ ଘୃଣ୍ୟ-ଅବକ୍ଷୟୀ ମାନସିକତା ଓ ଜଟିଳ ସଂକଟ ସୃଷ୍ଟିକରିବାର ସମ୍ଭାବନା ରହିଛି । ଏମିତି ଏକ ଘଡ଼ିସନ୍ଧି କାଳରେ ପ୍ରାମାଣିକ ବା ତଥ୍ୟଭିତ୍ତିକ, ଗବେଷଣାଧର୍ମୀ ସାହିତ୍ୟ ଉପର ବର୍ଣ୍ଣିତ ସଙ୍କଟ ଓ ଅବକ୍ଷୟର ଧାରାକୁ ପ୍ରତିରୋଧ

କରିବାରେ ନିଶ୍ଚୟ ସହାୟକ ହେବ- ଏ କଥାକୁ ଅସ୍ୱୀକାର କରି ହେବନାହିଁ । ଓଡ଼ିଆରେ ଗୋଟିଏ କଥା ଅଛି- "କହିଦେଲେ ପବନରେ ଉଡ଼ିଯିବ, ଲେଖିଦେଲେ କାଳ କାଳକୁ ରହିଯିବ" । ଯାହାକି ଆମର ଉତ୍ତର ପୁରୁଷମାନଙ୍କ ପାଇଁ କେବଳ ଜ୍ଞାନଉତ୍ସରେ ସୀମୀତ ନ'ରହି ସେମାନଙ୍କୁ ମାଟିମନସ୍କ କରାଇ ଆମ ଜାତିର ଅସ୍ମିତାକୁ ଅତୁଟ ରଖିବାରେ ସାହାଯ୍ୟ କରିବ ।

ଡକ୍ଟର ପତିଙ୍କର ସମର୍ପିତ ନିଷ୍ଠା, ଶ୍ରମ, ସାଧନା ଓ ସିଦ୍ଧିର ଫଳଶ୍ରୁତି 'ଢେଙ୍କାନାଳ ସାହିତ୍ୟର ଇତିହାସ' ଗ୍ରନ୍ଥଟି ଏଇ ମାଟିର ମହକକୁ ଚାରିପାଖର ପୃଥିବୀର ଭୂ-ଖଣ୍ଡକୁ ମହକିତ କରି ମାଟିର ସାଧକ ମାନଙ୍କର କୀର୍ତ୍ତିକୁ ନିଶ୍ଚୟ ପ୍ରସାରିତ କରିବ । ଏ ପ୍ରକାର ସମର୍ପଣ, ଅସ୍ମିତା, ମମତ୍ୱବୋଧ, ପ୍ରତିବଦ୍ଧତା ଓ ଆତ୍ମ ସ୍ୱାଭିମାନ ପାଇଁ ଏ ମାଟିର ସମସ୍ତ ସାହିତ୍ୟ ସ୍ରଷ୍ଟାମାନଙ୍କର ସେ ଅଖଣ୍ଡ ଶ୍ରଦ୍ଧା ଓ ସମ୍ମାନର ପାତ୍ର । ବ୍ୟକ୍ତିଗତ ଭାବରେ ମୁଁ ଏ ମାଟିର ଜଣେ ପୁଅ ହିସାବରେ ତାଙ୍କୁନେଇ ନିଶ୍ଚିତ ଗର୍ବ କରୁଛି ଓ ମୋ ହୃଦୟର ଅନ୍ତରତମ ପ୍ରଦେଶରୁ କୃତଜ୍ଞତା ଜ୍ଞାପନ କରୁଛି । ଆଶା କରୁଛି ଭବିଷ୍ୟତରେ ଏଇ ମାଟିପାଇଁ ଅଧିକ କିଛି କରିଦେଖାଇବାର ସାହସ ଓ ସାମର୍ଥ୍ୟ ତାଙ୍କଠାରେ ସୃଷ୍ଟିପାଇଁ ଜଗତର ନାଥ ଜଗନ୍ନାଥ ନିଶ୍ଚିତରୂପେ ଏଁଶୀ-ଆଶୀର୍ବାଦ ଢ଼ାଳିଦେବାରେ କାର୍ପଣ୍ୟ କରିବେ ନାହିଁ ।

**ଦିଲ୍ଲୀଶ୍ୱର ମହାରଣା**
କ୍ଳାନ୍ତିହରା, ବଳରାମ ବିହାର
ଜୁବୁଲି ଟାଉନ, ଢେଙ୍କାନାଳ



# ନାନ୍ଦୀମୁଖ

ଢେଙ୍କାନାଳ ମାଟି ବେଶ୍ ସଂସ୍କୃତି ସଂପନ୍ନ, ଐତିହ୍ୟଦୀପ୍ତ, ସମୃଦ୍ଧ, ପ୍ରାଣବନ୍ତ ସମରପ୍ରବୀଣ, ପ୍ରଚଣ୍ଡ ଆତ୍ମସ୍ୱାଭିମାନରେ ଉଦ୍ଦୀପ୍ତ ଓ ବାଣୀ ଆରାଧନାରେ ଶବଳିତ, ଅଭିମନ୍ତ୍ରିତ । ଏ ଭୂମିର ପ୍ରତି ରନ୍ଧ୍ରେ ରନ୍ଧ୍ରେ ଭରିରହିଛି- ଉଚ୍ଚାଙ୍ଗ ମହନୀୟ ଜୀବନବୋଧ, ମହାନ୍ ସାଂସ୍କୃତିକ ଐତିହ୍ୟ ଓ ମହାର୍ଘ ସାରସ୍ୱତ ସୃଷ୍ଟି ସଂପଦର ସ୍ୱର୍ଣ୍ଣରେଣୁ । ବହୁ ସିଦ୍ଧ-ସାଧକ, କବି, ପଣ୍ଡିତ, ଐତିହାସିକ ଓ ଗବେଷକ ନିଜର ଲେଖନୀ ମୁନରେ ତାଳପତ୍ରପୋଥି, ଭୂର୍ଜପତ୍ର, ତାମ୍ରଫଳକ, ପ୍ରସ୍ତର ଗାତ୍ର ଅବା ମୁଦ୍ରିତ ପୁସ୍ତକର ଦେହଳୀରେ ଏ ମାଟିର ଗୌରବୋଜ୍ଜ୍ୱଳ ପରଂପରା, କଳା, ସଂସ୍କୃତି, ଇତିହାସ ଓ ମହିମୋଜ୍ଜ୍ୱଳ ଜୀବନବୋଧର କଥା କହିଛନ୍ତି, ଗାଥା ଗାଇଛନ୍ତି । ମାତ୍ର- ଅବଲୀଳାକ୍ରମେ ଏହି ମହାନ୍ ସୃଷ୍ଟିସଂପଦ ଗୁଡ଼ିକ ସମୟର ଦନ୍ତାଘାତରେ ବିଭଙ୍ଗ, ବିଳୟ ଅବା କୀଟଦଷ୍ଟ ହୋଇ ଧ୍ୱଂସପ୍ରାପ୍ତ ହୋଇଛି । ସେଗୁଡ଼ିକ ମଧ୍ୟରୁ କେତେକର ପୁନରୁଦ୍ଧାର ଓ ସୁରକ୍ଷା କରାଯାଇ ପାରିଛି । ଏ ମାଟିର ସାରସ୍ୱତ ସନ୍ତାନ ମାନେ ଏବେବି ନିଜର ଲେଖନୀ ମୁନରେ ରାଶି ରାଶି ସାହିତ୍ୟ ସୃଷ୍ଟି କରି ଚାଲିଛନ୍ତି । ଆମର ସୁଦୀର୍ଘ ସାରସ୍ୱତ ପରଂପରା ଓ ଏ ସବୁ କୃତି ସମୂହର ସୁରକ୍ଷା, ସଂରକ୍ଷଣ, ସେ ସଂପର୍କରେ ଅନୁଶୀଳନ ଓ ଆଲୋଚନା କରିବାର ନୈତିକ ଦାୟିତ୍ୱ ଓ ଆବଶ୍ୟକତା ରହିଛି । ସମୟର ଏହି ଅପରିହାର୍ଯ୍ୟ ଆବଶ୍ୟକତାର ପରିପୂରଣପାଇଁ ଅଦ୍ୟାବଧି କୌଣସି ବିଧିବଦ୍ଧ ଆଲୋଚନା ବା ଗବେଷଣା ପ୍ରୟାସ ପରିଲକ୍ଷିତ ହୋଇନାହିଁ । ଏହି ଅଭାବବୋଧ ଓ ଶୂନ୍ୟତାର ପରିପୂରଣପାଇଁ ମୁଁ ଏ ଗ୍ରନ୍ଥଟି ରଚନାପାଇଁ ମନସ୍ଥ କଲି । ଏ ଭୂମିର ସୁଦୀର୍ଘ ସାରସ୍ୱତ ପରଂପରା ଓ ତା'ର ପର୍ଯ୍ୟାୟକ୍ରମିକ ଇତିହାସ ସମ୍ପର୍କରେ ଅନୁସନ୍ଧାନ, ଅନୁଶୀଳନ ଓ ଗବେଷଣା କରିବାର ଏକ ଦାୟବଦ୍ଧ ଅନୁଜ୍ଞା, ଏକ ଦୂରନ୍ତ ଅଭିଳାଷ କ୍ରମେ ମୋ ଭିତରେ ଜାଗରିତ ଓ ବଳବତ୍ତର ହୋଇ ଉଠିଲା । ଯାହାକି- 'ଢେଙ୍କାନାଳ ସାହିତ୍ୟର ଇତିହାସ' ଗ୍ରନ୍ଥର ମୂର୍ତ୍ତିରୂପ ନେଲା । ଏହି ଗ୍ରନ୍ଥଟିରେ ଇତିହାସର ଆଇନାରେ ଢେଙ୍କାନାଳ ଭୂମିର ମହାନ୍ ରାଜନୈତିକ ଓ ସାଂସ୍କୃତିକ ପ୍ରେକ୍ଷାପଟ୍ଟର ଉନ୍ମୋଚନ ସହିତ ଏହାର ସୁଦୀର୍ଘ ସାରସ୍ୱତ ପରଂପରା ଓ ମହାର୍ଘ ସୃଷ୍ଟି-ସଂପଦରାଜିର ଐତିହାସିକ, ପ୍ରାମାଣିକ, ତଥ୍ୟପୂର୍ଣ୍ଣ ଆକଳନ ଓ ଅନୁଶୀଳନ କରାଯାଇଛି । ବହୁ ଅନାଲୋଚିତ ପ୍ରତିଭା ଓ ସେମାନଙ୍କ ସୃଷ୍ଟିକର୍ମ ଏହି ଗ୍ରନ୍ଥର ପୃଷ୍ଠା ମଣ୍ଡନ କରିଛି । ବଣମଲ୍ଲୀ ଅବା ମରୁନଦୀ ଭଳି ଆହୁରି କିଛି ପ୍ରତିଭା ଲୁଚିରହିଛନ୍ତି । ସେହି ଅନାଲୋଚିତ,

ଅନାବିଷ୍କୃତ ପ୍ରତିଭାଧର ମାନଙ୍କୁ ଅନ୍ୟଏକ ଖଣ୍ଡ- 'ଢେଙ୍କାନାଳର ସାଂପ୍ରତିକ ସାହିତ୍ୟ' ଶୀର୍ଷକ ଗ୍ରନ୍ଥରେ ସ୍ଥାନିତ କରିବାର ପରିଯୋଜନା କରାଯାଇଛି । ଯାହାକି ପରବର୍ତ୍ତୀ ସମୟରେ ଆତ୍ମପ୍ରକାଶ ଲାଭକରିବ । ଏହି ଗ୍ରନ୍ଥଟିର ପରିପୁଷ୍ଟି ଓ ସଫଳତା ପାଇଁ ଯେଉଁ ଜ୍ଞାନୀ, ଗୁଣୀ, ମହାନ୍ ବ୍ୟକ୍ତିତ୍ୱ ଓ ବନ୍ଧୁ-ବର୍ଗ ସାହାଯ୍ୟ, ସହଯୋଗ ଓ ଆନ୍ତରିକତାର ହାତ ବଢାଇଛନ୍ତି ସେମାନେ ହେଲେ- ଏଇ ମାଟିର ପିତୃପ୍ରତିମ ନାଟ୍ୟକାର ଶ୍ରୀଯୁକ୍ତ ଦିଲ୍ଲୀଶ୍ୱର ମହାରଣା, ପିତୃତୁଲ୍ୟ ଇତିହାସ ପ୍ରଫେସର ଶ୍ରୀଯୁକ୍ତ ନିତ୍ୟାନନ୍ଦ ମିଶ୍ର, ଭ୍ରାତୃପ୍ରତିମ ଶିଳ୍ପୀ ଶ୍ରୀ ପରେଶଚନ୍ଦ୍ର ପଟ୍ଟନାୟକ, ବନ୍ଧୁ ଶ୍ରୀ ନବୀନ କୁମାର ପତି ଓ ଶ୍ରଦ୍ଧେୟ ଅବନୀ କୁମାର ମିଶ୍ର । ଏହି ପୁସ୍ତକଟିର ସମସ୍ତ ଶ୍ରେୟ ସେଇମାନଙ୍କର । ଏ ସମସ୍ତଙ୍କୁ ମୋ ଅନ୍ତରର ସାଧୁବାଦ ଓ କୃତଜ୍ଞତା ଜଣାଇବାର ଧୃଷ୍ଟତା କରୁଛି । ଏହି ଗ୍ରନ୍ଥଟିର ଲିପି ସଂଯୋଜନା ପାଇଁ ସୋହମ୍ ପ୍ରକାଶ ପୃଷ୍ଠେଠ୍, ଶୋଭନ୍ କମ୍ପ୍ୟୁଟର୍. ବଡଦ ଧନ୍ୟବାଦର ପାତ୍ର । ଏ ପୁସ୍ତକଟିର ପ୍ରକାଶନ ଦାୟିତ୍ୱ ଶ୍ରୀଯୁକ୍ତ ସୁଧାକର ଲେଙ୍କା ମହୋଦୟ ସାଗ୍ରହର ସହିତ ବହନ କରିଥିବାରୁ ସେ ଧନ୍ୟବାଦାର୍ହ । ଏହି ଗ୍ରନ୍ଥଟି ଓଡ଼ିଶାର ଛାତ୍ର, ଗବେଷକ, ବିଦଗ୍ଧ ପାଠକ-ପାଠିକା ଓ ସୁଧୀ-ସଜ୍ଜନ ମାନଙ୍କପାଇଁ ଏକ ଉପାଦେୟ ପୁସ୍ତକ ରୂପେ ଗ୍ରହଣୀୟ ହୋଇପାରିଲେ ମୋର ଶ୍ରମ ସାର୍ଥକ ହୋଇପାରିବ ।

ଲେଖକ



# ସୂଚୀପତ୍ର



+++

# ପ୍ରଥମ ଅଧ୍ୟାୟ
## (ଢେଙ୍କାନାଳର ରାଜନୈତିକ ପ୍ରେକ୍ଷାପଟ ଓ ସାଂସ୍କୃତିକ ଐତିହ୍ୟ)

ପୁଣ୍ୟତୋୟା, ଚିରସ୍ରୋତା 'ବ୍ରାହ୍ମଣୀନଦୀ' ର ଅବବାହିକାରେ ଗଢ଼ିଉଠିଥିବା ଅତୀତର ଢେଙ୍କାନାଳ ରାଜ୍ୟ, ତଥା ବର୍ତ୍ତମାନର 'ଢେଙ୍କାନାଳ ଜିଲ୍ଲା' ଏକ ଐତିହ୍ୟଦୀପ୍ତ, ସଂସ୍କୃତି ସଂପନ୍ନ, ପ୍ରାଣବନ୍ତ, ଆତ୍ମସ୍ୱାଭିମାନରେ ଉଦୀପ୍ତ ସମର ପ୍ରବୀଣ ବୀରଭୂମି । ଏହାର ସଭ୍ୟତା ଓ ଐତିହ୍ୟ ବହୁ ପ୍ରାଚୀନ, ସମୃଦ୍ଧ ଓ ସମୁନ୍ନତ । ବ୍ରାହ୍ମଣୀ ନଦୀର ଉଭୟ ପାର୍ଶ୍ୱବର୍ତ୍ତୀ ଭୂମି ଏକଦା ଆଦିବାସୀ ଅଧ୍ୟୁଷିତ ଅଞ୍ଚଳଥିଲା । ଖ୍ରୀଷ୍ଟୀୟ ଷଷ୍ଠ-ସପ୍ତମ ଶତାବ୍ଦୀ ବେଳକୁ ଏଇ ଅଞ୍ଚଳରେ ଆର୍ଯ୍ୟ ସଂସ୍କୃତିର ସମ୍ମେଳନ ଓ ଆର୍ଯ୍ୟ ସଭ୍ୟତାର କ୍ରମ ପ୍ରସାର ଘଟିଥିଲା । ବିଭିନ୍ନ ଐତିହାସିକ କୀର୍ତ୍ତିରାଜି, ପ୍ରତ୍ନତାତ୍ତ୍ୱିକ ସଂପଦ, ବିଭିନ୍ନ ଶିଳାଲେଖ , ତାମ୍ରପତ୍ର, ଭୂର୍ଜପତ୍ର ଓ ପ୍ରାଚୀନ ସାହିତ୍ୟକୃତି ଗୁଡ଼ିକରୁ ଏଇ ସମୃଦ୍ଧ ଢେଙ୍କାନାଳ ଭୂମିର ଗୌରବୋଜ୍ଜ୍ୱଳ ଐତିହ୍ୟ ଓ ମହନୀୟ ସଂସ୍କୃତିର ପରିଚୟ ମିଳେ ।

ପ୍ରାଚୀନ ଢେଙ୍କାନାଳ ରାଜ୍ୟ ଝାଡଖଣ୍ଡ ଅଞ୍ଚଳର ଅନ୍ତର୍ଗତ ଥିଲା, ଯାହାକି ଉତ୍କଳ ସାମ୍ରାଜ୍ୟର ପଶ୍ଚିମପ୍ରାନ୍ତ ଅନ୍ତର୍ଭୁକ୍ତ ଥିଲା । ଏହି ଭୂମିଖଣ୍ଡ ଢେଙ୍କାନାଳ ରାଜ୍ୟରୂପେ ରୂପପରିଗ୍ରହ ଲାଭ କରିବା ପୂର୍ବରୁ ଅନେକ ଗୁଡ଼ିଏ 'ଜନପଦ' ବା 'ଖଣ୍ଡ' ରେ ବହୁଧା ବିଭକ୍ତ ହୋଇ ରହିଥିଲା । ଏହିସବୁ ଖଣ୍ଡ ବା ଜନପଦ ଗୁଡ଼ିକରେ କେଉଁଠି କ୍ଷତ୍ରୀୟ ରାଜବଂଶ ତ' କେଉଁଠି ଶବର, ଗଣ୍ଡ, କନ୍ଧ, ଡମ, ତଅଁଳା ଆଦି ଅନାର୍ଯ୍ୟ ଜାତିର ଦଳପତିମାନେ ରାଜୁତି କରୁଥିଲେ । ଯାହାର ପ୍ରମାଣ ଆମେ ପ୍ରାଚୀନ ଇତିହାସ, ରାଜବଂଶାବଳୀ, ଆବିଷ୍କୃତ ତାମ୍ରଶାସନ ଓ ପ୍ରତ୍ନତାତ୍ତ୍ୱିକ ଗବେଷଣାଦିରୁ ପାଇଥାଉ । ଏହିସବୁ ଜନପଦ ଗୁଡ଼ିକର ଅଧିପତି ବା ଶାସକମାନଙ୍କୁ ସେ ସମୟରେ 'ଖଣ୍ଡାଧିପ' କୁହାଯାଉଥିଲା । "ଏହି ଖଣ୍ଡାଧିପ ମାନେ ଉତ୍କଳ ଗଜପତିଙ୍କର ଜଣେ ଜଣେ ସାମନ୍ତ ରାଜାଙ୍କ ଅଧୀନରେ ରାଜତ୍ୱ କରୁଥିଲେ । "(୧)

ପ୍ରାଚୀନ ଢେଙ୍କାନାଳ ରାଜ୍ୟ ମୁଖ୍ୟତଃ ତିନିଗୋଟି 'ମଣ୍ଡଳ' କୁ ନେଇ ଗଠିତ ହୋଇଥିଲା । ଏହି ମଣ୍ଡଳ ଗୁଡ଼ିକରେ ଜଣେ ଜଣେ ସାମନ୍ତ ରାଜା ଶାସନ କରୁଥିଲେ । ଏହି ତିନିଗୋଟି ମଣ୍ଡଳଥିଲା - କୋଦାଳକ ମଣ୍ଡଳ, ଯମଗର୍ତ୍ତ ମଣ୍ଡଳ ଓ

କରମୂଳପାଟଣା ମଣ୍ଡଳ । କାମାକ୍ଷାନଗର, ପରଜଙ୍ଗ, କୁଆଳୋ ଓ ଢେଙ୍କାନାଳ କୋଦାଳକ ମଣ୍ଡଳର ଅନ୍ତର୍ଗତ ଥିବାର ଜଣାଯାଏ । ଏହି କୋଦାଳକ ମଣ୍ଡଳର ରାଜଧାନୀ ଥିଲା - କୋଦାଳକ ନଗରୀ ବା ପରଜଙ୍ଗ ନିକଟସ୍ଥ କୁଆଳୋ । ଖ୍ରୀଷ୍ଟୀୟ ସପ୍ତମ-ଅଷ୍ଟମ ଶତାବ୍ଦୀ ବେଳକୁ ଏଠାରେ ଶୁଲ୍‌କୀ ବଂଶୀୟ ସ୍ତମ୍ଭ ଉପାଧିଧାରୀ ନରପତିମାନେ ରାଜତ୍ୱ କରୁଥିବାର ଜଣାଯାଏ । ଶୁଲ୍‌କୀ ବଂଶୀ ସ୍ତମ୍ଭ ରାଜାମାନଙ୍କର ମିଳୁଥିବା ତାମ୍ରଶାସନରୁ ଜଣାଯାଏ- ଏମାନେ ସ୍ତମ୍ଭେଶ୍ୱରୀ ଉପାସକ ଥିଲେ । ଏମାନଙ୍କର ତାମ୍ରଶାସନ ଗୁଡ଼ିକରେ ଅର୍ଦ୍ଧଚନ୍ଦ୍ରଯୁକ୍ତ ବୃଷଭ ଚିତ୍ର ମିଳୁଥିବାରୁ ଏମାନେ ଶୈବ ଭକ୍ତ ଓ ଶିବ ଉପାସକ ଥିବାର ମଧ୍ୟ ଜଣାଯାଏ । ଏହିକାରଣରୁ ସ୍ତମ୍ଭରାଜା ମାନଙ୍କ ଶାସନ ସମୟରେ କୋଦାଳକ ମଣ୍ଡଳର ବିଭିନ୍ନ ସ୍ଥାନରେ ମୁଖ୍ୟତଃ ବ୍ରାହ୍ମଣୀ ନଦୀର କୂଳରେ ଶିବ ମନ୍ଦିର ମାନ ଗଢ଼ିଉଠିଥିଲା । ଏହି କୋଦାଳକ ନଗରୀରେ କର ବଂଶ ର ରାଜାମାନେ ମଧ୍ୟ ଶାସନ କରିଥିବାର ଜଣାଯାଏ ।ଏହି କର ବଂଶର ଦୁଇଜଣ ପ୍ରଖ୍ୟାତ ରାଣୀ ହେଲେ - ତ୍ରିଭୁବନ ମହାଦେବୀ ଓ ଦଣ୍ଡୀ ମହାଦେବୀ । "ତ୍ରିଭୁବନ ମହାଦେବୀ ଦକ୍ଷିଣ ଦେଶର ରାଜା ରାଜମଲ୍ଲଦେବଙ୍କର କନ୍ୟାଥିଲେ । ସେ କରବଂଶର ମହାରାଜା ଲଳିତହାରଦେବଙ୍କୁ ବିବାହ କରିଥିଲେ ।" (୨) ମହାରାଜ ଲଳିତହାରଦେବଙ୍କ ଅକାଳ ମୃତ୍ୟୁ ହେବାରୁ ତ୍ରିଭୁବନ ମହାଦେବୀ କୋଦାଳକ ନଗରୀର ଶାସନଭାର ଗ୍ରହଣ କରିଥିଲେ । ସେ ଜଣେ ଉଦାରଭାବାପନ୍ନା, ଧର୍ମପରାୟଣା, ସୁ ଶାସିକା ରୂପେ ନିଜର ଖ୍ୟାତି ଅର୍ଜନ କରିଥିଲେ । ତତ୍କାଳୀନ 'ଯମଗର୍ତ୍ତମଣ୍ଡଳ' ର ଅନ୍ତର୍ଭୁକ୍ତ ଥିଲା - ଅନୁଗୁଳ, ତାଳଚେର, ପାଲଲହଡା ଓ ଢେଙ୍କାନାଳ ପଶ୍ଚିମ ସୀମାନ୍ତର କିଛି ଅଞ୍ଚଳ । ଏଠାରେ ତୁଙ୍ଗ ବଂଶୀ ରାଜାମାନେ ରାଜତ୍ୱ କରୁଥିଲେ । 'କରମୂଳପାଟଣା ମଣ୍ଡଳ' ର ଅନ୍ତର୍ଭୁକ୍ତ ଥିଲା - କରମୂଳପାଟଣା ଅଞ୍ଚଳ ଓ କାମାକ୍ଷାନଗର ର କିଛି ଅଞ୍ଚଳ । ଏଠାରେ ନାଗ ବଂଶୀୟ ରାଜାମାନେ ରାଜତ୍ୱ କରୁଥିଲେ । କରମୂଳ ପାଟଣା ଅନ୍ତର୍ଗତ ଦୌଡ଼େଶ୍ୱର ଠାରେ ବ୍ରାହ୍ମଣୀ ନଦୀ କୂଳରେ ଏକ ପ୍ରାଚୀନ ଶୈବ ପୀଠ ରହିଛି । ଯାହାକି ଢେଙ୍କାନାଳ ଶୈବଧର୍ମ - ଦର୍ଶନର ଏକ ପ୍ରମୁଖ ପୀଠ । ପ୍ରାଚୀନ ନାଗ ସଂସ୍କୃତିର ଅନ୍ୟଏକ ନିଦର୍ଶନ ନାଗନାର ନାଗନାଥ ମନ୍ଦିର । ଏହି ନାଗନାଥ ମନ୍ଦିର ଟି ଏକ ପ୍ରାଚୀନ ଶୈବ ମନ୍ଦିର । ଯାହାର ଭଗ୍ନାବଶେଷ ଉପରେ ପରବର୍ତ୍ତୀ ସମୟରେ ନୂତନ ମନ୍ଦିର ତୋଳାଯାଇଛି । ନାଗବଂଶୀ ରାଜାମାନଙ୍କର ପରବର୍ତ୍ତୀ ସମୟରେ ସୋମବଂଶୀ ରାଜା ଚନ୍ଦ୍ରକେଶରୀଙ୍କ ଶାସନ କାଳରେ ଢେଙ୍କାନାଳର ବହୁ ସ୍ଥାନରେ ଶିବ ମନ୍ଦିର ମାନ ନିର୍ମିତ ହୋଇଥିଲା ।

ଏହି ସମସ୍ତ ମଣ୍ଡଳ ଗୁଡ଼ିକ ତତ୍କାଳୀନ ଭୌମବଂଶୀ ନରପତି ମାନଙ୍କ ଅଧୀନରେ ରହିଥିବାର ଜଣାଯାଏ । ଏହି ଭୌମବଂଶୀ ରାଜାମାନଙ୍କର ଶାସନ ସମୟରେ ଢେଙ୍କାନାଳର ଅନତି ଦୂରରେ ବ୍ରାହ୍ମଣୀ ନଦୀର ଦକ୍ଷିଣ ପାର୍ଶ୍ୱରେ ଏକ ପ୍ରାଚୀନ ଦୁର୍ଗ ନିର୍ମିତ ହୋଇଥିଲା । ଯାହା 'ଭୌମନଗରୀ' ନାମରେ ପରିଚିତ ଥିଲା । ପରବର୍ତ୍ତୀ ଗଙ୍ଗ ରାଜତ୍ୱ ସମୟରେ ଅନଙ୍ଗଭୀମଦେବଙ୍କ ପୁତ୍ର ଦ୍ୱିତୀୟ ଅନଙ୍ଗଭୀମଦେବ ପଶ୍ଚିମାଞ୍ଚଳ ଯୁଦ୍ଧ ଅଭିଯାନ କରିବା ସମୟରେ ଏହି ନଗରୀଠାରେ ଅବସ୍ଥାନକରି ଏହାର ନାମ 'ଭୀମନଗରୀ' ରଖିଥିବାର ଜଣାଯାଏ । କେହି କେହି ଆଲୋଚକ ଏହି ଦ୍ୱିତୀୟ ଅନଙ୍ଗଭୀମଦେବଙ୍କୁ ତୃତୀୟ ଅନଙ୍ଗଭୀମଦେବରୂପେ ସୂଚିତ କରିଛନ୍ତି । ମାଦଳାପାଞ୍ଜିରେ ଏହି ଭୀମନଗରୀ 'ଭୀମନଗରୀ ଦଣ୍ଡପାଟ' ରୂପରେ ଉଲ୍ଲେଖ ଅଛି । ଏହି ଭୀମ ନଗରୀଥିଲା କେଶରୀ ଓ ଗଙ୍ଗବଂଶୀ ରାଜାମାନଙ୍କର ଓଡିଶା ରାଜ୍ୟର ପଶ୍ଚିମ ସୀମାନ୍ତ । ମରହଟ୍ଟା - ବର୍ଗୀମାନଙ୍କର ଆକ୍ରମଣ ସମୟରେ ଏହି ଭୀମନଗରୀ ଭାଙ୍ଗି, ଛାରଖାର ହୋଇଯାଇଥିଲା ।

ସମୟକ୍ରମେ ଢେଙ୍କାନାଳ ରାଜ୍ୟର ଏହି ତିନିଗୋଟି ମଣ୍ଡଳ କେତେଗୁଡ଼ିଏ ସ୍ୱାଧୀନ 'ଗଡ଼' ରେ ବିଭକ୍ତ ହୋଇଥିଲା । ସେହି ଗଡ଼ ଗୁଡ଼ିକ ହେଲା - ଢେଙ୍କାନାଳ ଗଡ଼, ବେଣାଳିଆ ଗଡ଼, ପର୍ଜଙ୍ଗ ଗଡ଼, ପଳାଶୁଣୀ ଗଡ଼, ଗଡ଼ ମାଣିତ୍ରୀ, ଗଡ଼ ନୃସିଂହ ପ୍ରସାଦ, ବଳରାମପୁର ଗଡ଼, ଡମରାଜା କଟକ, ଭୀମନଗରୀ ଦଣ୍ଡପାଟ, କରମୂଳ ପାଟଣାଗଡ଼, ଶିବୁଲାଗଡ଼, ଗଡ଼ ଗାଁ ପୁର, ହଦଗଡ଼ ପ୍ରଭୃତି ।

ଇତିହାସର ବିଭିନ୍ନ ତଥ୍ୟ ଓ ଢେଙ୍କାନାଳ ରାଜବଂଶାବଳୀ ଆଦିରୁ ଜଣାଯାଏ - ଢେଙ୍କାନାଳ ରାଜ୍ୟ ଓ ରାଜବଂଶର ପ୍ରଥମ ପ୍ରତିଷ୍ଠାତା ହେଉଛନ୍ତି - ହରିସିଂହ ବିଦ୍ୟାଧର । ହରି ସିଂହ ଓଡ଼ିଶାର ଗଜପତି ସମ୍ରାଟ ପ୍ରତାପରୁଦ୍ର ଦେବଙ୍କ ଦ୍ୱାରା ସନନ୍ଦ ପ୍ରାପ୍ତ ହୋଇ ପ୍ରାଚୀନ ଢେଙ୍କାନାଳଗଡ଼ ଦୂରବର୍ତ୍ତୀ ବ୍ରହ୍ମଣୀ ନଦୀ କୂଳରେ, ଅଶ୍ୱଖୋଲା ପର୍ବତମାଳାର ପାଦଦେଶରେ କରମୂଳ ପାଟଣାଗଡ଼ ପ୍ରତିଷ୍ଠା କରି ସେଠାରେ ରାଜତ୍ୱ କରିଥିଲେ । 'ମାଦଳା ପାଞ୍ଜି' ର ତଥ୍ୟ ଅନୁଯାୟୀ ପ୍ରତାପରୁଦ୍ର ଦେବଙ୍କ ଶାସନ କାଳରେ ପୁରୀ ଜଗନ୍ନାଥ ମହାପ୍ରଭୁଙ୍କ ଦର୍ଶନ ନିମନ୍ତେ ଅନେକ ରାଜପୁତ୍ର କ୍ଷତ୍ରୀୟ ଓଡିଶା ଆଗମନ କରିଥିଲେ । ଏହି କ୍ଷତ୍ରୀୟ ମାନଙ୍କ ଭିତରୁ ତିନିଜଣ କ୍ଷତ୍ରୀୟ ଭ୍ରାତ ନିଜର ବିଦ୍ୟା, ବୁଦ୍ଧି ଓ ଶକ୍ତି ବଳରେ ଗଜପତି ପ୍ରତାପରୁଦ୍ର ଦେବଙ୍କର ଦୃଷ୍ଟି ଆକର୍ଷଣକରି ରାଜଅନୁଗ୍ରହ ଲାଭକରି ପାରିଥିଲେ । ଏହି ତିନିଜଣ କ୍ଷତ୍ରୀୟବୀର ହେଲେ- ହରି ସିଂହ, ଗୋବିନ୍ଦ ସିଂହ ଏବଂ ଜନାର୍ଦ୍ଦନ ସିଂହ ।

ସମ୍ରାଟ ପ୍ରତାପରୁଦ୍ର ଦେବ ଏହି ତିନିଜଣ ରାଜପୁତ୍ କ୍ଷତ୍ରୀୟଙ୍କୁ ଉଚ୍ଚ ପଦ ପଦବୀରେ ଅଧିଷ୍ଠିତ କରାଇ ସେମାନଙ୍କୁ ବିଦ୍ୟାଧର ମହାପାତ୍ର ଉପାଧିରେ ଭୂଷିତ କରିଥିଲେ । ରାଜପ୍ରଦତ୍ତ ଉପାଧି ଲାଭକରି ଏମାନେ ଯଥାକ୍ରମେ- ହରି ସିଂହ ବିଦ୍ୟାଧର ମହାପାତ୍ର, ଗୋବିନ୍ଦ ବିଦ୍ୟାଧର ମହାପାତ୍ର, ଜନାର୍ଦ୍ଦନ ବିଦ୍ୟାଧର ମହାପାତ୍ର ନାମରେ ପରିଚିତ ହୋଇଥିଲେ । "ସମ୍ରାଟ ପ୍ରତାପରୁଦ୍ର ଦେବ ଗୋବିନ୍ଦ ବିଦ୍ୟାଧର ମହାପାତ୍ରଙ୍କୁ ନିଜର ପ୍ରଧାନ ମନ୍ତ୍ରୀ, ଜନାର୍ଦ୍ଦନ ବିଦ୍ୟାଧର ମହାପାତ୍ରଙ୍କୁ ଅର୍ଥ ସଚିବ ଏବଂ ହରିସିଂହ ବିଦ୍ୟାଧର ମହାପାତ୍ରଙ୍କୁ ସମର ସଚିବ ପଦରେ ନିଯୁକ୍ତି ଦେଇଥିଲେ ।"(୩) ସମ୍ରାଟ ପ୍ରତାପରୁଦ୍ର ଦେବ ପ୍ରଥମ ଦାକ୍ଷିଣାତ୍ୟ ଯୁଦ୍ଧ ଅଭିଯାନ (ଖ୍ରୀ.ଅ. ୧୫୧୫) ସମୟରେ ବିଜୟନଗର ର ସମ୍ରାଟ କୃଷ୍ଣଦେବ ରାୟଙ୍କ ଠାରୁ ପରାସ୍ତ ହୋଇ ଗୌରବ-ଗରିମା ହରାଇଥିଲେ । ମାତ୍ର ପରବର୍ତ୍ତୀ ସମୟରେ ସମ୍ରାଟ ହରିସିଂହଙ୍କୁ ସେନାପତି ପଦରେ ଅଭିଷିକ୍ତ କରାଇ ପୁନର୍ବାର ଦ୍ୱିତୀୟଥର ପାଇଁ ଦାକ୍ଷିଣାତ୍ୟ ଯୁଦ୍ଧ ଯାତ୍ରା କରିଥିଲେ । କୃଷ୍ଣଦେବ ରାୟଙ୍କ ମୃତ୍ୟୁ (ଖ୍ରୀ.ଅ. ୧୫୨୯) ପରେ ସମ୍ଭବତଃ ଖ୍ରୀ.ଅ. ୧୫୩୦-୩୧ ବେଳକୁ ପ୍ରତାପରୁଦ୍ର ଦାକ୍ଷିଣାତ୍ୟ ଯୁଦ୍ଧ ଅଭିଯାନ ପଥରେ ବାହାରି ଯାଇଥିଲେ । ମାତ୍ର ଯାତ୍ରାପଥରେ ପାଟମହିଷୀଙ୍କ ଅସୁସ୍ଥତା ଖବରପାଇ ସମ୍ରାଟ ପ୍ରତାପରୁଦ୍ର ଦେବ ହରିସିଂହ ବିଦ୍ୟାଧରଙ୍କ ହାତରେ ଯୁଦ୍ଧ ଭାର ଅର୍ପଣ କରି ପୁରୀ ରାଜପ୍ରାସାଦ ପ୍ରତ୍ୟାବର୍ତ୍ତନ କରିଥିଲେ । ହରିସିଂହ ବିଦ୍ୟାଧର ଅପୂର୍ବ ବୀରତ୍ୱ ଓ ସାହସିକତାର ସହିତ ସୈନ୍ୟ ପରିଚାଳନା କରି ଶତ୍ରୁ ସୈନ୍ୟଙ୍କୁ ପରାହତ କରି ଯୁଦ୍ଧରେ ଜୟଲାଭ କରିଥିଲେ । ହରିସିଂହଙ୍କର ଏହି ଦାକ୍ଷିଣାତ୍ୟ ଯୁଦ୍ଧ ବିଜୟ ସମ୍ରାଟଙ୍କର ଲୁପ୍ତ ଗୌରବ ଓ ସମ୍ମାନ ଫେରାଇ ଆଣିଥିଲା । ପ୍ରତାପରୁଦ୍ର ଦେବ ହରିସିଂହଙ୍କର ବୀରତ୍ୱ ଓ ଦିଗ୍‌ବିଜୟରେ ମୁଗ୍ଧହୋଇ ତାଙ୍କୁ ରାଜକୀୟ ସମ୍ମାନରେ ସମ୍ମାନିତ କରିବା ସହିତ ଝାଡଖଣ୍ଡ ରାଜ୍ୟର ବ୍ରାହ୍ମଣୀ ନଦୀ ତଟବର୍ତ୍ତୀ ଢେଙ୍କାନାଳଗଡର ଉତ୍ତରପୂର୍ବ ଐଶାନ୍ୟ ରେ ଅବସ୍ଥିତ ସାତକୋଶ ବ୍ୟାପୀ କରମୂଳ ପାଟଣା ଅଞ୍ଚଳରେ ଖ୍ରୀ.ଅ. ୧୫୩୧-୩୨ ବେଳକୁ ରାଜପଦରେ ଅଭିଷିକ୍ତ କରାଇଥିଲେ । ହରିସିଂହ ବିଦ୍ୟାଧର ଏହି କରମୂଳପାଟଣା ମୂଳକ ଅନ୍ତର୍ଗତ ଅଶ୍ୱଖୋଲା ପର୍ବତର ଶିଖର ଦେଶରେ ଏକ ଗିରିଦୁର୍ଗର ସ୍ଥାପନା ସହିତ ଏହି ପର୍ବତମାଳାର ପାଦ ଦେଶରେ ଏକ ଗଡ ବା ରାଜନଅର ନିର୍ମାଣ କରାଇଥିଲେ । କ୍ରମେ ନିଜ ରାଜ୍ୟର ସୀମା ବୃଦ୍ଧିପାଇଁ ହରିସିଂହ ପାର୍ଶ୍ୱ ଏବଂ ଦୂରବର୍ତ୍ତୀ ଖଣ୍ଡାଧୀପ ମାନଙ୍କୁ ପରାସ୍ତ ବା କରାୟତ୍ତ କରି ନିଜ ରାଜ୍ୟର ସୀମାବୃଦ୍ଧି କରିଥିଲେ । ପ୍ରଥମେ ହରିସିଂହ ଆଟିଣ୍ଡାବିଷ, ଅପଙ୍ଗାବିଷ, ନୂଆଗଡ,

ବଣିଆପଡା ଆଦି ଅଞ୍ଚଳ ଅଧିକୃତ କରିବା ପରେ ପରବର୍ତ୍ତୀ ସମୟରେ ବେଶାଳିଆଗଡ ଓ ଢେଙ୍କାନାଳଗଡ଼ ଅଧିକାର କରିଥିଲେ ।

ଢେଙ୍କାନାଳ ଗଡ଼ ନିକଟବର୍ତ୍ତୀ ବେଶାଳିଆ ଗଡ଼ର ତତ୍କାଳୀନ ନରପତି ଥିଲେ - ଭଞ୍ଜବଂଶୀ ରାଜା- ଶ୍ରୀଧର ଭଞ୍ଜ । ସେ ଢେଙ୍କାନାଳ ଗଡର ତତ୍କାଳୀନ ଅଧିପତି ଢେଙ୍କାଶବରକୁ କୌଶଳକ୍ରମେ , ଛଳନାରେ ପରାସ୍ତ କରି ଢେଙ୍କାନାଳ ଗଡ଼ ଅଧୀକୃତ କରିଥିଲେ । ଢେଙ୍କାନାଳ ଗଡର ଅଧିପତି ଢେଙ୍କାଶବର ପ୍ରବଳ ପରାକ୍ରମୀ ଥିଲା । ଢେଙ୍କାଶବର ଅଧୁଷିତ ଏଇ ଢେଙ୍କାନାଳ ଗଡ ସେତେବେଳେ ଚାରି ଗୋଟି 'ନାଳୀ' ର ସମାହାର ଥିଲା । ଏହି 'ନାଳୀ' ସାଧାରଣତଃ ଦୁଇପାର୍ଶ୍ୱ ଉଚ୍ଚ ଏବଂ ତନ୍ମଧ୍ୟସ୍ଥ କ୍ରମନିମ୍ନଭୂମିକୁ ବୁଝାଉଥିଲା । ଏହି ଚାରି ଗୋଟି କ୍ରମନିମ୍ନ ଭୂମି ବା ନାଳୀ ଗୁଡିକ ଥିଲା- ଢେଙ୍କାନାଳୀ, ଘୁମୁରାନାଳୀ, ଗୁଡିଆନାଳୀ ଓ କଣ୍ଟାନାଳୀ । ଏହି ସୀମା-ସରହଦ ଭିତରେ ଶବର ରାଜା ଢେଙ୍କା ରାଜତ୍ୱ କରୁଥିଲା । ବେଶାଳିଆ ଗଡ଼ର ରାଜା ମାନେ ଏହି ଗଡକୁ ଅଧୀକୃତ କରିବାପାଇଁ ବାରମ୍ବାର ଯୁଦ୍ଧକରି ଅକୃତକାର୍ଯ୍ୟ ହୋଇଥିଲେ । ପରିଶେଷରେ ରାଜା ଶ୍ରୀଧର ଭଂଜ ଛଦ୍ମ ଯୁଦ୍ଧ ଓ ଛଳନାର ଆଶ୍ରୟ ନେଇ ଢେଙ୍କାଶବରକୁ ହତ୍ୟାକରି ପ୍ରାୟ ଖ୍ରୀ.ଅ. ୧୫୫୦ ବେଳକୁ ଢେଙ୍କାନାଳ ଗଡକୁ ନିଜ ଶାସନାଧୀନ କରିଥିଲେ । ଢେଙ୍କାଶବର ର ନାମାନୁଯାୟୀ ଏହି ଭୂ-ଖଣ୍ଡର ନାମ 'ଢେଙ୍କାନାଳ' ରଖାଯାଇଥିଲା । ଶ୍ରୀଧର ଭଂଜଙ୍କ ଅଧିକୃତ ଏହି ଢେଙ୍କାନାଳ ଗଡକୁ ପ୍ରାୟ ଖ୍ରୀ.ଅ. ୧୫୫୫-୫୭ ବେଳକୁ କରମୂଳ ପାଟଣାର ରାଜା ହରିସିଂହ ବିଦ୍ୟାଧର ଅଧିକୃତ କରିଥିଲେ । ରାଜା ହରି ସିଂହ ଶ୍ରୀଧର ଭଂଜ ଙ୍କୁ ଯୁଦ୍ଧରେ ପରାସ୍ତ କରି ଏହି ଗଡ ଦୁର୍ଗ ଦଖଲ କରିଥିଲେ । ଦୁର୍ଗ ଦଖଲ ପରେ ହରି ସିଂହ ନିଜକୁ ଢେଙ୍କାନାଳ ଗଡର ଅଧିପତି ଘୋଷଣା କରି ନିଜ ଶାସନାଧୀନ ଅଞ୍ଚଳ ଗୁଡିକୁ 'ଢେଙ୍କାନାଳ ରାଜ୍ୟ' ନାମରେ ନାମିତ କଲେ । ରାଜା ହରି ସିଂହ ଢେଙ୍କାନାଳ ଗଡର ପାଣି ଓହଳା ପର୍ବତର ପାଦଦେଶରେ ଏକ ସୁଦୃଶ୍ୟ ରାଜନଗର ନିର୍ମାଣ କରାଇ ଆଧୁନିକ ଢେଙ୍କାନାଳ ରାଜ୍ୟ ଓ ଢେଙ୍କାନାଳ ରାଜବଂଶର ପ୍ରଥମ ପ୍ରତିଷ୍ଠା କଲେ ।

ହରି ସିଂହଙ୍କ ପ୍ରତିଷ୍ଠିତ ଏହି ଢେଙ୍କାନାଳ ରାଜ୍ୟର ସୀମାନ୍ତ ପ୍ରାୟ ୧୨୦ କ୍ରୋଶ ବ୍ୟାପୀ ଥିଲା । ସେଥିରେ ୨୪ଗୋଟି ବିଷ ବା ପ୍ରଗଣା ଏବଂ ପ୍ରାୟ ୧୧୦୦ ଗ୍ରାମ ଅବସ୍ଥିତ ଥିଲା । ଏହି ଚବିଶ ଗୋଟି ବିଷ ବା ପ୍ରଗଣା ଗୁଡିକ ହେଲା- "୧-ଭୀମନଗରୀ ଦଣ୍ଡପାଟ, ୨-ଗୋତମରା, ୩-କୁଳକାଶିଆ, ୪-ବଳରାମପୁର, ୫-

ନିଜିଗଡ଼ ୬-ଛ'ଦେଶ ୭-ଲକ୍ଷ୍ମୀପ୍ରସାଦ ୮-ପୂର୍ବଖଣ୍ଡ ୯-ଅପଙ୍ଗା ୧୦-ଆଟିଣ୍ଡା ୧୧-କରମୂଳ ୧୨-ବଣିଆପଡା ୧୩-ଗୌଡଦେଶ ୧୪-ରାୟ ସିଂହ ପ୍ରସାଦ ୧୫-ନୂଆଗଡ ୧୬-ନୃସିଂହପ୍ରସାଦ ୧୭-ଗଁପୁର ୧୮-ଚିପିଯୋଡି ୧୯-ଗୁରୁଡିଆ, ୨୦-ପାରିମାଳ, ୨୧-ଜେନାଦେଶ ୨୨-ଶୌରିକ ୨୩-ପଳାଶୁଣି ୨୪-ପରଜଙ୍ଗ"। (୪) ଏହିସବୁ ଅଞ୍ଚଳ ସହିତ ଅନଗୁଳ, ତାଳଚେର, କେଉଁଝର, ସୁକିନ୍ଦା, ମଧୁପୁର, ଡାଲିଯୋଡ଼ା, କଳକଳା, ଆଠଗଡ, ତିଗିରିଆ, ବଡମ୍ବା, ହିନ୍ଦୋଳ, ପ୍ରଭୃତି ରାଜ୍ୟର କିୟଦଂଶ ମଧ୍ୟ ଏହି ଢେଙ୍କାନାଳ ରାଜ୍ୟର ଅନ୍ତର୍ଭୁକ୍ତ ଥିଲା । ରାଜା ହରିସିଂହ ବିଦ୍ୟାଧର ପ୍ରାୟ ଦୀର୍ଘ ତିନି ଦଶନ୍ଧି ଧରି ଏହି ଢେଙ୍କାନାଳ ରାଜ୍ୟର ଶାସନ କରିଥିଲେ । ରାଜା ହରିସିଂହଙ୍କ ମୃତ୍ୟୁ (ଖ୍ରୀ.ଅ. ୧୫୯୪) ପରେ ତାଙ୍କ ପୁତ୍ର ଲୋକନାଥ ବିଦ୍ୟାଧର ଖ୍ରୀ.ଅ. ୧୫୯୪ ରୁ ଖ୍ରୀ.ଅ. ୧୬୧୫ ପର୍ଯ୍ୟନ୍ତ ଢେଙ୍କାନାଳ ରାଜ୍ୟର ଶାସନ କରିଥିଲେ । ଲୋକନାଥ ବିଦ୍ୟାଧର ଓଡ଼ିଶାର ତତ୍କାଳୀନ ଗଜପତିଙ୍କ ଠାରୁ ରାୟସିଂହ ଭ୍ରମରବର ରାୟ ଉପାଧି ପ୍ରାପ୍ତ ହୋଇଥିଲେ । ଲୋକନାଥ ବିଦ୍ୟାଧର ରାୟ ସିଂହ ଭ୍ରମରବରଙ୍କ ପରେ ତାଙ୍କ ପୁତ୍ର ବଳଭଦ୍ର ବିଦ୍ୟାଧର ରାୟ ସିଂହ ଭ୍ରମରବର ଖ୍ରୀ.ଅ. ୧୬୧୫ ଠାରୁ ଖ୍ରୀ.ଅ. ୧୬୪୧ ପର୍ଯ୍ୟନ୍ତ ଶାସନ କରିଥିଲେ । ତାଙ୍କପରେ ତାଙ୍କ ପୁତ୍ର ନିଳାମ୍ବର ବିଦ୍ୟାଧର ରାୟ ସିଂହ ଭ୍ରମରବର ଖ୍ରୀ.ଅ. ୧୬୪୧ ଠାରୁ ଖ୍ରୀ.ଅ. ୧୬୮୦ ପର୍ଯ୍ୟନ୍ତ ଢେଙ୍କାନାଳ ରାଜ୍ୟର ଶାସନ କରିଥିଲେ । ଏହାଙ୍କ ପରେ ଖ୍ରୀ.ଅ. ୧୬୮୦ ଠାରୁ ୧୭୦୮ ପର୍ଯ୍ୟନ୍ତ ରାଜା ନୃସିଂହ ଭ୍ରମରବର ଏବଂ ଖ୍ରୀ.ଅ. ୧୭୦୮ ଠାରୁ ୧୭୨୮ ପର୍ଯ୍ୟନ୍ତ ତାଙ୍କ ପୁତ୍ର କୁଞ୍ଜବିହାରୀ ଭ୍ରମରବର ଢେଙ୍କାନାଳ ରାଜ୍ୟର ଶାସନ କରିଥିଲେ । କୁଞ୍ଜବିହାରୀଙ୍କ ପରେ ତାଙ୍କ ପୁତ୍ର ବ୍ରଜବିହାରୀ ରାୟ ସିଂହ ଭ୍ରମରବର ଖ୍ରୀ.ଅ. ୧୭୨୮ ଠାରୁ ୧୭୪୧ ପର୍ଯ୍ୟନ୍ତ ଢେଙ୍କାନାଳ ରାଜସିଂହାସନ ଆରୋହଣ କରିଥିଲେ । ବ୍ରଜବିହାରୀଙ୍କ ପରେ ତାଙ୍କ ପୁତ୍ର ଦାମୋଦର ରାୟସିଂହ ଭ୍ରମରବର ଖ୍ରୀ.ଅ. ୧୭୪୧ ଠାରୁ ୧୭୪୩ ପର୍ଯ୍ୟନ୍ତ ମାତ୍ର ତିନି ବର୍ଷ ଶାସନ କରିଥିଲେ ।

ଦାମୋଦର ରାୟସିଂହ ଭ୍ରମରବର ଅପୁତ୍ରିକ ଥିବାରୁ ତାଙ୍କ ଅନ୍ତେ ତାଙ୍କ କକା ପୁଅ ଭାଇ ଜଗନ୍ନାଥ ଭ୍ରମରବର ଖ୍ରୀ.ଅ. ୧୭୪୩ ରୁ ୧୭୪୫ ପର୍ଯ୍ୟନ୍ତ ଦୁଇବର୍ଷ ଶାସନ କରିଥିଲେ । ଜଗନ୍ନାଥ ଭ୍ରମରବରଙ୍କ ପରେ ରାଜା ବ୍ରଜବିହାରୀ ରାୟସିଂହ ଙ୍କ ତୃତୀୟଭ୍ରାତା ଘନଶ୍ୟାମ ରାୟସିଂହଙ୍କ ପୁତ୍ର ତ୍ରିଲୋଚନ ସିଂହାସନ ଗ୍ରହଣ କରିଥିଲେ । ରାଜା ତ୍ରିଲୋଚନ, ତ୍ରିଲୋଚନ ମହୀନ୍ଦ୍ର ବାହାଦୂର ନାମ ଧାରଣ କରି ଖ୍ରୀ.ଅ. ୧୭୪୫ ରୁ

୧୭୮୪ ପର୍ଯ୍ୟନ୍ତ ଢେଙ୍କାନାଳ ରାଜ୍ୟ ଶାସନ କରିଥିଲେ । ରାଜା ତ୍ରିଲୋଚନଙ୍କ ଶାସନ କାଳରେ ବର୍ଗୀ ଓ ମରହଟ୍ଟା ମାନେ ଲୁଣ୍ଠନ, ଅତ୍ୟାଚାର କରି ଓଡ଼ିଶାରେ ନିଜର ଆଧିପତ୍ୟ ବିସ୍ତାର କରିଥିଲେ । ରାଜା ତ୍ରିଲୋଚନ ଖ୍ରୀ.ଅ. ୧୭୭୯ ରେ ମରହଟ୍ଟା ମାନଙ୍କ ସହ ଯୁଦ୍ଧକରି ସେମାନଙ୍କୁ ପରାସ୍ତ କରିଥିଲେ । ରାଜା ତ୍ରିଲୋଚନ ମହୀନ୍ଦ୍ର ବାହାଦୂରଙ୍କ ପରେ ତାଙ୍କ ପୁତ୍ର ଦୟାନିଧି ମହୀନ୍ଦ୍ର ବାହାଦୂର ଖ୍ରୀ.ଅ. ୧୭୮୫ ଠାରୁ ୧୭୯୫ ପର୍ଯ୍ୟନ୍ତ ଶାସନ କରିଥିଲେ । ଦୟାନିଧି ଅପୁତ୍ରିକ ଥିବାରୁ ତାଙ୍କପରେ ତାଙ୍କ ଭ୍ରାତୃଷ୍ପୁତ୍ର ମାନସିଂହ ଖ୍ରୀ.ଅ.୧୭୯୫ ରୁ ୧୭୯୬ ପର୍ଯ୍ୟନ୍ତ ମାତ୍ର ଏକବର୍ଷ ସିଂହାସନ ଆରୋହଣ କରିଥିଲେ । ତାଙ୍କ ପରେ ରାଜା ତ୍ରିଲୋଚନ ମହୀନ୍ଦ୍ର ବାହାଦୂର ଙ୍କ ଅନ୍ୟତମ ପୁତ୍ର ରାମଚନ୍ଦ୍ରସିଂହ ମହୀନ୍ଦ୍ର ବାହଦୂର ଖ୍ରୀ.ଅ.୧୭୯୬ ରୁ ଖ୍ରୀ.ଅ.୧୮୦୭ ପର୍ଯ୍ୟନ୍ତ ଢେଙ୍କାନାଳ ରାଜ୍ୟ ଶାସନ କରିଥିଲେ । ଏଠାରେ ସୂଚିତ କରାଯାଇପାରେ-ଓଡ଼ିଶା ଇଂରେଜ ଶାସନାଧୀନ (ଖ୍ରୀ.ଅ.୧୮୦୩) ହେବା ପରଠାରୁ ଢେଙ୍କାନାଳ ଏକ କରଦ ରାଜ୍ୟ ବା 'ଟ୍ରିବ୍ୟୁଟାରୀ ଷ୍ଟେଟ୍' ରୂପେ ଇଂରେଜ ସରକାରଙ୍କ ଶାସନାଧୀନ ହୋଇଥିଲା । ଯା' ଫଳରେ ଢେଙ୍କାନାଳର ରାଜାମାନେ ବ୍ରିଟିଶ୍ ପଲ୍‌ଟିକାଲ ଏଜେଣ୍ଟଙ୍କ ଦ୍ୱାରା ନିୟନ୍ତ୍ରିତ ହେଲେ । ରାମଚନ୍ଦ୍ର ମହୀନ୍ଦ୍ର ବାହାଦୂର ଅପୁତ୍ରିକ ଥିବାରୁ ତାଙ୍କପରେ କୃଷ୍ଣଚନ୍ଦ୍ର ମହୀନ୍ଦ୍ର ବାହାଦୂର ଖ୍ରୀ.ଅ. ୧୮୦୭ ରୁ ୧୮୨୨ ପର୍ଯ୍ୟନ୍ତ ରାଜ୍ୟର ଶାସନ କରିଥିଲେ । ରାଜା କୃଷ୍ଣଚନ୍ଦ୍ର ମଧ ଅପୁତ୍ରିକ ଥିବାରୁ ତାଙ୍କ ପରେ ଶ୍ୟାମସୁନ୍ଦର ମହୀନ୍ଦ୍ର ବାହାଦୂର ଖ୍ରୀ.ଅ. ୧୮୨୨ ରୁ ୧୮୩୦ ପର୍ଯ୍ୟନ୍ତ ଶାସନ କାର୍ଯ୍ୟ କରିଥିଲେ । ରାଜା ଶ୍ୟାମସୁନ୍ଦର ମଧ ଅପୁତ୍ରିକ ଥିବାରୁ ତାଙ୍କର ପୋଷ୍ୟପୁତ୍ର ନା' ବାଳକ ଭଗୀରଥ ମହୀନ୍ଦ୍ର ବାହାଦୂର ଖ୍ରୀ.ଅ. ୧୮୩୦ ରେ ଢେଙ୍କାନାଳ ରାଜ ସିଂହାସନ ଆରୋହଣ କରିଥିଲେ । ଭଗୀରଥ ନା' ବାଳକ ଥିବାରୁ ଖ୍ରୀ.ଅ. ୧୮୩୦ ରୁ ୧୮୪୨ ପର୍ଯ୍ୟନ୍ତ ରାଜମାତା ଶାସନ ଦାୟିତ୍ୱ ନିର୍ବାହ କରିଥିଲେ । ସାବାଳକତ୍ୱ ପ୍ରାପ୍ତିପରେ ଭଗୀରଥ ଖ୍ରୀ.ଅ. ୧୮୪୨ ଠାରୁ ୧୮୭୭ ପର୍ଯ୍ୟନ୍ତ ଦୀର୍ଘକାଳବ୍ୟାପୀ ରାଜ୍ୟ ଶାସନ କରିଥିଲେ । ରାଜା ଭଗୀରଥ ମହୀନ୍ଦ୍ର ବାହାଦୂର ମଧ ନିଃସନ୍ତାନୀ ଥିବାରୁ ତାଙ୍କ ପୋଷ୍ୟପୁତ୍ର ଦୀନବନ୍ଧୁ ମହୀନ୍ଦ୍ର ବାହାଦୂରଙ୍କୁ ସିଂହାସନରେ ବସା ଯାଇଥିଲା । ମାତ୍ର ଦୀନବନ୍ଧୁ ନା' ବାଳକ ଥିବାରୁ ବ୍ରିଟିଶ୍ ସରକାରଙ୍କର ପ୍ରତିନିଧିରୂପେ ବନମାଳି ସିଂହ କିଛି ବର୍ଷ ରାଜ୍ୟର ଶାସନ କାର୍ଯ୍ୟ ପରିଚାଳନା କରିଥିଲେ । ସାବାଳକତ୍ୱ ପ୍ରାପ୍ତି ପରେ ଦୀନବନ୍ଧୁ ଖ୍ରୀ.ଅ. ୧୮୮୫ ପର୍ଯ୍ୟନ୍ତ ରାଜ୍ୟର ଶାସନ କାର୍ଯ୍ୟ କରିଥିଲେ । ଦୀନବନ୍ଧୁ ମହୀନ୍ଦ୍ର ବାହାଦୂରଙ୍କ ମୃତ୍ୟୁପରେ

ଖ୍ରୀ.ଅ.୧୮୮୫ ରୁ ଖ୍ରୀ.ଅ. ୧୯୦୬ ପର୍ଯ୍ୟନ୍ତ ବ୍ରିଟିଶ୍ ସରକାରଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଢେଙ୍କାନାଳ ରାଜ୍ୟ ଶାସିତ ହୋଇଥିଲା । ଖ୍ରୀ.ଅ.୧୯୦୬ ରେ ଦୀନବନ୍ଧୁଙ୍କ ପୁତ୍ର ସୁରପ୍ରତାପ ମହୀନ୍ଦ୍ର ବାହାଦୂର ଢେଙ୍କାନାଳର ଶାସନ ଭାର ଗ୍ରହଣ କରିଥିଲେ । ମାତ୍ର-ଖ୍ରୀ.ଅ. ୧୯୧୮ ରେ ରାଜା ସୁରପ୍ରତାପଙ୍କ ଅକାଳ ମୃତ୍ୟୁ ପରେ ତାଙ୍କ ପୁତ୍ର ଶଙ୍କର ପ୍ରତାପ ଢେଙ୍କାନାଳ ରାଜସିଂହାସନରେ ଅଭିଷିକ୍ତ ହୋଇଥିଲେ । ଖ୍ରୀ.ଅ. ୧୯୧୯ ମେ ମାସ ୨ ତାରିଖରେ ଇଂରେଜ ସରକାର ଶଂକରପ୍ରତାପଙ୍କର ରାଜପଦ ଓ ଫିଉଡେଟୋରୀ ଚିଫ୍ ପଦକୁ ଅନୁମୋଦନ କରିଥିଲେ । ଯା' ଫଳରେ ରାଜା ଶଂକର ପ୍ରତାପ ଢେଙ୍କାନାଳ ଗଡଜାତର ଜଣେ ସାର୍ବଭୌମ ଶାସକ ରୂପରେ ଅଖଣ୍ଡ କ୍ଷମତାର ଅଧିକାରୀ ହୋଇ ସ୍ୱେଚ୍ଛାଚାରୀ ଭାବରେ ଶାସନ କରିଥିଲେ । ତାଙ୍କର ଅନ୍ଧାରୀ ଶାସନର ଶୋଷଣ, କଷଣ ଓ ଉତ୍ପୀଡନରେ ପ୍ରଜାକୁଳ ଅତିଷ୍ଠ ହୋଇ ପଡିଥିଲେ । ଯା' ର ଫଳ ସ୍ୱରୂପ ୧୯୩୮ ମସିହା ରେ ରାଜାଙ୍କ ଅନ୍ଧାରୀ ଶାସନ ବିରୁଦ୍ଧରେ ଭୟଙ୍କର ପ୍ରଜାମେଳି ଓ ଗଡ଼ଜାତ ପ୍ରଜାଆନ୍ଦୋଳନ ମୁଣ୍ଡଟେକି ଉଠିଥିଲା । ଭାରତବର୍ଷ ସ୍ୱାଧିନତା ଲାଭକଲା ପରେ ୧୯୪୭ ମସିହା ଡ଼ିସେମ୍ବର ମାସ ୩୧ ତାରିଖରୁ ଢେଙ୍କାନାଳ ରାଜ୍ୟ ଓଡ଼ିଶା ସରକାରଙ୍କ ହାତକୁ ଗଲା ଏବଂ ୧୯୪୮ ମସିହା ଜାନୁୟାରୀ ୧ ତାରିଖ ଠାରୁ ଢେଙ୍କାନାଳ ଗଡ଼ଜାତ 'ଢେଙ୍କାନାଳ ଜିଲ୍ଲା' ରେ ପରିଣତ ହେଲା । ଢେଙ୍କାନାଳ ଗଡ଼ଜାତ ସହିତ ଅନୁଗୁଳ, ହିନ୍ଦୋଳ, ଆଠମଲ୍ଲିକ, ତାଳଚେର, ପାଲଲହଡା ଆଦି ଗଡ଼ଜାତ ମିଶି ଏହି ବୃହତ୍ ଢେଙ୍କାନାଳ ଜିଲ୍ଲା ଗଠିତ ହେଲା । ମାତ୍ର-ପରବର୍ତ୍ତୀ ସମୟରେ ୧୯୯୩ ମସିହା ଏପ୍ରିଲମାସ ୧ ତାରିଖରୁ ଏହି ବୃହତ୍ ଢେଙ୍କାନାଳ ଜିଲ୍ଲା ପୁଣି ବିଭାଜିତ ହୋଇ ଅନଗୁଳ ଓ ଢେଙ୍କାନାଳ ଦୁଇଟି ଜିଲ୍ଲାରେ ବିଭକ୍ତ ଓ ପରିଗଣିତ ହେଲା । ଏହି ନବ ଗଠିତ ଢେଙ୍କାନାଳ ଜିଲ୍ଲା ଢେଙ୍କାନାଳ ସଦର, କାମାକ୍ଷାନଗର ଏବଂ ହିନ୍ଦୋଳ ଉପଖଣ୍ଡ କୁ ନେଇ ପ୍ରତିଷ୍ଠିତ ହେଲା । ଭୌଗୋଳିକ ଦୃଷ୍ଟିକୋଣରୁ ଏହି ନବ ଗଠିତ ଢେଙ୍କାନାଳ ଜିଲ୍ଲା- ୮୫° ୫୮'(୮୫ ଡ଼ିଗ୍ରୀ ୫୮ ମିନିଟ୍) ରୁ ୮୬° ୨'(୮୬ଡ଼ିଗ୍ରୀ ୨ମିନିଟ) ପୂର୍ବ ଦ୍ରାଘିମା ଓ ୨୦° ୨୩'(୨୦ଡ଼ିଗ୍ରୀ ୨୩ ମିନିଟ) ରୁ ୨୧° ୧୧'(୨୧ଡ଼ିଗ୍ରୀ ୧୧ମିନିଟ୍) ଉତ୍ତର ଅକ୍ଷାଂଶ ମଧ୍ୟରେ ଅବସ୍ଥିତ । ଏହି ଜିଲ୍ଲାର ମୋଟ ଆୟତନ ୪୫୯୯.୫ ବର୍ଗ କିଲୋମିଟର । ୨୦୦୧ ମସିହା ଜନଗଣନା ଅନୁଯାୟୀ ଏହି ଜିଲ୍ଲାର ମୋଟ ଜନସଂଖ୍ୟା ଥିଲା-୧୦,୮୭,୯୭୩ । ମାତ୍ର- ୨୦୧୧ ମସିହା ଜନଗଣନା ଅନୁଯାୟୀ ଏହିଜିଲ୍ଲାର ଜନସଂଖ୍ୟା-୧୧,୯୨,୮୧୧ । ଏହି ଢେଙ୍କାନାଳର ପୂର୍ବରେ

ଯାଜପୁର, ପଶ୍ଚିମରେ ଅନଗୁଳ, ଉତ୍ତରରେ କେଉଁଝର ଏବଂ ଦକ୍ଷିଣପାର୍ଶ୍ୱରେ କଟକ ଜିଲ୍ଲା ଅବସ୍ଥିତ। ଏହି ଜିଲ୍ଲା ବିଭିନ୍ନ ଜାତି, ଉପଜାତି, ଜନଜାତି, ବିଭିନ୍ନ ଧର୍ମ ସଂପ୍ରଦାୟର ଲୋକ ଓ ସେମାନଙ୍କର ଭାଷାକୁ ନେଇ ସମୃଦ୍ଧ ହୋଇଅଛି । ଏହି ଜିଲ୍ଲା ନୈସର୍ଗିକ ପ୍ରାକୃତିକ ଶୋଭା ସଂପଦରେ ପରିମଣ୍ଡିତ । ଏହାର ମଧ୍ୟଭାଗରେ ଉପବୀତ ସଦୃଶ ପୁଣ୍ୟତୋୟା ଚିରସ୍ରୋତା ବ୍ରାହ୍ମଣୀ ନଦୀ ପ୍ରବାହିତ। ଛୋଟ ନାଗପୁର ପାର୍ବତ୍ୟ ମାଳଭୂମିର ହଜାରୀବାଗ ପର୍ବତ ଶ୍ରେଣୀରୁ ବାହାରିଥିବା ଶଙ୍ଖ ଓ କୋଇଲି ନଦୀ ଦ୍ୱୟ ସୁନ୍ଦରଗଡ଼ ଜିଲ୍ଲା, ରାଉରକେଲାର ବେଦବ୍ୟାସ ଠାରେ ମିଳିତ ହୋଇ ଏହି ବ୍ରାହ୍ମଣୀନଦୀର ସୃଷ୍ଟି କରିଛନ୍ତି। ଯାହା ସୁନ୍ଦରଗଡ଼, ଦେବଗଡ଼, ଅନଗୁଳ, ଢେଙ୍କାନାଳ, ଯାଜପୁର, କେନ୍ଦ୍ରାପଡା ଆଦି ଜିଲ୍ଲା ଦେଇ ପୂର୍ବ-ମହୋଦଧି ରେ ମିଳିତ ହୋଇଅଛି । ଏହି ବ୍ରାହ୍ମଣୀର ଅନେକ ଉପନଦୀ ବା ଶାଖାନଦୀମାନ ମଧ ଏହି ମାଟିକୁ ପରିପ୍ଲାବିତ କରିଛନ୍ତି । ଏହି ଉପନଦୀ ଗୁଡିକ ହେଲା- ରାମିଆଳ, ଲିଙ୍ଗରା, ବଡ଼ଯୋଡା, ଗୋହିରା, ଡଉଁରୀ, ଗମ୍ଭାରିଆ, ସରପା, ପାଣ୍ଡରା ପ୍ରଭୃତି। ଏହା ସହିତ ଅନେକ ପର୍ବତମାଳା, ଗିରିନଦୀ, ଶୈଳ ନିର୍ଝର ବା ପ୍ରସ୍ରବଣ ମାନ ଏ ଭୂମିର ଶୋଭା ବର୍ଦ୍ଧନ କରୁଅଛି। ଏହି ଭୂମିକୁ ସୁରକ୍ଷା ପ୍ରଦାନ ସହିତ ଅପରୂପ ସୌନ୍ଦର୍ଯ୍ୟରେ ସୁଶୋଭିତ କରି ରଖିଥିବା ଛୋଟବଡ ପର୍ବତମାଳା ଗୁଡିକ ହେଲା- କପିଳାସ, ଅଶ୍ୱଖୋଲା, ପାଣିଓହଳା, ମେଘା, କୋରିଆ, ଉଦୟଗିରି, ରଞ୍ଜାଗଡ଼, ଭାଲିଆବୋଲ, ରୂପାବଳିଆ, ବାଙ୍କମୁଣ୍ଡି, ବାଗାଁ, ଡାଳୁଆ, କାଙ୍କଡବୋଲ, ବୁଢାତିଗିରିଆ, ପାଣବହରା, ଡମରାଜା କଟକ, କୁଟୁଣିଆ ପ୍ରଭୃତି । ଏ ମାଟିରେ ପ୍ରବାହିତ ଗିରିନଦୀ ଗୁଡିକ ହେଲା-ସୁଆଗି, ବେଗା, ଶୁଆଥଣ୍ଟିଆ, ବାଘମରା, ଘଣ୍ଟିଆ ଇତ୍ୟାଦି। ଏହା ସହିତ କପିଳାସ, ଅଶ୍ୱଖୋଲା, ସପ୍ତଶଯ୍ୟା, ଆଦିର ଶୈଳନିର୍ଝର ଗୁଡିକ ବେଶ୍ ମନଲୋଭା । ଏହି ଜିଲ୍ଲାର ନଦୀ ଉପତ୍ୟକା, ବିଭିନ୍ନ ଗ୍ରାମ ବା ଜନପଦ ଗୁଡିକରେ ବିଭିନ୍ନ ଧର୍ମ-ସଂପ୍ରଦାୟ ର ବହୁ କାରୁକାର୍ଯ୍ୟ ଖଚିତ ପ୍ରାଚୀନ-ଅର୍ବାଚୀନ ମନ୍ଦିରମାନ ଗଢିଉଠିଛି। ଏହି ମାଟିରେ ଅନାର୍ଯ୍ୟ, ଆର୍ଯ୍ୟ, ନାଗ, ଶୈବ, ଶାକ୍ତ, ନାଥ, ବୈଷ୍ଣବ, ଜଗନ୍ନାଥ, ବୌଦ୍ଧ, ମହିମା ପ୍ରଭୃତି ବିଭିନ୍ନ ଧର୍ମ-ଦର୍ଶନ ଓ ସଂସ୍କୃତିର ମହାସମନ୍ୱୟ ଘଟିଅଛି। ଖ୍ରୀ.ଅ. ତୃତୀୟ-ଚତୁର୍ଥ ଶତାବ୍ଦୀର ନାଗବଂଶ, ଗୁପ୍ତ ବଂଶ ଠାରୁ ଆରମ୍ଭକରି ପଞ୍ଚଦଶ-ଷୋଡଶ ଶତାବ୍ଦୀ ପର୍ଯ୍ୟନ୍ତ ଏ ମାଟିରେ ନାଗ ସଂସ୍କୃତି, ଶୈବ ସଂସ୍କୃତି, ଶାକ୍ତ ସଂସ୍କୃତି, ନାଥ ସଂସ୍କୃତି, ବୌଦ୍ଧ ସଂସ୍କୃତି, ବୈଷ୍ଣବଧର୍ମ-ଦର୍ଶନ, ଜଗନ୍ନାଥ ଧର୍ମ-ଦର୍ଶନ ଓ ସାଂସ୍କୃତିକ ପରଂପରା ଗଢିଉଠିଥିଲା। ଢେଙ୍କାନାଳର ଧର୍ମ, ସଂସ୍କୃତି ଓ ଐତିହ୍ୟ କୁ ପ୍ରାଣବନ୍ତ, ଉର୍ଜ୍ୱଳ କରି

ଏହି ସବୁ ଧର୍ମ-ଦର୍ଶନ ଓ ସଂପ୍ରଦାୟର ମନ୍ଦିର ମାନ ଗଢିଉଠିଥିଲା । କରମୂଳ ପାଟଣା ବ୍ରାହ୍ମଣୀନଦୀ ତୀରବର୍ତ୍ତୀ ଦୌଡେଶ୍ୱର ଶିବମନ୍ଦିର, ନାଗନାର ନାଗନାଥେଶ୍ୱର ମନ୍ଦିର, ଏକ ଘରକିଆସ୍ଥିତ କନକେଶ୍ୱର ଶିବ ମନ୍ଦିର, କୁଆଁଳୋର ଅଷ୍ଟଶମ୍ଭୁ ମନ୍ଦିର, ଚଷାପଡ଼ାର ସିଦ୍ଧେଶ୍ୱର ଓ ଶମ୍ଭୁନାଥ ମନ୍ଦିର, ଲତାଦେଇପୁରସ୍ଥ ଉନ୍ନ କୋଟୀଶ୍ୱର ଶିବ ମନ୍ଦିର, ବଣିଆପଡାର ସପ୍ତେଶ୍ୱର ଶିବ ମନ୍ଦିର, ସର୍ବୋପରି କପିଳାସ ସ୍ଥିତ ଶ୍ରୀ ଚନ୍ଦ୍ରଶେଖର ଜୀଉ ମନ୍ଦିର ନାଗ ଓ ଶୈବ ସଂସ୍କୃତିର ପ୍ରଚୀନତମ ନିଦର୍ଶନ । କପିଳାସସ୍ଥିତ ଏହି ମନ୍ଦିର ଓଡିଶାର ଗଙ୍ଗବଂଶୀ ସମ୍ରାଟ ବୀରଶ୍ରୀ ନରସିଂହ ଦେବ ନିର୍ମାଣ କରିଥିଲେ । ଏହି ମନ୍ଦିରଟି ଖ୍ରୀ.ଅ. ୧୨୪୬ ରେ ନିର୍ମିତ ହୋଇଥିବାର ଜଣାଯାଏ । ଏହି କପିଳାସ ମନ୍ଦିରର ଦଧିନିଉତି ଶିଳାଲେଖାରେ ଲେଖାଅଛି- "ସସ୍ତିତ୍ୟ ଦ୍ୱାପର -ତ୍ରେତା କଳିଯୁଗେ ନରସିଂହ ଦେବ ଦେଉଳ, କୈଳାସ ଶିଖରେ ବଇଶାଖ ଶୁକ୍ଳ ତ୍ରୟୋଦଶୀ ଚନ୍ଦ୍ରବାରେ ସ୍ୱାହି ଦସ ବୀରଶ୍ରୀ ନରସିଂହଦେବ ରାଜା ।"(୪)

ଢେଙ୍କାନାଳ ମାଟିରେ ଶାକ୍ତ ଧର୍ମ ଓ ସଂସ୍କୃତିର ଧାରା ମଧ ପ୍ରାଚୀନ । କୁଆଁଳୋର ସ୍ତମ୍ଭେଶ୍ୱରୀ, ନାଧରା ର ରାମଚଣ୍ଡୀ, କପିଳାସର ପାର୍ବତୀ, ଭୁବନେଶ୍ୱରୀ, ଡମରାଜାକଟର ଅନନ୍ତେଶ୍ୱରୀ ଆଦି ଶାକ୍ତ ସଂସ୍କୃତିର ନିଦର୍ଶନ । କଣିହାସ୍ଥିତ ଭୀମକାଣ୍ଡର ବିଷ୍ଣୁ ପ୍ରତିମା, ସରାଙ୍ଗ ନିକଟସ୍ଥ ନଦୀଗର୍ଭରେ ଖୋଦାୟିତ ବିଶାଳକାୟ ଅନନ୍ତ ଶୟନ ବିଷ୍ଣୁ ପ୍ରତିମା, ବାଇଁଶିଆ ଗ୍ରାମ ସୀମାନ୍ତରେ ପାହାଡ ଖୋଲରେ ଅଧିଷ୍ଠିତ ଜଗନ୍ନାଥଙ୍କ ପ୍ରାଚୀନ କାଷ୍ଠ ପ୍ରତିମା, ଢେଙ୍କାନାଳର ବଳଦେବ ଜୀଉ ମନ୍ଦିର, ସପ୍ତଶଯ୍ୟାର ରାମମନ୍ଦିର, ଏବଂ କୁଞ୍ଜକାନ୍ତ ସ୍ଥିତ ରାଧା-କୃଷ୍ଣ ମନ୍ଦିର ଆଦି ବୈଷ୍ଣବୀୟ ଧର୍ମ-ଦର୍ଶନ ଓ ସଂସ୍କୃତିର ନିଦର୍ଶନ । ଏହା ସହିତ ଆହୁରି ଅନେକ ଧର୍ମ-ସଂପ୍ରଦାୟ ର ବହୁ ମନ୍ଦିର ଏହି ଜିଲ୍ଲାରେ ବିଦ୍ୟମାନ । ଓଡ଼ିଶା ମାଟିର ନିଜସ୍ୱ ଧର୍ମ 'ମହିମାଧର୍ମ' ର ମହିମାଗାଦି ମନ୍ଦିର ଏହି ଜିଲ୍ଲାର ଯୋରନ୍ଦାଠାରେ ଅବସ୍ଥିତ । ଢେଙ୍କାନାଳ ମାଟିର ଏହି ସବୁ ଧର୍ମ-ଦର୍ଶନ, ମହନୀୟ ସଂସ୍କୃତି ଓ ଉଚ୍ଚାଙ୍ଗ ଜୀବନ ବୋଧକୁ ଆହୁରି ଉଚ୍ଚତର, ମହତ୍ତର, ପ୍ରାଣବନ୍ତ ଓ ଉର୍ଜସ୍ୱଳ କରିବା ପାଇଁ ବହୁ ମହାପୁରୁଷ, ଲେଖକ ବା ସାହିତ୍ୟିକ ମାନେ ଉଦ୍ୟମ କରିଛନ୍ତି । ଏହି ସବୁ ମହାନ୍ ବ୍ୟକ୍ତିତ୍ୱ, ସ୍ରଷ୍ଟା ଓ ସାରସ୍ୱତ ସାଧକ ମାନଙ୍କ ପାଇଁ ଏ ମାଟି ସମୃଦ୍ଧ, ସଂସ୍କୃତିବନ୍ତ, ପ୍ରାଣବନ୍ତ ଓ ଗର୍ବିତ ହୋଇ ଉଠିଛି ।

ଢେଙ୍କାନାଳର ସାରସ୍ୱତ ପରଂପରା ଅତି ପ୍ରଚୀନ ନ' ହେଲେହେଁ, ଅର୍ବାଚୀନ ନୁହେଁ । ଏମାଟିରେ ସାହିତ୍ୟର ମନ୍ଦାକିନୀ କେବେଠାରୁ ପ୍ରବାହିତ ହେଲା, ସେ ସଂପର୍କରେ

କୌଣସି ସଠିକ, ପ୍ରମାଣିକ ତଥ୍ୟ ନଥିଲେ ହେଁ; ସମ୍ଭବତଃ ଖ୍ରୀଷ୍ଟୀୟ ନବମ-ଦଶମ ଶତାବ୍ଦୀ ପରବର୍ତ୍ତୀ ସମୟରୁ ଏ ମାଟିରେ ସାହିତ୍ୟ ରଚନାର ଧାରା ଓ ପରଂପରା ଆରମ୍ଭ ହୋଇଥିବାର ଜଣାଯାଏ । ଏହି ମାଟିର ସଂସ୍କୃତ ଓ ଓଡ଼ିଆ ଭାଷାର ତାଳପତ୍ର ପୋଥି, ଭୂର୍ଜପତ୍ର, ତାମ୍ରଫଳକ ଆଦି ଭିତରେ ବହୁ ପ୍ରାଚୀନ ସୃଷ୍ଟିସମ୍ପଦ ଜୀବନ୍ତ ହୋଇ ରହିଛି । ଅନେକ ପୋଥି ପାଣ୍ଡୁଲିପି ମଧ୍ୟ ଅନାବିଷ୍କୃତ ଅବା ଧ୍ୱଂସପ୍ରାପ୍ତ ହୋଇଛି । କେବଳ ଯେଉଁ ପୋଥି-ପାଣ୍ଡୁଲିପି ଗୁଡିକ ମହାକାଳର କରାଳ ଉଦ୍‌ଗ୍ରାସ ଭିତରୁ ବଞ୍ଚି ଯାଇଥିଲା, ସେହି ପ୍ରାଚୀନ ରଚନା ଗୁଡିକ ଲୋକଲୋଚନକୁ ଆସି ପାରିଛି । ଯେଉଁ ଗୁଡିକ'. କି ଆମ୍ଭ ଅତୀତ ଐତିହ୍ୟ, ସଂସ୍କୃତି, ମହନୀୟ ଜୀବନ ବୋଧ ଓ ସାରସ୍ୱତ ସୃଷ୍ଟି କର୍ମର ମୂକସାକ୍ଷୀ ।

- ପାଦଟୀକା -

୧. ପଣ୍ଡିତ ରାମଚନ୍ଦ୍ର ନନ୍ଦ ଭକ୍ତିବିନୋଦ - ଢେଙ୍କାନାଳ ଇତିହାସ, ଦ୍ୱିତୀୟ ସଂସ୍କରଣ, ପୃ - ୧୮୭

୨. ନଗେନ୍ଦ୍ରନାଥ ମହାପାତ୍ର - ସେବକାଳର କଥା, ପୃ - ୮

୩. ପଣ୍ଡିତ ରାମଚନ୍ଦ୍ର ନନ୍ଦ ଭକ୍ତିବିନୋଦ - ଢେଙ୍କାନାଳ ଇତିହାସ, ପୃ - ୨୦୪

୪. ତତ୍ରୈବ - ପୃ - ୨ - ୩

୫. Dr. S.N. Rajguru - Inscriptions of Orissa - Vol.-V, Part-I, Page-136-137

+++

# ଦ୍ୱିତୀୟ ଅଧ୍ୟାୟ
## (ପ୍ରାଚୀନ ସାହିତ୍ୟ)

ପୃଷ୍ଠଭୂମି : ସମଗ୍ର ବିଶ୍ୱ ସାହିତ୍ୟପ୍ରତି ଦୃକ୍‌ପାତ କଲେ ଜଣାଯାଏ- ସାଧାରଣତଃ ସାହିତ୍ୟର ଦୁଇଟିଧାରା ସ୍ୱୀକୃତ। ଗୋଟିଏ ହେଉଛି ପଦ୍ୟ ସାହିତ୍ୟର ଧାରା ଓ ଅନ୍ୟଟି ହେଉଛି ଗଦ୍ୟ ସାହିତ୍ୟର ଧାରା। ସାହିତ୍ୟ ସୃଷ୍ଟି ଅଭିକ୍ରମରେ ପଦ୍ୟ ସାହିତ୍ୟର ସୃଷ୍ଟି ସର୍ବ ପ୍ରଥମ। ପଦ୍ୟ ସାହିତ୍ୟର ବିଭିନ୍ନ ବିଭାବ ଗୁଡିକ ହେଲା- ଲୋକଗୀତ, ଢଗଢମାଳି, ପଦାବଳୀ, ସଙ୍ଗୀତ, ପୁରାଣ ସାହିତ୍ୟ, ଧର୍ମୀୟ ସାହିତ୍ୟ, ସନ୍ଥ ସାହିତ୍ୟ ଓ କାବ୍ୟାବଳୀ। ସେହିପରି ଗଦ୍ୟ ସାହିତ୍ୟର ବିଭିନ୍ନ ବିଭାଗ ଗୁଡିକ ହେଲା- ଲୋକକଥା, ଲୋକ କାହାଣୀ, କିମ୍ବଦନ୍ତୀ, ଅଭିଲେଖ ବା ଶିଳାଲେଖ ସାହିତ୍ୟ, ଶିଷ୍ଟ ବା ବିଦଗ୍ଧ ସାହିତ୍ୟ। ପରବର୍ତ୍ତୀ ସମୟରେ ଏଥିରେ ଗଳ୍ପ, ଉପନ୍ୟାସ, ପ୍ରବନ୍ଧ, ସମାଲୋଚନା ଆଦି ଆଧୁନିକ ସାହିତ୍ୟିକ ବିଭାବ ଗୁଡିକ ସମାଭୂତ ହୋଇଅଛି।

ଓଡିଆ ସାହିତ୍ୟ କ୍ଷେତ୍ର ସଂପର୍କରେ ଆଲୋଚନା କଲେ ଜଣାଯାଏ ଯେ- ତିନିଗୋଟି ସାରସ୍ୱତ ତ୍ରିବେଣୀ ର ଧାରା ଆମ ସାହିତ୍ୟକୁ ସମୃଦ୍ଧ ଓ ଋଦ୍ଧିମନ୍ତ କରିଛି। ସେଗୁଡିକ ହେଲା-

୧. ମୌଖିକ ବା ଲୋକ ସାହିତ୍ୟ
୨. ଅଭିଲେଖ / ଶିଳାଲେଖ ସାହିତ୍ୟ
୩. ଲିଖିତ ସାହିତ୍ୟ

**ମୌଖିକ ସାହିତ୍ୟ ବା ଲୋକ ସାହିତ୍ୟ :** ସାଧାରଣତଃ ଲୋକ ସାହିତ୍ୟକୁ ମୌଖିକ ସାହିତ୍ୟ କୁହାଯାଇଥାଏ। ଦୈନନ୍ଦିନ ଜୀବନର ପାରସ୍ପରିକ ଭାବ ଆଦାନ ପ୍ରଦାନ ର ସାହିତ୍ୟିକ ରୂପ ହିଁ ଲୋକ ସାହିତ୍ୟ। ଏହାକୁ କଥିତ ସାହିତ୍ୟ ମଧ୍ୟ କୁହାଯାଏ। ଏହି ସାହିତ୍ୟର କୌଣସି ଲିପିବଦ୍ଧ ରୂପ ନଥାଏ। ଏ ଗୁଡିକ ମୁଖ ନିସୃତ। ସ୍ମୃତିକୁ ସମ୍ବଳକରି ଏହି ସାହିତ୍ୟ ବିକଶିତ ହୋଇଥାଏ। ଏହି ମୌଖିକ ଲୋକ ସାହିତ୍ୟର ଅନ୍ତର୍ଗତ ହେଲା- ଲୋକଗୀତ, ଲୋକ କଥା ବା ଲୋକ କାହାଣୀ, ଢଗଢମାଳୀ, ପ୍ରବାଦ, ପ୍ରବଚନ ଇତ୍ୟାଦି।

**ଅଭିଲେଖ ସାହିତ୍ୟ :** ସାଧାରଣତଃ ପ୍ରାଚୀନ କାଳରେ ରାଜା-ମହାରାଜାମାନେ ସେମାନଙ୍କର ଆଦେଶନାମା ବା ରାଜକୀୟ ନିର୍ଦ୍ଦେଶାବଳୀ ଓ ଶାସନ ସଂପର୍କୀତ ବିଭିନ୍ନ

ସୂଚନାକୁ ଜନସାଧାରଣଙ୍କର ଅବଗତି ନିମନ୍ତେ ଶିଳାଖଣ୍ଡ, ମନ୍ଦିର ଗାତ୍ର ଅବା ତାମ୍ର ଫଳକ ଆଦିରେ ଖୋଦିତ କରାଉ ଥିଲେ । ପୁଣି ଦାନପତ୍ର ବା ସନନ୍ଦ ଦେବା ଉଦ୍ଦେଶ୍ୟରେ ମଧ ତାମ୍ର ଶାସନମାନ ଉକାର୍ଣ୍ଣ କରାଉଥିଲେ । ଯାହାକୁ ଅଭିଲେଖ କୁହାଯାଉଥିଲା । ଅନେକ ଅଭିଲେଖରେ ରାଜାମାନେ ନିଜର ରାଜପ୍ରଶସ୍ତି ମଧ ଖୋଦିତ ବା ଲିପିବଦ୍ଧ କରାଉଥିଲେ । କ୍ରମେ ଏହି ଅଭିଲେଖ ଗୁଡିକ ଭାଷା ଓ ସାହିତ୍ୟର ଆଦିଉତ୍ସ ରୂପେ ପରିଗଣିତ ହୋଇଥିଲା ।ଖ୍ରୀ:ପୂ: ପ୍ରଥମ ଶତାବ୍ଦୀର ସମ୍ରାଟ ଖାରବେଳଙ୍କର ଶିଳାଲେଖ ଠାରୁ ଆରମ୍ଭକରି ପଞ୍ଚଦଶ ଶତାବ୍ଦୀର ପୁରୀ ଜଗନ୍ନାଥ ମନ୍ଦିର ଶିଳାଲେଖ ବା ଭୁବନେଶ୍ୱର ଲିଙ୍ଗରାଜ ମନ୍ଦିର ଅଭିଲେଖ ପର୍ଯ୍ୟନ୍ତ ମିଳୁଥିବା ଅଭିଲେଖ ଗୁଡିକ ଓଡିଆଁ ଭାଷା, ସାହିତ୍ୟ ଓ ସଂସ୍କୃତିର ଏକ ଏକ ଅମୂଲ୍ୟ ସୃଷ୍ଟି ସଂପଦ ।

ସମ୍ରାଟ ଖାରବେଳଙ୍କ ଶିଳାଲେଖରୁ ଓଡିଆଭାଷାର ଆଦି ସ୍ଫୁରଣର ସୂଚନା ମିଳେ । ଖାରବେଳଙ୍କର ଶିଳାଲେଖ ମଧ୍ୟଦେଶୀୟ ପ୍ରାକୃତ ବା କଳିଙ୍ଗୀ ପ୍ରାକୃତ ଭାଷାରେ ଖୋଦିତ ହୋଇଥିଲା । ଏହି ପ୍ରାକୃତ ଭାଷା ଭିତରେ ପ୍ରାଚୀନ ଲୋକକଥିତ ଓଡିଆଭାଷାର ସୂଚନା ମିଳେ । ସମ୍ରାଟ ଖାରବେଳଙ୍କ ପରବର୍ତ୍ତୀ ସମୟର ରାଜା-ମହାରାଜା ମାନେ ସଂସ୍କୃତ ଭାଷା ଉପରେ ଗୁରୁତ୍ୱ ଦେଇଥିବାରୁ ଅଧିକାଂଶ ଶିଳାଲେଖ ଓ ତାମ୍ରଲେଖ ସଂସ୍କୃତ ଭାଷାରେ ହିଁ ଖୋଦିତ ହୋଇଥିଲା । ଖ୍ରୀଷ୍ଟୀୟ ଷଷ୍ଠ-ସପ୍ତମ ଶତାବ୍ଦୀ ବେଳକୁ ଖୋଦିତ ଶିଳାଲେଖ ଓ ଅଭିଲେଖ ଗୁଡିକରେ ଓଡିଆ ଭାଷା ବ୍ୟବହୃତ ହୋଇଥିବାର ପ୍ରମାଣ ଆମେ ପାଉ । ଖ୍ରୀଷ୍ଟୀୟ ଷଷ୍ଠ-ସପ୍ତମ ଶତାବ୍ଦୀର 'ଗଣ୍ଡିବେଢା' ଶିଳାଲେଖରୁ ଓଡ଼ିଆ ଭାଷାର ସୂଚନା ମିଳେ । ଏଥିରେ ଲେଖାଯାଇଛି- "ଦେବକହୀ ଭଗତ କରୁ ଅଛନ୍ତି ଭୋ କୁମାର ସେଣ ।" ( ୧ ) ସେହିପରି ଶୈଳୋଦ୍ଭବ ବଂଶୀ ମହାରାଜା ଧର୍ମରାଜ ଦେବ ଦ୍ୱିତୀୟଙ୍କର ଅଭିଲେଖରୁ ମଧ ଓଡିଆ ଭାଷାର ସୂଚନା ମିଳେ । ଏଥିରେ ଲେଖାଅଛି- "ପଶ୍ଚିମ ଦଶହି ତ୍କୂଟ ଆଡପୋପାଦି ବଣରାଇ ବାଲ୍ମୀଙ୍କ ବଙ୍କସିଳ ବଣରାଇ ।" ( ୨ ) ସେହିପରି ଦଶମ-ଏକାଦଶ ଶତାବ୍ଦୀର ଦ୍ୱିତୀୟ ବଜ୍ରହସ୍ତ ଦେବଙ୍କର 'ଉରଜାମ୍ ଶିଳାଲେଖ' (ଆନୁମାନିକ-ଖ୍ରୀ.ଅ. ୧୦୫୧) ରେ ମଧ କେତେକ ଓଡିଆ ଶବ୍ଦର ସୂଚନା ମିଳେ । ଏହି ଶିଳାଲେଖଟିରେ ସଂସ୍କୃତ, ପ୍ରାକୃତ, ତାମିଲ, ତେଲ୍‌ଗୁ ଆଦି ଭାଷା ସହିତ ଓଡିଆ ଭାଷାର ବ୍ୟବହୃତ ହୋଇଅଛି । ଏହି ଶିଳାଲେଖଟି 'ନାଗରୀଲିପି' ରେ ଖୋଦିତ । ଏହି "ଉରଜାମ୍ ଶିଳାଲେଖକୁ ଗବେଷକ, ଡକଟର କୁଞ୍ଜବିହାରୀ ତ୍ରିପାଠୀ ଓଡିଆ ଭାଷାର ସର୍ବପ୍ରାଚୀନ

ଶିଳାଲେଖ ରୂପେ ଅଭିହିତ କରିଛନ୍ତି ।" (୩) ତ୍ରୟୋଦଶ ଶତାବ୍ଦୀର ଗଙ୍ଗବଂଶୀ ରାଜା ଦ୍ୱିତୀୟ ନରସିଂହ ଦେବଙ୍କର ଭୁବନେଶ୍ୱରରୁ ଆବିଷ୍କୃତ 'ଦ୍ୱୈ-ଭାଷିକ ଶିଳାଲେଖ' (ଆନୁମାନିକ ସମୟ- ଖ୍ରୀ.ଅ. ୧୨୪୯) ଉଭୟ ପ୍ରତ୍ନଓଡ଼ିଆ ଏବଂ ତାମିଲ ଭାଷାରେ ଖୋଦିତ ଏହି ଶିଳାଲେଖଟିର ଗୋଟିଏ ପାର୍ଶ୍ୱ ପ୍ରତ୍ନଓଡ଼ିଆ ଓ ଅପର ପାର୍ଶ୍ୱଟି ତାମିଲ୍ ଭାଷାରେ ଖୋଦିତ । ସେହିପରି ଚତୁର୍ଦ୍ଦଶ ଶତାବ୍ଦୀର କୋଣାର୍କ ସୂର୍ଯ୍ୟ ମନ୍ଦିର ଶିଳାଲେଖ, ପଞ୍ଚଦଶ ଶତାବ୍ଦୀର ପୁରୀ ଜଗନ୍ନାଥ ମନ୍ଦିର ଶିଳାଲେଖ ଓ ଭୁବନେଶ୍ୱର ଲିଙ୍ଗରାଜ ମନ୍ଦିର ଅଭିଲେଖ ପ୍ରଭୃତି ଓଡ଼ିଆ ଅଭିଲେଖ ପରଂପରାର ଏକ ଏକ ଅଭ୍ରାନ୍ତ ସ୍ମାରକୀ । ଏହିସବୁ ପ୍ରଚୀନ ଓ ପ୍ରାକ୍-ଅର୍ବାଚୀନ ଶିଳାଲେଖ / ଅଭିଲେଖ ଗୁଡ଼ିକର ସାହିତ୍ୟିକ ମୂଲ୍ୟବୋଧ ଯଥେଷ୍ଟ ନ' ଥିଲେବି, ସେଗୁଡ଼ିକ ଓଡିଆ ଲିପି, ଭାଷା, ସାହିତ୍ୟ ଓ ସଂସ୍କୃତିର ବିକାଶରେ ସହାୟକ ହେବା ସହିତ ଏକ ସୁଦୀର୍ଘ ରାଜନୈତିକ ପ୍ରେକ୍ଷାପଟ୍ଟ କୁ ପରିସ୍ଫୁଟ କରାଇ ପାରିଛି ।·

**ଲିଖିତ ସାହିତ୍ୟ :** ସମୟକ୍ରମେ ଲେଖନର ବିଭିନ୍ନ ସାଧନ ବାହାରିବା ସହିତ ମଣିଷ ତା'ର ସୃଷ୍ଟି ସଂପଦ ବା ରଚନାରାଜିକୁ ତାଳପତ୍ର, ଭୂର୍ଜପତ୍ର, ତାମ୍ରଫଳକ, ଅବା ଶିଳାଖଣ୍ଡ ଦେହରେ ଲିପିବଦ୍ଧ କଲା । ପରେ ମୁଦ୍ରଣ ଯନ୍ତ୍ରର ଆବିର୍ଭାବ ଫଳରେ ଆମେ ସେହି ପୋଥି, ପାଣ୍ଡୁଲିପି ଗୁଡ଼ିକୁ ମୁଦ୍ରିତ ପୁସ୍ତକ ରୂପରେ ପାଇଲୁ । ଯେଉଁ ଗୁଡ଼ିକୁ କି' 'ଲିଖିତ ସାହିତ୍ୟ' କୁହାଗଲା । ଓଡ଼ିଆ ଭାଷାର ପ୍ରଥମ ଲିଖିତ ସାହିତ୍ୟିକ ରୂପ ରୂପେ ଆମେ ବୌଦ୍ଧଗାନ ଦୋହା ବା ଚର୍ଯ୍ୟାଗୀତିକାକୁ ପାଉ । ଯାହାକି ଖ୍ରୀଷ୍ଟୀୟ ନବମ-ଦଶମ ଶତାବ୍ଦୀ ବେଳକୁ ରଚିତ ହୋଇଥିବାର ଜଣାଯାଏ । ବୌଦ୍ଧଧର୍ମର ସିଦ୍ଧାଚାର୍ଯ୍ୟ ମାନେ ବୌଦ୍ଧଧର୍ମ-ଦର୍ଶନ ସମ୍ବଳିତ କ୍ଷୁଦ୍ର କ୍ଷୁଦ୍ର ଗୀତିକା ବା ଦୋହା ମାନ ରଚନା କରିଥିଲେ । ଯାହାର ସାମଗ୍ରୀକ ରୂପ ହେଉଛି- ଏହି ବୌଦ୍ଧଗାନ ଦୋହା ।

ଓଡ଼ିଆ ସାହିତ୍ୟର ସୃଷ୍ଟି ଅଭିକ୍ରମ ରେ ଢେଙ୍କାନାଳ ମାଟିରେ ମଧ ସାହିତ୍ୟର ଉର୍ଜସ୍ୱଳ ଧାରା ପ୍ରବାହିତ ହୋଇଥିଲା । ଆଗରୁ କୁହାଯାଇଛି ଢେଙ୍କାନାଳ ସାହିତ୍ୟର ଧାରା ଅର୍ବାଚୀନ ନୁହେଁ । ବିଭିନ୍ନ ଲୋକ ସାହିତ୍ୟ, ଅଭିଲେଖ ଓ ପ୍ରାଚୀନ ପୋଥି, ପାଣ୍ଡୁଲିପି ଭିତରେ ସାହିତ୍ୟ ତା'ର ଅସ୍ତିତ୍ୱ ଜାହିର କରିଥିଲା । ବିଭିନ୍ନ ଲୋକଗୀତ, ଲୋକକଥା ବା ଲୋକ କାହାଣୀ, ଡଗଡମାଳୀ ଓ ବିଭିନ୍ନ ଲୋକନାଟକ ଭିତରେ ଢେଙ୍କାନାଳର ପ୍ରାଚୀନ ସାହିତ୍ୟ ବଞ୍ଚିରହିଥିଲା । ଘୁମୁରା ନାଚ-ଗୀତ, ଧୁଡୁକୀନାଚ-ଗୀତ, କେନ୍ଦରା ଗୀତ, ଚକୁଳିଆ

ପଣ୍ଡା ଗୀତ, ହଳିଆ ଗୀତ, ଶଗଡିଆ ଗୀତ, ନାଉରିଆ ଗୀତ, ରଜଦୋଳି ଗୀତ, କୁଆଁରପୁନେଇ ଗୀତ, ଚଢ଼େୟା ଗୀତ, କେଳା-କେଳୋଉଣୀ ଗୀତ, କାନ୍ଦଣା ଗୀତ, ବିଭିନ୍ନ ଓଷା ଗୀତ ଓ ନାନାବାୟା ଗୀତ ଭିତରେ ଢେଙ୍କାନାଳର ଲୋକ ଜୀବନ, ଲୋକ ଚରିତ୍ର ଓ ଲୋକ ସଂସ୍କୃତି ଫୁଟି ଉଠିଥିଲା । ସେହିପରି ପାଲା, ଦାସକାଠିଆ, ଦଣ୍ଡନାଟ, ବଣ୍ଡିନାଟ, କଣ୍ଢେଇନାଟ, ଘୋଡାନାଚ, ରାବଣଛାୟା, ସୁଆଙ୍ଗ, ରାସଲୀଳା, ରାମଲୀଳା, ଗୋପାଳଙ୍କ ଓଗାଳ, ଲଉଡି ଖେଳ, ପାଇକ ଖେଳ ମଧ୍ୟ ଦେଇ ଢେଙ୍କାନାଳର ଲୋକ ସଂସ୍କୃତି ଓ ଲୋକ ସାହିତ୍ୟ ସମୃଦ୍ଧିର ପଥରେ ଗତି କରିଥିଲା । ଏହା ସହିତ ବହୁ ପ୍ରାଚୀନ ଶିଳାଲେଖ, ତାମ୍ରଲେଖ ଆଦି ଭିତରେ ମଧ୍ୟ ଆମେ ଓଡିଆଭାଷା ଏବଂ ଢେଙ୍କାନାଳ ସାହିତ୍ୟର ରୂପ ପାଇଥାଉ । ଖ୍ରୀଷ୍ଟୀୟ ସପ୍ତମ-ଅଷ୍ଟମ ଶତାବ୍ଦୀର ଭୌମରାଣୀ ତ୍ରିଭୁବନ ମହାଦେବୀଙ୍କ ଏକ ତାମ୍ର ଫଳକ ଢେଙ୍କାନାଳର 'କୋନ୍ତମରା' ଗ୍ରାମରୁ ମିଳିଛି । ସେହିପରି ଦଶମ-ଏକାଦଶ ଶତାବ୍ଦୀର କୁଳୀକ ବଂଶୀୟ ରାଜା ବୀରପ୍ରଚଣ୍ଡଦେବଙ୍କର ଏକ ତାମ୍ର ଶାସନ ହିନ୍ଦୋଳ ଉପଖଣ୍ଡର 'ଚିଉଲ୍‌ପୁର' ଗ୍ରାମରୁ ମିଳିଅଛି । ରାଜା ବୀରପ୍ରଚଣ୍ଡଦେବ ଏହି ତାମ୍ର ଶାସନଟିରେ ନିଜକୁ 'ପରମ ମାହେଶ୍ୱର' ରୂପେ ସୂଚିତ କରିଛନ୍ତି । ଏହି ପରମମାହେଶ୍ୱର ଉପାଧିରୁ ସେ ଶୈବଧର୍ମାବଲମ୍ବୀ ଏବଂ ପରମ ଶିବ ଭକ୍ତ ଥିବାର ଜଣାଯାଏ । ଭୌମକର ରାଜା ଶୁଭାକରଦେବଙ୍କର ଏକ ତାମ୍ର ଶାସନ ମଧ୍ୟ ହିନ୍ଦୋଳ ଉପଖଣ୍ଡରୁ ମିଳିଅଛି । ଏତତ୍‌ଭିନ୍ନ ରାଜା ରଣସ୍ତମ୍ଭଙ୍କର ଢେଙ୍କାନାଳ ତାମ୍ର ଶାସନ ଓ ଲାଙ୍ଗୁଳା ନରସିଂହ ଦେବଙ୍କର କପିଳାସ ମନ୍ଦିର ଦଧିନଉତି ଶିଳାଲେଖମାନ ରହିଛି । ଲାଙ୍ଗୁଳା ନରସିଂହଦେବ ଖ୍ରୀ.ଅ. ୧୨୪୬ ବେଳକୁ କପିଳାସ ସ୍ଥିତ ଚନ୍ଦ୍ରଶେଖର ମନ୍ଦିର ନିର୍ମାଣ କରାଇ ସେହି ମନ୍ଦିରର ଦଧିନଉତି କଳସ ଉପରେ ଏକ ଅନୁଶାସନ ଖୋଦିତ କରାଇଥିଲେ । ଏହି ଦଧିନଉତି ଶିଳାଲେଖଟିରେ ଦଶଗୋଟି ପଙ୍‌କ୍ତି ପରିଲକ୍ଷିତ । ଏହା ଏକ ତ୍ରୈ-ଭାଷିକୀ ଶିଳାଲେଖ । ସଂସ୍କୃତ, ମାଗଧି ଅପଭ୍ରଂଶ ଓ ପ୍ରାଚୀନ ଓଡ଼ିଆ ଭାଷାରେ ଏହି ଶିଳାଲେଖଟି ଖୋଦିତ ହୋଇଛି । ଏହା ଆଧାତ୍ମିକ ଭାବ ସମ୍ବଳିତ ଏକ ରାଜକୀୟ ଘୋଷଣାନାମା ମାତ୍ର । ଏହିସବୁ ଶିଳାଲେଖ, ତାମ୍ରଲେଖ ଓ ଅନୁଶାସନ ଗୁଡିକ ଢେଙ୍କାନାଳର ପ୍ରାଚୀନ ଐତିହ୍ୟ, ସଂସ୍କୃତି, ସାହିତ୍ୟ ଏବଂ ଓଡ଼ିଆ ଭାଷାର ସମୃଦ୍ଧ ପରଂପରାର ଦୃଢ଼ ଦାବୀ ରଖେ । ଏହି ଅଭିଲେଖ ସାହିତ୍ୟ ଗୁଡ଼ିକ ବ୍ୟତୀତ ଅନେକ କବି, ଲେଖକ ମାନଙ୍କର ସାରସ୍ୱତ କୃତି ମଧ୍ୟ ଢେଙ୍କାନାଳର ସାରସ୍ୱତ ପରଂପରା କୁ ସମୃଦ୍ଧ,

ଋଦ୍ଧିମନ୍ତ ଓ ଉର୍ଜ୍ଜସଳ କରିଅଛି । ସହଜିଆ ବୌଦ୍ଧଧର୍ମ-ଦର୍ଶନର କତିପୟ ସିଦ୍ଧାଚାର୍ଯ୍ୟ, ନାଥଧର୍ମର ସିଦ୍ଧ-ସାଧକ ମହାଯୋଗୀ ଗୋରେଖନାଥ, ଶୈବଧର୍ମର ମହାନ୍ ଦାର୍ଶନିକ କବି ବସ୍ତ୍ରାଦାସ, ବୈଷ୍ଣବ ଟୀକାକାର ମହାନ ପଣ୍ଡିତ ଶ୍ରୀଧରସ୍ୱାମୀ, ଭକ୍ତକବି ଦୀନକୃଷ୍ଣ ଦାସ ପ୍ରମୁଖ ପ୍ରଥିତଯଶା ସାଧକମାନେ ଏଇ ପବିତ୍ର ବୀରମାଟିରେ ପାଦଦେଇ, ଅଧିଷ୍ଠାନକରି ଏ ମାଟିରେ ଓଡ଼ିଆ ସାହିତ୍ୟର ବୀଜବପନ କରିବା ସହିତ ଢେଙ୍କାନାଳର ସାରସ୍ୱତ ପରଂପରାକୁ ଉଜ୍ଜୀବିତ କରି ରଖିପାରିଥିଲେ । ଖ୍ରୀଷ୍ଟୀୟ ନବମ-ଦଶମ ଶତାବ୍ଦୀ ବେଳକୁ ଢେଙ୍କାନାଳ ମାଟିରେ ସହଜିଆ ବୌଦ୍ଧଧର୍ମର ପ୍ଳାବନ ଘଟିଥିଲା । କତିପୟ ବୌଦ୍ଧ ସିଦ୍ଧାଚାର୍ଯ୍ୟ ଏଇ ଢେଙ୍କାନାଳ ମାଟିରେ କେତେକ ଦୋହା ବା ଗୀତିକା ରଚନା କରିଥିବାର ଅନୁମିତ ହୁଏ । ଯେଉଁ ଗୁଡିକୁକି ଢେଙ୍କାନାଳ ସାହିତ୍ୟର ଆଦିସାହିତ୍ୟ ରୂପେ ବିବେଚନା କରାଯାଇପାରେ । ଖ୍ରୀଷ୍ଟୀୟ ଏକାଦଶ-ଦ୍ୱାଦଶ ଶତାବ୍ଦୀ ବେଳକୁ ଏ ମାଟିରେ ନାଥଧର୍ମ-ଦର୍ଶନର ମହାପ୍ଳାବନ ମଧ୍ୟ ଘଟିଥିଲା । ଏହି ସମୟବେଳକୁ ଭାରତୀୟ ଆଧ୍ୟାତ୍ମିକ ଦିଗ୍‌ବଳୟ ସହଜିଆ ବୌଦ୍ଧଧର୍ମର ଯୌନ ବ୍ୟଭିଚାର ଓ ଉଚ୍ଛୃଙ୍ଖଳ ଯୌନଚର୍ଯ୍ୟାରେ ଭାରାକ୍ରାନ୍ତ ହୋଇ ସମାଜ ଓ ଧର୍ମୀୟ ଜୀବନକୁ କଳୁଷିତ, ପର୍ଯ୍ୟୁଷିତ କରି ପକାଇଥିଲା । ତତ୍କାଳୀନ ସମାଜ ଓ ଧର୍ମୀୟ ଜୀବନକୁ ସୁ-ସଂହତ, ମାର୍ଜିତ, ଶୁଦ୍ଧ-ପୂତ କରିବାର ଲକ୍ଷ୍ୟ ନେଇ 'ନାଥଧର୍ମ' ନାମରେ ଏକ ନୂତନ ଧର୍ମର ଅଭ୍ୟୁଦୟ ଘଟିଥିଲା । ଏହି ଧର୍ମର ମହାଯୋଗୀ, ସିଦ୍ଧ-ସାଧକମାନେ ସମାଜ ଜୀବନକୁ ସଂଯମ, ସନ୍ନ୍ୟାସ, ଯୋଗାଭ୍ୟାସ, ଭଗବତ୍ ସାନ୍ନିଧ ଓ ନିର୍ବାଣ ବା ମୁକ୍ତିର ମାର୍ଗ ଦେଖାଇଥିଲେ । ଏହି ଧର୍ମର ମହାନ ସିଦ୍ଧ-ସାଧକ, ଦାର୍ଶନିକ, ମହାଯୋଗୀ, ମହାକବି ଗୋରେଖନାଥ (ଗୋରକ୍ଷନାଥ) ଙ୍କର ଏଇ ଢେଙ୍କାନାଳ ଭୂମିରେ ଆବିର୍ଭାବ ଘଟିଥିଲା ।

**ମହାଯୋଗୀ ଗୋରେଖନାଥ (ଏକାଦଶ-ଦ୍ୱାଦଶ ଶତାବ୍ଦୀ) :**

ଗୋରେଖନାଥଙ୍କର ଜନ୍ମସ୍ଥାନ ସଂପର୍କରେ ଅଦ୍ୟାବଧି କୌଣସି ଐତିହାସିକ ତଥ୍ୟ ମିଳିପାରି ନାହିଁ । ତାଙ୍କର ଜନ୍ମ ଉତ୍ତର ଭାରତ, ପୂର୍ବ ଭାରତ କିମ୍ବା ଓଡିଶାର କୌଣସି ଅଞ୍ଚଳରେ ତାହା ସଠିକରୂପେ ନିର୍ଣ୍ଣୀତ ହୋଇପାରିନାହିଁ । ମାତ୍ର- ଗୋରେଖନାଥ ଢେଙ୍କାନାଳରେ ବହୁକାଳଧରି ଅବସ୍ଥାନ କରିଥିବାର ପ୍ରମାଣିକ ତଥ୍ୟ ମିଳେ । ସମ୍ଭବତଃ ଏକାଦଶ-ଦ୍ୱାଦଶ ଶତାବ୍ଦୀ ବେଳକୁ ଗୋରେଖନାଥ ଢେଙ୍କାନାଳ ଜିଲ୍ଲାର ପ୍ରଚୀନ ବିଲଙ୍କାଗଡ଼ ତଥା ପ୍ରସିଦ୍ଧ ଶୈବପୀଠ କପିଳାସଠାରେ ଦୀର୍ଘ କାଳଧରି ଅବସ୍ଥାନ

କରିଥିଲେ । ଏଠାରେ ସେ ନାଥଧର୍ମର ଅନ୍ୟତମ ମହାନ୍ ସାଧକ ସିଦ୍ଧଯୋଗୀ ମତ୍ସ୍ୟେନ୍ଦ୍ରନାଥଙ୍କର ସାନ୍ନିଧ ଲାଭକରିବାର ସୁଯୋଗ ଲାଭ କରିଥିଲେ । ମତ୍ସ୍ୟେନ୍ଦ୍ରନାଥଙ୍କର ସଂସ୍ପର୍ଶରେ ଆସିବାଯୋଗୁଁ ଗୋରେଖନାଥଙ୍କର ବ୍ୟକ୍ତିତ୍ୱ ଓ କବିତ୍ୱ ପ୍ରତିଭା ଆହୁରି ବିକଶିତ ହୋଇଥିଲା । ସେ ନାଥଧର୍ମର ପ୍ରଚାର ଓ ପରିପ୍ରସାର ପାଇଁ ନାଥଧର୍ମ-ଦର୍ଶନର ବିଭିନ୍ନ ଦାର୍ଶନିକ ତତ୍ତ୍ୱ ଓ ସାଧନମାର୍ଗକୁ ନେଇ ଅନେକ ଗୁଡିଏ ଯୋଗଗ୍ରନ୍ଥ ରଚନା କରିଥିଲେ । ବାସ୍ତବରେ ଦେଖିବାକୁ ଗଲେ ପୂର୍ବ ଭାରତୀୟ ଏବଂ ଉତ୍ତର ଭାରତୀୟ ନାଥ ସାହିତ୍ୟ ତୁଳନାରେ ଓଡିଶାର ନାଥ ସାହିତ୍ୟ କୌଣସି ଗୁଣରେ ନ୍ୟୁନ ନୁହେଁ । ଏପରିକି ପରିମାଣାତ୍ମକ ଦୃଷ୍ଟି କୋଣରୁ ମଧ ଓଡ଼ିଶାର ନାଥ ସାହିତ୍ୟ ସୁ-ବିପୁଳ । ନାଥ ସାହିତ୍ୟର ପ୍ରସିଦ୍ଧ ଲୋକପ୍ରିୟ ଗ୍ରନ୍ଥ ଯଶୋବନ୍ତ ଦାସଙ୍କର 'ଟୀକାଗୋବିନ୍ଦଚନ୍ଦ୍ର' ର ରଚନା ଏଇ ଉତ୍କଳଭୂମିରେ । ଢେଙ୍କାନାଳ ଜିଲ୍ଲାର ଅଧିକାଂଶ ସ୍ଥାନରେ ନାଥଧର୍ମାବଲମ୍ବୀ ନାଥ ସଂପ୍ରଦାୟର ନାଥଯୋଗୀମାନେ ବସବାସ କରୁଛନ୍ତି । ଢେଙ୍କାନାଳ ଯେ-ନାଥଧର୍ମ ଦର୍ଶନର ଏକ ପ୍ରଚୀନ କ୍ଷେତ୍ର ତାହା ଅସ୍ୱୀକାର କରାଯାଇନପାରେ । ନାଥଧର୍ମର ଅନେକ କୃତି ଓଡିଶାରୁ ମିଳେ । ଏହି ସବୁ କାରଣରୁ ଗୋରେଖନାଥ ଯେ, ଉତ୍କଳଭୂମିର ଜଣେ ସୁ ଯୋଗ୍ୟ ସନ୍ତାନ ବୋଲି ବଳିଷ୍ଠ ଯୁକ୍ତି ଉପସ୍ଥାପିତ କରାଯାଇପାରେ । ଗୋରେଖନାଥ ଢେଙ୍କାନାଳ ମାଟିରେ ଦୀର୍ଘକାଳ ଅବସ୍ଥାନକରି, ଏ ମାଟିର ଧର୍ମ, ସଂସ୍କୃତି ଓ ସାହିତ୍ୟକୁ ଯେ, ସମୃଦ୍ଧ, ଋଦ୍ଧିମନ୍ତ ଓ ପ୍ରାଣବନ୍ତ କରିଛନ୍ତି, ଏହାକୁ ଅସ୍ୱୀକାର କରାଯାଇନପାରେ । ଯେଉଁଥିପାଇଁ ସାହିତ୍ୟ ଆଲୋଚକ, ଗବେଷକ ଓ ଐତିହାସିକ ମାନେ ଗୋରେଖନାଥଙ୍କୁ ଢେଙ୍କାନାଳ ମାଟିର ଜଣେ ସିଦ୍ଧ-ସାଧକ, ମହାନ୍ ଯୋଗୀ ଓ ସାହିତ୍ୟିକ ରୂପେ ସମ୍ମାନ ଓ ସ୍ୱୀକୃତି ଦେବାର ସାଧୁପ୍ରୟାସ ଜାରିରଖିଛନ୍ତି ।

**ରଚନାବଳୀ :** ଗୋରେଖନାଥଙ୍କ ରଚନା ଗୁଡିକ ମୁଖ୍ୟତଃ ଅପଭ୍ରଂଶଭାଷା, ହିନ୍ଦୀ ଭାଷା ଏବଂ ପ୍ରାଚୀନ ଓଡିଆ ଭାଷାରେ ରଚିତ । ତାଙ୍କ ରଚିତ- ଗ୍ରନ୍ଥ ଗୁଡିକ ହେଲା - ସୀସୁବେଦ, ଗୋରେଖ ସଂହିତା, ଅମରକୋଷ ଗୀତା, ସପତାଙ୍ଗ ବା ସପ୍ତାଙ୍ଗ ଯୋଗ ସାଧନ, ଅଷ୍ଟାଙ୍ଗ ଯୋଗ ଧାରଣ, ଅମର ପଟ୍ଟଳ, ଗୋରେଖ ବାଣୀ ପ୍ରଭୃତି । ଏହା ସହିତ ତାଙ୍କର ଅନେକ ଭଜନ ମଧ ରହିଛି ।

**ସିସୁବେଦ :** ଏହା ନାଥଧର୍ମ -ଦର୍ଶନ ସମ୍ବଳିତ ଏକ ପ୍ରଚୀନ ରଚନା । ଏହାର ଭାଷା ଶୈଳୀ ଉଭୟ ଗଦ୍ୟ ଓ ପଦ୍ୟ ମିଶ୍ରିତ । ଏହାର ଭାଷା ଅପଭ୍ରଂଶ ମିଶ୍ରିତ ପ୍ରାଚୀନ

ଓଡିଆଭାଷା । ନାଥ ସଂପ୍ରଦାୟର ଆଧାତ୍ମିକ ତତ୍ତ୍ୱ ଓ ସାଧନା ମାର୍ଗ ଏଥିରେ ପ୍ରକଟିତ ହୋଇଛି । ଏହି ଗ୍ରନ୍ଥରେ ନାଥ ସାଧନ ମାର୍ଗର ଦୁଇଟି ଧାରା ଯଥା- ଷଡ୍‌ଚକ୍ର ସାଧନା ଓ ଓଲଟ ସାଧନାର କଥା କୁହାଯାଇଛି । ଯୋଗ ତତ୍ତ୍ୱର ନିଗୂଢ ସାଧନ ମାର୍ଗ ସଂପର୍କରେ ଗୋରେଖନାଥ ଏହି ସୀସ୍‌ବେଦରେ ସୂଚନା ପ୍ରଦାନ କରିଛନ୍ତି । ଗୋରେଖନାଥଙ୍କ ଭାଷାରେ-

ଆହୁଟ (ଆଉଠ) ହାତ କଲେ କର ଭିତର
କାହିଁ ଥାଇଂ ଜୀବ ଦେଉଛି ଉତ୍ତର ।
ତଦପାନ୍ତ ଯଦି ଜପାଜପ ନାହିଁ
ମଲେ ପ୍ରାଣପୁଣି କାହିଁ ସମ୍ଭାଇ ।

ଗୋରେଖନାଥ ଷଡ୍‌ଚକ୍ର ସାଧନା ମାଧ୍ୟମରେ କୁଣ୍ଡଳନୀ ଶକ୍ତି (ସର୍ପ) କୁ ଜାଗ୍ରତକରି ସୁଷୁମ୍ନା ମାର୍ଗଦେଇ ଷଡଚକ୍ର ଭେଦକଲେ, ସହସ୍ରାର ଚକ୍ରରେ ନିରଞ୍ଜନ ସହ ମିଳିତ ହୋଇ କିପରି ମହାସୁଖ ଲାଭ କରି ହେବ, ସେ ସଂପର୍କରେ ବର୍ଣ୍ଣନା କରିଛନ୍ତି ।

'ସୀସୁବେଦ' ରେ କୁହାଯାଇଛି-
"ପବନ ପାଲଟିବେ ଛତ ଚକ୍ର ଫୁଟିବେ
ସତରହିବେ, ଶୁଖିଯିବେ ପାଣି
ଚନ୍ଦ୍ର, ସୂର୍ଯ୍ୟ ଯେଉଁ ଯୋଗୀ ଗଣ୍ଠି ପାଡି ପାରଇ
ସେ ଯୋଗୀ ଅତି ଗରୁହ ବିନ୍ଧାଣୀ ।"

'ସୀସୁବେଦ' ରେ ସହଜ ସମାଧିଯୋଗର ମଧ୍ୟ ସୁନ୍ଦର, ସରଳ ବର୍ଣ୍ଣନା ରହିଛି । କବିଙ୍କ ଭାଷାରେ-

"ବଗ ଯେସେ ମନ
ମାଛ ଯେସେ ପବନ
ନୀର ଯେସେ ବିନ୍ଦୁଟି
ମନ-ପବନକୁ ଲୟକଲେ
ବଗ, ମାଛ ଯେ ଅଚଳ ହୁଅଇ ଟି
ଏହାକୁ ସହଜ ସମାଧି କହିଂ ।"

ବାସ୍ତବରେ ପଚିଶଟି ଶ୍ଳୋକ ବିଶିଷ୍ଟ ଏହି କ୍ଷୁଦ୍ର ରଚନାଟି ନାଥ ଧର୍ମ-ଦର୍ଶନର ଏକ ମହାନ୍ ଗ୍ରନ୍ଥ ।

**ଗୋରେଖ ସଂହିତା :** ଗୋରେଖନାଥ କପିଳାସ ପୀଠରେ ଅବସ୍ଥାନ କାଳରେ ଏହି ଗ୍ରନ୍ଥ ରଚନା କରିଥିବାର ଜଣାଯାଏ.। ଏହା ନାଥ ଧର୍ମର ଏକ ମହାନ୍ ଯୋଗତତ୍ତ୍ୱ ଗ୍ରନ୍ଥ। ଏହି 'ଗୋରଖ ସଂହିତା' କୁ 'ଗୋରଖ ଗୀତା' ନାମ ଦେଇ ସମାଲୋଚକ ଡକ୍ଟର ବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟ - "ଏହା ଚନ୍ଦ୍ରଶେଖର ନାଥଙ୍କ ଦ୍ୱାରା ରଚିତ ବୋଲି କହିଛନ୍ତି ।" (୪) ଶ୍ରୀଯୁକ୍ତ ଆଚାର୍ଯ୍ୟଙ୍କର ଏହି ମତ ସମୀଚୀନ ମନେ ହୁଏ ନାହିଁ । ଚନ୍ଦ୍ରଶେଖର ନାଥ 'ଗୋରେଖ ସଂହିତା' ର ଶ୍ଳୋକ ଗୁଡ଼ିକୁ ଓଡ଼ିଆ ଭାଷାରେ ଅନୁବାଦ କରି ଗୋରେଖଗୀତା ନାମରେ ଉପସ୍ଥାପିତ କରିଥାଇ ପାରନ୍ତି । ଗୋରେଖନାଥଙ୍କ 'ଗୋରେଖସଂହିତା' ରେ ବହୁ ଆଲୌକିକ କଥାବସ୍ତୁର ଅବତାରଣା କରାଯାଇଛି । ନାଥ ଧର୍ମ-ଦର୍ଶନ ପ୍ରତି ଲୋକମାନଙ୍କୁ ଆକୃଷ୍ଟ କରାଇବା ଉଦ୍ଦେଶ୍ୟରେ ଏହି ସବୁ ଆଲୌକିକ କଥା ବସ୍ତୁର ଉପସ୍ଥାପନା କରାଯାଇ ଥାଇପାରେ । ଏହା ସହିତ ନାଥ ଧର୍ମର ଯୋଗତତ୍ତ୍ୱ ଓ ଯୋଗୀମାନଙ୍କର କୁଚ୍ଛ୍ର ସାଧନା ଏଥିରେ ବର୍ଣ୍ଣିତ ହୋଇଛି । ଏହି ଗ୍ରନ୍ଥର ଆରମ୍ଭରେ ନୀଳାଦ୍ରୀ ବିହାରୀ ନିରଞ୍ଜନ ପୁରୁଷଙ୍କୁ ବନ୍ଦନା କରାଯାଇ ହାଡ଼ିପା ଓ ଗୋବିନ୍ଦଚନ୍ଦ୍ର ଙ୍କ କଥୋପକଥନ ଛଳରେ ବିଷୟ ବସ୍ତୁର ଆରମ୍ଭ ହୋଇଛି। ପ୍ରସଙ୍ଗକ୍ରମେ ଏଥିରେ ଷଡଚକ୍ର ସାଧନା, ଅଷ୍ଟାଙ୍ଗ ଯୋଗ, ଆସନ, ମୁଦ୍ରା, ପ୍ରାଣାୟାମ୍, ଅଜପାଜପ ପ୍ରଭୃତି ବିଷୟରେ ବର୍ଣ୍ଣନା କରାଯାଇଛି । ଏଥିରେ ଯୋଗତତ୍ତ୍ୱର ନିଗୂଢ଼ ଷଡଚକ୍ର ସାଧନାର୍ ବର୍ଣ୍ଣନା କରି କୁହାଯାଇଛି-

"କେବଣ ପରଚେ ହେଲେ ବନ୍ଦୀ ଦିଢ଼ ହୋଇ
କେବଣ ହିଂ ଚକ୍ରେ ଦେବଚନ୍ଦ୍ର ଯେ ରହଇଂ ।
କେଉଂ ଚକ୍ରଠାରେ ସେ ପବନ ଅବିରୋଧ
କେବଣ ହିଂ ଚକ୍ର ଯେ ମନକୁ ସେ ପ୍ରବୋଧେ ।
ଚକ୍ର ସେ କେବଣ ଠାରେ ଧରଇଂ ଧ୍ୟାନ
କେବଣ ହିଂ ଚକ୍ରଠାରେ ବିଶ୍ରାମଇଂ ମନ ।"

ବାସ୍ତବରେ ଏହି ଗ୍ରନ୍ଥଟି ଏକ କାଳଜୟୀ ଯୋଗଗ୍ରନ୍ଥ ।

**ସପତାଙ୍ଗ ବା ସପ୍ତାଙ୍ଗ ଯୋଗଧାରଣ :** ଏହା ପଦ୍ୟାତ୍ମକ ଶୈଳୀରେ ରଚିତ ଏକ ଗଦ୍ୟ ରଚନା । ଗୋରେଖନାଥ ଏବଂ ତାଙ୍କ ଶିଷ୍ୟ ମଲ୍ଲିକାନାଥଙ୍କ କଥୋପକଥନ ମାଧ୍ୟମରେ ନାଥଧର୍ମ-ଦର୍ଶନର ନିଗୂଢ଼ ଯୋଗତତ୍ତ୍ୱ ଏଥିରେ ବର୍ଣ୍ଣିତ ହୋଇଛି । ଆରମ୍ଭରେ ଶିଷ୍ୟ

ମଲ୍ଲିକନାଥ ଗୁରୁଙ୍କୁ ପ୍ରଶ୍ନ କରିଛନ୍ତି -

"ଅଲେଖ ନିରଞ୍ଜନଙ୍କୁ ଚିହ୍ନିବି କେମନ୍ତ
ଏ ଦେହ ଘେନିଣ ସ୍ୱାମୀ ରହିବି ଯେମନ୍ତ ।
ୟେତେ ବୋଲି ମଲ୍ଲିକାନାଥ ଗୁରୁପାଦ ଧରି
ଘଟ ଯୋଗ ସ୍ୱାମୀ ମୋତେ କହିବା ବିସ୍ତାରି ।"

ଏଥିରୁ ସ୍ପଷ୍ଟ ଜଣାଯାଏ ଯେ - ଏ ଗ୍ରନ୍ଥରେ ନାଥଧର୍ମ-ଦର୍ଶନର ଘଟଯୋଗ ବା ହଠଯୋଗର ତାତ୍ତ୍ୱିକ ବର୍ଣ୍ଣନା କରାଯାଇଛି । ଗଭୀର ଆଧାତ୍ମିକ ଭାବନା ଓ ହଠଯୋଗର ନିଗୂଢ଼ ତତ୍ତ୍ୱ କୁ ଏଥିରେ ଅତି ସରଳ, ସାବଲୀଳ ଓ ମନୋଜ୍ଞ ଭାବରେ ବ୍ୟାଖ୍ୟା କରାଯାଇଛି ।

**ଅମରକୋଷଗୀତା :** ଏହି 'ଅମରକୋଷଗୀତା' ର ରଚୟିତାଙ୍କ ସଂପର୍କରେ କୌଣସି ସଠିକ ସୂଚନା ନ' ମିଳିଲେ ହେଁ, ଏହା ଯେ- ଗୋରଖନାଥଙ୍କର ରଚନା ତାହା ନିଃସନ୍ଦେହରେ କୁହାଯାଇପାରେ । ଏହି ରଚନାଟି 'ସପ୍ତାଙ୍ଗ ଯୋଗ' ପରି ସମ୍ବାଦ ଶୈଳୀରେ ରଚିତ । ଏହି ଗ୍ରନ୍ଥର ଆରମ୍ଭରେ ଗୁରୁ ବନ୍ଦନା କରାଯାଇଛି । ଏହିପରିପ୍ରେକ୍ଷାରେ ସାବରୀ ନାଥ, ଜକ୍ଷତୀ ନାଥ, ମୀନ ନାଥ, ଜାଳନ୍ଧରୀ ନାଥ ପ୍ରଭୃତି ସିଦ୍ଧ ନାଥଙ୍କର ନାମୋଲ୍ଲେଖ ରହିଛି । ଗୁରୁ ବନ୍ଦନା ପରେ ପିଣ୍ଡ-ବ୍ରହ୍ମାଣ୍ଡ ତତ୍ତ୍ୱ, ଯୋଗସାଧନ ଓ ଜ୍ଞାନମାର୍ଗ ସଂପର୍କରେ ବିସ୍ତୃତ ଆଲୋଚନା କରା ଯାଇଛି ।

**ଅମର ପଟଳ:** ଏହା ଏକ ସଂକ୍ଷିପ୍ତ ରଚନା । "ଏହି ଗ୍ରନ୍ଥ ସଂପର୍କରେ ଗବେଷକ, ଡକ୍ଟର ପଠାଣି ପଟ୍ଟନାୟକ ପ୍ରଥମେ ସୂଚନା ପ୍ରଦାନ କରିଛନ୍ତି ।" (୫) ଏହା ମଧ୍ୟ ନାଥ-ଧର୍ମ-ଦର୍ଶନ ସମ୍ବଳିତ ଏକ ମନୋଜ୍ଞ ଗ୍ରନ୍ଥ ।

**ଅଷ୍ଟାଙ୍ଗ ଯୋଗ ଧାରଣ :** ଏହା ମଧ୍ୟ ନାଥଧର୍ମର ଏକ ତାତ୍ତ୍ୱିକ ଗ୍ରନ୍ଥ । ଅଷ୍ଟାଙ୍ଗ ଯୋଗ ସାଧନା ସଂପର୍କରେ ଏଥିରୁ ବହୁ ତତ୍ତ୍ୱପୂର୍ଣ୍ଣ ବ୍ୟାଖ୍ୟା କରାଯାଇଛି ।

**ଗୋରେଖବାଣୀ :** ଏହା ଗୋରେଖନାଥଙ୍କର ଏକ ହିନ୍ଦୀ ରଚନା । ଏଥିରେ ନାଥଧର୍ମର ବିଭିନ୍ନ ନିଗୂଢ଼ ତତ୍ତ୍ୱ ଓ ବାଣୀ ରହିଛି । ଷଡ଼ଚକ୍ର ସାଧନା ସଂପର୍କରେ ଏହି ଗ୍ରନ୍ଥରେ ବହୁ ତାତ୍ତ୍ୱିକ ବର୍ଣ୍ଣନା ରହିଛି । କବି ଲେଖିଛନ୍ତି -

"ଉଲଟିୟା ପବନ ଷଟଚକ୍ର ବେଧିବ ।
ତାତୈ ଲୋହେ ସୋକ୍ଷିୟା ପାଣୀଂ
ଚନ୍ଦ ସୂର ଦୋଉ ନିଜ ଘରି ରାଖ୍ୟା
ଐସା ଅଲଗା ବିନାଂଶୀ ।"

ପୁନଶ୍ଚ କବି ଲେଖିଛନ୍ତି -

ଯୋ ଷଟଚକ୍ରକା ଜାଣୈ ଭେଦ
ସୋ ଆପେ କରତା ଆପେ ଦେବ ।

ଏହି ସବୁ ରଚନା ଗୁଡ଼ିକ ବ୍ୟତୀତ ଗୋରେଖନାଥଙ୍କ ନାମରେ ଭଣିତା ଅନେକ ଭଜନ ପରିଲକ୍ଷିତ ହୁଏ । ଏହି ଭଜନ ଗୁଡ଼ିକରେ ନାଥ ଧର୍ମ ଦର୍ଶନର ବିଗୂଢ଼ ତତ୍ତ୍ୱ ଓ ସାଧନ ମାର୍ଗ ମଧ୍ୟ ବର୍ଣ୍ଣିତ । କବି ତାଙ୍କର ଏକ ଭଜନରେ ଲେଖିଛନ୍ତି -

"ଜ୍ଞାନୀ ହୋ ! କହ ବିଷମ ସନ୍ଧି
କେଉଂ କମଳରେ ଭ୍ରମର ବନ୍ଦୀ ।
କାଳିନ୍ଦୀ ହ୍ରଦରେ ପାରୁଆଂ ବସା
କାହିଂ ସିଂହକୁ ଗିଳୁଅଛି ଶଶା ।
ହସ୍ତୀ-ମଣ୍ଡୁକୀ କେଉଁଠାରେ ଯୁଦ୍ଧ
କମଳେ ଫୁଟିଛି ଯେ କୋକନଦ ।
ଶୂନ୍ୟ ମଣ୍ଡପେ କାହିଂ ବାଜେ ବୀଣା
କେଉଁଠାରେ ଅଛି ଗୋପ ପାଟଣା ।
କହର ଗୋରେଖ ଶୁଣଇ ବାଇ
ସଦ୍‌ଗୁରୁ ସେବାକଲେ ତା' ପାଇ ।" (୬)

ଏହି ଭଜନଟିରେ ଭାବ ପ୍ରକାଶ ଓ ଭାଷା ବେଶ୍ ସ୍ୱଚ୍ଛ, ସ୍ପଷ୍ଟ ଓ ବିକଶିତ ମନେହୁଏ ।

**ବସ୍ତ୍ରାଦାସ (ଅନୁମାନିକ ଚତୁର୍ଦ୍ଦଶ ଶତାବ୍ଦୀ):**

କବି ବସ୍ତ୍ରାଦାସଙ୍କ ଆବିର୍ଭାବ ବା ତାଙ୍କର ପରିଚୟ ସଂପର୍କରେ କୌଣସି ନିର୍ଭରଯୋଗ୍ୟ ପ୍ରାମାଣିକ ଐତିହାସିକ ତଥ୍ୟ ଏଯାବତ୍ ମିଳି ପାରିନାହିଁ । କେବଳ ଆନୁମାନିକ ଭାବରେ ତାଙ୍କର ଆବିର୍ଭାବ ସମୟକୁ ଚତୁର୍ଦ୍ଦଶ ଶତାବ୍ଦୀରୂପେ ଗ୍ରହଣ କରାଯାଇପାରେ । ଅର୍ଥାତ୍ ବସ୍ତ୍ରାଦାସ ସାରଳାଦାସ ଙ୍କ ପୂର୍ବବର୍ତ୍ତୀ ସ୍ରଷ୍ଟା । ବସ୍ତ୍ରାଦାସ ଢେଙ୍କାନାଳର ପ୍ରସିଦ୍ଧ ଶୈବପୀଠ କପିଳାସ ଠାରେ ଦୀର୍ଘକାଳଧରି ଅବସ୍ଥାନ କରିଥିବାର ଜଣାଯାଏ । ସେ ଶୈବଧର୍ମାବଲମ୍ବୀ ଏବଂ କପିଳାସ ପୀଠର ଅଧୀଶ୍ୱର ଶ୍ରୀ ଶ୍ରୀ ଚନ୍ଦ୍ରଶେଖର ମହାପ୍ରଭୁଙ୍କର ଜଣେ ପରମ ଭକ୍ତ ଥିଲେ । ବସ୍ତ୍ରାଦାସ ତାଙ୍କର 'କଳସା ଚଉତିଶା' ରେ ଲେଖିଛନ୍ତି -

"କ୍ଷିତି ପତି ଠାକୁର ଯେ କପିଳାସେ ସ୍ଥିତି
କ୍ଷୁଦ୍ରବୁଦ୍ଧି ବସ୍ତ୍ରାଦାସ କଳସା ପଢନ୍ତି ।"

ଏଥିରୁ ଜଣାଯାଏ- କପିଳାସ ପୀଠର ଅଧୀଶ୍ୱର ଶ୍ରୀ ଶ୍ରୀ ଚନ୍ଦ୍ରଶେଖର ଶିବ ହିଁ ତାଙ୍କର ପରମ ଆରାଧ୍ୟ ଦେବତା ଥିଲେ । 'କଳସା ଚଉତିଶା' ର ରଚନା ସମୟ ସଂପର୍କରେ ଗବେଷକ ମାନେ ଭିନ୍ନ ଭିନ୍ନ ମତ ପୋଷଣ କରିଛନ୍ତି । କେହି କେହି କଳସା ଚଉତିଶା କୁ ସାରଳାଙ୍କ ପୂର୍ବବର୍ତ୍ତୀ ରଚନାରୂପେ ଓ କେହି କେହି ସାରଳାଙ୍କ ସମକାଳୀନ ଅବା ପରବର୍ତ୍ତୀ ରଚନା ରୂପେ ଗ୍ରହଣ କରିଛନ୍ତି । "ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତି 'କଳସା ଚଉତିଶା' କୁ ସାରଳାଙ୍କ ପୂର୍ବବର୍ତ୍ତୀ ଅର୍ଥାତ୍ ଚତୁର୍ଦ୍ଦଶ ଶତାବ୍ଦୀର ରଚନା ବୋଲି ତାଙ୍କ 'ପ୍ରାଚୀନ ଗଦ୍ୟପଦ୍ୟାଦର୍ଶ' ଗ୍ରନ୍ଥରେ ସୂଚିତ କରିଛନ୍ତି ।"(୭) ଡକ୍ଟର କୁଞ୍ଜବିହାରୀ ତ୍ରିପାଠୀ, ଡକ୍ଟର ନଟବର ସାମନ୍ତରାୟ, ସୁରେନ୍ଦ୍ର ମହାନ୍ତି ପ୍ରମୁଖ ଗବେଷକ ମାନେ ବତ୍ସାଦାସଙ୍କୁ ସାରଳାଦାସ ଙ୍କ ସମକାଳୀନ ବା ପୂର୍ବବର୍ତ୍ତୀ ସ୍ରଷ୍ଟା ଭାବରେ ଗ୍ରହଣ କରିଛନ୍ତି । ମାତ୍ର- ପ୍ରକୃତରେ ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ମତ ଅଧିକ ସମୀଚୀନ ମନେହୁଏ । ତେଣୁ ଆମେ ବତ୍ସାଦାସଙ୍କୁ ସାରଳାଙ୍କ ପୂର୍ବବର୍ତ୍ତୀ ଅଥବା ଚତୁର୍ଦ୍ଦଶ ଶତାବ୍ଦୀର ସ୍ରଷ୍ଟା ରୂପେ ଗ୍ରହଣ କରିପାରିବା । 'ସାରଳାମହାଭାରତ' ଗ୍ରନ୍ଥରେ 'କଳସା' ଶବ୍ଦ ଏବଂ କଳସା ଶ୍ଳୋକ ସଂପର୍କରେ ଉଲ୍ଲେଖ ରହିଥିବାରୁ ବତ୍ସା ଦାସଙ୍କୁ ସାରଳାଙ୍କ ପୂର୍ବବର୍ତ୍ତୀ ସ୍ରଷ୍ଟାରୂପେ ଗ୍ରହଣ କରାଯାଇପାରେ । ସାରଳାଦାସ ତାଙ୍କ 'ମହାଭାରତ' ଗ୍ରନ୍ଥରେ ଉଲ୍ଲେଖ କରିଛନ୍ତି-

"ଋକ ଯଜୁ ସାମ ଅଥର୍ବ ଚତୁବାଣୀ
ପଢ଼ିଣ ବିପ୍ରଶିରେ ଅର୍ଘ ଦେଲେ ଆଣି ।
କଳସା ଶିଳୋକ ପଢ଼ନ୍ତି ସର୍ବଲୋକ
ଅନେକ ବଧାଇ ଦିଅନ୍ତି ଯେ ମନସୁଖ ।" (୮)

ତତ୍କାଳୀନ ସମାଜରେ ସାମାଜିକ ବିଧି-ବ୍ୟବସ୍ଥା ଅନୁଯାୟୀ ବେଦୀ ଉପରେ ବର-କନ୍ୟାଙ୍କୁ ଆର୍ଶିବାଦ ଓ ଶୁଭଶୁଚକ ମଙ୍ଗଳ ଗୀତିକା ବା କଳସା ଶ୍ଳୋକ ବୋଲା ଯାଉଥିବାର ସୂଚନା ଏଥିରୁ ମିଳେ । ମହାଭାରତ ଗ୍ରନ୍ଥର ଅନ୍ୟତ୍ର ମଧ୍ୟ କୁହାଯାଇଛି-

"ବିଧି ପୂର୍ବମତେ ପଢ଼ନ୍ତି କଳସା
ବଶିଷ୍ଠ, ମାରକଣ୍ଡ ଆବର ଦୁର୍ବାସା ।" (୯)

ମହାଭାରତ ଗ୍ରନ୍ଥରେ ବ୍ୟବହୃତ ଏହି 'କଳସା' ଶବ୍ଦ ବା କଳସା ଶ୍ଳୋକ ଉଭୟ ମଙ୍ଗଳଗୀତିକା ଏବଂ 'କଳସା ଚଉତିଶା' କୁ ସୂଚିତ କରୁଅଛି ।ବିବାହ ସମୟରେ ବର-କନ୍ୟାଙ୍କୁ ଆର୍ଶିବାଦ ପୂର୍ବକ ମଙ୍ଗଳ ଗୀତିକା ବା କଳସା ଶ୍ଳୋକ ଗାନ କରାଯାଉଥିବା ବେଶୀ ସମୀଚୀନ ମନେହୁଏ । ସେ ଯା' ହେଉ ବତ୍ସାଦାସ ଯେ ସାରଳାଙ୍କ ପୂର୍ବବର୍ତ୍ତୀ ସ୍ରଷ୍ଟା ବା ସମକାଳୀନ ହୋଇ ଥାଇପାରନ୍ତି ଏଥିରେ ଦ୍ୱି-ମତ ନାହିଁ । ବତ୍ସାଦାସ ତାଙ୍କର 'କଳସା

ଚଉତିଶା' ଗ୍ରନ୍ଥଟି ଢେଙ୍କାନାଳର କପିଳାସ ପୀଠରେ ଅବସ୍ଥାନ କାଳରେ ଯେ ରଚନା କରିଛନ୍ତି, ତାହା ସର୍ବବାଦୀ ସମ୍ମତ । 'କଳସା ଚଉତିଶା' ଟି 'କ' ଠାରୁ 'କ୍ଷ' ଅକ୍ଷର ଅନୁକ୍ରମରେ ଚଉତିରିଶଟି ପଦରେ ରଚିତ ହୋଇଅଛି । ଏଥିରେ ପ୍ରାଚୀନ ବଚନିକା ରୀତିର ପ୍ରୟୋଗ ହୋଇଛି । ଏହାକୁ ଓଡ଼ିଆ ଚଉତିଶା ରଚନାର ଆଦ୍ୟ ନିଦର୍ଶନ ରୂପେ ଗ୍ରହଣ କରାଯାଇପାରେ । ଏହା ଏକ ପ୍ରାଚୀନ ରଚନା ହେଲେହେଁ, ଏଥିରେ ଅପରୂପ ଶିଳ୍ପନୈପୁଣ୍ୟ, ହାସ୍ୟ-ରସ ପରିପୂର୍ଣ୍ଣ ବର୍ଣ୍ଣନା ଚାତୁରୀ ଦେଇ କବିଙ୍କର ଅପୂର୍ବ କବିତ୍ୱର ପରାକାଷ୍ଠା ଫୁଟି ଉଠିଛି । ଏହି କଳସା ଚଉତିଶାର ମୁଖ୍ୟ ପ୍ରତିପାଦ୍ୟ ବିଷୟବସ୍ତୁ ହେଲା- ଭାରତୀୟ ଆଧାତ୍ମିକ ଜଗତର ଶ୍ରେଷ୍ଠ ଦେବତା ମହାପ୍ରଭୁ ଶିବ ଏବଂ ହିମାଳୟ କନ୍ୟା ମହାସତୀ ପାର୍ବତୀଙ୍କ ବିବାହ ପ୍ରସଙ୍ଗ । ସତୀ ପାର୍ବତୀଙ୍କର ମହନୀୟତା ଓ ପ୍ରେମ ନିଷ୍ଠାର ପରୀକ୍ଷା ପାଇଁ ମହାଦେବ ଶିବ ବୁଢ଼ା ହଡ଼ା ବଳଦ ଉପରେ ସବାର ହୋଇ ଏକ ରୋଗଗ୍ରସ୍ତ, ଜରାଜୀର୍ଣ୍ଣ ବୁଢ଼ାବର ବେଶରେ ହିମାଳୟ ଆଳୟକୁ ଗମନ କରିଛନ୍ତି । ପାର୍ବତୀଙ୍କର ସଖୀମାନେ ଶିବଙ୍କର ଏହି ବ୍ୟାଧିଗ୍ରସ୍ତ, ଜରାଜୀର୍ଣ୍ଣ ରୂପକୁ ଦେଖି ଚକିତ ହୋଇ ପାର୍ବତୀଙ୍କ ନିକଟରେ ଶିବଙ୍କ ରୂପ ବର୍ଣ୍ଣନା କରିଛନ୍ତି । କବିଙ୍କ ଭାଷାରେ -

ଖୁଁ ଖୁଁ ଖାସ, ସୁଆସେଣ ପେଲୁଅଛି ଧଇଁ
ଖର ନିଶ୍ୱାସେ ବୁଢ଼ାର ମାଥ ଲାଗେ ଭୂଇଁ ।
ଖଣ୍ଡିଆ ଯୋଗୀର ସଙ୍ଗେ ନାହିଁ ଯାନ ତା'ର
ଖଣ୍ଡିଆ ବଳଦ ବୁଢ଼ା ବାନ୍ଧିଛି ପାଖର ।
* * * * * * *
ଟଳ ଟଳ ମଥା ଟେକି ବସି ନ' ପାରଇ
ଟାକୁଆ ଗାଲ ପାକୁଆ ଦାନ୍ତ ଆଦି ନାହିଁ ।

ଶିବଙ୍କର ଏହି ଜରାଜୀର୍ଣ୍ଣ, ରୁଗ୍ଣ ସ୍ୱାସ୍ଥ୍ୟର ବର୍ଣ୍ଣନା କରି ସଖୀମାନେ ପାର୍ବତୀଙ୍କୁ ଟାହି-ଟାପରା କରିଛନ୍ତି । ପାର୍ବତୀ ମଧ ଶିବଙ୍କର ଦୂରରୁ ଏହି ରୂପକୁ ଦେଖି ବିଚଳିତ ହୋଇପଡ଼ିଛନ୍ତି । ପାର୍ବତୀ ମା' ଙ୍କୁ କହିଛନ୍ତି -

"ଦଇନି କରି କହୁଛି ଶୁଣ ମୋର ମାୟେ
ଦନ୍ତେ ତିରଣ ଧରିଣ ଓଳଗଇ ପାୟେ ।
ଦରିଦ୍ର ହୀନ ବୁଢ଼ାକୁ ଯେବେ ମୋତେ ଦେବୁ
ଦୁଇ ନୟନରେ ମୋର ମରଣ ଦେଖିବୁ ।"

ପାର୍ବତୀଙ୍କ ମାତା ମଧ ବରକୁ ଦେଖି ଭାଗ୍ୟକୁ ନିନ୍ଦାକରି ସ୍ୱାମୀଙ୍କ ପାଖରେ ଏହି ବିବାହର ବିରୋଧ କରିଛନ୍ତି । ପାର୍ବତୀଙ୍କ ମାତା କ୍ରନ୍ଦନ କରି ସ୍ୱାମୀ ହିମାଳୟଙ୍କୁ କହିଛନ୍ତି -

"ନୋହିଲେ ବୁଡିବୁ ମାଏ-ଝିଅ ଦୁହେଁ ହୋଇ
ନୋହିଲେ ମରିବୁ ସ୍ୱ-ହସ୍ତରେ ବିଷ ଖାଇ ।"

ଏହିସବୁ ବର୍ଣ୍ଣନାରୁ ଜଣାଯାଏ - ତତ୍କାଳୀନ ସମାଜରେ ଯୁବତୀ କନ୍ୟା ଓ ବୁଢ଼ାବର ବିବାହ ପ୍ରଥାଥିଲା । ଯାହାକୁ କି' କବି ଅତ୍ୟନ୍ତ ସଚେତନ ମାନସରେ ଏହି ବର୍ଣ୍ଣନା ମାଧମରେ ବିରୋଧ କରିଛନ୍ତି । ମାତ୍ର- ହିନ୍ଦୁଧର୍ମାଚାର ଦୃଷ୍ଟିରୁ କବି ଆଧାତ୍ମିକ ଭାବନାର ପରିପ୍ରସାର ପାଇଁ ଶିବ-ପାର୍ବତୀଙ୍କ ବିବାହ କରାଇଛନ୍ତି । ବିବାହ ସଂପନ୍ନପରେ ବର ବରବଧୂ କଉଡି ଖେଳ କରିଛନ୍ତି । ଏହାପରେ ଶିବ ନିଜର ଦିବ୍ୟରୂପ ଧାରଣ କରି ସମସ୍ତଙ୍କୁ ଚକିତ କରି ଦେଇଛନ୍ତି । ନିରାନନ୍ଦମୟ ପରିବେଶ ହଠାତ୍ ଆନନ୍ଦ ମୁଖରିତ ହୋଇ ଉଠିଛି । ବିବାହ ପରେ କବି ଶିବ-ପାର୍ବତୀଙ୍କ ଚଉଠି ରାତି ଓ ଆଠ ମଙ୍ଗଳାଦି ଉତ୍ସବର ମଞ୍ଜୁଳ ବର୍ଣ୍ଣନା କରିଛନ୍ତି । ଏହି ବର୍ଣ୍ଣନାରୁ ତତ୍କାଳୀନ ସମାଜର ବିବାହ କର୍ମ-କର୍ମାଣିର ବାସ୍ତବ ଚିତ୍ର ଫୁଟି ଉଠିଛି । ବାସ୍ତବରେ ବତ୍ସାଦାସ ଶିବ-ପାର୍ବତୀଙ୍କ ଲୀଳା ପ୍ରସଙ୍ଗ ଓ ଧାର୍ମିକ ତତ୍ତ୍ୱ, ମତବାଦକୁ ଜନମନଗ୍ରାହୀ ଓ ସର୍ବଜନାଦୃତ କରିବାପାଇଁ ଏହି ଭଳି ଏକ ଆଧାତ୍ମିକ ବିବାହ ପ୍ରସଙ୍ଗର ଅବତାରଣା କରିଛନ୍ତି । ଏହା ସହିତ କବି ତତ୍କାଳୀନ ସାମାଜିକ ଜୀବନ, ଚାଲି-ଚଳଣୀ, ରୁଚି, ରୀତି-ନୀତି ର ନିଚ୍ଛକ ଚିତ୍ର ପ୍ରଦାନ କରିଛନ୍ତି ।

**ଆଚାର୍ଯ୍ୟ ଶ୍ରୀଧର ସ୍ୱାମୀ (ପଞ୍ଚଦଶ ଶତାବ୍ଦୀ) :**

ଶ୍ରୀଧର ସ୍ୱାମୀଙ୍କର ଆବିର୍ଭାବ ସମୟକୁ ଗବେଷକ ଓ ସମାଲୋଚକ ମାନେ ଚତୁର୍ଦ୍ଦଶ ଶତାବ୍ଦୀ ରୂପରେ ନିର୍ଣ୍ଣୀତ କରିଛନ୍ତି । ମାତ୍ର- ପ୍ରକୃତରେ ଦେଖିବାକୁ ଗଲେ ଶ୍ରୀଧର ସ୍ୱାମୀଙ୍କର ସମୟ ପଞ୍ଚଦଶ ଶତାବ୍ଦୀର ମଧଭାଗରୁ ଷୋଡ଼ଶ ଶତାବ୍ଦୀର ପ୍ରଥମ-ଦ୍ୱିତୀୟ ଦଶକ ଭିତରେ ବେଶୀ ସମୀଚୀନ ମନେହୁଏ । ଏହାର ବଳିଷ୍ଠ କାରଣ ରୂପେ ଶ୍ରୀଧର ସ୍ୱାମୀଙ୍କ ସହିତ ଶ୍ରୀ ଚୈତନ୍ୟଦେବଙ୍କର ସାକ୍ଷାତ ଓ ସଂପର୍କକୁ ଗ୍ରହଣ କରାଯାଇପାରେ । ଶ୍ରୀ ଚୈତନ୍ୟ ଖ୍ରୀ.ଅ. ୧୫୦୯-୧୦ ବେଳକୁ ଓଡିଶା ଆଗମନ କରିଥିଲେ । "ଓଡିଶା ଆସିବା ପରେ ଶ୍ରୀ ଚୈତନ୍ୟ ଶ୍ରୀଧର ସ୍ୱାମୀଙ୍କୁ ସାକ୍ଷାତ କରି ତାଙ୍କୁ ଗୁରୁ ରୂପେ ସମ୍ମାନ କରିଥଲେ ।" (୧୦) କେବଳ ସେତିକି ନୁହେଁ, ଶ୍ରୀ ଚୈତନ୍ୟ

ଶ୍ରୀଧର ସ୍ୱାମୀଙ୍କୁ ଗୁରୁ ରୂପେ ଗ୍ରହଣକରି ତାଙ୍କ ଠାରୁ ଭାଗବତ ସଂପର୍କରେ ସବିଶେଷ ଜ୍ଞାନ ଲାଭ ମଧ୍ୟ କରିଥିଲେ । କୃଷ୍ଣଦାସ କବିରାଜ ଗୋସ୍ୱାମୀ ତାଙ୍କ 'ଚୈତନ୍ୟ ଚରିତାମୃତ' ଗ୍ରନ୍ଥରେ ଏହି କଥା ସୂଚିତ କରିଛନ୍ତି । ଚୈତନ୍ୟ କହିଛନ୍ତି -

"ଶ୍ରୀଧର ସ୍ୱାମୀ ପ୍ରସାଦେ ଭାଗବତ ଜାନି
ଜଗତ୍ ଗୁରୁ ଶ୍ରୀଧରସ୍ୱାମୀ ଗୁରୁକରି ମାନି ।" (୧୧)

ଏତତ୍‌ଭିନ୍ନ ଚୈତନ୍ୟଙ୍କ ଉକ୍ତି - "ଶ୍ରୀଧର ସକଳଂ ବେତ୍ତି ଶ୍ରୀ ନୃସିଂହ ପ୍ରସାଦତଃ ।" ରୁ ଜଣାଯାଏ- ଶ୍ରୀଧରସ୍ୱାମୀ ଶ୍ରୀ ନୃସିଂହ ମହାପ୍ରଭୁଙ୍କ ପ୍ରସାଦରୁ ସକଳ ଜ୍ଞାନ ଓ ସୃଜନ ଶକ୍ତିର ଅଧିକାରୀ ହୋଇ ବିଭିନ୍ନ ଟୀକା ଗ୍ରନ୍ଥମାନ ପ୍ରଣୟନ କରି ପାରିଥିଲେ । ଶ୍ରୀଧରସ୍ୱାମୀ ବାଲେଶ୍ୱର ଜିଲ୍ଲାର ରେମୁଣା ବ୍ଲକ୍ ଅନ୍ତର୍ଗତ ମଞ୍ଜାରୀ ଅବା ମରେଇ ଗ୍ରାମରେ ଜନ୍ମ ଲାଭ କରିଥିଲେ । ପରବର୍ତ୍ତୀ ସମୟରେ ସେ ଉତ୍କଳର ପୁଣ୍ୟପୀଠ ଶ୍ରୀକ୍ଷେତ୍ର ପୁରୀ ଏବଂ ଢେଙ୍କାନାଳର କପୀଳାସ ପୀଠରେ ଅବସ୍ଥାନ କରିଥିଲେ । ଢେଙ୍କାନାଳ ଆଗମନ ପୂର୍ବରୁ ଶ୍ରୀଧରସ୍ୱାମୀ ଶଙ୍କରାଚାର୍ଯ୍ୟଙ୍କ ପ୍ରତିଷ୍ଠିତ ପୁରୀର 'ଗୋବର୍ଦ୍ଧନ ମଠ' ର ଜଣେ ବ୍ରହ୍ମଚାରୀ ସନ୍ନ୍ୟାସୀ ରୂପରେ କିଛି କାଳ ଅତିବାହିତ କରିଥିଲେ । ପରେ ସେ ଢେଙ୍କାନାଳ ଆସି କପିଳାସ ପୀଠର ବ୍ରହ୍ମଚାରୀ ମଠରେ ଦୀର୍ଘ କାଳଧରି ଅବସ୍ଥାନ କରିଥିଲେ । ଶ୍ରୀଧରସ୍ୱାମୀ- ଅଥର୍ବବେଦୀ ଶତପଥୀୟ ବ୍ରାହ୍ମଣ ଥିବାର ଜଣାଯାଏ । କେହି କେହି ତାଙ୍କୁ ମହାରାଷ୍ଟ୍ରୀ ବ୍ରାହ୍ମଣ ବୋଲି ମଧ୍ୟ କହିଛନ୍ତି । ଶ୍ରୀଧରସ୍ୱାମୀଙ୍କର ଉପାସ୍ୟ ଦେବତା ଥିଲେ ଶିବ ଏବଂ ଶ୍ରୀ ନୃସିଂହ । ଶ୍ରୀଧରସ୍ୱାମୀ କପିଳାସ ପୀଠରେ ଶ୍ରୀ ନୃସିଂହଙ୍କ ମୂର୍ତ୍ତି ପ୍ରତିଷ୍ଠା, ଉପାସନା ଓ ନୃସିଂହ ମନ୍ତ୍ର ଜପ କରି ସିଦ୍ଧି ଲାଭକରିଥିବାର ଜଣାଯାଏ । ଉଭୟ ଶିବ ଏବଂ ନୃସିଂହଙ୍କ କୃପା ବଳରେ ସେ ସାରସ୍ୱତ ସୃଷ୍ଟିକର୍ମରେ ମନୋନିବେଶ କରି ସେଥିରେ ସିଦ୍ଧି ଓ ସଫଳତା ପାଇଥିଲେ । କପିଳାସ ଅବସ୍ଥାନ କାଳରେ ଶ୍ରୀଧରସ୍ୱାମୀ ଢେଙ୍କାନାଳର 'ସପ୍ତଶଯ୍ୟା'ଯାଇ ସେଠାରେ ନୃସିଂହ ଉପାସନା ପାଇଁ ଏକ ନୃସିଂହ ଆଶ୍ରମ ମଧ୍ୟ ପ୍ରତିଷ୍ଠା କରିଥିବାର ଜଣାଯାଏ ।

ଶ୍ରୀଧରସ୍ୱାମୀ ଜଣେ ମହାନ୍ ପଣ୍ଡିତ ଥିଲେ । ସଂସ୍କୃତ ଭାଷାରେ ତାଙ୍କର ଅଗାଧ ଜ୍ଞାନ ଓ ପାଣ୍ଡିତ୍ୟ ଥିଲା । ଜଣେ ଉଚ୍ଚ କୋଟୀର ଟୀକାକାର ବା ଭାଷ୍ୟକାର ରୂପେ ତାଙ୍କର ନାମ କାଳର କପୋଳରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିଛି ଏବଂ ରହିଥିବ । ଆଚାର୍ଯ୍ୟ ଶ୍ରୀଧର ଶ୍ରୀମଦ୍ ଭାଗବତ୍ ଗୀତା, ଶ୍ରୀମଦ୍ଭାଗବତ, ବିଷ୍ଣୁ ପୁରାଣ ଆଦିର ଯେଉଁ ସରଳ, ତତ୍ତ୍ୱପୂର୍ଣ୍ଣ, ରସମୟ ଟୀକାମାନ ରଚନା କରିଯାଇଛନ୍ତି, ବାସ୍ତବରେ

ତାହା ବିସ୍ମୟୋଦ୍ଦୀପକ । ତାଙ୍କ ରଚନା ଭିତରେ ଜ୍ଞାନ ଓ ଭକ୍ତି ମାର୍ଗର ଅପୂର୍ବ ସମନ୍ୱୟ ସାଧିତ ହୋଇଅଛି । ଓଡିଆ ଭାଗବତର ବରେଣ୍ୟ ସ୍ରଷ୍ଟା ଭକ୍ତ କବି ଜଗନ୍ନାଥ ଦାସ ମଧ୍ୟ ଶ୍ରୀଧରଙ୍କ ବ୍ୟକ୍ତିତ୍ୱ, ପ୍ରତିଭା ଓ ଜ୍ଞାନ-ଭକ୍ତି ମାର୍ଗରେ ଆକର୍ଷିତ ହୋଇ ଭାଗବତ ରଚନା କରିଥିବାର ଅନୁମାନ କରାଯାଇପାରେ । ଜଗନ୍ନାଥ ଦାସ 'ଭାଗବତ' ରେ ଲେଖିଛନ୍ତି -

"ଶ୍ରୀଧର ନାମେ ବିପ୍ରବର
କଳି ଯୁଗରେ ଜନ୍ମତା'ର
* * * * *
ପ୍ରାକୃତ ବନ୍ଧେ ଭାଗବତେ
କହିଲେ ସନ୍ଥ ଜନଚିତ୍ତେ ।" (୧୨)

କେବଳ ଜଗନ୍ନାଥ ଦାସ ନୁହଁନ୍ତି, ଶ୍ରୀଧରସ୍ୱାମୀଙ୍କ ପଦାଙ୍କ ଅନୁସରଣ କରି ରୂପ, ଜୀବ, ସନାତନ ଆଦି ଷଡ଼ଗୋସ୍ୱାମୀ, ପଣ୍ଡିତ ବିଶ୍ୱନାଥ ଚକ୍ରବର୍ତ୍ତୀ, ବଳଦେବ ବିଦ୍ୟାଭୂଷଣ ପ୍ରମୁଖ ମହାତ୍ମାମାନେ ମଧ୍ୟ ବିଭିନ୍ନ ଟୀକା / ଭାଷ୍ୟ ଗ୍ରନ୍ଥମାନ ରଚନା କରିଯାଇଛନ୍ତି ।

ଶ୍ରୀଧରସ୍ୱାମୀଙ୍କ ମହନୀୟ ରଚନାବଳୀ ଗୁଡିକ ହେଲା -

୧. ଶ୍ରୀମଦ୍ ଭଗବତ୍ ଗୀତାର- ଟୀକା (ସୁବୋଧିନୀ ଟୀକା)
୨. ଶ୍ରୀମଭାଗବତ ର ଟୀକା (ଭାବାର୍ଥ ଦୀପିକାଟୀକା)
୩. ଶ୍ରୀ ବିଷ୍ଣୁ ପୁରାଣ ଟୀକା (ଆତ୍ମ ପ୍ରକାଶ)
୪. ସନତ୍ ସୁଜାତୀୟ ଗ୍ରନ୍ଥର ଟୀକା (ବାଳ ବୋଧିନୀ)
୫. ଗୀତାସାର ଟୀକା (ବ୍ରହ୍ମ ସମ୍ବୋଧିନୀ)
୬. ଭାଗବତ ପୁରାଣ ଟୀକା (ଦେବସ୍ତୁତି ଟୀକା)
୭. ପୁରାଣ ଟୀକା (ପଦାର୍ଥ ପ୍ରକାଶିକା)
୮. ସିଦ୍ଧ ଚନ୍ଦ୍ରିକା
୯. ବ୍ରଜ ବିହାର କାବ୍ୟ
୧୦. ବିଭିନ୍ନ ସ୍ତୋତ୍ର

ଏହିସବୁ ଗ୍ରନ୍ଥ ଗୁଡିକରେ ବୈଷ୍ଣବୀୟ ଧର୍ମ-ଦର୍ଶନର ନିଗୂଢ଼ ସାରତତ୍ତ୍ୱ ଗୁଡିକ ବେଶ୍ ସରଳ, ରସାଳ, ସାବଲୀଳ ଓ ସାରଗର୍ଭକ ଭାବରେ ପ୍ରକଟିତ ହୋଇଛି । ଶ୍ରୀଧରସ୍ୱାମୀ ଶଙ୍କରାଚାର୍ଯ୍ୟ ଙ୍କ ପ୍ରବର୍ତ୍ତିତ ଅଦ୍ୱୈତ ଦର୍ଶନ ପରଂପରାର ଅନୁଗାମୀ ଥିଲେ ହେଁ; ସେ ନିଜର ଧର୍ମ ମତ ଏବଂ ସୃଷ୍ଟି ସଂପଦ ଭିତରେ ଜ୍ଞାନ ଓ ଭକ୍ତିର

ମଧୁର ସମନ୍ୱୟ ପ୍ରତିଷ୍ଠା କରି ଭକ୍ତି ଧର୍ମର ପ୍ରଚାର, ପ୍ରସାର କରିଯାଇଛନ୍ତି । ବାସ୍ତବରେ ଶ୍ରୀଧରସ୍ୱାମୀ ନିଜର ଅପୂର୍ବ କବିତ୍ୱ, ପ୍ରତିଭା ଓ ପାଣ୍ଡିତ୍ୟ ବଳରେ ଏହିସବୁ ମହନୀୟ କଳାକୃତି ରଚନା କରି ଢେଙ୍କାନାଳର ପ୍ରାଚୀନ ସାହିତ୍ୟ କୁ ସମୃଦ୍ଧ ଓ ଋଦ୍ଧିମନ୍ତ କରି ଯାଇଛନ୍ତି ।

ପଞ୍ଚଦଶ ଶତାବ୍ଦୀର କବି ସ୍ୱାମୀ ଦ୍ୱାରିକା ଦାସ ମଧ ଜଣେ ରାମାୟଣକାର ରୂପେ ସଫଳତା ଅର୍ଜନ କରିଥିଲେ । ତାଙ୍କର 'ରାମ ବିଳାପ' ରାମକଥା ସମ୍ବଳିତ ଏକ ମହାନ୍ ଗ୍ରନ୍ଥ । ସେ ବିଭିନ୍ନ ରାମାୟଣ ଗ୍ରନ୍ଥର ରଚନା ସହିତ ଭାଗବତର ତ୍ରୟୋଦଶ ସ୍କନ୍ଧ ମଧ ରଚନା କରିଥିଲେ । ତାଙ୍କର ବାଣୀ ଆରାଧନା ଢେଙ୍କାନାଳ ମାଟିକୁ ଅଭିମନ୍ତ୍ରିତ ଓ ପବିତ୍ରିତ କରିଛି ।

-: ପାଦ ଟୀକା :-

୧. Orissa Historical Research Journal. Vol.-II

୨. Dr. D.C. Sarakar - Epigraphica Indica - Vol- XXX

୩. ଡକ୍ଟର କୁଞ୍ଜବିହାରୀ ତ୍ରିପାଠୀ – ପ୍ରାଚୀନ ଓଡିଆ ଅଭିଲଖ – ପୃ-୧

୪. ଡକ୍ଟର ବୃନ୍ଦାବନଚନ୍ଦ୍ର ଆଚାର୍ଯ୍ୟ – ଓଡ଼ିଆ ସାହିତ୍ୟର ସଂକ୍ଷିପ୍ତ ଇତିହାସ – ପୃ-୪୨

୫. ଡକ୍ଟର ପଠାଣୀ ପଟ୍ଟନାୟକ – ଓଡ଼ିଆ ସାହିତ୍ୟର ଇତିହାସ – ପୃ-୧୮୬

୬. ଉସ୍ସ – ବୃନ୍ଦାବନଚନ୍ଦ୍ର ଆଚାର୍ଯ୍ୟ – ଓଡ଼ିଆ ସାହିତ୍ୟର ସଂକ୍ଷିପ୍ତ ଇତିହାସ – ପୃ-୪୪

୭. ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତି – ପ୍ରାଚୀନ ଗଦ୍ୟପଦ୍ୟାଦର୍ଶ, ମୁଖବନ୍ଧ

୮. ସାରଳାଦାସ – ଓଡ଼ିଆ ମହାଭାରତ-ମଧପର୍ବ, ଓଡ଼ିଶା ସାହିତ୍ୟ ଏକାଡେମୀ, -ପୃ-୩୩୨

୯. ତତ୍ରୈବ – ପୃ-୬୪୬-୬୪୭

୧୦. ରାଜକିଶୋର ପଟ୍ଟନାୟକ – ଶମ୍ଭୁକ୍ଷେତ୍ର କପିଳାସ ଓ ଶ୍ରୀଧରସ୍ୱାମୀ, ମୁଖବନ୍ଧ, ପୃ-୧

୧୧. କୃଷ୍ଣ ଦାସ କବିରାଜ – ଶ୍ରୀ ଚୈତନ୍ୟ ଚରିତାମୃତ ଅନ୍ତ୍ୟଲୀଳା, ସପ୍ତମ ପରିଚ୍ଛେଦ, ପୃ-୧୨୮, ୧୨୯

୧୨. ଜଗନ୍ନାଥ ଦାସ – ଭାଗବତ – ଦ୍ୱାଦଶ ସ୍କନ୍ଧ, ତ୍ରୟୋଦଶ ଆଧ୍ୟାୟ



# ତୃତୀୟ ଅଧ୍ୟାୟ
# (ମଧ୍ୟଯୁଗୀୟ କାବ୍ୟ ସାହିତ୍ୟ)

ପୃଷ୍ଠଭୂମି : ମଧ୍ୟଯୁଗୀୟ ଓଡ଼ିଆ କାବ୍ୟ ସାହିତ୍ୟ ସୃଷ୍ଟିର ପ୍ରାରମ୍ଭିକ ସମୟଥିଲା- ଘୋର ସଂଘର୍ଷ, ସଂଘାତ ଓ ସଙ୍କଟ ର କାଳ । ଓଡିଶାର ରାଜନୈତିକ ରଙ୍ଗମଞ୍ଚ ହୋଇଉଠିଥିଲା- ଅଶାନ୍ତ, ଅସ୍ଥିର ଓ ଦୁର୍ଭାଗ୍ୟର ତମସାରେ ଆଚ୍ଛନ୍ନ । ଖ୍ରୀ.ଅ. ୧୫୬୮ ରେ 'ଗୋହିରା ଟିକିରି' ଯୁଦ୍ଧରେ ଓଡିଶାର ଶେଷ ସ୍ୱାଧିନ ହିନ୍ଦୁ ସମ୍ରାଟ ମୁକୁନ୍ଦଦେବଙ୍କ ମୃତ୍ୟୁରେ ଓଡିଶାର ସ୍ୱାଧିନତା ଅସ୍ତମିତ ହୋଇଯାଇଥିଲା । ଅବଲୀଳା କ୍ରମେ ଓଡିଶା ଭୂଇଁ ଆଫଗାନ୍ ମୋଗଲ ଓ ମରହଟ୍ଟା ଆଦି ଯୁଧମାନ ବାହିନୀ ଓ ଲୁଣ୍ଠନକାରୀ ମାନଙ୍କ ଦ୍ୱାରା ଧ୍ୱସ୍ତ-ବିଧ୍ୱସ୍ତ ଓ ଲୁଣ୍ଠିତ ହେବାକୁ ଲାଗିଲା । ଖ୍ରୀ.ଅ. ୧୫୯୨ ବେଳକୁ ଓଡ଼ିଶା ମୋଗଲ ଶାସନ ଅଧୀନକୁ ଚାଲିଯିବାଦ୍ୱାରା ଓଡ଼ିଶାଭୂମି ଉତ୍କଟ ଲୁଣ୍ଠନ, ତୀବ୍ର ଅତ୍ୟାଚାର ଓ ଚରମ ଅସ୍ଥିରତାର ଶିକାର ହେଲା । ସମ୍ରାଟ ଜାହାଙ୍ଗୀରଙ୍କ ଶାସନ ସମୟରେ ସୁବେଦାର ହାସିମ୍ ଖାଁ ଓଡ଼ିଶା ଭୂଇଁକୁ ଲୁଣ୍ଠିତ, ଧ୍ୱସ୍ତ-ବିଧ୍ୱସ୍ତ କରିଥିଲା । ଏପରିକି କେଶୋଦାସ ମଧ ଓଡ଼ିଶା ମାଟିରେ ଲୁଣ୍ଠନ, ଅତ୍ୟାଚାରର ବୀଭତ୍ସ ତାଣ୍ଡବ ସୃଷ୍ଟି କରିଥିଲେ । କେଶୋଦାସ ଉତ୍କଳର ତତ୍କାଳୀନ ଗଜପତି ପୁରୁଷୋତ୍ତମ ଦେବ ଙ୍କୁ ଯୁଦ୍ଧରେ ପରାସ୍ତ କରି ତାଙ୍କ ଭଗିନୀଙ୍କୁ ବଳପୂର୍ବକ ବିବାହ କରିଥିଲେ । ମୋଗଲ ସମ୍ରାଟ ସାହାଜାହାନ୍ ଏବଂ ଆଉରଙ୍ଗଜେବ୍ ଙ୍କ ରାଜତ୍ୱ କାଳରେ ମଧ ଓଡିଶା ଭୂଇଁ ରାଜନୈତିକ, ସାମାଜିକ ଓ ସାଂସ୍କୃତିକ ସଙ୍କଟାପନ୍ନ ହୋଇପଡିଥିଲା । କେନ୍ଦ୍ରୀୟ ମୋଗଲ ଶାସନର ଧର୍ମାନ୍ଧତା, ଅନ୍ୟାୟ, ଅତ୍ୟାଚାର, ଶୋଷଣ, କଷଣ, ପୀଡନ ସହିତ ପ୍ରାଦେଶିକ ଶାସକ ଓ ସୀମାନ୍ତ ରାଜାମାନଙ୍କର ଉତ୍ପୀଡନ ତତ୍କାଳୀନ ସମାଜ ଜୀବନ, ସଂସ୍କୃତି ଓ ଧର୍ମୀୟ ଜୀବନକୁ ଘୋର ଦୁର୍ବହ, ଦୁର୍ବିସହ କରିପକାଇଥିଲା । କେନ୍ଦ୍ରୀୟ ମୋଗଲ ଶାସନର ବିଳାସମୟ ଜୀବନଚର୍ଯ୍ୟା ପ୍ରାଦେଶିକ, ସାମନ୍ତୀୟ ରାଜନ୍ୟ ମଣ୍ଡଳୀଙ୍କୁ ଉଚ୍ଛୃଙ୍ଖଳ ଓ ବିଳସିତ କରିଥିଲା । ଯା' ଫଳରେ ସମାଜ ଜୀବନ ସହିତ ଧର୍ମୀୟ ଚେତନା ମଧ ଘୋର ଉଚ୍ଛୃଙ୍ଖଳ ଓ ପାପାଚାର ଭିତରେ ବୁଡ଼ିରହିଲା । ମୋଗଲ ସମ୍ରାଟ ମାନେ ସୁ-ସଜିତ ଶଙ୍ଖ ମର୍ମର ପ୍ରାସାଦ ଭିତରେ ମନୋହାରିଣୀ ମାନଙ୍କ ସହିତ ସୁରାପାନ, ଉଲ୍ଲଙ୍ଗ ନୃତ୍ୟ ଓ

ଉତ୍କଟ ଶୃଙ୍ଗାରଚର୍ଯ୍ୟାରେ ବୁଡ଼ି ରହୁଥିଲେ । ଏହି ଆଦର୍ଶରେ ପ୍ରାଦେଶିକ ଶାସକ ଓ ସାମନ୍ତ ରାଜାମାନେ ମଧ୍ୟ ସେମାନଙ୍କର ରାଜ ଦରବାର ଓ ଅନ୍ତଃପୁର ଗୁଡ଼ିକରେ ଅଶ୍ଳୀଳ ସଙ୍ଗୀତ, ନାନାଦି ନଗ୍ନ ନୃତ୍ୟ ଓ ଉଦ୍ଦାମ-ଉତ୍କଟ ଶୃଙ୍ଗାରଚର୍ଯ୍ୟାରେ ବୁଡ଼ି ରହିଲେ । ଏହି ସମୟରେ ବିଭିନ୍ନ ରାଜଦରବାରକୁ ନେଇ ଗୋଟିଏ ଗୋଟିଏ 'କବି ମଣ୍ଡଳୀ' ମଧ୍ୟ ଗଢ଼ି ଉଠିଥିଲା । ରାଜା-ମହାରାଜା ମାନେ ସଙ୍ଗୀତ, ସାହିତ୍ୟ ଓ ବିଦ୍ୟା ଚର୍ଚ୍ଚାରେ ମଗ୍ନ ରହିବା ସ୍ଥଳେ କେହି କେହି ନିଜର ସ୍ତବ-ସ୍ତୁତି, ଯଶଗାନ କରାଇବା ଅଭିପ୍ରାୟରେ କାବ୍ୟ-ସାହିତ୍ୟ ମାନ ରଚନା ପାଇଁ କବି-ଲେଖକ ମାନଙ୍କ ପ୍ରତି ସାହାଯ୍ୟର ହାତ ବଢ଼ାଇଥିଲେ । ରାଜାନୁଗ୍ରହ ଓ ରାଜକୀୟ ପୃଷ୍ଠପୋଷକତା ପାଇ ସାହିତ୍ୟ ରଚନାର ଧାରା କ୍ରମେ ବହିଚାଲିଲା । ଅନେକ କବି ରାଜକୀୟ ପ୍ରୋତ୍ସାହନ ଓ ପୃଷ୍ଠପୋଷକତା ପାଇ କାବ୍ୟ-ସାହିତ୍ୟ ରଚନାରେ ମନୋନିବେଶ କଲେ । ଏହି କାବ୍ୟ ସାହିତ୍ୟ ଯେହେତୁ ରାଜାନୁଗ୍ରହ, ରାଜକୀୟ ପୃଷ୍ଠପୋଷକତା ଓ ସାମନ୍ତୀୟ ସାହାଯ୍ୟ-ସହଯୋଗରେ ଗଢିଉଠିଲା, ତେଣୁ ଏ ସାହିତ୍ୟ ମୁଖ୍ୟତଃ ରାଜକୀୟ ଓ ସାମନ୍ତୀୟ ଇଚ୍ଛା, ଅଭିଳାଷ ଓ ଅଭିରୁଚି ଦ୍ୱାରା ନିୟନ୍ତ୍ରିତ ଓ ପରିପୁଷ୍ଟ ହେଲା । ଏହି ସମୟର ଓଡ଼ିଆ କାବ୍ୟଧାରା ମୁଖ୍ୟତଃ ସଂସ୍କୃତ କାବ୍ୟ ସାହିତ୍ୟ ଓ କାବ୍ୟାଦର୍ଶ ଦ୍ୱାରା ଅନୁପ୍ରାଣିତ ଓ ନିୟନ୍ତ୍ରିତ ହେଲା । ସଂସ୍କୃତ ରୀତି କାବ୍ୟଧାରାର ଆଦର୍ଶରେ ଏହି ଯେଉଁ ମଧ୍ୟଯୁଗୀୟ କାବ୍ୟଧାରା ଗଢ଼ିଉଠିଲା, ତାକୁ 'ରୀତିକାବ୍ୟ' କୁହାଗଲା । ଏହି କାବ୍ୟ ଯୁଗରେ ବିଭିନ୍ନ ଅଳଂକାରର ବହୁଳ ଏବଂ ଯାଦୃଚ୍ଛିକ ପ୍ରୟୋଗ ହେବାରୁ ଏହି କାବ୍ୟଧାରାକୁ ଆଳଙ୍କାରୀକ କାବ୍ୟ ମଧ୍ୟ କୁହାଗଲା । ବିଭିନ୍ନ ଅଳଂକାରର ଶୋଭନ ସମାବେଶ, ଛନ୍ଦୋବଦ୍ଧ କାବ୍ୟଶୈଳୀ, ଶବ୍ଦର ଆଟୋପ, ପ୍ରେମ ଓ ଶୃଙ୍ଗାର ବିଳାସ ର ଉତ୍କଟତା ଭିତରେ ଏହି କାବ୍ୟଗୁଡ଼ିକ ଅଶ୍ଳୀଳ, ଉତ୍କଟ ଏବଂ ଦୋଷଦୁଷ୍ଟ ମନେହେଲା । ଏହି ଉତ୍କଟ ଶୃଙ୍ଗରିକତା ଓ ଅଶ୍ଳୀଳତା ଦୋଷକୁ ଘୋଡାଇବା ପାଇଁ ଏମାନେ 'ଧର୍ମ' କୁ ମୁଖ୍ୟ ଆୟୁଧ ରୂପେ ଗ୍ରହଣ କଲେ । ଧର୍ମୀୟ ଆବରଣ ତଳେ ନାନାଦି ଉତ୍କଟ ଶୃଙ୍ଗାରଚର୍ଯ୍ୟା ଓ ପାପାଚାରର ବର୍ଣ୍ଣନା କରି ତାକୁ ସୁରକ୍ଷା ପ୍ରଦାନ କଲେ । ମୋଟାମୋଟି ଭାବରେ ଧର୍ମ ଓ ଧର୍ମୀୟ ଭାବନା ଏହି କାବ୍ୟଧାରାର ସାମାଜିକ ରକ୍ଷାକବଚ ରୂପେ ସ୍ୱର୍ଦ୍ଧିତ ଭାବରେ ଦଣ୍ଡାୟମାନ ହୋଇଥିଲା ବୋଲି କୁହାଯାଇପାରେ ।

ମଧ୍ୟଯୁଗୀୟ କାବ୍ୟଧାରାର ଉତ୍କୁଳ ପ୍ଲାବନ ସମୟରେ ହିଁ, ଢେଙ୍କାନାଳ ମାଟିର ସାରସ୍ୱତ ସାଧକ ମାନେ ଏହି କାବ୍ୟାଦର୍ଶଦ୍ୱାରା ଅନୁପ୍ରାଣିତ ହୋଇ ରୀତିକାବ୍ୟ ଧାରାରେ କାବ୍ୟ-କବିତା ମାନ ରଚନା କରିଥିଲେ । କେହି କେହି ସ୍ରଷ୍ଟା ସ୍ୱ-ଉଦ୍ୟମ ବଳରେ ଅବା

କେହି କେହି ରାଜକୀୟ ପୃଷ୍ଠପୋଷକତା ଲାଭକରି କାବ୍ୟ ସାଧନାରେ ମଗ୍ନ ରହିଥିଲେ। ଏହି ସମୟରେ ଢେଙ୍କାନାଳ ରାଜ୍ୟର କତିପୟ ରାଜା-ମହାରାଜା ମାନେ ମଧ କାବ୍ୟ-ସାହିତ୍ୟ ସାଧନାରେ ବ୍ରତୀ ରହିଥିଲେ । ଏହି ସାରସ୍ୱତ ସାଧକମାନେ ସ୍ୱୀୟ କାବ୍ୟିକ ପ୍ରତିଭା ବଳରେ ଢେଙ୍କାନାଳ ସାହିତ୍ୟର ଦିଗ ଓ ଦିଗନ୍ତକୁ ସାରସ୍ୱତ ବର୍ଣ୍ଣ ବିଭାରେ ବର୍ଣ୍ଣିଳ, ଛବିଳ, ସୁଷମାନ୍ୱିତ ଓ ମହିମା ମଣ୍ଡିତ କରି ଗଢ଼ି ତୋଳିଥିଲେ ।

**କବି ଦୀନକୃଷ୍ଣ ଦାସ (ଖ୍ରୀ.ଅ. ୧୬୫୦-୧୭୧୩) :**

କବି ଦୀନକୃଷ୍ଣ ଢେଙ୍କାନାଳ ମାଟିରେ ଜନ୍ମିତ ସନ୍ତାନ ନ' ହେଲେହେଁ; ଏହି ମାଟିରେ ବହୁକାଳଧରି ଅବସ୍ଥାନକରି ଏ ମାଟିର ସାରସ୍ୱତ ଦିଗନ୍ତକୁ ସମୃଦ୍ଧ, ଋଦ୍ଧିମନ୍ତ ଓ ବର୍ଣ୍ଣୋଜ୍ଜ୍ୱଳ କରିବାରେ ସହାୟକ ହୋଇଥିଲେ । ଯେଉଁଥିପାଇଁ ତାଙ୍କୁ ଢେଙ୍କାନାଳ ସାହିତ୍ୟର ଇତିହାସରେ ସ୍ଥାନିତ କରିବା ସମୀଚୀନ ମନେହୁଏ । ମଧ୍ୟଯୁଗୀୟ ରୀତି କାବ୍ୟ ପରଂପରାର ସେ ଥିଲେ ଜଣେ ଲବ୍ଧ ପ୍ରତିଷ୍ଠ କବି । ତାଙ୍କର ଅପୂର୍ବ କବିତ୍ୱ, କାବ୍ୟକଳା ଓ ଭକ୍ତିମତ୍ତା ସମସ୍ତଙ୍କୁ ଆକୃଷ୍ଟ କରିଥିଲା । କବି ଦୀନକୃଷ୍ଣଙ୍କର ଜନ୍ମ, ଜୀବନୀ ସଂପର୍କରେ ଗବେଷକମାନେ ବହୁମତ, ମତବାଦ ଦେଇଥିଲେହେଁ, କୌଣସି ମତ ବା ମତବାଦ ପ୍ରମାଣସମ୍ମତ ମନେ ହୁଏନାହିଁ । ଗବେଷକ ମାନେ ଦୀନକୃଷ୍ଣଙ୍କର ଆବିର୍ଭାବ ସମୟକୁ ଖ୍ରୀ.ଅ. ୧୬୫୦ ଠାରୁ ଖ୍ରୀ.ଅ. ୧୭୧୩ ମଧରେ ସୂଚିତ କରିଛନ୍ତି । କବିଙ୍କର ଜନ୍ମ ଘଟିଥିଲା-ସୁଦୂର ବାଲେଶ୍ୱର ଜିଲ୍ଲାର ଜଳେଶ୍ୱର ଠାରେ । କବି 'ରସବିନୋଦ' ଗ୍ରନ୍ଥରେ ସୂଚିତକରି କହିଛନ୍ତି ଯେ- ସେ ସୁବର୍ଣ୍ଣରେଖା ନଦୀ କୂଳରେ ଜଳେଶ୍ୱରର ଆଠଦଣ୍ଡପାଟ ରେ ଜନ୍ମଗ୍ରହଣ କରିଥିଲେ । କବିଙ୍କ ଭାଷାରେ -

"ସୁବର୍ଣ୍ଣରେଖା ନଦୀ ତୀର । କଟକ ନାମ ଜଳେଶ୍ୱର ।
ସପତ ପୁରୁଷ ମୋ ତହିଁ । ଗଲା ଯେ ଏତେ କାଳ ବହି ।

*  *  *  *  *

ଆଠଯେ ଦଣ୍ଡପାଟ ମୂଳେ । ସୁବର୍ଣ୍ଣରେଖା ନଦୀ କୂଳେ ।
ସମସ୍ତେ ଅଛନ୍ତି ଯେ ପୁରି । ମୋତେ ଆଣିଲେ ଦେବହରି ।"(୧)

ଦୀନକୃଷ୍ଣଙ୍କ ପିତା-ମାତାଙ୍କ ସଂପର୍କରେ ଗବେଷକ ମାନେ ଭିନ୍ନ ଭିନ୍ନ ମତ ବ୍ୟକ୍ତ କରିଛନ୍ତି । 'ଚୈତନ୍ୟତତ୍ତ୍ୱ ସଂହିତା' ନାମକ ଗ୍ରନ୍ଥରୁ ଜଣାଯାଏ- ଦୀନକୃଷ୍ଣଙ୍କ ପିତା ମଧୁସୂଦନ । ଓଡିଆ ସାହିତ୍ୟର ପଥୀକୃତ ଆଲୋଚକ ବିଦ୍ୱାନ ଜନବୀସସ୍ ସାହେବ୍ ଦୀନକୃଷ୍ଣଙ୍କୁ ମାହାରୀ ପୁତ୍ର ରୂପେ ସୂଚିତ କରିଛନ୍ତି । ତାଙ୍କ ମତରେ - ଦୀନକୃଷ୍ଣଙ୍କ

ମାତା ହେଉଛନ୍ତି- ମାହାରୀ ରତ୍ନକଳା । ଦୀନକୃଷ୍ଣ ଯୌବନରେ ଦୁଃରାରୋଗ୍ୟ କୁଷ୍ଠ ବ୍ୟାଧି ଦ୍ୱାରା ଆକ୍ରାନ୍ତ ହୋଇ ଜଗନ୍ନାଥଙ୍କର କୃପାଭିକ୍ଷୁ ହୋଇ ପୁରୀରେ ଦୀର୍ଘକାଳ ଅବସ୍ଥାନ କରିଥିଲେ । ରାମଦାସଙ୍କ 'ଦାର୍ଢ୍ୟତା ଭକ୍ତି' ଗ୍ରନ୍ଥ ଦୀନକୃଷ୍ଣଙ୍କ ପୁରୀ ଅବସ୍ଥାନ ପ୍ରମାଣକୁ ଦୃଢ଼ୀଭୂତ କରେ । ରାମଦାସ 'ଦାର୍ଢ୍ୟତା ଭକ୍ତି' ରେ କହିଛନ୍ତି - "ପୁରୁଷୋତ୍ତମେ ତା'ର ବାସ । ନାମ ତାହାର କୃଷ୍ଣ ଦାସ" । ଏହ 'କୃଷ୍ଣଦାସ' ବୈଷ୍ଣବ ଧର୍ମ ଗ୍ରହଣକରି ବୈଷ୍ଣବ ଜନୋଚିତ ଦୈନ୍ୟଭାବ ଓ ଭକ୍ତି ଭାବ ନେଇ ନିଜକୁ ଦୀନକୃଷ୍ଣ ଦାସ ରୂପେ ଅଭିହିତ କରିଥିଲେ । ଦୀନକୃଷ୍ଣ ଥିଲେ ଜ୍ଞାନମିଶ୍ରା ଭକ୍ତି ଧର୍ମର ଉପାସକ । ପୁରୀ ଅବସ୍ଥାନ କାଳରେ ସେ ବହୁ ପ୍ରତିକୂଳ ପରିସ୍ଥିତି ଓ ବାଧା-ବିଘ୍ନ ର ସମ୍ମୁଖୀନ ହୋଇଥିଲେ । 'ଦାର୍ଢ୍ୟତା ଭକ୍ତି' ଗ୍ରନ୍ଥର ସୂଚନାରୁ ଜଣାଯାଏ - ପୁରୀ ରାଜା ଦିବ୍ୟସିଂହ ଦେବଙ୍କ ଆକ୍ରୋଶର ଶିକାର ହୋଇ ଦୀନକୃଷ୍ଣ ପୁରୀ ତ୍ୟାଗ କରିବାକୁ ବାଧ୍ୟ ହୋଇଥିଲେ । ରାଜା ଦିବ୍ୟସିଂହ ଦେବ ନିଜ ନାମରେ କିଛି କବିତା ଭଣତି କରିବାକୁ ଦୀନକୃଷ୍ଣଙ୍କୁ ନିର୍ଦ୍ଦେଶ ଦେଇଥିଲେ । ମାତ୍ର- ସାଧିନଚେତା ଦୀନକୃଷ୍ଣ ଏହି ରାଜାଦେଶ ପ୍ରତ୍ୟାଖାନ କରିବାରୁ ରାଜରୋଷର ଶିକାର ହୋଇ କିଛି କାଳ ବନ୍ଦୀଭାବରେ ଜୀବନ ବିତାଇଥିଲେ । କବି ନିଜର ନିର୍ଭୀକ ବ୍ୟକ୍ତିତ୍ୱ, ସତ୍ୟବାକ୍ ଓ ନିର୍ମଳ କବିତ୍ୱ ସଂପର୍କରେ 'ରସକଲ୍ଲୋଳ' ରେ ଯେଉଁ ସୂଚନା ଦେଇଛନ୍ତି, ତାହା ଏହି ଘଟଣାକୁ ଦୃଢ଼ ଭାବରେ ସୂଚିତ ଓ ସମର୍ଥିତ କରୁଅଛି । ମୂର୍ଖ ରାଜାଙ୍କୁ ସ୍ତୁତି କରିବା ଅପେକ୍ଷା କବି ଛାତିରେ କାତି ମାରିବାକୁ ଶ୍ରେୟ ମଣିଛନ୍ତି । ଯେଉଁଥିପାଇଁ କବି 'ରସକଲ୍ଲୋଳ' ରେ ଲେଖିଛନ୍ତି -

"କବି ଯା' କରେ ମୂର୍ଖକୁ ସ୍ତୁତି
ଏଥିରୁ ବଡ ନାହିଁ ବିପତ୍ତି
ଏଥିକି ପ୍ରତି ଛାତିରେ କାତି ମାରିବା ଭଲ ହେ ।"

ଶ୍ରୀକ୍ଷେତ୍ରରୁ ବିତାଡ଼ିତ ହେବାପରେ କବି ଢେଙ୍କାନାଳ ଆଗମନ କରିଥିଲେ । ଢେଙ୍କାନାଳର ବ୍ରାହ୍ମଣୀ ନଦୀ କୂଳସ୍ଥ ଏକଘରକିଆ ଗ୍ରାମ ନିକଟସ୍ଥ କନକେଶ୍ୱର ଶିବ ମନ୍ଦିର ଠାରେ ସେ ଅବସ୍ଥାନ କରିଥିଲେ । ଯେଉଁ ସମୟରେ କି' ଏକଘରକିଆ ହଦଗଡ଼ ରାଜ୍ୟ ଅନ୍ତର୍ଭୁକ୍ତ ଥିଲା । ତତ୍କାଳୀନ ହଦଗଡ଼ର ରାଜା ବଳରାମ ସାମନ୍ତ ସିଂହାର କୃଷ୍ଣଦାସ ଙ୍କୁ ଜମି-ଜମା. ବୃତ୍ତିବାଡ଼ି ଖଞ୍ଜିଦେଇ ତାଙ୍କୁ ନିଜ ରାଜ୍ୟରେ ରହିବା ପାଇଁ ଅନୁମତି ଦେଇଥିଲେ । ଶ୍ରୀକ୍ଷେତ୍ରରେ ବାସ କରିବାର କବିଙ୍କର ଯେଉଁ ଇଚ୍ଛା ଓ ଅଭିଳାଷ ଥିଲା, ତାକୁ କବି ପରିତ୍ୟାଗ କରି ଏହି ଏକଘରକିଆକୁ ନିଜର ସାଧନାର ଭୂମି ରୂପେ ବାଛି

ନେଇଥିଲେ । ଯେଉଁଥିପାଇଁ କବି 'ରସକଲ୍ଲୋଳ' ରେ ଲେଖିଛନ୍ତି -

"କରିଥିଲା ଆଶ ଶ୍ରୀକ୍ଷେତ୍ରେ ନିବାସ
କରିବାକୁ ଦୀନକୃଷ୍ଣ
କି' ଅଭାଗ୍ୟୁ ତହିଁ ନ' ପାରିଲା ରହି
ପ୍ରଭୁ ନୋହିଲେ ସନ୍ତୁଷ୍ଟ ।
କର୍ମେଥିଲା ଯାହା, ଭୋଗ କଲା ତାହା
କେ ତାହା କରିବ ଆନ ।"

ପୁରୀ ଛାଡିବା ପରେ କବି ଢେଙ୍କାନାଳ ମାଟିକୁ ନିଜର ଭାଗ୍ୟ, ଭବିତବ୍ୟ ବୋଲି ଗ୍ରହଣକରି ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ଏକଘରିକିଆ ଠାରେ କନକେଶ୍ୱର ମହାଦେବଙ୍କୁ ଆରାଧନା କରି ସାରସ୍ୱତ ସାଧନାରେ ବ୍ରତୀ ରହିଥିଲେ ।

**ଦୀନକୃଷ୍ଣଙ୍କ ରଚନାବଳୀ :** କବି ଦୀନକୃଷ୍ଣଙ୍କ ରଚିତ କାବ୍ୟକୃତି ଗୁଡିକ ହେଲା- ରସବିନୋଦ, ରସକଲ୍ଲୋଳ, ଗୁଣସାଗର, ଅମୃତସାଗର, ମୁକ୍ତିସାଗର, ପ୍ରସ୍ତାବ ସିନ୍ଧୁ, ରସ ସମୁଦ୍ର, ସଂସାର ବୋଧନ, ଜଗମୋହନ ଛାନ୍ଦ, ଆର୍ତ୍ତତ୍ରାଣ ଚଉତିଶା, ନାମରତ୍ନ ଗୀତା, ନବଘନ ଚଉତିଶା, ନାମ ମାଳିକା, କୁମାର ବୋଧନ, ବୃନ୍ଦାବନ ରାସ, ଜାମ୍ବବତୀ ବିଭା, କଂସ ବିଭା, ନାରକାସୁର ବଧ, ବାଣାସୁର ବଧ, ମହିମା ସାଗର, ଭକ୍ତିସାଗର, ମଧୁମଙ୍ଗଳ, ଜ୍ଞାନଚୂଡାମଣି ପ୍ରଭୃତି ।

**ରସବିନୋଦ:** ଏହା କବିଙ୍କର ଜ୍ଞାନ ଓ ଭକ୍ତିଯୋଗ ସମ୍ବଳିତ ଏକ ତାତ୍ତ୍ୱିକ କାବ୍ୟ ଗ୍ରନ୍ଥ । ଢେଙ୍କାନାଳ ଅବସ୍ଥାନ କାଳରେ କବି ଏହି ଗ୍ରନ୍ଥଟି ରଚନା କରିଥିବାର ଜଣାଯାଏ । ଜ୍ଞାନଯୋଗ ଓ ଭକ୍ତିମାର୍ଗର ମଧୁର ସମନ୍ୱୟ ଏହି କାବ୍ୟରେ ଘଟିଅଛି । କାବ୍ୟାରମ୍ଭରେ କବି ଉତ୍କଳ ଧର୍ମ ଜଗତର ଆରାଧ୍ୟ ଦେବତା ମହାପ୍ରଭୁ ଜଗନ୍ନାଥ ଓ ଗୌଡୀୟ ବୈଷ୍ଣବ ଧର୍ମ ଜଗତର ଆରାଧ୍ୟ ଦେବତା ଭଗବାନ ଶ୍ରୀକୃଷ୍ଣଙ୍କୁ ଏକ-ଅଭିନ୍ନ ରୂପରେ ଚିତ୍ରିତ କରି ତାଙ୍କରି ବନ୍ଦନା କରିଛନ୍ତି । କବିଙ୍କ ଭାଷାରେ -

"ବନ୍ଦଇ ଜୟ ଜଗନ୍ନାଥ
ରାଧିକା ପ୍ରାଣର ସଙ୍ଗାତ
ବିଶେଷ ବ୍ରହ୍ମାଣ୍ଡ ଚାରିଣୀ
ଭକତ ଜନ ଗୁଣମଣି"

ଏହି ଗ୍ରନ୍ଥରେ କବି ଜଗନ୍ନାଥଙ୍କୁ ଅବତାରୀ ପୁରୁଷ ରୂପେ ଚିତ୍ରିତ କରିଛନ୍ତି ।

କେବଳ ଏହି ରସବିନୋଦ ନୁହେଁ ରସକଲ୍ଲୋଳ, ଜଗତମୋହନ ଛାନ୍ଦ ପ୍ରଭୃତିରେ ମଧ ଜଗନ୍ନାଥଙ୍କୁ ଅବତାରୀ ପୁରୁଷ ରୂପେ ସୂଚିତ କରିଛନ୍ତି । 'ରସବିନୋଦ' ରେ ଜ୍ଞାନ ଓ ଭକ୍ତିରସର ବିମଳ ପ୍ରବାହ ସହିତ ନିର୍ମଳ କବିତ୍ୱର ଛିଟା ମଧ ପ୍ରତିଭାତ । 'ରସକଲ୍ଲୋଳ' ରେ 'କବି ହୋଇ କରୁଥିବ ନିର୍ମଳ କବିତ୍ୱ' ପରି ଏହି ରସବିନୋଦରେ କବିଙ୍କର ନିର୍ଭୀକ ବ୍ୟକ୍ତିତ୍ୱ ଓ ନିର୍ମଳ କବିତ୍ୱ ଫୁଟିଉଠିଛି । କବି 'ରସବିନୋଦ' ରେ ଲେଖିଛନ୍ତି -

"କବିଙ୍କ ପଦ ମୁଖ ପ୍ରୀତି । ସବୁ ଦିନରେ ଥାଇ କୀର୍ତ୍ତି
କର୍ଣ୍ଣେ ଶୁଣନ୍ତି ଯେଉଁ ଜନେ । ମୁକତ ହୁଅନ୍ତି ସେମାନେ
କବିତ୍ୱ ପଦ ସୁଖ ପ୍ରୀତି । ଚାରି ଯୁଗରେ ଥାଇ କୀର୍ତ୍ତି ।" (୨)

**ରସକଲ୍ଲୋଳ :** ଏହା ଦୀନକୃଷ୍ଣ କାବ୍ୟିକ ପ୍ରତିଭାର ଏକ ସର୍ବୋତ୍କୃଷ୍ଟ ନିଦର୍ଶନ । ଓଡ଼ିଆ ରୀତି ଯୁଗୀୟ କାବ୍ୟ ପରଂପରାର ଏହା ଏକ ସୁମଧୁର ରସର ଝରଣା ତୁଲ୍ୟ । ଏଥିରେ ବୈଷ୍ଣବୀୟ କାବ୍ୟକଳା, ବିମଳ ଭକ୍ତି ଓ ଶୁଦ୍ଧ ପ୍ରେମ ରସର ଚରମ ରସମୟ ଅଭିବ୍ୟକ୍ତି ଘଟିଅଛି । 'କ' ଆଦ୍ୟ ଅକ୍ଷର ନିୟମରେ ରଚିତ ଏହି କାବ୍ୟରେ ଉତ୍କଳୀୟ ଧର୍ମ-ଜଗତର ପରମ ଆରାଧ ଦେବତା ପ୍ରଭୁ ଜଗନ୍ନାଥ ଓ ବୈଷ୍ଣବ ଧର୍ମ-ଦର୍ଶନର ମୂଳାଧାର ପରଂବ୍ରହ୍ମ ଶ୍ରୀକୃଷ୍ଣଙ୍କର ମହତ୍ତ୍ୱ ଓ ମହିମା ପ୍ରଖ୍ୟାପିତ ହୋଇଛି । ରସକଲ୍ଲୋଳ କାବ୍ୟର ପ୍ରଥମ ଏବଂ ଚତୁର୍ଦ୍ଦଶ ଛାନ୍ଦରେ ଜଗନ୍ନାଥଙ୍କ ମହିମା ବର୍ଣ୍ଣିତ ହୋଇଥିବା ସ୍ଥଳେ ଅନ୍ୟତ୍ର ଶ୍ରୀକୃଷ୍ଣଙ୍କର ଲୀଳା ଓ ମହିମା ର ବର୍ଣ୍ଣନ କରାଯାଇଛି । "ଦୀନକୃଷ୍ଣ ଜଗନ୍ନାଥଙ୍କୁ ଷୋଳ କଳାରେ ପରିପୂର୍ଣ୍ଣ ଅବତାରୀ ପୁରୁଷ ସ୍ୱୟଂ ଭଗବାନ ରୂପରେ ଗ୍ରହଣ କରିଛନ୍ତି ।" (୩) ଯେଉଁଥିପାଇଁ ଦୀନକୃଷ୍ଣ ରସକଲ୍ଲୋଳ ରେ ଲେଖିଛନ୍ତି -

କଛପ, ମତ୍ସ୍ୟାଦି ଅବତାର ଯେତକ
କରିବାକୁ ଜାତ ଜଗନ୍ନାଥ ଜନକ ।

ଅବତାରୀ ପୁରୁଷ ଜଗନ୍ନାଥ ଇଚ୍ଛାକରି ମର୍ତ୍ତ୍ୟରେ କୃଷ୍ଣଙ୍କ ରୂପରେ ଅବତାର ଗ୍ରହଣ କରିଛନ୍ତି । ଯେଉଁଥିପାଇଁ କବି କହିଛନ୍ତି -

"କମଳ ନେତ୍ରୀ କମଳା-ପ୍ରାଣଦାୟକ
କଳା ପର୍ବତରେ ଲୀଳା କରି ଅନେକ ।
କଲେ ଇଚ୍ଛା ମନେ ହେବା କଂସ ଅନ୍ତକ
କରିବା ଉଶ୍ୱାସ ମହୀଭରା ଯେତକ ।" (୪)

ଦୀନକୃଷ୍ଣଙ୍କ ଦୃଷ୍ଟିରେ ଜଗନ୍ନାଥ ହେଉଛନ୍ତି- ସ୍ୱୟଂ ଅବତାରୀ ପୁରୁଷ ଏବଂ କୃଷ୍ଣ ହେଉଛନ୍ତି

ତାଙ୍କର ଅବତାର । ଦୀନକୃଷ୍ଣ କୃଷ୍ଣ ଅବତାର ପ୍ରସଙ୍ଗରେ ଅବତାରଣା କରି କୃଷ୍ଣଙ୍କର ବାଲ୍ୟ, ପୌଗଣ୍ଡ, କିଶୋର ଲୀଳାର ବର୍ଣ୍ଣନ ସହିତ ଗୋପଲୀଳା, ବୃନ୍ଦାବନଲୀଳା ଓ ମଥୁରାଲୀଳାର ରସମୟ, ମନୋଜ୍ଞ ବର୍ଣ୍ଣନା କରିଛନ୍ତି । 'ରସକଲ୍ଲୋଳ' କାବ୍ୟଟି କବି ଦୀନକୃଷ୍ଣ ପ୍ରଭୁ ଜଗନ୍ନାଥଙ୍କ ଆଦେଶରେ ଏବଂ ଉଦ୍ଦେଶ୍ୟରେ ରଚନା କରିଥିବାର ଜଣାଯାଏ । କବି 'ରସକଲ୍ଲୋଳ' ର ତେତିଶ ଛାନ୍ଦ ରେ ଲେଖିଛନ୍ତି -

"କୋଟି ବ୍ରହ୍ମାଣ୍ଡ ପ୍ରଭୁ ଜଗନ୍ନାଥ
କରନ୍ତି ପୂର୍ଣ୍ଣ ଜନ ମନୋରଥ ।
କଲି ମୁଁ ଏହି ଘେନି ଅଭିମତ
କରିବାକୁ ରସକଲ୍ଲୋଳ ଗୀତ ।
କହିଲେ ସେ ଯେଣୁ, କରରେ ମାତ୍ର ଲେଖିଲି ମୁ ତେଣୁ ।"

କବିଙ୍କର ଏହି ସ୍ୱୀକାରୋକ୍ତି ରୁ ସ୍ପଷ୍ଟ ଅନୁମିତ ହୁଏ ଯେ, କବି ଶ୍ରୀକ୍ଷେତ୍ର ଅବସ୍ଥାନ କାଳରେ ରସକଲ୍ଲୋଳ କାବ୍ୟ ରଚନା ର ଅୟମାରମ୍ଭ କରିଛନ୍ତି । ମାତ୍ର ପୁରୀରୁ ବିତାଡ଼ିତ ହେବାଦ୍ୱରା ଏହି ଗ୍ରନ୍ଥ ରଚନା ବାଧାପ୍ରାପ୍ତ ହୋଇଥିଲା । ପରେ ସେ ଢେଙ୍କାନାଳ ସ୍ଥିତ ଏକଘରକିଆ ଠାରେ ଅବସ୍ଥାନ କାଳରେ ଏହି ଗ୍ରନ୍ଥ ପରିପୁରଣ କରିଥିବାର ଅନୁମାନ କରାଯାଇପାରେ । ଏହି ଗ୍ରନ୍ଥ ନିଶ୍ଚିତ ରୂପେ କବିଙ୍କର ପରିପକ୍ୱ ବୟସର ରଚନା । ଜଗମୋହନ ଛାନ୍ଦ ଏବଂ ଆର୍ତ୍ତତ୍ରାଣ ଚଉତିଶା କବିଙ୍କର ଏକ ଏକ ଭକ୍ତିଭାବାପନ୍ନ ରଚନା । ଦୁଃରାରୋଗ୍ୟ କୁଷ୍ଠ ବ୍ୟାଧିରୁ ମୁକ୍ତି ପାଇଁ କବି ପ୍ରତ୍ୟହ ଜଗନ୍ନାଥଙ୍କ ଗରୁଡସ୍ତମ୍ଭ ନିକଟରେ ତାଙ୍କ ଆର୍ତ୍ତତ୍ରାଣ ଚଉତିଶାଟି ଆବୃତ୍ତି କରୁଥିଲେ । ଏହି ଚଉତିଶାଟିରେ ଜଗନ୍ନାଥଙ୍କ ମହିମା ପ୍ରକଟନ ସହିତ ଅଭିମାନ ଅନୁରଞ୍ଜିତ ଭକ୍ତ ହୃଦୟର ମାର୍ମିକ ଅଭିବ୍ୟକ୍ତି ଘଟିଅଛି । କବି ଲେଖିଛନ୍ତି -

"ଖିଳ ବ୍ରହ୍ମାଣ୍ଡୋଦରେ କର୍ମହୀନ ଜନରେ
ଯେଣୁ ମୋ ସମ ଆନ ନାହିଁ
ଖଗ-ତିଳକ କାନ୍ତ ସେ କାରଣୁ ଏମନ୍ତ
ଖେଦ ଆରତେ କହିଲଇଁ ହେ, ମହାପ୍ରଭୁ ।
ଖଣ୍ଡିଲ ନାହିଁ ଯେଣୁ ମୋର
ଖେଦ କରୁଣା ରତ୍ନାକର
ଖିଳବ୍ରହ୍ମାଣ୍ଡଧର, ଖଣ୍ଡି ନାହଁ କାହାର
କେଉଁ ବିପତ୍ତି, ବିଶ୍ୱମ୍ଭର ହେ, ମହାପ୍ରଭୁ ।"

ଏହିସବୁ ରଚନା ଗୁଡିକ ସହିତ କବିଙ୍କର ଅନ୍ୟାନ୍ୟ ରଚନା ଗୁଡିକରେ ମଧ ଜଗନ୍ନାଥ-କୃଷ୍ଣଙ୍କ ମହିମା ବର୍ଣ୍ଣନ ସହିତ ଜ୍ଞାନ ଯୋଗ ଓ ଭକ୍ତିମାର୍ଗର ତାତ୍ତ୍ୱିକ, ଜ୍ଞାନଗର୍ଭକ, ରସମୟ ଅଭିବ୍ୟକ୍ତି ଘଟିଅଛି ।

## ନୃସିଂହ ଭ୍ରମରବର ରାୟ:

ନୃସିଂହ ଭ୍ରମରବର ଥିଲେ ଢେଙ୍କାନାଳର ରାଜା । ସେ ଖ୍ରୀ.ଅ. ୧୬୮୨ ରୁ ଖ୍ରୀ.ଅ. ୧୭୦୮ ପର୍ଯ୍ୟନ୍ତ ଢେଙ୍କାନାଳ ରାଜ ସିଂହାସନ ଆରୋହଣ କରିଥିଲେ । ରାଜା ନୃସିଂହ ଭ୍ରମରବର ଜଣେ ସାହସୀ, ବୀର, ବିଦ୍ୱାନ୍ ଓ ଗୁଣୀ ଶାସକ ଥିଲେ । ଏହା ସହିତ ସେ ଥିଲେ ଜଣେ ଧର୍ମବନ୍ତ ପୁରୁଷ, ମହାନ୍ ଭକ୍ତ ଓ ବଡ କବି । ତାଙ୍କ ରାଜତ୍ୱ କାଳରେ ଅନେକ ଯୁଦ୍ଧ, ବିଗ୍ରହ ସଂଘଟିତ ହୋଇଥିଲା । ମଧୁପୁର ଯୁଦ୍ଧ, ହିନ୍ଦୋଳ ଯୁଦ୍ଧ, ସୁକିନ୍ଦା ଆକ୍ରମଣ ତାଙ୍କ ବୀରତ୍ୱର ନିଦର୍ଶନ । ମଧୁପୁରଗଡ଼ ଲଢ଼େଇରେ ପରାଜିତ ମଧୁପୁର ରାଜାଙ୍କୁ ସେ କ୍ଷମାପ୍ରଦାନ କରି ନିଜର ଉଦାରତା ଓ ମହାନତାର ପରିଚୟ ଦେଇଥିଲେ । ସେହିପରି ହିନ୍ଦୋଳ ର ରାଜା ନରହରିସିଂହ ଏବଂ ସୁକିନ୍ଦାର ରାଜାଙ୍କୁ ଯୁଦ୍ଧରେ ପରାସ୍ତ କରି ସେ ନିଜର ବୀରତ୍ୱ ଓ ସାହସିକତାର ପରାକାଷ୍ଠା ପ୍ରଦର୍ଶନ କରିଯାଇଛନ୍ତି । ତାଙ୍କ ଶାସନ କାଳରେ ଢେଙ୍କାନାଳ ରାଜ୍ୟର ସୀମା ବହୁ ବିସ୍ତୃତି ଲାଭ କରି ପାରିଥିଲା । ତତ୍କାଳୀନ ଢେଙ୍କାନାଳର ସୀମାଥିଲା-ଶହେ କୋଡିଏ କୋଶ ବ୍ୟାପୀ । ରାଜା ନୃସିଂହ ଭ୍ରମରବର ଉଭୟ ଶୈବ ଓ ବିଷ୍ଣୁ ଭକ୍ତ ଥିବାର ଜଣାଯାଏ । ସେ ବିଭିନ୍ନ ମନ୍ଦିର ମାନ ନିର୍ମାଣ କରାଇବା ସହିତ ବହୁ ମଠ ଓ ଶାସନମାନ ପ୍ରତିଷ୍ଠା କରାଇଥିଲେ । ଢେଙ୍କାନାଳ ରାଜନଅର ସନ୍ନିକଟସ୍ଥ ସିଦ୍ଧ ବଳରାମ ମନ୍ଦିର, ଲତାଦେଇପୁର ସ୍ଥିତ ଅନ୍ନକୋଟୀଶ୍ୱର ମହାଦେବ ମନ୍ଦିର ତାଙ୍କ ଦ୍ୱାରା ନିର୍ମିତ ହୋଇଥିଲା । ତାଙ୍କ ଦ୍ୱାରା ଖୋଦାୟିତ "ଯାଉଁଳୀ ପୋଖରୀ" ତାଙ୍କ ନାମାନୁଯାୟୀ 'ନୃସିଂହ ସାଗର' ରୂପେ ବିଦିତ । ଜଣେ ପ୍ରଜାନୁରଞ୍ଜକ, ସୁ-ଶାସକ ହିସାବରେ ସେ ଉଭୟ ରାଜ୍ୟ ଓ ପ୍ରଜାଙ୍କୁ ସୁ-ଶାସନ ଦେଇଥିଲେ । ତାଙ୍କ ବ୍ୟକ୍ତିତ୍ୱ ଓ ପ୍ରତିଭାର ଚରମ ନିଦର୍ଶନ ହେଲା- ତାଙ୍କର ସାହିତ୍ୟାନୁରାଗ ଓ କବିତ୍ୱ । ରାଜ୍ୟଶାସନ ସହିତ ସେ ବିଭିନ୍ନ ପଣ୍ଡିତ ସଭାର ଆୟୋଜନ, ଶାସ୍ତ୍ରଚର୍ଚ୍ଚା ଓ ସାରସ୍ୱତ ସୃଷ୍ଟି କର୍ମରେ ବ୍ରତୀ ରହୁଥିଲେ । ସେ ଅନେକ ଗୁଡିଏ ଚଉତିଶା, ଚଉପଦୀ, ବୋଲି ମାନ ରଚନା କରି ଯାଇଛନ୍ତି । ତାଙ୍କ ରଚିତ 'ଦଶବୋଲି' ଓଡିଆ ବୋଲି ସାହିତ୍ୟର ଏକ ମନୋଜ୍ଞ କଳାକୃତି ।

## କୁଞ୍ଜବିହାରୀ ଭ୍ରମରବର ରାୟ :

ରାଜା ନୃସିଂହ ଭ୍ରମରବରଙ୍କର ସୁଯୋଗ୍ୟ ସନ୍ତାନ ଥିଲେ- କୁଞ୍ଜବିହାରୀ ଭ୍ରମରବର। ପିତାଙ୍କ ମୃତ୍ୟୁ ଅନ୍ତେ ସେ ଖ୍ରୀ.ଅ. ୧୭୦୮ ରୁ ୧୭୨୮ ପର୍ଯ୍ୟନ୍ତ ଦୀର୍ଘ ୨୦ ବର୍ଷ ଧରି ଢେଙ୍କାନାଳ ରାଜ୍ୟ ଶାସନ କରିଥିଲେ। କୁଞ୍ଜବିହାରୀ ପିତାଙ୍କ ପରି ବୀର ଓ ଯୁଦ୍ଧପ୍ରିୟ ନଥିଲେ। ସେ ଥିଲେ ଧର୍ମବନ୍ତ ଓ ଶାନ୍ତିପ୍ରିୟ ଶାସକ। ତାଙ୍କ ରାଜତ୍ୱ କାଳରେ ଟିଗିରିଆ ଏବଂ ଅନଗୁଳ ରାଜାଙ୍କ ସହ ଯୁଦ୍ଧ ସଂଘଟିତ ହୋଇଥିଲା। କୁଞ୍ଜବିହାରୀ ଯୁଦ୍ଧରେ ପରାସ୍ତ ହୋଇ ପରାଜୟର ଗ୍ଲାନିରେ ମର୍ମାହତ ହୋଇଥିଲେ। କୁଞ୍ଜବିହାରୀ ଥିଲେ ପରମ ବିଷ୍ଣୁ ଭକ୍ତ। ସେ ବୃନ୍ଦାବନରୁ ବୃନ୍ଦାବନଚନ୍ଦ୍ର କୃଷ୍ଣଙ୍କର ମୂର୍ତ୍ତି ଆଣି ନିଜ ନଅରରେ ପ୍ରତିଷ୍ଠା କରାଇଥିଲେ। ଶମ୍ଭୁ ଗୋପାଳ ମନ୍ଦିର ନିର୍ମାଣ ତାଙ୍କ ପ୍ରତିଭାର ଅନ୍ୟ ଏକ ନିଦର୍ଶନ। କୁଞ୍ଜବିହାରୀ ଜଣେ ଗୁଣୀ-ସାହିତ୍ୟାନୁରାଗୀ, ପଣ୍ଡିତ ଓ ମହାନ୍ କବି ଥିଲେ। ତାଙ୍କ ରଚିତ 'ପ୍ରେମଶିଳା' କାବ୍ୟ ଓଡିଆ କାବ୍ୟ ଜଗତକୁ ଏକ ଅମୁଲ୍ୟ ଦାନ। ମଧ୍ୟଯୁଗୀୟ ରୀତିକାବ୍ୟର ଆଦର୍ଶ ଓ ଶୈଳୀରେ ଏହି କାବ୍ୟଟି ରଚିତ। ଏହି କାବ୍ୟର ବିଷୟବସ୍ତୁ, ଭାବ ବିନ୍ୟାସ, କଳାପାଟବତା, ବର୍ଣ୍ଣନା ବିଳାସ, ରସ ପରିବେଷଣ ଶୈଳୀ ଓ ଆଳଂକାରୀକ ବିନ୍ୟାସ ବେଶ୍ ମହତ୍ତ୍ୱପୂର୍ଣ୍ଣ। ଢେଙ୍କାନାଳ ସାହିତ୍ୟକୁ ତାଙ୍କର ଅବଦାନ ବାସ୍ତବରେ ଅତୁଳନୀୟ।

## ବ୍ରଜବିହାରୀ ଭ୍ରମରବର ରାୟ:

ରାଜା କୁଞ୍ଜବିହାରୀ ଭ୍ରମରବରଙ୍କର ସୁ-ପୁତ୍ର ଥିଲେ- ବ୍ରଜବିହାରୀ ଭ୍ରମରବର ରାୟ। ସେ ଖ୍ରୀ.ଅ. ୧୭୨୮ ରୁ ଖ୍ରୀ.ଅ. ୧୭୪୧ ପର୍ଯ୍ୟନ୍ତ ଢେଙ୍କାନାଳ ରାଜ ସିଂହାସନ ଆରୋହଣ କରିଥିଲେ। ସେ ମଧ ଜଣେ ଧର୍ମବନ୍ତ, ସୁ-ଶାସକ ଥିଲେ। ବ୍ରଜବିହାରୀ ଅନଗୁଳ ଯୁଦ୍ଧରେ ଅନଗୁଳର ରାଜା ଜଗଦେବଙ୍କୁ ପରାସ୍ତ କରି ନିଜ ବୀରତ୍ୱର ନିଦର୍ଶନ ରଖିଥିଲେ। ବ୍ରଜବିହାରୀ ମଧ ଜଣେ ସାହିତ୍ୟାନୁରାଗୀ, ଗୁଣୀ, ବିଦ୍ୱାନ ପଣ୍ଡିତ କବି ଥିଲେ। ତାଙ୍କ ରାଜସଭାରେ ସେ କବି ଓ ପଣ୍ଡିତ ମାନଙ୍କୁ ସମ୍ମାନିତ କରୁଥିଲେ। ସେ ପ୍ରାୟ ପଣ୍ଡିତ ସଭା ଓ ଶାସ୍ତ୍ରଚର୍ଚ୍ଚା କରାଉଥିଲେ। ବ୍ରଜବିହାରୀ ଙ୍କ ତତ୍କାଳୀନ ପଣ୍ଡିତ ସଭାର ସଭାପଣ୍ଡିତ ଥିଲେ ଜଣେ ପରମ ବିଦ୍ୱାନ୍ - ଗୋବିନ୍ଦ ଦୀକ୍ଷିତ। ଗୋବିନ୍ଦ ଦୀକ୍ଷିତ ଙ୍କ କବିତ୍ୱ ଓ ପାଣ୍ଡିତ୍ୟ ରାଜାଙ୍କୁ ଆକର୍ଷିତ ଓ ବିମୁଗ୍ଧ କରିଥିଲା। ରାଜା ବ୍ରଜବିହାରୀ ବିଭିନ୍ନ କବିତା ରଚନା କରିବା ସହିତ ସଙ୍ଗୀତ ଚର୍ଚ୍ଚା ଓ ସଙ୍ଗୀତ ସାଧନାରେ ମଧ ବ୍ରତୀ ରହିଥିଲେ। ସଙ୍ଗୀତ ଜ୍ଞାନ ଯୋଗୁଁ ତାଙ୍କ କବିତା ଗୁଡିକ ଗୀତିମୟ ହେବା ସହିତ, ସେଥିରେ

ସାଙ୍ଗୀତିକ ମାଧୁର୍ଯ୍ୟ ଫୁଟି ଉଠିଥିଲା । ବ୍ରଜବିହାରୀ ଭ୍ରମରବରଙ୍କର ଶ୍ରେଷ୍ଠ କବିତା କୃତି ହେଲା- 'ବ୍ରଜବିହାରୀ ପଦ୍ୟାବଳୀ' । ଏହା କେତେଗୁଡିଏ କ୍ଷୁଦ୍ର କ୍ଷୁଦ୍ର ଗୀତିମୟ କବିତାର ଏକ ମନୋଜ୍ଞ ସମାହାର । ଏହି କବିତା ଗୁଡିକର ଭାବମାଧୁର୍ଯ୍ୟ ଓ ସାଙ୍ଗୀତିକ ସମ୍ମୋହନ ବେଶ୍ ହୃଦୟସ୍ପର୍ଶୀ । ଏହି କବିତା ଗୁଡିକରେ କବିଙ୍କର ଆଧ୍ୟାତ୍ମିକ ଭକ୍ତି ଭାବନା, ଇଶ୍ୱରପ୍ରାଣତା ଓ କବି ହୃଦୟର ଭାବାବେଗ ଅତି ସାରଲ୍ୟ, ସାବଲୀଳ ଭାବରେ ଫୁଟି ଉଠିଛି । ଢେଙ୍କାନାଳ ର ସାରସ୍ୱତ ପରଂପରା ଓ ବାଣୀ ଭଣ୍ଡାରକୁ ତାଙ୍କର ଅବଦାନ ବାସ୍ତବରେ ଅନନ୍ୟ ।

## ବ୍ରଜନାଥ ବଡଜେନା (ଖ୍ରୀ.ଅ. ୧୭୩୦-୧୮୦୦):

କବି ବ୍ରଜନାଥ ବଡ଼ଜେନା ଢେଙ୍କାନାଳ ମାଟିରେ ଜଣେ ସୁଯୋଗ୍ୟ ସନ୍ତାନ, ଜଣେ କାଳଜୟୀ ସ୍ରଷ୍ଟା । ଓଡ଼ିଆ ରୀତି ଯୁଗୀୟ କାବ୍ୟ ପରଂପରା ଓ ସାହିତ୍ୟ ର ସେ ଥିଲେ ସାୟାହ୍ନର କବି । ସେ ଏକାଧାରରେ ଥିଲେ ଜଣେ ପ୍ରଚଣ୍ଡ ପ୍ରତିଭାଧର ବିଦ୍ୱାନ କବି, ବୀଚକ୍ଷଣ କଥାକାର, ଧୂରୀଣ ଶିଳ୍ପୀ ଓ ଅକୁତୋଭୟ ସତ୍ୟବାକ୍, ନିର୍ଭୀକ କାବ୍ୟ ପୁରୁଷ । ବ୍ରଜନାଥଙ୍କର ଜନ୍ମ ଢେଙ୍କାନାଳର ମୁକ୍ତାଦେଇପୁର ଶାସନର ଏକ ସମ୍ଭ୍ରାନ୍ତ କରଣ ପରିବାରରେ । କବି ତାଙ୍କ 'ଗୋପ ବିଳାପ' କାବ୍ୟରେ ନିଜର ଜନ୍ମସ୍ଥାନ ସଂପର୍କରେ ସ୍ପଷ୍ଟ ସୂଚନା ଦେଇ ଲେଖିଛନ୍ତି -

"ମୋର ଘର ଢେଙ୍କାନାଳ ନଗରେ
ମୁକ୍ତାଦେଇଙ୍କ ଶାସନ ଆଗରେ ।
ପିତାଙ୍କର ନାମ ବାଲୁଙ୍କେଶ୍ୱର
ପଟ୍ଟନାୟକ କଲେ ନରେଶ୍ୱର ।
ଶିଷ୍ଟକରଣ ଯେ, ଆମ୍ଭେ ଜାତିରେ ।" (୪)

ଏଥିରୁ ଜଣାଯାଏ- ବ୍ରଜନାଥଙ୍କ ଜନ୍ମ ଢେଙ୍କାନାଳର ମୁକ୍ତାଦେଇପୁର ଶାସନରେ ଓ ତାଙ୍କ ପିତାଙ୍କ ନାମ - ବାଲୁଙ୍କେଶ୍ୱର ପଟ୍ଟନାୟକ । ସେ ରଘୁଅରକ୍ଷିତ ବଂଶ ସମ୍ଭୂତ ଜଣେ ସମ୍ଭ୍ରାନ୍ତ କରଣ ବୋଲି ନିଜେ ସୂଚିତ କରିଛନ୍ତି । କବିଙ୍କ ଭାଷାରେ-

ବର୍ଣ୍ଣରେ ଅଟୁ ଆମ୍ଭେ ଶିଷ୍ଟ କରଣ
ରଘୁ ଅରକ୍ଷିତ ବଂଶେ ନିପୁଣ ।

ବ୍ରଜନାଥ ନିଜର ବଂଶଗତ ସାଙ୍ଗିଆ ପଟ୍ଟନାୟକ ବଦଳରେ ରାଜଦତ୍ତ ଉପାଧି 'ବଡଜେନା' ବ୍ୟବହାର କରି ନିଜକୁ ବ୍ରଜନାଥ ବଡଜେନା ରୂପେ ପରିଚିତ

କରାଇଥିଲେ । ସେ ଯୋରନ୍ଦା ନିକଟସ୍ଥ କାବରା ଗ୍ରାମରେ ଏକଦା ଦୀର୍ଘ କାଳଧରି ଅବସ୍ଥାନ କରିଥିଲେ । ବ୍ରଜନାଥ ଥିଲେ ଜଣେ ବହୁଭାଷାବିତ୍ ବିଦ୍ୱାନ ପଣ୍ଡିତ । ଓଡ଼ିଆ ଭାଷା ସମେତ ସଂସ୍କୃତ, ପ୍ରାକୃତ, ହିନ୍ଦୀ, ବଙ୍ଗଳା, ତେଲୁଗୁ ଆଦି ଛ'ଅଟି ଭାଷାରେ ତାଙ୍କର ଗଭୀର ଦକ୍ଷତା ଥିଲା । କବି ନିଜର ବହୁଭାଷାବିଦ୍‌ତା ଓ ମହନୀୟ ରଚନାଶୈଳୀ ସଂପର୍କରେ ସ୍ୱ-ରଚିତ 'ରାଜସଭା' ରେ ସ୍ପଷ୍ଟ ସୂଚନା ପ୍ରଦାନ କରି ଲେଖିଛନ୍ତି -

"ବର୍ତ୍ତମାନ ଯେତେ ଗୁଣ କରିଛି ଗୋସାଇଁ ଶୁଣ
ସଂସ୍କୃତ, ପ୍ରାକୃତ, ହିନ୍ଦୁସ୍ଥାନୀ-ବଙ୍ଗଳା ।
ତେଲେଙ୍ଗା ଭାଷାରୁ କିଛି, ଏ ରୂପେ ଗୀତ କରିଛି
ଚଉପଦୀ, ଚଉତିଶା, ବିବିଧ ଲୀଳା
ଛାନ୍ଦ, ବୋଲି, ପୋଇ, ପ୍ରବନ୍ଧ
ଦଣ୍ଡକ, ଚୂର୍ଣ୍ଣକ ଆଦି ସିଂକାର ବନ୍ଧ ।"(୬)

ବ୍ରଜନାଥ ଥିଲେ ଜଣେ ସାମାଜଚେତନଶୀଳ ସ୍ରଷ୍ଟା । ସାମାଜିକ ଦାୟିତ୍ୱ ବୋଧ ଓ ସାମାଜିକ ଅଙ୍ଗୀକାରବଦ୍ଧତା ପାଇଁ ତାଙ୍କ ସାହିତ୍ୟ ଯୁଗ ଯୁଗ ଧରି ଅଦ୍ୟାବଧି ଆଦୃତ ଓ ସମ୍ମାନିତ ହୋଇଆସିଛି । ବ୍ରଜନାଥଙ୍କ କବିତ୍ୱ ପ୍ରତିଭାର ମହକ ବଣମଲ୍ଲୀର ସୁରଭିପରି ଚଉଦିଗକୁ ସୁବାସିତ କରିଥିଲା । ଏହି ସୁରଭିତ କବି ପ୍ରତିଭାରେ ଆକୃଷ୍ଟ ହୋଇ ପ୍ରଥମେ କେନ୍ଦୁଝର ର ତତ୍କାଳୀନ ରାଜା ବଳଭଦ୍ର ଭଞ୍ଜ ବ୍ରଜନାଥଙ୍କ ପ୍ରତି ଶ୍ରଦ୍ଧା, ସମ୍ମାନ, ପ୍ରୋତ୍ସାହନ ଓ ସାହାଯ୍ୟର ହାତ ବଢ଼ାଇ ଥିଲେ । କେନ୍ଦୁଝର ରାଜାଙ୍କର ରାଜଅନୁଗ୍ରହ ଲାଭକରି ବ୍ରଜନାଥ ଦୀର୍ଘକାଳ କେନ୍ଦୁଝର ରାଜ୍ୟରେ ଅବସ୍ଥାନ କରିଥିଲେ । ସେଠାରେ ଅବସ୍ଥାନ କାଳରେ ସେ 'ଅମ୍ବିକାବିଳାସ' କାବ୍ୟ ରଚନା କରିଥିଲେ । ଏହି କାବ୍ୟର ଭଣିତିରେ କେନ୍ଦୁଝରର ରାଜା ବଳଭଦ୍ର ଭଞ୍ଜଙ୍କର ନାମ ଉଲ୍ଲେଖ ରହିଅଛି । ପରବର୍ତ୍ତୀ ସମୟରେ ଢେଙ୍କାନାଳର ତତ୍କାଳୀନ ରାଜା ତ୍ରିଲୋଚନ ମହୀନ୍ଦ୍ର ବାହାଦୁର ବ୍ରଜନାଥଙ୍କ କବିତ୍ୱ ପ୍ରତିଭାକୁ ଉପେକ୍ଷା କରି ନ ପାରି ତାଙ୍କୁ ନିଜ ରାଜ ଦରବାରରେ ସମ୍ମାନିତ ଓ ସଭାପଣ୍ଡିତ ରୂପେ ସ୍ଥାନିତ କରିଥିଲେ । ରାଜକୀୟ ପୃଷ୍ଠପୋଷକତା ଓ ପ୍ରୋତ୍ସାହନ ପାଇବାଦ୍ୱାରା କବି ଅଧିକରୁ ଅଧିକ କାବ୍ୟ-କବିତା ରଚନାରେ ମନୋନିବେଶ କରିଥିଲେ ।

**ସାହିତ୍ୟ କୃତି :** କବି ବ୍ରଜନାଥଙ୍କ ସାରସ୍ୱତ ପ୍ରତିଭାର ଆଦ୍ୟ ସ୍ଫୁରଣ ଘଟିଥିଲା- 'ଚତୁର ବିନୋଦ' କଥା ଗ୍ରନ୍ଥ ରଚନାରୁ । ଓଡିଆ କଥା ସାହିତ୍ୟ ରଚନା ପରଂପରା ର ଏହା ଏକ ପଥୀକୃତ ଉଦ୍ୟମ, ଏକ ପ୍ରଥମ ଶଙ୍ଖ । ଏହି କଥା ଗ୍ରନ୍ଥଟିରେ ହାସବିନୋଦ,

ରସବିନୋଦ, ନୀତିବିନୋଦ ଓ ପ୍ରୀତିବିନୋଦ - ଏହିପରି ଚାରିଗୋଟି ଶିକ୍ଷଣୀୟ, ମନୋଜ୍ଞ ଗଳ୍ପର ସମାହାର ଘଟିଛି। ବିଷୟ ବିନ୍ୟାସ, ରଚନା ଶୈଳୀ, କଳାପାରିପାଟ୍ୟତା ଓ ଅଙ୍ଗସୌଷ୍ଠବ ଦୃଷ୍ଟିରୁ ଏହି ଗ୍ରନ୍ଥ ଏକ ଅନୁପମ କଳା ସୃଷ୍ଟି। ସଂସ୍କୃତ ଗଦ୍ୟ ସାହିତ୍ୟ ଯଥା- ପଞ୍ଚ ତନ୍ତ୍ର, ହିତୋପଦେଶ, ଶୁକସପ୍ତତି, ବେତାଳ ପଞ୍ଚ ବିଂଶତି, କଥା ସରିତ ସାଗର, ଦ୍ୱାତ୍ରିଂଶ ପୁତ୍ତଳିକା ପ୍ରଭୃତି ରଚନାଧାରର ଆଦର୍ଶରେ ବ୍ରଜନାଥ ଓଡିଆ ଭାଷାରେ ଗଦ୍ୟ ରଚନା ପରଂପରାର ଅୟଆରମ୍ଭ କରିଛନ୍ତି। ସଂସ୍କୃତ ଶୈଳୀ ଅନୁରୂପ ଗ୍ରନ୍ଥାରମ୍ଭରେ କଥାକାର 'ଆଶୀନମସ୍କ୍ରିୟା' ରୀତିରେ ଗଣେଷ, ଶ୍ରୀକୃଷ୍ଣ ଓ ମହାଦେବଙ୍କର ବନ୍ଦନା କରି ତା'ପରେ ସଂସ୍କୃତ କଥାନକ ଶୈଳୀରେ ନାଟକୀୟ ରୀତିରେ ଏହି ଗଳ୍ପ ଚତୁଷ୍ଟୟ ର ପରିବେଷଣ କରିଛନ୍ତି। ମଧୁର, ଚଟୁଳ ହାସ୍ୟରସ ଓ ଶାଣିତ ବ୍ୟଙ୍ଗ ମାଧ୍ୟମରେ ତତ୍କାଳୀନ ସାମାଜିକ, ରାଜନୈତିକ ଜୀବନ ଚିତ୍ର, ରାଜ୍ୟର ଶାସନ ବ୍ୟବସ୍ଥା ସହ ରାଜକୀୟ ଅହଂକାର, ଶୋଷଣ, କଷଣ, ଅନ୍ୟାୟ, ଅତ୍ୟାଚାର ର ଚିତ୍ର, ରାଜା-ରାଣୀ, ରାଜକୁମାର-ରାଜକୁମାରୀ ମାନଙ୍କର ପ୍ରେମ ଓ ବିଳାସମୟ ଶୃଙ୍ଗାର ଚିତ୍ର ସର୍ବୋପରି ତତ୍କାଳୀନ ସମାଜରେ ବ୍ରାହ୍ମଣ, ଜ୍ୟୋତିଷ, ବୈଦ୍ୟ, ନାପିତ ଆଦି ବିଭିନ୍ନ ବର୍ଗର ଜୀବନ ଶୈଳୀର ସତ୍ୟଶୀଳ, ବାସ୍ତବ ରୂପଚିତ୍ର ପ୍ରକଟନ କରିଛନ୍ତି। ଏହି କଥା ଗ୍ରନ୍ଥ ରଚନା ସହିତ କବି ବ୍ରଜନାଥ ରୀତି ଯୁଗୀୟ କାବ୍ୟ ପରଂପରାର ଆଦର୍ଶରେ ଅନେକ ଗୁଡିଏ ଛନ୍ଦୋବଦ୍ଧ, ଅଳଂକାରିକ କାବ୍ୟ ରଚନା କରିଛନ୍ତି। ବ୍ରଜନାଥଙ୍କ ରଚନା ସମୟ ଥିଲା- ଓଡିଆ ରୀତି ଯୁଗୀୟ ଅଳଂକାରିକ, ରସମୟ କାବ୍ୟ ରଚନା ପରଂପରାର ସମୟ। ମହାକବି ଉପେନ୍ଦ୍ର, ଦୀନକୃଷ୍ଣ, ଅଭିମନ୍ୟୁ ସାମନ୍ତ ସିଂହାର ପ୍ରମୁଖଙ୍କର ସମୃଦ୍ଧ, ଛନ୍ଦୋବଦ୍ଧ, ଆଳଂକାରୀକ କାବ୍ୟାଦର୍ଶକୁ ଅନୁକରଣ କରି ଉପେନ୍ଦ୍ର ସାହିତ୍ୟସମ ନିଜ କାବ୍ୟ ସାହିତ୍ୟକୁ ସମକକ୍ଷ ଓ ପ୍ରତିସ୍ପର୍ଦ୍ଧୀ କରାଇବାର ଲକ୍ଷ୍ୟ ନେଇ କବି ବ୍ରଜନାଥ କାବ୍ୟକଳା ଓ କାବ୍ୟର ହର୍ମ୍ୟ ନିର୍ମାଣ ରେ ବ୍ରତୀ ରହିଥିଲେ। ତାଙ୍କ ରଚିତ ମହାର୍ଘ କାବ୍ୟାକୃତି ଗୁଡିକ ହେଲା - ବୀଚକ୍ଷଣା, କେଳକଳାନିଧି, ଦଶପୋଇ, ବିଦେଶ ଅନୁଚିନ୍ତା, ଗୋପୀବିଳାପ, ଶ୍ୟାମରାସୋତ୍ସବ, ଅମ୍ବିକାବିଳାସ, ସମରତରଙ୍ଗ, ଗୁଣ୍ଡିଚାବିଜେ, ମନୋଦୂତ।

**ବୀଚକ୍ଷଣା :** ଏହା ଏକ ପ୍ରଣୟ ଗର୍ଭିତ ଅସମ୍ପୂର୍ଣ୍ଣ କାଳ୍ପନିକ କାବ୍ୟ। ଏହି ରଚନାଟି କବିଙ୍କର ପ୍ରାରମ୍ଭିକ କାବ୍ୟକୃତି। ଦଶ ଗୋଟି ଛାନ୍ଦ ବିଶିଷ୍ଟ ଏହି କାବ୍ୟର ନଅ ଗୋଟି ଛାନ୍ଦ ଓ ଦଶମ ଛାନ୍ଦର କିୟଦଂଶ ଅଦ୍ୟାବଧି ମିଳିଅଛି। ଏହି ରଚନାଟି ଭଞ୍ଜୀୟ କାବ୍ୟ ଶୈଳୀରେ 'ବ' ଆଦ୍ୟ ଅକ୍ଷର ନିୟମ ଅନୁକ୍ରମରେ ରଚିତ। କାବ୍ୟାରମ୍ଭରେ କବି ଦେବୀ

ବିମଳାଙ୍କ ସ୍ତୁତି ଗାନ କରିଛନ୍ତି । ରାଜକୁମାର ବ୍ରଜମୋହନ ଓ ରାଜକୁମାରୀ ବୀଚକ୍ଷଣାର ପ୍ରେମ, ପ୍ରଣୟ, ପରିଣୟ ଓ ଶୃଙ୍ଗାର ବର୍ଣ୍ଣନା ହିଁ ଏହି କାବ୍ୟର ମୁଖ୍ୟ ଉପଜୀବ୍ୟ । ଏହି କାବ୍ୟରେ କବିଙ୍କର କଳ୍ପନା ବିଳାସ ଉତ୍ତୁଙ୍ଗତାର ସୀମାସ୍ପର୍ଶ କରିଛି । ପ୍ରେମ ଓ ଶୃଙ୍ଗାର ରସର ଉତ୍‌କୂଳ ପ୍ଲାବନରେ ସମଗ୍ର କାବ୍ୟଟି ରସମୟ ଓ ମହିମାମଣ୍ଡିତ ହୋଇଉଠିଛି । କବି ନାୟକ-ନାୟିକାଙ୍କର ମିଳନକାଳୀନ ଶୃଙ୍ଗାର ରସଚର୍ଯ୍ୟାର କମନୀୟ, ରସମୟ ବର୍ଣ୍ଣନା କରିଛନ୍ତି । କବିଙ୍କ ଭାଷାରେ-

"ବେନିକର୍ଣ୍ଣେ ଟାଳି ରସନା, ବାସକଲା ଅନ୍ତର
ବେଗେ ଭାଙ୍ଗିଦେଲା ଛଇଳା ଲାଜ-ଭୟ, ପ୍ରକର ।
ବେନିଜନଙ୍କର ମାନସ ରତେ ହେଲା ହରଷ
ବେଦାଭିଧାନରେ ନଥିବ ତେତେ ଶୃଙ୍ଗାର ରସ ।"

ବାସ୍ତବରେ ଏହି କାବ୍ୟଟି ଓଡ଼ିଆ ରୀତିଯୁଗୀୟ ଶୃଙ୍ଗାର କାବ୍ୟ ଶୈଳୀର ଏକ ଶ୍ରେଷ୍ଠ, ଗୌରବାବହ ନିଶାଣ ।

**କେଳିକଳାନିଧି :** ଏହା ମଧ୍ୟ ଏକ ପ୍ରଣୟରସ ଗର୍ଭିତ କାଳ୍ପନିକ କାବ୍ୟ । ଏହି କାବ୍ୟଟି ଷୋଳଗୋଟି ଛାନ୍ଦ ବିଶିଷ୍ଟ । ଉପେନ୍ଦ୍ରଙ୍କ 'ପ୍ରେମ ସୁଧାନିଧି' କାବ୍ୟ ଆଦର୍ଶରେ ଏହି କାବ୍ୟଟି ବିରଚିତ । କବି ନିଜକୁ ଉପେନ୍ଦ୍ରଙ୍କ ସମକକ୍ଷ ଓ ପ୍ରତିସ୍ପର୍ଦ୍ଧୀ କରାଇବାର ଲକ୍ଷ୍ୟନେଇ ସ୍ୱଳ୍ପକାଳ ମଧ୍ୟରେ ଏହି କାବ୍ୟଟି ରଚନା କରିଥିବାର ଜଣାଯାଏ । ଏହିକାବ୍ୟର ପ୍ରତିଟି ଛାନ୍ଦରେ ଉପମା, ରୂପକ, ଯମକ, ଶୃଙ୍ଖଳା, ତ୍ରି-ଭଙ୍ଗ, ଲୋମ-ବିଲୋମ ଆଦି ବିଭିନ୍ନ ଅଳଂକାରର ପରୀକ୍ଷା ଓ ପ୍ରୟୋଗ କବି କରିଛନ୍ତି । ଏହା ସହିତ ମଙ୍ଗଳ ଗୁଜରୀ, ଆଷାଢ ଶୁକ୍ଳ, କୌଶିକ, ଚକ୍ରକେଳି, ଚୋଖି, ବଙ୍ଗଳାଶ୍ରୀ, କାଳୀ, ଚିନ୍ତାକେଦାର, କାନଡା, ଶଙ୍କରାଭରଣ, କେଦାର କମୋଦୀ ପ୍ରଭୃତି 'ରାଗ' ର ମଞ୍ଜୁଳ ପ୍ରୟୋଗ କବି କରିଛନ୍ତି ।

କାବ୍ୟାରମ୍ଭରେ କବି ବୃନ୍ଦାବନଚନ୍ଦ୍ର ଶ୍ରୀକୃଷ୍ଣଙ୍କର ମହିମା ବର୍ଣ୍ଣନା କରି କାବ୍ୟ ବିଷୟବସ୍ତୁର ଅୟମାରମ୍ଭ କରିଛନ୍ତି । ଏଥିରେ ନାୟକ-ନାୟିକାଙ୍କର ପ୍ରେମ, ପ୍ରଣୟ, ପରିଣୟ, ବିଚ୍ଛେଦ, ବିରହ ଓ ପୁନର୍ମିଳନ ଚିତ୍ର ବର୍ଣ୍ଣନାରେ ଶୃଙ୍ଗାର ରସର ଅଫୁରନ୍ତ ପ୍ରବାହ ଛୁଟାଇଛନ୍ତି । ଶୃଙ୍ଗାରଚର୍ଯ୍ୟା ସହିତ କବି ନାୟିକାର ରୂପ ଓ ସୌନ୍ଦର୍ଯ୍ୟ ବର୍ଣ୍ଣନାରେ ମଧ କାବ୍ୟିକ ଉତ୍କର୍ଷର ପରାକାଷ୍ଠା ପ୍ରଦର୍ଶନ କରିପାରିଛନ୍ତି । ନାୟିକାର ଚଳଚଞ୍ଚଳ ନେତ୍ର ଯୁଗଳକୁ ପଦ୍ମ ପୁଷ୍ପ ଉପରେ ମକରନ୍ଦ ପାନରେ ଉନ୍ମତ୍ତ କଳାଭ୍ରମର ସଙ୍ଗେ

ତୁଳନା କରିଛନ୍ତି । କବିଙ୍କ ଭାଷାରେ-

ବଦନ କମଳ ପର ଭ୍ରମର, ଦ୍ୱନ୍ଦ ମରନ୍ଦ ରସ ମତ୍ତଭର
ଅମୃତକର ଅଙ୍କଗତ ମୃଗ, କଚ ତମ ଦରଶନ ତରଙ୍ଗ ।(୭)

ଏହା ସହିତ କବି ନାୟକ-ନାୟିକାଙ୍କ ମଧୁଶଯ୍ୟାର ରତିକ୍ରୀଡ଼ାର ରସମୟ ବର୍ଣ୍ଣନା ମଧ କରିଛନ୍ତି । କବିଙ୍କ ଭାଷାରେ-

"ଗୁପ୍ତ ସ୍ଥାନକୁ ଚଳନ୍ତେ ବଳାଇ
ନାହିଁ ନାହିଁ ଶବଦ ପ୍ରକଟଇ ।
ପଡେ କନ୍ଦର୍ପ ରାଜା-ଗଡେ ହୁରି
ଉରୁ-ଦୁଆରୀ ଯାଉଛନ୍ତି ଥରି ।
ନୀବୀ ନିବିଡ଼ କପାଟ ପ୍ରୁଢ଼ିଛି
କର କୋଲପ ହିଁ ତହିଁ ଜଡ଼ିଛି ।
*　　*　　*　　*
ଭାଜିଗଲା କୋଲପ ଗଣ୍ଠିକୁଟ
ଅନାୟାସେ ଫିଟିଲା କପାଟ ।
ଅତି ଅଜୟ ଗଡ଼ ଜୟ ହେଲା
ଏଣୁ ନୂପୁର ବାଜଣା ବାଜିଲା ।"(୮)

ଏହିସବୁ ରସମୟ, ଅଳଂକାରିକ ବର୍ଣ୍ଣନା, ଭାବମାଧୁରୀ, ରାଗ-ରାଗିଣୀ, ଛନ୍ଦ ଯୋଜନା ଓ ଅପୂର୍ବ କଳା-କୌଶଳ ଦୃଷ୍ଟିରୁ ଦେଖିଲେ 'କେଳିକଳାନିଧି' ଯେ ଏକ ସର୍ବୋତ୍କୃଷ୍ଟ କାବ୍ୟ ଏହାକୁ ଅସ୍ୱୀକାର କରାଯାଇ ନପାରେ ।

**ବିଦେଶ ଅନୁଚିନ୍ତା :** ଏହା ଛପନ ଗୋଟି ପଦ ବିଶିଷ୍ଟ ଏକ କ୍ଷୁଦ୍ର କାବ୍ୟକୃତି । ଏହାକୁ 'ଛପନ ପଦିଆ' ମଧ କୁହାଯାଏ । କାଳିଦାସଙ୍କ ମେଘଦୂତ ରଚନା ପରଂପରା ଅନୁସରଣରେ ଏହି କାଳ୍ପନିକ କାବ୍ୟଟି ରଚିତ ହୋଇଥିବାର ଅନୁମିତ ହୁଏ । ପ୍ରବାସରେଥିବା ନାୟକର ନାୟିକା ବିଚ୍ଛେଦ ଜନିତ ଯେଉଁ ବିରହ ଅନୁଚିନ୍ତା, ତାହା ଏଥିରେ ପ୍ରକଟିତ । ବିରହ ଦଶାରେ ପୀଡ଼ିତ ନାୟକ-ନାୟିକାର ପ୍ରେମ, ରୂପ, ଗୁଣାଦିକୁ ସ୍ମରଣକରି ବିରହ ଅନୁଚିନ୍ତାରେ ଘାରି ହୋଇଛି । କବିଙ୍କ ଭାଷାରେ-

"ଡମରୁ ଜିଣି ତୋ କଟୀ ସରୁଆ
ଚାରୁ ଉରଜ କନକ ଫରୁଆ

ସରୁ ଘର ଯୋଗେ ଆଡମ୍ବର
ହେମଗିରି ଯଥା ହେମେ ସୁନ୍ଦର ।
ମୋ ନୟନକାରା
ମାର ରଣଜୟ ତୋରା ନାଗରା ।" (୯)

ଏହିପରି ଅନିନ୍ଦ୍ୟ ସୁନ୍ଦରୀ, ପରମରସମୟୀ ପ୍ରିୟା ପାଖକୁ ଯାଇଁ କେବେ ସେ ରତି ସୁଖଲାଭ କରିବ- ବିଦେଶରେ ଏହି ଅନୁଚିନ୍ତାରେ ନାୟକ ଘାରି ହୋଇଛି । କବିଙ୍କ ଭାଷାରେ-

"କରିବେ କେଉଁଦିନ ଉମାଦେବୀ
କରୀବର ଗତି ପାଶକୁ ଯିବି
ଧରି ବସିବି କୋଳପରେ ତାକୁ
ଗିରିବର ସ୍ତନେ ଯୋଡି ଉରକୁ
ହରିବ ଏ ରୀତି
ଜୁରିବି ମାର ଭଣ୍ଡାର ସମ୍ପତ୍ତି । "(୧୦)

ନାୟକ-ନାୟିକାଙ୍କର ବିପ୍ରଲମ୍ଭ ଶୃଙ୍ଗାର ବର୍ଣ୍ଣନାରେ ଏହି କାବ୍ୟଟି ବେଶ୍ ରସାଳ ଓ ଉର୍ଜ୍ଜସ୍ୱଳ ହୋଇପାରିଛି ।

**ଦଶପୋଇ :** ଏହା ଏକ ପୌରାଣିକ ଓ ବୈଷ୍ଣବୀୟ କାବ୍ୟକୃତି । ଦଶଗୋଟି ପୋଇ ବା ଗୀତିଗୁଚ୍ଛର ର ସମାହାରରେ ଏହା ସମୃଦ୍ଧ । ଏହାର ପ୍ରତ୍ୟେକଟି ଗୀତ ଦଶପାଦ ବିଶିଷ୍ଟ । ବୈଷ୍ଣବୀୟ ଲୀଳା ଓ ତତ୍ତ୍ୱ କୁ ଏଥିରେ କାବ୍ୟରୂପ ଦିଆଯାଇଛି । ବୃନ୍ଦାବନରେ ରାଧା-କୃଷ୍ଣଙ୍କର ମଧୁର ମିଳନ ଓ ଚାରୁ ବସନ୍ତ ରାସର ବର୍ଣ୍ଣନ ଏ କାବ୍ୟର ମୁଖ୍ୟ ପ୍ରତିପାଦ୍ୟ ବିଷୟବସ୍ତୁ । ଯମୁନାରୁ ଜଳ ଘେନି ଫେରିବା ବାଟରେ ରାଧା କେଳିକଦମ୍ବ ମୂଳରେ କୃଷ୍ଣଙ୍କର ଅପରୂପ ଶୋଭାକାନ୍ତି ଦେଖି ବିମୁଗ୍ଧ-ଚକିତ ହୋଇ ପଡିଛନ୍ତି । କୃଷ୍ଣ ପ୍ରେମରେ ତାଙ୍କ ହୃଦୟ ତଲ୍ଲୀନ ହୋଇଯାଇଛି । କୃଷ୍ଣ ମଧ ରାଧାଙ୍କ ପ୍ରେମ ପାଇବାପାଇଁ ବିଚଳିତ ହୋଇଉଠିଛନ୍ତି । ଯେଉଁଥିପାଇଁ କୃଷ୍ଣ ରାଧାଙ୍କ ପାଖକୁ ଦୂତୀକୁ ପ୍ରେରଣ କରିଛନ୍ତି । ଦୂତୀ ରାଧାଙ୍କ ନିକଟରେ କୃଷ୍ଣଙ୍କର ମନୋଭାବ ଓ ମିଳନ ଅଭୀପ୍ସା କୁ ପ୍ରକଟିତ କରିଛି । ଦୂତୀ ରାଧାଙ୍କୁ କହିଛି- ତୁମ ଦୁହିଁଙ୍କର ମିଳନରେ ଶ୍ୟାମ-ଗୌର ତନୁର ଅପୂର୍ବ ମହାମିଳନ ଦୃଶ୍ୟ ପ୍ରକଟିତ ହେବ । କବିଙ୍କ ଭାଷାରେ-

"ଘନ୍ କୋଳକୁ ବିଜୁଳି ଦିଶେ ସିନା ଝଳି
କମଳ କୋଳକୁ ଶୋଭା ଅଳି,

ତା' ତୋ କଳ-ଗୋରା ଦେହ ମିଶିଲେ କି' କହ
ଦିଶିବ ଉପମା ଭଳି ଭଳି ।" (୧୧)

ଦୂତୀର ଏଭଳି ଚାଟୁବାକ୍ୟ ଶୁଣି ରାଧାଙ୍କ ମନ ଉଚ୍ଚାଟ ହେଲେବି, କୁଳ ଲଜ୍ଜା ଓ ସାମାଜିକ ବନ୍ଧନ ତାଙ୍କ ପାଦ ବାନ୍ଧି ଦେଇଛି । ମାତ୍ର- କୃଷ୍ଣ ଯେତେବେଳେ ତାଙ୍କ ମୋହନ ବଂଶୀରେ ରାଗ କାମୋଦୀର ରାଗିଣୀ ତୋଳିଛନ୍ତି, ରାଧା ଆଉ ସ୍ଥିର ହୋଇ ରହି ପାରିନାହାନ୍ତି । କୃଷ୍ଣ ପ୍ରେମ ବିହ୍ୱଳା ରାଧା ବୃନ୍ଦାବନ ଗମନ କରିଛି । କୃଷ୍ଣଙ୍କ ଚାଟୁ ବାକ୍ୟରେ ରାଧା ବଶୀଭୂତ ହୋଇ ନିଜକୁ କୃଷ୍ଣଙ୍କ ପାଖରେ ସମର୍ପଣ କରି ଦେଇଛନ୍ତି । କବି ଏଠାରେ ରାଧା-କୃଷ୍ଣଙ୍କର ମହାମିଳନ ଦୃଶ୍ୟକୁ ଉପସ୍ଥାପନ କରିଛନ୍ତି । କବିଙ୍କ ଭାଷାରେ -

"ଶ୍ୟାମ କୋଳେ ହେମ ଗୋରୀ
ଦିଶେ କି' ଚାତୁରୀ
ତା' ସମ ସୁଷମ ନ' ଦିଶିଲା,
ମରକତ ପତ୍ରେ କାମ, ରମ୍ୟ ହେବ କମ
ପ୍ରେମରେ କିବା କାନ୍ତାକୁ ଦେଲା
ତାରୁ ତମାଳ ଲତା କି' ଫୁଟିଲା କେତକୀ
ଏ ଉତପାତ କି' ଫଳଦେବ
ଶ୍ୟାମଘନେ ଚନ୍ଦ୍ରୋଦୟ ହୋଇଲା ଅଜୟ
ଅତନୁ ଗଡ଼ ତ' ମାରଯିବ ।" (୧୨)

ରାଧା-କୃଷ୍ଣଙ୍କର ଯୁଗଳ ମୂର୍ତ୍ତି ର ମହାମିଳନ ଜନିତ ଶ୍ୟାମ-ଗୌର ତେଜର ଯେଉଁ ଅପୂର୍ବ ଦିବ୍ୟ ଶୋଭା ତାକୁ କବି ଭାଷାରେ ବ୍ୟକ୍ତ କରି ପାରିନାହାନ୍ତି । ଯୁଗଳ ମୂର୍ତ୍ତିର ଅନିର୍ବଚନୀୟ, ଅପରୂପ ମାଧୁରୀର ବର୍ଣ୍ଣନାକରି କବି ଲେଖିଛନ୍ତି-

'ଦୁଇ ଜଣଙ୍କ ସେ ଛବି, ଭାବି କି' କହିବି
ବଚନ ତହିଁ କି ନାହିଁ ନାହିଁ ।'

ବାସ୍ତବରେ ରାଧା-କୃଷ୍ଣଙ୍କର ଯୁଗଳ ମିଳନ ଓ ପ୍ରେମମୟ ଯୁଗଳ ମୂର୍ତ୍ତିର ଶୋଭାକୁ କବି ଆଦିରସରେ ବର୍ଣ୍ଣନା କରି ଏ କାବ୍ୟକୁ ଅତି ରସମୟ ଓ ମାଧୁର୍ଯ୍ୟମୟ କରି ଗଢ଼ି ତୋଳିଛନ୍ତି ।

**ଗୋପୀବିଳାପ :** ଏହା ମଧ୍ୟ ଏକ ପୌରାଣିକ ବୈଷ୍ଣବୀୟ କାବ୍ୟକୃତି । ପ୍ରାଚୀନ ଲୋକଙ୍କ ବାଣୀ ଶୈଳୀରେ ଏହି କୃଷ୍ଣକାବ୍ୟ ଟି ରଚିତ । ଏଥିରେ ଛ' ଗୋଟି ବୋଲି ରହିଛି । କୃଷ୍ଣଙ୍କ ପ୍ରତି

ଷଡ-ଗୋପୀଙ୍କର ପ୍ରଣୟାନୁରାଗ, ପ୍ରଣୟ ଅନୁଭବ ଓ ବିରହ-ବେଦନା ଅନୁଚିନ୍ତାକୁ କବି ଏଥିରେ ଅତ୍ୟନ୍ତ ସରଳ, ସାବଲୀଳ ଓ ରସମୟ ଭାବରେ ଅଭିବ୍ୟକ୍ତ କରିଛନ୍ତି । ଷଡଗୋପୀକାଙ୍କର ପ୍ରଣୟବିଧୂର ଅନୁଚିନ୍ତା ସହ କୃଷ୍ଣଙ୍କର ଜନ୍ମ ଠାରୁ ଆରମ୍ଭକରି ଯଶୋଦାଙ୍କ କୋଳ ମଣ୍ଡନ, କୃଷ୍ଣଙ୍କର ବାଲ୍ୟ, କୈଶୋରଲୀଳା ଓ ଗୋପପୁରରେ ଗୋପାଙ୍ଗନା ମାନଙ୍କ ସହିତ ବିଭିନ୍ନ ପ୍ରେମଲୀଳା ଓ କେଳିର ରସମୟ ବର୍ଣ୍ଣନା କବି କରିଛନ୍ତି । ଷଡସଖୀ ମାନଙ୍କ ମୁହଁରେ କୃଷ୍ଣଙ୍କର ରୂପ, ଗୁଣ, ମହିମାର ମହତ୍ତ୍ୱ ମଧ କବି ପ୍ରକଟନ କରିଛନ୍ତି।

**ଶ୍ୟାମରାସୋତ୍ସବ :** ଓଡ଼ିଆ କୃଷ୍ଣକାବ୍ୟ ପରଂପରାର ଏହା ଏକ ସଫଳ ବୈଷ୍ଣବୀୟ କାବ୍ୟ । ଶ୍ରମଦ୍ ଭାଗବତର ରାସପଞ୍ଚାଧାୟୀ ଲୀଳାର 'ଶରଦ ରାସ' ପ୍ରସଙ୍ଗ ହିଁ ଏ କାବ୍ୟର ମୁଖ୍ୟ ପ୍ରତିପାଦ୍ୟ ବିଷୟ । ଏହି କାବ୍ୟଟି 'ଶ' ଆଦ୍ୟ ଅକ୍ଷର ନିୟମରେ ରଚିତ । ଏହା ୧୨ ଗୋଟି ଛାନ୍ଦ ବିଶିଷ୍ଟ । କାବ୍ୟାରମ୍ଭରେ ଭାରତୀୟ ଆଧାତ୍ମିକ ଜଗତର ପରମାରାଧ ପରମବ୍ରହ୍ମ, ଭଗବାନ ଶ୍ରୀକୃଷ୍ଣଙ୍କର ଅପରୂପ ଦିବ୍ୟ ଶୋଭା ଓ ମହିମାର ବର୍ଣ୍ଣନ କାରାଯାଇଛି । ଏହା ସହିତ ରାଧା-କୃଷ୍ଣ-ଗୋପାଙ୍ଗନା ମାନଙ୍କର ମାଧୁର୍ଯ୍ୟ, ଶୁଦ୍ଧ ପ୍ରେମଲୀଳା ଓ ପ୍ରେମଭକ୍ତି ଧାରାର ଅପୂର୍ବ ମହିମା ପ୍ରକଟିତ ହୋଇଛି । କବି କୃଷ୍ଣଙ୍କର ଷୋଳସହସ୍ର ଗେପୀମାନଙ୍କ ସହିତ ଶୃଙ୍ଗାର ରସରେ ମାତିବାର ବର୍ଣ୍ଣନା ପ୍ରସଙ୍ଗରେ ଶୁଦ୍ଧ ପ୍ରେମରସ ସହିତ ପରିପୂର୍ଣ୍ଣ ଆନନ୍ଦର ଚିତ୍ର ପ୍ରଦାନ କରିଛନ୍ତି । କବିଙ୍କ ଭାଷାରେ-

"ଶୁଦ୍ଧ ପ୍ରେମଭକ୍ତି ଭାବ ଭୋଳମତି
ଧନ୍ୟ ଏ ଗୋପିନୀ
ଶରୀରେ ଶରୀରେ ସମର୍ପି
ରମିଲେ ପୂର୍ଣ୍ଣାନନ୍ଦ ଘେନି ।" (୧୩)

ବାସ୍ତବରେ ଏହି କାବ୍ୟଟି ଏକ ଶୁଦ୍ଧ-ମାଧୁର୍ଯ୍ୟରସ ବିମଣ୍ଡିତ ଶ୍ରେଷ୍ଠ ବୈଷ୍ଣବୀୟ କାର୍ବ୍ୟକୃତି ।

**ଅମ୍ବିକା ବିଳାସ:** ଏହା ଏକ ପୌରାଣିକ କାବ୍ୟ । କେନ୍ଦୁଝର ରାଜଦରବାରରେ ଅବସ୍ଥାନ କାଳରେ କବି ଏହି କାବ୍ୟଟି ରଚନା କରିଥିବାର ଜଣାଯାଏ । ସଂସ୍କୃତ କବି କାଳିଦାସଙ୍କର 'କୁମାରସମ୍ଭବମ୍' ସହିତ ଶିବ ପୁରାଣ ଓ ଶିବ-ପାର୍ବତୀ ଲୀଳାମୃତ ଅବଲମ୍ବନରେ କବି ଏହି କାବ୍ୟର କଥାବସ୍ତୁ ପରିକଳ୍ପନା କରିଛନ୍ତି । ଚାଳିଶ ଗୋଟି ଛାନ୍ଦ ବିଶିଷ୍ଟ ଏହା ଏକ ଦୀର୍ଘ କାବ୍ୟ । 'ଅ' ଆଦ୍ୟ ଅକ୍ଷର ନିୟମରେ ଏବଂ ଅନୁପ୍ରାସ ଅଳଂକାର ର ମନୋଜ୍ଞ ପ୍ରୟୋଗରେ କବି ଏହି କାବ୍ୟଟି ରଚନା କରିଛନ୍ତି । ଏହି କାବ୍ୟର ବିଷୟବସ୍ତୁ, ରଚନାଗତ ଶୈଳୀ ସଂପର୍କରେ କବି ତାଙ୍କର 'ରାଜସଭା' କବିତାରେ ବିଶଦ

ସୂଚନା ଦେଇ କହିଛନ୍ତି -

" 'ଅ' ଅକ୍ଷର ନିୟମ ଅମ୍ବିକା ବିଳାସ ନାମ
କୁମାର ଚରିତ, ଶିବ-ଉମା ବିବାହ ।
ଛାନ୍ଦ-ଶ୍ଳେଷ ଅନୁପ୍ରାସ, ଅକ୍ଷର ଅବନା ନ୍ୟାସ
ଶୃଙ୍ଗାର, କୌତୂକରସ ସନ୍ଦର୍ଭ ବିରହ
ଅଳଂକାର କାବ୍ୟ ଲକ୍ଷଣ ।"

କବି ଏହି କାବ୍ୟରେ ଶିବ-ସତୀଙ୍କ ବିବାହ, ଦାମ୍ପତ୍ୟ ଜୀବନ ଚିତ୍ର, ଯଜ୍ଞସ୍ଥଳରେ ଶିବଙ୍କର ଅପମାନ, ସତୀଙ୍କ ଆତ୍ମୋତ୍ସର୍ଗ, ଦକ୍ଷ ଯଜ୍ଞ ଧ୍ୱଂସ, ଶିବଙ୍କ ତପସ୍ୟା, ସତୀଙ୍କ ପୁନର୍ଜନ୍ମ, ଶିବ-ଉମାଙ୍କର ପୁନର୍ମିଳନ, କୁମାର ଜନ୍ମ, ତାରକାସୁର ବଧ ପ୍ରଭୃତି ପ୍ରସଙ୍ଗ ବର୍ଣ୍ଣନା କରିଛନ୍ତି । ଏହି ସବୁ ବର୍ଣ୍ଣନାରେ ଶୃଙ୍ଗାର ରସ ସହିତ ବୀରରସ, ବାତ୍ସଲ୍ୟରସ ଓ ଶାନ୍ତରସ ଆଦିର ପ୍ରୟୋଗ କରାଯାଇଛି । ଏହି କାବ୍ୟରେ ପ୍ରାକୃତ-ହିନ୍ଦୀ, ବଙ୍ଗଳା ଓ ସଂସ୍କୃତ ଭାଷାଛନ୍ଦରେ ଶିବଙ୍କର ଏକ ସ୍ତୁତି ମଧସନ୍ନିବେଶିତ ହୋଇଛି । ଏହି 'ଅମ୍ବିକାବିଳାସ' ଶାକ୍ତଧର୍ମ-ଦର୍ଶନର ଏକ ଅମଳିନ କାବ୍ୟ କୃତି ।

**ସମରତରଙ୍ଗ:** ଏହା ଏକ ବୀର ରସାତ୍ମକ ସମର କାବ୍ୟ । ଏହାର ରଚନା କାଳ ଆନୁମାନିକ ୧୭୮୦-୮୧ ମସିହା । ଯେତେବେଳେ ସମଗ୍ର ରୀତିଯୁଗୀୟ କବି ମାନେ ଯୌବନର ସୌନ୍ଦର୍ଯ୍ୟ, ପ୍ରେମପ୍ରଣୟ ବର୍ଣ୍ଣନା ଓ ରାଧା-କୃଷ୍ଣ ପ୍ରେମ ଚିତ୍ରରେ ଉତ୍କଟ ଶୃଙ୍ଗାର ରସ ବର୍ଣ୍ଣନରେ ଶତମୁଖର ହୋଇପଡିଥିଲେ; ସେତେବେଳେ ଏକମାତ୍ର ଢେଙ୍କାନାଳ ମାଟିର ଓଡ଼ିଆ କବି ବ୍ରଜନାଥ ଯେ'କି ଯୁଦ୍ଧବିଗ୍ରହ ଓ ସମରବିଳାସ ର ଚିତ୍ର ବର୍ଣ୍ଣନା କରି ଓଡ଼ିଆ ପ୍ରାଣରେ ବୀରରସର ହିଲ୍ଲୋଳ ଓ ବୀରଭାବର ଉନ୍ମାଦନା ସୃଷ୍ଟି କରିଥିଲେ । ଏହି କାବ୍ୟଟି ସାତଗୋଟି ଛାନ୍ଦ ବିଶିଷ୍ଟ । ଢେଙ୍କାନାଳର ତତ୍କାଳୀନ ରାଜା ତ୍ରିଲୋଚନ ମହୀନ୍ଦ୍ର ବାହାଦୂରଙ୍କ ସହିତ ମରହଟ୍ଟା ବାହିନୀର ଯେଉଁ ଯୁଦ୍ଧ ବିଗ୍ରହ ସଂଘଟିତ ହୋଇଥିଲା, ତା'ର ଜୀବନ୍ତ ଚିତ୍ରକୁ ନେଇ ଏହି କାବ୍ୟଟି ରଚିତ । ଏହା ସହିତ କେନ୍ଦୁଝର ରାଜାଙ୍କ ସହିତ ଯୁଦ୍ଧ ପ୍ରସଙ୍ଗ ମଧ ଏଥିରେ ବର୍ଣ୍ଣିତ । ରାଜା ତ୍ରିଲୋଚନଙ୍କ ଅପୂର୍ବ ବୀରତ୍ୱ ଓ ସାହାସିକ ନେତୃତ୍ୱରେ ଢେଙ୍କାନାଳର ବୀର ପାଇକମାନେ ଦୁର୍ଦ୍ଧର୍ଷ ମରହଟ୍ଟା ସେନାପତି ରାଜାରାମଙ୍କ ସହିତ ଭୟଙ୍କର ଯୁଦ୍ଧକରି ମରହଟ୍ଟା ବାହିନୀଙ୍କୁ ଯୁଦ୍ଧରେ ପରାସ୍ତ ଓ ଛତ୍ରଭଙ୍ଗ କରାଇ ପାରିଥିଲେ । ଏହି ଯୁଦ୍ଧର ବର୍ଣ୍ଣନା ଅବକାଶରେ ଯୁଦ୍ଧର ପ୍ରସ୍ତୁତି, ଯୁଦ୍ଧ ପରିଚାଳନା, ପାଇକ ମାନଙ୍କର ଅମିତବିକ୍ରମ ଓ ରଣହୁଂକାର, ବିଭିନ୍ନ ଯୁଦ୍ଧାସ୍ତ୍ର ର

ବର୍ଣ୍ଣନା, ବୀଭତ୍ସ ରଣଭୂମି ଓ କ୍ଷତାକ୍ତ ସୈନିକର ବର୍ଣ୍ଣନା, ପରାଜିତ ବାହିନୀର ଛତ୍ରଭଙ୍ଗ, ଓଡିଆ ପାଇକ ବୀର ମାନଙ୍କର ବିଜୟ ଉଲ୍ଲାସ ଓ ବିଜୟ କେତନର ନିଖୁଣ, ଜୀବନ୍ତ ଚିତ୍ର କବି ପ୍ରକଟନ କରିଛନ୍ତି । ଏହି ଗ୍ରନ୍ଥଟି ରାଜାଦେଶ ଦ୍ୱାରା ଲିଖିତ ହୋଇଥିବାର ଜଣାଯାଏ । କାରଣ- ଏହି ଗ୍ରନ୍ଥଟିରେ ରାଜା ତ୍ରିଲୋଚନଙ୍କର ବୀରତ୍ୱ ଓ ମହାନତାର ପ୍ରକଟନ ସହିତ କବି ରାଜାଙ୍କର ବହୁ ଅଯଥା ସ୍ତୁତି ଗାନ କରିଛନ୍ତି । ସେ' ଯାହେଉ ଏ କାବ୍ୟଟି ନିଶ୍ଚିତ ରୂପେ ତତ୍କାଳୀନ କାବ୍ୟଜଗତର ଏକ ଅମଳିନ ବ୍ୟତିକ୍ରମ, ଏକ ମହାର୍ଘ କଳାସଂପଦ ।

**ଗୁଣ୍ଡିଚାବିଜେ:** ଉତ୍କଳୀୟ ବୈଷ୍ଣବ ଧର୍ମ-ଦର୍ଶନ ସର୍ବୋପରି ଜଗନ୍ନାଥ ମହାପ୍ରଭୁଙ୍କର ଗୁଣ୍ଡିଚାଯାତ୍ରା ସଂପର୍କୀତ ଏହା ଏକ ପ୍ରାମାଣିକ ଗ୍ରନ୍ଥ । ଏହା ଏକ ମିଶ୍ର ଭାଷାର ରଚନା । ହିନ୍ଦୀ, ଓଡ଼ିଆ ଓ ବ୍ରଜବୋଲି ଭାଷାର ତ୍ରିବେଣୀ ସଙ୍ଗମ ଏଥିରେ ଘଟିଛି । ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କର ଗୁଣ୍ଡିଚାଯାତ୍ରା ଅବକାଶରେ ରଥମାନଙ୍କର ପ୍ରସ୍ତୁତି, ସାଜସଜ୍ଜା, ତ୍ରି-ମୂର୍ତ୍ତି ମାନଙ୍କର ବେଶକାନ୍ତି, ଠାକୁର ମାନଙ୍କର ପହଣ୍ଡିବିଜେ, ଗୁଣ୍ଡିଚା ମନ୍ଦିରରେ ପ୍ରବେଶ ଏବଂ ବଡଠାକୁର ବାହୁଡାବିଜେ କରି ଶ୍ରୀମନ୍ଦିରରେ ପ୍ରବେଶ ପର୍ଯ୍ୟନ୍ତ ସମସ୍ତ ଘଟଣା ଓ ଦୃଶ୍ୟାବଳୀକୁ କବି ଅତି ପ୍ରାଞ୍ଜଳ ଭାବରେ ପରିପ୍ରକାଶ କରିଛନ୍ତି । ଏହା ସହିତ ପ୍ରଭାତ ଓ ସନ୍ଧ୍ୟାର କମନୀୟ ବର୍ଣ୍ଣନା , ପ୍ରାକୃଟସମ୍ଭାଷଣର ଚମତ୍କାର ବର୍ଣ୍ଣନା କବି ଏଥିରେ କରିଛନ୍ତି । ଏହି ଗ୍ରନ୍ଥରେ ପୁରୀର ମହାରାଜ ଦିବ୍ୟସିଂହଦେବଙ୍କର ବହୁଳ ପ୍ରଶସ୍ତି ଗାନ କବି କରିଛନ୍ତି ।

ଏହି ସବୁକାବ୍ୟ କୃତି ଗୁଡିକ ସହିତ ଦୂତୀକାବ୍ୟ ପରଂପରାରେ ରଚିତ 'ମନୋଦୂତ' ଏବଂ 'ଚିତ୍ରୋଦୟ ଭାଗବତ' ନାମରେ କବିଙ୍କର ରଚନା ମଧ୍ୟ ରହିଅଛି ।

**କବିତାବଳୀ:** ବ୍ରଜନାଥ କବିତା ରଚନାରେ ମଧ୍ୟ ସିଦ୍ଧହସ୍ତ ଥିଲେ । ତାଙ୍କ ରଚିତ ମହାର୍ଘ କବିତା କୃତି ଗୁଡିକ ହେଲା-ରାଜସଭା, ରାଜନଙ୍କୁ ଛଳୋକ୍ତି, ଚଣ୍ଡୀମାଳଶ୍ରୀ, ଜଣାଣ ଓ ସଙ୍ଗୀତ ।

**ରାଜସଭା :** ଏହା ଏକ ଦୀର୍ଘ କବିତା । ଏହାକୁ ଖଣ୍ଡକାବ୍ୟ ପର୍ଯ୍ୟାୟବାଚୀ ମଧ୍ୟ କରାଯାଇପାରେ । ଏହି ଗ୍ରନ୍ଥାରମ୍ଭରେ କବି ଢେଙ୍କାନାଳର ଆରାଧ୍ୟ ଦେବତା ମହାପ୍ରଭୁ ବଳଦେବ ଓ କପିଳାସ କ୍ଷେତ୍ରର କ୍ଷେତ୍ରାଧିପତି ଶ୍ରୀ ଚନ୍ଦ୍ରଶେଖର ମହାଦେବଙ୍କର ମହିମା ଗାନ କରିଛନ୍ତି । ତପରେ ଢେଙ୍କାନାଳର ତତ୍କାଳୀନ ରାଜା ତ୍ରିଲୋଚନ ମହୀନ୍ଦ୍ର ବାହାଦୂରଙ୍କ କୀର୍ତ୍ତି ଓ ମହିମାର ବର୍ଣ୍ଣନ ସହିତ 'ରାଜସଭା' ର ବାସ୍ତବ ସତ୍ୟଶୀଳ ରୂପର ଚିତ୍ରଣ କରିଛନ୍ତି । କବି ରାଜା ତ୍ରିଲୋଚନଙ୍କର ଅପୂର୍ବ ସାହସ, ଧୌର୍ଯ୍ୟ, ବୀରତ୍ୱ ଓ ଅପରୂପ

ସୌନ୍ଦର୍ଯ୍ୟର ବର୍ଣ୍ଣନା କରିଛନ୍ତି । ଏହି ଅବକାଶରେ କବି ତ୍ରିଲୋଚନଙ୍କର ଦିବ୍ୟ ଶୋଭା କାନ୍ତି କିପରି ପୁରୁଷ ରସିକ ନାରୀମାନଙ୍କର ମନକୁ ଆକର୍ଷିତ କରି ନିଏ, ତା'ର ମନୋଜ୍ଞ ଚିତ୍ର ଦେଇଛନ୍ତି । କବିଙ୍କ ଭାଷାରେ-

"ଚନ୍ଦ୍ର ଚାହିଁ ଚନ୍ଦ୍ରକାନ୍ତ ମଣି ହୁଅଇ ଯେମନ୍ତ
ତରୁଣୀ ମାନେ ତେମନ୍ତ ତରଳି ଯାନ୍ତି ।
କେ ବୋଲଇ ଯାଉଜାତି, ହେଉପଛେ ଅକୀରତି
ଏ ପୁରୁଷରତ୍ନ କତି ରହନ୍ତି ନୀତି ।
ଏହି ରୂପେ ରୂପ ବିଚିତ୍ର
ଚିତ୍ରକର ଚିତ୍ରକରି ନ ପାରେ ଚିତ୍ରେ ।" (୧୪)

ରାଜାଙ୍କର ବୀରତ୍ୱ ଓ ପୌରୁଷର ବର୍ଣ୍ଣନା ସହିତ କବି ଢେଙ୍କାନାଳ ରାଜସଭାର ଆଟୋପ, ଆଡମ୍ବର, ପାତ୍ର-ମନ୍ତ୍ରୀ, ରାଜନର୍ତ୍ତକୀ ଓ ନୃତ୍ୟ-ସଙ୍ଗୀତର ଆସର ମଧ୍ୟରେ ରାଜସଭାର ଅୟମାରମ୍ଭ, ରାଜାଙ୍କ ବିଚାରକାର୍ଯ୍ୟ, ରାଜଦଣ୍ଡ ଘୋଷଣା ଆଦିର ନିଚ୍ଛକ, ବାସ୍ତବ ଚିତ୍ରର ବର୍ଣ୍ଣନା କରିଛନ୍ତି । ଏହା ସହିତ ପାରିଷଦବର୍ଗ ଓ ପ୍ରଜା ମାନଙ୍କର ବିଭିନ୍ନ ସେବାକାର୍ଯ୍ୟର ବର୍ଣ୍ଣନା ମଧ୍ୟ ଏଥିରେ ରହିଛି ।

**ରାଜନଙ୍କୁ ଛଳୋକ୍ତି :** ଏହା ବ୍ୟାଜସ୍ତୁତି ଶୈଳୀରେ ରଚିତ ଏକ ବ୍ୟଙ୍ଗାତ୍ମକ ରଚନା । ଢେଙ୍କାନାଳ ରାଜାଙ୍କଠାରୁ ପାଇଥିବା ପ୍ରୋତ୍ସାହନ, ରାଜଦତ୍ତ ସଂପତ୍ତି ଓ ରାଜାଙ୍କ ବଦାନ୍ୟତା ସଂପର୍କରେ କବି ବ୍ୟଙ୍ଗାତ୍ମକ ସୂଚନା ପ୍ରଦାନ କରିଛନ୍ତି । ରାଜଆଶ୍ରିତ, ରାଜଦତ୍ତ ସଂପଦ ପାଇ ମଧ୍ୟ କବିଙ୍କ ଜୀବନ କିପରି ଅତ୍ୟନ୍ତ ଦୟନୀୟ ଓ ଦୁର୍ବିସହ ଭାବରେ କଟୁଥିଲା, ତା'ର ଚିତ୍ର କବି ଦେଇଛନ୍ତି । କବିଙ୍କ ଭାଷାରେ -

"ଗୋସାଇଁଙ୍କ ଲୋକ ହୋଇ ମୁଁ ଚାକେରୀ
କରି ଏ ରୂପେ ବଞ୍ଚିଛି
ମହାରାଜା ପ୍ରଭୁପଣକୁ ଏକଥା
ମାତ୍ର ତ ଶୋଭା ପାଉଛି ।" (୧୫)

କବି 'ସମରତରଙ୍ଗ' କାବ୍ୟ ଲେଖି ଢେଙ୍କାନାଳ ରାଜାଙ୍କ ଠାରୁ 'ନୂଆଗାଁ ଜମି' ଉପହାର ସ୍ୱରୂପ ପାଇଥିଲେ । ଯେଉଁ ଜମି ତାଙ୍କର କୌଣସି କାର୍ଯ୍ୟରେ ଲାଗିନଥିଲା । ଯେଉଁଥିପାଇଁ କବି ରାଜାଙ୍କୁ ବ୍ୟଙ୍ଗାତ୍ମକ ଭଙ୍ଗୀରେ ଛଳୋକ୍ତି ପ୍ରକଟନ ପୂର୍ବକ କହିଛନ୍ତି-

"ନୂଆ ଗାଁ ମୋତେ ଦିଆ ହୋଇଛି ଯେ
ଯୁଗ ଯୁଗାନ୍ତ ପଡ଼ିଆ
ବାଘପୁଅ ତହିଁ ସାକ୍ଷାତ ଜନ୍ମାଏ
ପ୍ରଭୁ ଜାଣୁ ଅଛ ଏହା ।" (୧୬)

**ଚଣ୍ଡୀ ମାଳଶ୍ରୀ:** ଏହା ଶାକ୍ତ ଧର୍ମ-ଦର୍ଶନ କୈନ୍ଦ୍ରିକ ଏକ କ୍ଷୁଦ୍ର ରଚନା । ସଂସ୍କୃତ ସପ୍ତସତୀଚଣ୍ଡୀ ଅନୁସରଣରେ ଏହା ରଚିତ । ପୌରାଣିକ ଶୁମ୍ଭ-ନିଶୁମ୍ଭ ବଧ ପ୍ରସଙ୍ଗ ହିଁ ଏହାର ମୁଖ୍ୟ ବିଷୟବସ୍ତୁ । ଏଥିରେ ଦେବୀଙ୍କ ସ୍ତୁତି ଓ ମହିମାର ବର୍ଣ୍ଣନା କରାଯାଇଛି । ଏହିସବୁ ରଚନା ଗୁଡିକ ସହିତ କବି ବ୍ରଜନାଥଙ୍କର ଅନେକ ଜଣାଣ ଓ ସଙ୍ଗୀତ ରଚନା ମଧ୍ୟ ରହିଛି । ଚିତ୍ତଚିନ୍ତ ଜଗନ୍ନାଥ କଳାମୁଖକୁ, ଦୀନଜନବନ୍ଧୁ ଆରତତ୍ରାଣ, ନବଘନ ଶ୍ୟାମ ହେ, ସଖି ଦେଖିଲି ଆଜି ମୁଁ ବ୍ରଜପତିଙ୍କି, ବନମାଳି ଗୁଣ ଜପାମାଳି ହୋଇଲା, ଦୂତୀ ରତିପତିଭୀତି ଅତିରେକ ହୋଇଲା, ପଡିଲ କି'-ପରମାଦେ ନନ୍ଦସୂତ, ଏକି ରୀତି ତୋର, ଆହେ ଜଗନ୍ନାଥ, ଧନ କି' ରଙ୍ଗେ ଚାହେଁ, ମୋତିଦନ୍ତୀ-ଦନ୍ତୀବର ଗତି ତ ସେ, କେଳି କୁଶଳା ବାଳାମଣି, ହେ ପଥିକ କାହିଁ ଯାଉଛ କହ ? ପ୍ରଭୃତି ଜଣାଣ ଓ ସଙ୍ଗୀତ ଗୁଡିକ ବେଶ୍ ଭକ୍ତିଭାବୋଦ୍ଦୀପକ, ଆବେଗପୂର୍ଣ୍ଣ ଓ ହୃଦୟସ୍ପର୍ଶୀ । ବାସ୍ତବରେ ଢେଙ୍କାନାଳ ମାଟିର ଏଇ ମହାକବି ବ୍ରଜନାଥ ବଡଜେନାଙ୍କର କାବ୍ୟିକ ପ୍ରତିଭା ଉତ୍କଳ ସରସ୍ୱତୀଙ୍କର ଏକ କମନୀୟ ମୁକୁଟାଳଂକାର ରୂପେ ମହାକାଳ ଗର୍ଭରେ ଚିରଦିନ ପାଇଁ ଜାଜ୍ୱଲ୍ୟମାନ ହୋଇ ରହିଅଛି ।

**ବାବାଜୀ ରାମଦାସ (ଆନୁମାନିକ ସମୟ- ଖ୍ରୀ.ଅ. ୧୭୫୦-୧୮୨୦) :**

ରାମଦାସଥିଲେ ରାମାନନ୍ଦୀ ବୈଷ୍ଣବ ସଂପ୍ରଦାୟ ର ଜଣେ ସନ୍ଥ ସାଧକ ଓ ଭକ୍ତ । କପିଳାସ ସ୍ଥିତ 'ତଳମଠ' ର ମଠାଧୀଶ ବାସୁଦେବ ଦାସ ଙ୍କର ସେ ଥିଲେ ପ୍ରମୁଖ ଶିଷ୍ୟ । ବାସୁଦେବ ଦାସଙ୍କ ମୃତ୍ୟୁ ପରେ ରାମଦାସ 'ତଳମଠ' ର ଦାୟିତ୍ୱ ନେଇଥିଲେ । ରାମଦାସ ଢେଙ୍କାନାଳର ଆରାଧ୍ୟ ଦେବତା ଶ୍ରୀ ବଳଦେବ ଜୀଉଙ୍କର ଜଣେ ପରମ ଭକ୍ତ ଥିଲେ । ବଳଭଦ୍ର ଜୀଉଙ୍କ ଆବିର୍ଭାବ, ପ୍ରତିଷ୍ଠା ଓ ତାଙ୍କର ମହିମା କୁ ନେଇ ରାମଦାସ 'ବଳଭଦ୍ର ବୋଲି' ନାମକ ଏକ ଗ୍ରନ୍ଥ ରଚନା କରିଯାଇଛନ୍ତି । ଏହି ବୋଲିଟି ସେ ଖ୍ରୀ.ଅ. ୧୮୦୧ରୁ ୧୮୧୦ ଭିତରେ ରଚନା କରିଥିବାର ଅନୁମିତ ହୁଏ । ଏହି ଗ୍ରନ୍ଥଟିରେ ବଳଭଦ୍ରଜୀଉଙ୍କର ବିଗ୍ରହ ପ୍ରତିଷ୍ଠା ଓ ତାଙ୍କ ମହିମାର ବର୍ଣ୍ଣନ ସହିତ ଢେଙ୍କାନାଳ ରାଜ୍ୟ ଶାସନ ସଂପର୍କୀତ ବହୁ ତଥ୍ୟ ଓ ବିବରଣୀର ଉପସ୍ଥାପନା କରାଯାଇଛି । ଏହା ସହିତ

ଏହି ଗ୍ରନ୍ଥରେ ବୈଶାଳିଆ ଗଡ଼ର ଭଂଜବଂଶର ଶାସନ ସଂପର୍କୀତ ବିବରଣୀ ମଧ ରହିଛି । ଏହି ରଚନାଟି ଓଡିଆ 'ବୋଲି' ସାହିତ୍ୟ ପରଂପରାର ଏକ କମନୀୟ କଳାକୃତି ।

**ରାଜା ଭଗୀରଥ ମହୀନ୍ଦ୍ର ବାହାଦୂର (ଖ୍ରୀ.ଅ. ୧୮୨୪-୧୮୭୭) :**

ଭଗୀରଥଙ୍କ ଜନ୍ମ ଖ୍ରୀ.ଅ. ୧୮୨୪ ରେ । ତାଙ୍କ ପିତା ଥିଲେ-ନିତ୍ୟାନନ୍ଦ ଶ୍ରୀଚନ୍ଦନରାୟ । ରାଜା ଶ୍ୟାମସୁନ୍ଦର ମହୀନ୍ଦ୍ର ବାହାଦୂର ଅପୁତ୍ରିକ ଥିବାରୁ ତାଙ୍କ ମୃତ୍ୟୁପରେ ତାଙ୍କ ବିଧବାରାଣୀ କୁନ୍ଦନ ଦେବୀ ଖ୍ରୀ.ଅ. ୧୮୩୦ ରେ ଭଗୀରଥଙ୍କୁ ପୋଷ୍ୟପୁତ୍ର ରୂପେ ଗ୍ରହଣ କରିଥିଲେ । ଭଗୀରଥ ନାଁ ବାଳକ ଥିବାରୁ ରାଜମାତା କୁନ୍ଦନ ଦେବୀ ୧୮୩୦ ରୁ ୧୮୪୨ ପର୍ଯ୍ୟନ୍ତ ଦୀର୍ଘ ୧୨ ବର୍ଷ ଧରି ଢେଙ୍କାନାଳ ରାଜ୍ୟର ଶାସନ ଦାୟିତ୍ୱ ବୁଝିଥିଲେ । ସାବାଳକତ୍ୱ ପ୍ରାପ୍ତିପରେ ଭଗୀରଥ ମହୀନ୍ଦ୍ର ବାହାଦୂର ଉପାଧି ଧାରଣ କରି ଖ୍ରୀ.ଅ. ୧୮୪୨ ରେ ରାଜ ସିଂହାସନ ଆରୋହଣ କର ଖ୍ରୀ.ଅ. ୧୮୭୭ ପର୍ଯ୍ୟନ୍ତ ରାଜ୍ୟ ଶାସନ କରିଥିଲେ । ଭଗୀରଥ ଜଣେ ପ୍ରଜାବତ୍ସଳ ରାଜାଥିଲେ । ରାଜ୍ୟ ଶାସନ ସହିତ ସଙ୍ଗୀତ ଓ ସାହିତ୍ୟ ସାଧନାରେ ମଧ ସେ ନିମଗ୍ନ ଥିଲେ । ସେ ଅନେକ ଗୁଡିଏ ଭଜନ, ଜଣାଣ, ସଙ୍ଗୀତ ଓ ଚଉପଦୀ ରଚନା କରିଯାଇଛନ୍ତି । ତାଙ୍କର ସାରସ୍ୱତ କୃତି ଭିତରୁ ସର୍ବଶ୍ରେଷ୍ଠ କୃତି ହେଲା- 'ସଙ୍ଗୀତସାଗର' । ଏହି 'ସଙ୍ଗୀତସାଗର' ଗ୍ରନ୍ଥଟି ୪ ଗୋଟି ଖଣ୍ଡ ରେ ବିଭକ୍ତ । ଏହି ଗ୍ରନ୍ଥଟି ଭଗୀରଥଙ୍କର ସଙ୍ଗୀତ ଜ୍ଞାନ, ସଙ୍ଗୀତ ସାଧନା ଓ ସଙ୍ଗୀତ ପ୍ରିୟତାର ସର୍ବଶ୍ରେଷ୍ଠ ନିଦର୍ଶନ ।

**ରାଜା ସୁରପ୍ରତାପ ମହୀନ୍ଦ୍ର ବାହାଦୂର (ଖ୍ରୀ.ଅ. ୧୮୮୫-୧୯୧୮) :**

ସୁରପ୍ରତାପଥିଲେ ଢେଙ୍କାନାଳର ରାଜା ଦୀନବନ୍ଧୁ ମହୀନ୍ଦ୍ର ବାହାଦୂରଙ୍କ ସୁ-ପୁତ୍ର । ମହାରାଣୀ ଅନ୍ନପୂର୍ଣ୍ଣା ମହାଦେବୀଙ୍କ ଗର୍ଭରୁ ସେ ଖ୍ରୀ.ଅ. ୧୮୮୫ ରେ ଭୂମିଷ୍ଠ ହୋଇଥିଲେ । ସେହି ୧୮୮୫ ରେ ପିତା ଦୀନବନ୍ଧୁ ଙ୍କ ଦେହାନ୍ତ ହେବାରୁ ଶିଶୁ ପୁତ୍ର ସୁରପ୍ରତାପ ସିଂହାସନରେ ଅଭିଷିକ୍ତ ହୋଇଥିଲେ । ସାବାଳକତ୍ୱ ପ୍ରାପ୍ତିପରେ ସୁରପ୍ରତାପ ଖ୍ରୀ.ଅ.୧୯୦୬ ରେ ପ୍ରତ୍ୟକ୍ଷ ଶାସନଦାୟିତ୍ୱ ନିଜ ହାତକୁ ନେଇଥିଲେ । ଏହା ପୂର୍ବରୁ ଖ୍ରୀ.ଅ. ୧୯୦୨ରେ ସୁରପ୍ରତାପ ଷଢେଇକଳାର ରାଜକୁମାରୀ କୃଷ୍ଣଚନ୍ଦ୍ର ପ୍ରିୟାଙ୍କୁ ବିବାହ କରିଥିଲେ । ସୁରପ୍ରତାପ ଜଣେ ପ୍ରଜା ବତ୍ସଳ, ଆଦର୍ଶ ରାଜା ରୂପେ ନିଜର ଖ୍ୟାତି ଅର୍ଜନ କରିଥିଲେ । ସୁର ପ୍ରତାପଙ୍କର ଖ୍ରୀ.ଅ. ୧୯୧୮ ଅକ୍ଟୋବର ମାସ ୧୬ ତାରିଖରେ ଅକାଳ ମୃତ୍ୟୁ ଘଟିଥିଲା । ତାଙ୍କର ଏହି ଅକାଳ ବିୟୋଗ ଢେଙ୍କାନାଳ ବାଣୀ ଭଣ୍ଡାରର ଅଶେଷ କ୍ଷତି ଘଟାଇଥିଲା । ତା' ହୋଇ ନଥିଲେ ହୁଏତ ସେ ଢେଙ୍କାନାଳ ବାଣୀଭଣ୍ଡାରକୁ

ଅନେକ ଅମୂଲ୍ୟ ସାରସ୍ୱତ କୃତି ସମର୍ପି ଦେଇ ଯାଇଥାନ୍ତେ । ତଥାପି ସ୍ୱଳ୍ପ ଜୀବନ କାଳ ଭିତରେ ସେ ଦୁଇଖଣ୍ଡି ମହାର୍ଘ କାବ୍ୟ ସମର୍ପି ଦେଇ ଯାଇଛନ୍ତି । ସେଥିରୁ ଗୋଟିଏ ହେଲା- କୃଷ୍ଣରସାମୃତ କାବ୍ୟ ଓ ଅନ୍ୟଟି ସାକ୍ଷୀଗୋପାଳ କାବ୍ୟ । ସାକ୍ଷୀଗୋପାଳ କାବ୍ୟଟି ରାଜାଙ୍କ ଅକାଳ ମୃତ୍ୟୁ କାରଣରୁ ଅପୂର୍ଣ୍ଣ ରହିଯାଇଥିଲା । ଏହି ଦୁଇଖଣ୍ଡି କାବ୍ୟ ବୈଷ୍ଣବୀୟ ଭକ୍ତି ଭାବନା ଓ ଆଧାତ୍ମିକ ଚେତନାରେ ସୁ-ସମୃଦ୍ଧ ।

**ରାଣୀ କୃଷ୍ଣଚନ୍ଦ୍ର ପ୍ରିୟା (ଆନୁମାନିକ ସମୟ-ଖ୍ରୀ.ଅ. ୧୮୯୦ ରୁ ୧୯୫୦) :**

ରାଣୀ କୃଷ୍ଣଚନ୍ଦ୍ର ପ୍ରିୟାଙ୍କର ଜନ୍ମ ସମୟ ଆନୁମାନିକ ଊନବିଂଶ ଶତାବ୍ଦୀ ର ଶେଷ ଦଶକ, ଅର୍ଥାତ୍ ଖ୍ରୀ.ଅ. ୧୮୯୦-୯୨ ଭିତରେ । ତାଙ୍କ ପିତାଥିଲେ ଷଢ଼େଇକଳାର ରାଜା ନୃପସିଂହଦେବ । କୃଷ୍ଣଚନ୍ଦ୍ର ପ୍ରିୟା ୧୧-୧୨ ବର୍ଷ ବୟସରେ ଅର୍ଥାତ୍ ଖ୍ରୀ.ଅ. ୧୯୦୨ ରେ ଢେଙ୍କାନାଳ ର ନା'ବାଳକ ରାଜା ସୁରପ୍ରତାପଙ୍କୁ ବିବାହ କରି ଢେଙ୍କାନାଳ ର ରାଣୀ ହୋଇଥିଲେ । ସେ ଜଣେ ଉଦାର ହୃଦୟା , ଧର୍ମପରାୟଣା, ସାହିତ୍ୟାନୁରାଗୀ ମହିଳା ଥିଲେ । ଉଭୟେ ରାଜା ସୁରପ୍ରତାପ ଏବଂ ରାଣୀ କୃଷ୍ଣଚନ୍ଦ୍ର ପ୍ରିୟା ଆଧୁନିକ ଯୁଗର ସମସାୟିକ ହେଲେହେଁ, ସେମାନଙ୍କ ରଚନା ଶୈଳୀର ଆଭିମୁଖ୍ୟ ଦୃଷ୍ଟିରୁ ତାଙ୍କୁ ମଧ୍ୟଯୁଗୀୟ କାବ୍ୟଧାରା ଭିତରେ ସ୍ଥାନିତ କରାଯାଇଛି ।

ରାଣୀ କୃଷ୍ଣଚନ୍ଦ୍ର ପ୍ରିୟା ଥିଲେ ଭଗବାନ କୃଷ୍ଣଙ୍କର ଜଣେ ପରମ ଭକ୍ତ ଓ ଉପାସକ । କୃଷ୍ଣ ଆରାଧନା ଓ କୃଷ୍ଣପ୍ରେମ ରସରେ ସେ ସର୍ବଦା ତଲ୍ଲୀନ୍ ରହୁଥିଲେ । ସେ ବୃନ୍ଦାବନରୁ ରାଧା-କୃଷ୍ଣଙ୍କର ଯୁଗଳମୂର୍ତ୍ତି ଅଣାଇ ଢେଙ୍କାନାଳ ସ୍ଥିତ କୁଞ୍ଜକାନ୍ତ ନାରାୟଣ ମନ୍ଦିରରେ ସ୍ଥାପନା କରିଥିଲେ । ରାଧାକୃଷ୍ଣଙ୍କର ଯୁଗଳ ମୂର୍ତ୍ତିର ଧ୍ୟାନ, ଧାରଣା ଓ ପଦସେବା ତାଙ୍କ ଜୀବନର ପରମ ବ୍ରତ ଥିଲା । ରାଣୀ କୃଷ୍ଣଚନ୍ଦ୍ର ପ୍ରିୟା ନିଜର ଅପୂର୍ବ ବୈଷ୍ଣବୀୟ ଭକ୍ତି ଓ ପ୍ରେମ ଭାବନାକୁ ନେଇ ଅନେକ କାବ୍ୟ, କବିତା, ଭଜନ, ଜଣାଣ, କୀର୍ତ୍ତନ, ଚଉତିଶା ଆଦି ରଚନା କରିଯାଇଛନ୍ତ । ଏପରିକି ସ୍ୱାମୀଙ୍କବିରଚିତ ଅସମ୍ପୂର୍ଣ୍ଣ ସାକ୍ଷୀଗୋପାଳ କାବ୍ୟକୁ ରାଣୀ ନିଜେ ୧୯୨୨ ରେ ସଂପୂର୍ଣ୍ଣ କରିଥିଲେ ।

ରାଣୀ କୃଷ୍ଣଚନ୍ଦ୍ର ପ୍ରିୟାଙ୍କ ରଚିତ କାବ୍ୟ-କବିତା କୃତି ଗୁଡ଼ିକ ହେଲା- ସଙ୍ଗୀତପୁଷ୍ପାଞ୍ଜଳି (୧୯୧୩), ଭକ୍ତିକଥା (୧୯୨୨), ପ୍ରେମସଂପୁଟ (୧୯୨୮), କୁଞ୍ଜକାନ୍ତ କୃଷ୍ଣ ଜଣାଣ ଚଉତିଶା (୧୯୨୯), ପ୍ରାର୍ଥନାମୃତ (୧୯୩୦), ବଳଦେବ ଚଉତିଶା (୧୯୩୭), ହରିନାମ ଓ ଦଶାବତାର କୀର୍ତ୍ତନ (୧୯୩୭), ପଞ୍ଚସ୍ପୃହା (୧୯୩୯) ପ୍ରଭୃତି । ଏହିସବୁ କାବ୍ୟକୃତି ଗୁଡ଼ିକ ଭିତରୁ 'ପ୍ରେମସଂପୁଟ' ଏକ ମନୋରମ

କାବ୍ୟକୃତି । ଏହା ଏକ ପୌରାଣିକ କାବ୍ୟ । ରାଧା-କୃଷ୍ଣ ପ୍ରେମଲୀଳାର ରସମୟ ଅଭିବ୍ୟକ୍ତି ଏଥିରେ ଘଟିଛି । 'ସଙ୍ଗୀତ ପୁଷ୍ପାଞ୍ଜଳି' ଗ୍ରନ୍ଥଟି କବିଙ୍କର ସଙ୍ଗୀତ ଜ୍ଞାନ ଓ ସଙ୍ଗୀତ ସାଧନା ସଂପର୍କୀତ ଏକ ମନୋଜ୍ଞ କଳାକୃତି । 'ଭକ୍ତିକଥା' ତାଙ୍କର ଏକ କ୍ଷୁଦ୍ର ଭକ୍ତିଭାବାପନ୍ନ ରଚନା । ଏହା ବଙ୍ଗଳା ଭାଷାରେ ରଚିତ । ଏଥିରେ କୃଷ୍ଣକଥା ଓ କୃଷ୍ଣଭକ୍ତି ର ଚରମ ଅଭିବ୍ୟକ୍ତି ଘଟିଛି । 'ପ୍ରାର୍ଥନାମୃତ' ଟି ତାଙ୍କର ଏକ ଆଧାତ୍ମିକଭାବ ସଂପନ୍ନ ଭକ୍ତିରସାତ୍ମକ ରଚନା । ଏଥିରେ ଭଗବତ ମହିମାର ଚମତ୍କାର ବର୍ଣ୍ଣନା ରହିଛି । ଏହା ସହିତ ତାଙ୍କର ଭଜନ, ଜଣାଣ, କୀର୍ତ୍ତନ ଓ ଚଉତିଶା ଗୁଡିକରେ ବୈଷ୍ଣବୀୟ ଭକ୍ତିଭାବନା ଓ କୃଷ୍ଣପ୍ରେମର ଚରମ ନିଦର୍ଶନ ଫୁଟିଉଠିଛି । 'ପଞ୍ଚସ୍ପୃହା' କବିଙ୍କର ଏକ ଭକ୍ତିରସାତ୍ମକ ରଚନା । ଏଥିରେ ବୈଷ୍ଣବୀୟ ଧର୍ମ-ଦର୍ଶନ, ବୈଷ୍ଣବୀୟ ଭକ୍ତିଭାବନା ଓ କୃଷ୍ଣପ୍ରେମର ଚରମ ପରାକାଷ୍ଠା ଫୁଟି ଉଠିଛି । ନିଜର ପ୍ରିୟତମ ପୁରୁଷ ପରମ ପ୍ରେମମୟ ଶ୍ରୀ କୃଷ୍ଣଙ୍କର ସାନ୍ନିଧ ଲାଭପାଇଁ କବି ମୀରା ବାଇଙ୍କ ପରି ପ୍ରେମ ପାଗଳିନୀ ହୋଇଉଠିଛନ୍ତି । ଯେଉଁଥିପାଇଁ କବି ଲେଖିଛନ୍ତି -

"ସତେ କୃଷ୍ଣଚନ୍ଦ୍ର ପ୍ରିୟା ନୟନ ସଫଳ
ହେବ ଦରଶନ କରି ସେ ବାଳ ଗୋପାଳ ।

* * * * *

କେବେ ମୁଁ ଯମୁନାତୀରେ ତୁମ୍ଭନାମ ଗାଇ
ନୃତ୍ୟ ଆରମ୍ଭିବି ନାଥପ୍ରେମେ ଭୋଳ ହୋଇ

* * * * *

କୃଷ୍ଣଚନ୍ଦ୍ର ପ୍ରିୟା ସକଳ ବରଜି
ମତି ଯେ କୃଷ୍ଣ କମଳ
ଚରଣେ ଶରଣ ପଶି ଅନୁକ୍ଷଣ
ସେବିବାକୁ ମନ ବଳାଉଛି ଗୋ ।"

ଏହିସବୁ ରଚନା ଗୁଡିକ ମୁଖ୍ୟତଃ ବୈଷ୍ଣବ ଧର୍ମ-ଦର୍ଶନ ଓ କୃଷ୍ଣଭକ୍ତି ପରଂପରା କୁ ନେଇ ଗଢ଼ିଉଠିଛି । ରାଣୀ କୃଷ୍ଣଚନ୍ଦ୍ର ପ୍ରିୟା ଢେଙ୍କାନାଳ ମାଟିର ଏକ ଅନନ୍ୟ ଅନୁପମ ପ୍ରତିଭା ।

## - : ପାଦଟୀକା :-

୧. ଦୀନକୃଷ୍ଣ ଦାସ - ରସବିନୋଦ, ୪୨ ଅଧ୍ୟାୟ

୨. ତତ୍ରୈବ - ସପ୍ତଦଶ ଅଧ୍ୟାୟ, ପୃ-୧୬୭

୩. ଶରତ୍‌ଚନ୍ଦ୍ର ପତି - ଓ.ସା.ଇତିହାସ (ସାରଳାରୁ ସାଂପ୍ରତିକ), ପୃ-୯୯

୪. ଦୀନକୃଷ୍ଣ ଦାସ - ରସକଲ୍ଲୋଳ (ସଂ)- ବଂଶୀଧର ମହାନ୍ତି- ପ୍ରଥମଛାନ୍ଦ, ପୃ-୭୬

୫. ବ୍ରଜନାଥ ବଡ଼ଜେନା - ଗୋପୀବିଳାପ, ଷଷ୍ଠ ବୋଲି ବ୍ରଜନାଥ ବଡ଼ଜେନା ଗ୍ରନ୍ଥାବଳୀ, (ସଂ) ସୁଧାକର ପଟ୍ଟନାୟକ, ପୃ-୧୬୮

୬. ବ୍ରଜନାଥ ବଡ଼ଜେନା - 'ରାଜସଭା' ବ୍ରଜନାଥ ବଡ଼ଜେନା ଗ୍ରନ୍ଥାବଳୀ, ପୃ-୫୩୩

୭. ବ୍ରଜନାଥ ବଡ଼ଜେନା - କେଳିକଳାନିଧି, ଦ୍ୱିତୀୟ ଛାନ୍ଦ, ବ୍ରଜନାଥ ଗ୍ରନ୍ଥାବଳୀ, ପୃ-୮

୮. ତତ୍ରୈବ - ୫ମ ଛାନ୍ଦ, ତତ୍ରୈବ - ପୃ-୨୨-୨୩

୯. ବ୍ରଜନାଥ ବଡ଼ଜେନା - ବିଦେଶ ଅନୁଚିନ୍ତା, ତତ୍ରୈବ- ପୃ-୯୦

୧୦.ତତ୍ରୈବ - ପୃ-୯୧

୧୧.ବ୍ରଜନାଥ ବଡ଼ଜେନା - ଦଶପୋଇ, ପଞ୍ଚମପୋଇ, ତତ୍ରୈବ - ପୃ-୧୦୪

୧୨.ତତ୍ରୈବ - ନବମପୋଇ, ତତ୍ରୈବ, - ପୃ - ୧୧୧

୧୩.ବ୍ରଜନାଥ ବଡ଼ଜେନା - ଶ୍ୟାମରାସୋତ୍ସବ - ଦ୍ୱାଦଶ ଛାନ୍ଦ

୧୪.ବ୍ରଜନାଥ ବଡ଼ଜେନା - ରାଜସଭା, ବ୍ରଜନାଥ ଗ୍ରନ୍ଥାବଳୀ, ପୃ-୫୧୮

୧୫.ବ୍ରଜନାଥ ବଡ଼ଜେନା - ରାଜନଙ୍କୁ ଛଳୋକ୍ତି, ତତ୍ରୈବ - ପୃ - ୫୧୩

୧୬.ତତ୍ରୈବ - ପୃ - ୫୧୪



# ଚତୁର୍ଥ ଅଧ୍ୟାୟ
# (ଆଧୁନିକ ସାହିତ୍ୟ)

ପୃଷ୍ଠଭୂମି : ଓଡ଼ିଶାରେ ବ୍ରିଟିଶ୍ ଶାସନ କାଳରେ ହିଁ ଆଧୁନିକ ସାହିତ୍ୟର ନବୋନ୍ମେଷ ଘଟିଥିଲା । ଏହି ଆଧୁନିକ ସାହିତ୍ୟ ମଧ୍ୟଯୁଗୀୟ କାବ୍ୟ ସାହିତ୍ୟର ପାରମ୍ପରିକ ଗଡ୍ଡଳିକା ପ୍ରବାହକୁ ଅବରୋଧ କରି ଓଡ଼ିଆ ସାହିତ୍ୟ ଜଗତରେ ନୂତନ ଚିନ୍ତା, ଚେତନା, ଅଭିନବରୁଚି ଓ ଅନୁପମ କାବ୍ୟ-ଶୈଳୀର ଅନୁବର୍ତ୍ତନ କରିଥିଲା । ଏହି ଆଧୁନିକ ସାହିତ୍ୟର ସୃଷ୍ଟି ଆଭିମୁଖ୍ୟ,ବିଷୟବୈଚିତ୍ର୍ୟ, କଳାନୈପୁଣ୍ୟ, ପ୍ରକାଶଭଙ୍ଗୀ ଓ ରସରୂପାୟନ କୌଶଳ ମଧ୍ୟଯୁଗୀୟ ସାହିତ୍ୟଠାରୁ ଭିନ୍ନ ହେଲ । ଆଧୁନିକ ସାହିତ୍ୟର ଜନ୍ମଲଗ୍ନ , ଜନ୍ମଉସ୍ ଓ ପାରିପାର୍ଶ୍ୱିକ ପରିବେଶ, ପରିସ୍ଥିତି ମଧ୍ୟଯୁଗୀୟ ସାହିତ୍ୟଠାରୁ ସମ୍ପୂର୍ଣ୍ଣ ଭିନ୍ନ ଥିଲା । ଓଡ଼ିଶାର ମୁସଲମାନ, ମୋଗଲ. ମରହଟ୍ଟା ଶାସନ କାଳରେ ମଧ୍ୟଯୁଗୀୟ କାବ୍ୟସାହିତ୍ୟ ମୁଣ୍ଡଟେକି ଉଠିଥିଲା ।ମାତ୍ର ଇଂରେଜ ଶାସନ କାଳରେଉନ୍ନବିଂଶ ଶତାବ୍ଦୀର ଅଷ୍ଟମ-ନବମ ଦଶକ ବେଳକୁ ଓଡ଼ିଶାରେ ଆଧୁନିକ ସାହିତ୍ୟ ର ଅଭ୍ରଂକଷ ସୌଧ ଗଢ଼ିଉଠିଥିଲା । ଏହି ଆଧୁନିକ ସାହିତ୍ୟ ସଂପୂର୍ଣ୍ଣରୂପେ ପାଶ୍ଚାତ୍ୟ ଇଉରୋପୀୟ ସାହିତ୍ୟର ଆଦର୍ଶ, ତା'ର ରୂପ ବିଭବ, ଆତ୍ମିକ ରସ ସଂପଦ ଓ ଆଙ୍ଗିକରୂପ ପରିପାଟୀ ଦ୍ୱାରା ପ୍ରଭାବିତ ଓ ନିୟନ୍ତ୍ରିତ ହେଲା । ଏହା ସହିତ ଏହି ସାହିତ୍ୟରେ ଭାରତୀୟ ସଂସ୍କୃତ ସାହିତ୍ୟ ଓ ପ୍ରାନ୍ତୀୟ ପଡୋଶୀ ବଙ୍ଗଳା ସାହିତ୍ୟର ପ୍ରଭାବ ମଧ ପଡିଲା ।

ଇଂରେଜ ମାନଙ୍କର ଓଡ଼ିଶା ଭୂ-ଖଣ୍ଡ ଅଧିକାର (ଖ୍ରୀ.ଅ. ୧୮୦୩) ଓ ସାମ୍ରାଜ୍ୟ ବିସ୍ତାର ପରେ ପରେ ଇଂରେଜ ସରକାର ଓଡ଼ିଶାରେ ଶାସନଗତ ସୁବିଧାପାଇଁ ଇଂରାଜୀ ଭାଷା-ଶିକ୍ଷାର ପ୍ରସାର ଉପରେ ଗୁରୁତ୍ୱ ଦେଇଥିଲେ । ଯା' ଫଳରେ ଓଡ଼ିଶାର ବିଭିନ୍ନ ପ୍ରାନ୍ତରେ ଇଂରାଜୀ ମିଡିୟମ୍ ସ୍କୁଲ୍ ଓ ଭର୍ଣ୍ଣାକୁଲାର ସ୍କୁଲ୍‌ମାନ ଗଢ଼ିଉଠିଥିଲା । ଇଂରାଜୀ ଭାଷା-ଶିକ୍ଷାର ପ୍ରସାର ଫଳରେ ଏ ଦେଶ ରେ ଇଂରାଜୀ ପଢୁଆ, ନବ୍ୟ-ଶିକ୍ଷିତଙ୍କର ଆବିର୍ଭାବ ଘଟିଥିଲା । ଏହି ବିଲାତି ପଢୁଆ, ନବ୍ୟ-ଶିକ୍ଷିତ ଗୋଷ୍ଠୀର ଚିନ୍ତା-ଚେତନା ଓ ଭାବ ରାଜ୍ୟରେ ଅଭୂତପୂର୍ବ ପରିବର୍ତ୍ତନ ଆସିଥିଲା । ସେମାନେ ପାଶ୍ଚାତ୍ୟ ଶିକ୍ଷା, ସଭ୍ୟତା, ସଂସ୍କୃତି ଓ ସାହିତ୍ୟର ଅନୁସରଣରେ ଓଡ଼ିଶାର ଆଧୁନିକ ଜୀବନଧାରା

ଓ ସାହିତ୍ୟକୁ ନିୟନ୍ତ୍ରିତ କଲେ । ଯା' ଫଳରେ ଓଡ଼ିଶାର ସାମାଜିକ, ସାଂସ୍କୃତିକ, ରାଜନୈତିକ, ଧାର୍ମିକ ଓ ସାରସ୍ୱତ ରଙ୍ଗମଞ୍ଚରେ ଅଭିନବତ୍ୱ ପ୍ରକଟିତ ହେଲା । ଓଡ଼ିଶାର ରାଜନୈତିକ ପଟ୍ଟପରିବର୍ତ୍ତନ, ଓଡ଼ିଆ ଜାତିର ଜୀବନଧାରା, ପ୍ରାଣପ୍ରବାହ, ଚିନ୍ତା-ଚେତନା ଓ ଜ୍ଞାନ-ବିଜ୍ଞାନ ରାଜ୍ୟକୁ ନିୟନ୍ତ୍ରିତ, ପରିବର୍ତ୍ତିତ କଲା । ସମୟକ୍ରମେ ଓଡ଼ିଶାରେ ବିଭିନ୍ନ ସ୍କୁଲ୍, କଲେଜ ପ୍ରତିଷ୍ଠା ହେଲା, ମୁଦ୍ରଣ ଯନ୍ତ୍ରର ସ୍ଥାପନା ହେଲା, ବିଭିନ୍ନ ପତ୍ର-ପତ୍ରିକା, ପାଠ୍ୟପୁସ୍ତକ ଆଦି ପ୍ରଣୟନ ହେଲା । ଏହି ସବୁ କାରଣରୁ ଓଡ଼ିଶାରେ ଏକ ଉଚ୍ଚଶିକ୍ଷିତ ମଧ୍ୟବିତ୍ତ ଶ୍ରେଣୀର କ୍ରମ ଅଭ୍ୟୁଦୟ ଘଟିଲା । ଏହି ଇଂରାଜୀ ପଢୁଆ ଉଚ୍ଚଶିକ୍ଷିତ ଗୋଷ୍ଠୀ ହିଁ ତଥାକଥିତ ଅଭିନବ, ଆଧୁନିକ କାବ୍ୟଶୈଳୀରେ ନୂତନ ଅଭିରୁଚି ଓ ଅଭିପ୍ରାୟରେ ଆଧୁନିକ ସାହିତ୍ୟ ରଚନାରେ ହାତ ଦେଲେ । ଏମାନଙ୍କ ସହିତ ଉଚ୍ଚ ଶିକ୍ଷିତ ନ ହୋଇ ମଧ୍ୟ ସ୍ୱଦେଶ ସଂସ୍କୃତି ଓ ଜୀବନ ବୋଧର ଉତ୍ତର ରକ୍ଷକ ଭାବରେ କିଛି ବ୍ୟକ୍ତିତ୍ୱ ମଧ୍ୟ ଦଣ୍ଡାୟମାନ ହୋଇ ଆଧୁନିକ ସାହିତ୍ୟ ରଚନାର ଧାରାରେ ସାମିଲ୍ ହେଲେ । କବି ରାଧାନାଥ ରାୟ, ମଧୁସୂଦନ ରାଓ, ଫକୀରମୋହନ ସେନାପତି, ଗଙ୍ଗାଧର ମେହେର, ନନ୍ଦକିଶୋର ବଳ ପ୍ରମୁଖ ତୁଙ୍ଗ ବ୍ୟକ୍ତିମାନେ ଆଧୁନିକ ସାହିତ୍ୟର ସୌଧ ନିର୍ମାଣରେ ଲାଗିପଡିଲେ । ଏହି ସବୁ ସ୍ରଷ୍ଟା ମାନଙ୍କର ସାଧୁ ଉଦ୍ୟମ, ଅଭିନବ ଚିନ୍ତା, ଚେତନା ଓ ଆଦର୍ଶରେ ପ୍ରଭାବିତ, ଅନୁପ୍ରାଣିତ ହୋଇ ଓଡ଼ିଶାର କୋଣ-ଅନୁକୋଣର ସାରସ୍ୱତ ସାଧକମାନେ ସାହିତ୍ୟ ସାଧନାରେ ବ୍ରତୀ ହେଲେ । ଏହି ପରିପ୍ରେକ୍ଷାରେ ଢେଙ୍କାନାଳ ମାଟିର ସୁଯୋଗ୍ୟ ସନ୍ତାନ ମାନେ ମଧ୍ୟ ଆଧୁନିକ ଯୁଗୀୟ ଚେତନା ଓ ସାହିତ୍ୟ ଦ୍ୱାରା ପ୍ରଭାବିତ ହୋଇ କାବ୍ୟ-କବିତା, ପ୍ରବନ୍ଧ, ଗଳ୍ପ, ଉପନ୍ୟାସ, ନାଟକ ଆଦି ରଚନାରେ ମନୋନିବେଶ କଲେ ।

## ଆଧୁନିକ ସାହିତ୍ୟର ପ୍ରମୁଖ ସ୍ରଷ୍ଟା -

### ସୁଲକ୍ଷଣା ପଟ୍ଟନାୟକ (ଖ୍ରୀ.ଅ. ୧୮୨୯-୧୯୦୧) :

ଆଧୁନିକ ଢେଙ୍କାନାଳ ସାହିତ୍ୟର ପ୍ରମୁଖ ସ୍ରଷ୍ଟା ଅନୁକ୍ରମରେ ସର୍ବ ପ୍ରଥମେ ଆମେ ଢେଙ୍କାନାଳର ନାରୀ କବି ସୁଲକ୍ଷଣା ପଟ୍ଟନାୟକଙ୍କର ସାରସ୍ୱତ କୃତିର ଅନୁଶୀଳନ କରିବା । ସୁଲକ୍ଷଣାଥିଲେ ଢେଙ୍କାନାଳ ମାଟିର ପ୍ରଥମ ନାରୀ କବି । ଏପରିକି ସେ ଆଧୁନିକ ଓଡ଼ିଆ କାବ୍ୟସାହିତ୍ୟର ଅଗ୍ରପୁରୋଧା ରାଧାନାଥ ରାୟଙ୍କ ଠାରୁ ବୟସରେ ପ୍ରାୟ ୧୯ ବର୍ଷ ବଡ଼ ଥିଲେ । ସୁଲକ୍ଷଣାଙ୍କ ସୃଷ୍ଟିରାଜି ଭିତରେ ମଧ୍ୟଯୁଗୀୟ କାବ୍ୟାଦର୍ଶର

ଛିଟା ଥିଲେ ମଧ୍ୟ, ଆଧୁନିକ ଚେତନାର ବାଳସୂର୍ଯ୍ୟର ବଣ୍ଡଳ ଆଭା ପ୍ରଥମେ ଉକୁଟି ଉଠିଥିଲା । ଯେଉଁଥିପାଇଁ ତାଙ୍କୁ ଆଧୁନିକ ଢେଙ୍କାନାଳ ସାହିତ୍ୟର ନବୋଦିତ ସୂର୍ଯ୍ୟର ବାଳରଶ୍ମୀ ରୂପେ ଅଭିହିତ କରାଯାଇପାରେ । କବି ସୁଲକ୍ଷଣା ଜନ୍ମଲାଭ କରିଥିଲେ ଚିଗିରିଆ ଗଡ଼ରେ । ତାଙ୍କ ପିତାଥିଲେ-ଦାଶରଥି ବେବର୍ତ୍ତା ପଟ୍ଟନାୟକ । ଢେଙ୍କାନାଳ ନିବାସୀ ଶ୍ରୀ ନିତ୍ୟାନନ୍ଦ ପଟ୍ଟନାୟକଙ୍କୁ ବିବାହ କରି ସୁଲକ୍ଷଣା ଢେଙ୍କାନାଳ ମାଟିର ବୋହୂ ହୋଇଥିଲେ । ସୁଲକ୍ଷଣା ଢେଙ୍କାନାଳ ଆସିବାବେଳକୁ ଢେଙ୍କାନାଳ ଗଡ଼ର ରାଜାଥିଲେ-ଭଗୀରଥମହୀନ୍ଦ୍ର ବାହାଦୂର । ରାଜା ଭଗୀରଥଙ୍କ ସାହିତ୍ୟାନୁରାଗ, ପ୍ରତିଭା ଓ ପାଣ୍ଡିତ୍ୟ ସୁଲକ୍ଷଣାଙ୍କୁ ପ୍ରଭାବିତ କରିଥିଲା । ସୁଲକ୍ଷଣା ଏକାନ୍ତ ଧର୍ମପରାୟଣା ଥିଲେ । ବିଭିନ୍ନ ମାନବୀୟ ସୁ-ଲକ୍ଷଣରେ ମଣ୍ଡିତା ହୋଇ ସେ ସୁଲକ୍ଷଣା ନାମର ସାର୍ଥକତା ରକ୍ଷା କରି ପାରିଥାଲ । ଇଶ୍ୱର ଆରାଧନା, ଜନସେବା ଓ ଭକ୍ତିଭାବନାରେ ସେ ତଲ୍ଲୀନ ରହିବା ସହିତ ବାଣୀ ଆରାଧନାରେ ବ୍ରତୀ ରହୁଥିଲେ । ସୁଲକ୍ଷଣା ଉଭୟ କୃଷ୍ଣ ଓ ଜଗନ୍ନାଥଙ୍କର ଭକ୍ତ ଓ ଉପାସକ ଥିଲେ । ଉଭୟଙ୍କୁ ଭକ୍ତି, ଉପାସନା କରି ସେ ଦୁଇଗୋଟି ପୁତ୍ର ସନ୍ତାନ ପ୍ରାପ୍ତ ହୋଇଥିଲେ । ଯେଉଁଥିପାଇଁ ସେ ଜ୍ୟେଷ୍ଠ ପୁତ୍ରର ନାମ ରଖିଥିଲେ - ଜଗନ୍ନାଥ ଓ କନିଷ୍ଠ ପୁତ୍ରର ନାମ ଦେଇଥିଲେ-ଦାମୋଦର । ଏହି ଦାମୋଦର ଦିନେ ଢେଙ୍କାନାଳ ସାହିତ୍ୟର ନଭମଣ୍ଡଳକୁ ନିଜର କାବ୍ୟିକ ପ୍ରତିଭାର ଔଜ୍ଜ୍ୱଲ୍ୟ ଓ ବର୍ଣ୍ଣବିଭାରେ ଉଜ୍ଜ୍ୱଳମଣ୍ଡିତ କରିପାରିଥିଲେ । ଖ୍ରୀ.ଅ. ୧୮୮୧ ବେଳକୁ ସ୍ୱାମୀ ନିତ୍ୟାନନ୍ଦଙ୍କର ମୃତ୍ୟୁ ଘଟିବାରୁ ସୁଲକ୍ଷଣା ବୈଧବ୍ୟ ବେଶ ଧାରଣ କରି ଈଶ୍ୱର ଆରାଧନାରେ ମଗ୍ନ ରହିଲେ । ଈଶ୍ୱର ଆରାଧନା ଓ ଦେବ ପୂଜନ ସହିତ ଦୀନ-ଦରିଦ୍ର ସେବା, ବ୍ରାହ୍ମଣ ଓ ଅତିଥି ସେବା, ଗୀତ ଗୋବିନ୍ଦ ଗାନ, ପୁରାଣ ପଠନ, ଶ୍ରବଣ ଓ ସାରସ୍ୱତ ରଚନାରେ ମଜ୍ଜି ରହିଲେ । ଏହି ଦୃଢ଼ଶୀଳା, ସୁଲକ୍ଷଣା, ଧର୍ମପରାୟଣା, ଭକ୍ତିମତୀ, ମହିୟସୀ ମହିଳା ସୁଲକ୍ଷଣା ଦେବୀ ୧୯୦୧ ମସିହାରେ ୭୨ ବର୍ଷ ବୟସରେ ଇହଲୀଳା ସମ୍ବରଣ କଲେ । ଏହି ମହାନ୍ ଆତ୍ମାଙ୍କ ଅବର୍ତ୍ତମାନରେ ପଲ୍ଲୀକବି ନନ୍ଦକିଶୋର 'ସୁଲକ୍ଷଣା ଦେବୀ' ଶୀର୍ଷକ ଯେଉଁ କବିତାଟି ଲେଖିଛନ୍ତି, ସେଥିରୁ ତାଙ୍କର ମହାନ୍ ଦୈବତ କବିତ୍ୱ ପ୍ରତିଭାର ପରିଚୟ ମିଳେ । ନନ୍ଦକିଶୋର ଲେଖିଛନ୍ତି -

"ଧନ୍ୟ ସୁଲକ୍ଷଣା ଦେବୀ, ସୁ-ଲକ୍ଷଣ ବତୀ
ପବିତ୍ର ବୈକୁଣ୍ଠ ଧାମୁଁ, ଘେନ ମୋ ପ୍ରଣତି ।
ଦରିଦ୍ର, ପତିତ, ହୀନ, ଲାଞ୍ଛିତ ଉତ୍କଳେ
ଜନ୍ମିଥିଲ ଭାଗ୍ୟବତୀ, କେଉଁ ପୁଣ୍ୟବଳେ ?

ଥିଲ ଖତ-କୁଢ଼ ପଦ୍ମ, ଶ୍ମଶାନ-ତୁଳସୀ
ଥିଲ ତୁମେ ଅନ୍ଧକାରେ ପ୍ରତିପଦା ଶଶୀ ।
ଉତ୍କଳ ଭାରତୀ କଣ୍ଠେ ଉତ୍କଳୀୟ ବାଳା
ଲମ୍ବାଇଛି ମାତଃ ! ଚାରୁ ପାରିଜାତ ମାଳା ।"

କବୟିତ୍ରୀ ସୁଲକ୍ଷଣାଙ୍କର ସାରସତ କୁସୁମର ମାଳା-ଏହି 'ପାରିଜାତମାଳା' । ଏଥିରେ କେତେ ଗୁଡିଏ ଭାବମୟ କବିତା, ଜଣାଣ ଓ ଶୋକ ଗୀତିକା ଗୁମ୍ଫିତ ହୋଇଛି । ଏହି କବିତା କୁସୁମ ର ପାରିଜାତ ମାଳାଟି ୧୮୯୬ ମସିହାରେ ପ୍ରକାଶିତ ହୋଇ ଉତ୍କଳଭାରତୀଙ୍କର କଣ୍ଠରେ ଶୋଭାପାଇଥିଲା । 'ପାରିଜାତମାଳା' ରେ ସନ୍ନିବିଷ୍ଟ କବିତା ଗୁଡିକ ସଂପର୍କରେ ଭକ୍ତକବି ମଧୁସୂଦନ ରାଓ ବେଶ୍ ତାତ୍ପର୍ଯ୍ୟପୂର୍ଣ୍ଣ ମନ୍ତବ୍ୟ ଦେଇଯାଇଛନ୍ତି - "ସୁଲକ୍ଷଣା ଦେବୀଙ୍କର ପ୍ରତ୍ୟେକଟି କବିତା ସୁଲକ୍ଷଣାକ୍ରାନ୍ତ, ଶୁଦ୍ଧ ସତ୍ତ୍ୱଭାବରେ ପରିପୂର୍ଣ୍ଣ, ନିର୍ମଳ ଧର୍ମାନୁରାଗ ଦ୍ୱାରା ଅନୁପ୍ରାଣିତ, ସରଳ ବିଶ୍ୱାସ ଓ କୋମଳ ପ୍ରୀତିର ସର୍ଗୀୟ ସୁଧାମୟ ସୌରଭରେ ପରିପ୍ଲାବିତ ହୋଇଅଛି ।" (୧) ବାସ୍ତବରେ ପାରିଜାତ ମାଳାର ପ୍ରତିଟି କବିତା ପାରିଜାତ ପୁଷ୍ପର ସର୍ଗୀୟ ସୁଷମାରେ ମହିମାନ୍ୱିତ । ଏହି କବିତା ଗୁଡ଼ିକର ମୁଖ୍ୟ ବୈଶିଷ୍ଟ୍ୟ ହେଲା- ଏ ଗୁଡିକ ଆଧୁନିକ କବିତାର ବେଶ୍ ନିକଟବର୍ତ୍ତୀ । ଆଧୁନିକ ଯୁଗର ପ୍ରତିଭାଧର ସ୍ରଷ୍ଟା ରାଧାନାଥ, ମଧୁସୂଦନ, ନନ୍ଦକିଶୋର ପ୍ରମୁଖ ସୁଲକ୍ଷଣାଙ୍କର ଏହି ନବୋଦିତ ଚେତନାରେ ପ୍ରଭାବିତ ହୋଇ ତାଙ୍କୁ ମାତୃରୂପା ରୂପରେ ସ୍ଥାନିତ ଓ ସମ୍ମାନିତ କରିଛନ୍ତି । 'ପାରିଜାତମାଳା'ରେ ସନ୍ନିବିଷ୍ଟ କବିତା ଗୁଡିକ ହେଲା- ଶ୍ରୀ ବଡ ଦେଉଳ, ବସନ୍ତ, ଗ୍ରୀଷ୍ମ, ବର୍ଷା, ଶରତ ଏବଂ ଶୀତ । ଏହି କବିତା ଗୁଡିକ ସହିତ ଛଅ ଗୋଟି ଭକ୍ତି ଓ ଆଧ୍ୟାତ୍ମିକଭାବ ସମ୍ବଳିତ ଜଣାଣ ଓ ଦୀନବନ୍ଧୁ କୋଇଲି ନାମରେ ଏକ ଶୋକ ଗୀତିକା ଏଥିରେ ସ୍ଥାନିତ ହୋଇଛି । 'ଶ୍ରୀ ବଡଦେଉଳ' କବିତାଟି ଆଧ୍ୟାତ୍ମିକ ଭାବ ସମ୍ବଳିତ ଏକ ଭକ୍ତିପୂତ ରଚନା । ନିଜ କନିଷ୍ଠ ପୁତ୍ର ଦାମୋଦରଙ୍କ ସାଗ୍ରହ ଅନୁରୋଧରେ ବଙ୍ଗଳାଶ୍ରୀ ରାଗରେ କବି ଏହି କବିତାଟି ରଚନା କରିଥିଲେ । କୋଟି ବ୍ରହ୍ମାଣ୍ଡର ନାଥ ମହାପ୍ରଭୁ ଜଗନ୍ନାଥଙ୍କର ମହିମା ଏହି କବିତାଟିରେ ପ୍ରକଟିତ । ପତିତପାବନ ପ୍ରଭୁ ଜଗନ୍ନାଥ ସାଂସାରୀକ ମୋହ-ମାୟା ର ବନ୍ଧନ ଓ ପାପ ପଙ୍କ ଭିତରୁ ମଣିଷ ମାନଙ୍କୁ ପତିତପାବନ ରୂପଧରି ଉଦ୍ଧାର କରନ୍ତି ବୋଲି କବି କହିଛନ୍ତି । କବିଙ୍କ ଭାଷାରେ-

"ନୀଳଚକ୍ରେ ଯେଉଁ ବାନା ଉଡୁଅଛି
ପାପୀଙ୍କି ଡାକୁଛି ସେହି
ଆସ ଆସ ଜନେ ଶରଣ ପଶିବ
ଶମନକୁ ଭୟ ନାହିଁ।" (୨)

'ବସନ୍ତ' କବିତାଟି ପ୍ରାକୃତିକ ସୌନ୍ଦର୍ଯ୍ୟ ଗର୍ଭିତ ଏକ ମନୋରମ, ମନୋଜ୍ଞ କବିତା । ବସନ୍ତ ପ୍ରକୃତିର ଚାରୁଶୋଭାର ଚିତ୍ରଣ ସହିତ ମାନବିକ ଆଶା-ଆକାଙ୍‌କ୍ଷା ଓ ଆବେଗିକ ଆବେଦନର ପରିପ୍ରକାଶ ଏଥିରେ ଘଟିଛି । ଏହି କବିତାଟିରେ କବୟିତ୍ରୀଙ୍କର ଅପୂର୍ବ କଳ୍ପନା ବିଳାସ, ଉତ୍ତୁଙ୍ଗ ଭାବବିଳାସ, ଅନୁପମ କଳାପାଟବତା ଓ ମୁଗ୍ଧ ସୌନ୍ଦର୍ଯ୍ୟ ଦୃଷ୍ଟି ଫୁଟି ଉଠିଛି । କବି କଳ୍ପନାରେ ବ୍ରହ୍ମାଙ୍କ ଆଜ୍ଞା ଘେନି ଋତୁରାଜ ବସନ୍ତ ଷଡ଼ଋତୁ ମାନଙ୍କ ସହିତ ମର୍ତ୍ତ୍ୟକୁ ଆଗମନ କରିଛନ୍ତି । ଆସିବା ବାଟରେ ମଳୟ ପର୍ବତରୁ ଚନ୍ଦନବନର ବାସ୍ନା ଘେନି ନବବସନ୍ତ ଧରାବକ୍ଷକୁ ଜୀବନ୍ତ, ପଲ୍ଲବିତ, ପୁଷ୍ପିତ, ସୁରଭିତ ଓ ସୁଶୋଭିତ କରିଛି । ନବବସନ୍ତର କାଉଁରୀ ସ୍ପର୍ଶରେ ଶୁଷ୍କ, ମୃତପ୍ରାୟ ତରୁମାନେ ନବକିଶଳୟରେ ଶୋଭିତ ଓ ପଲ୍ଲବିତ ହୁଅନ୍ତି । ଏପରିକି ଜରାଜୀର୍ଣ୍ଣ ବୃଦ୍ଧ ମଧ୍ୟ ନବ ବସନ୍ତର ସ୍ପର୍ଶରେ ନବ ଯୌବନ ରୂପ ଲାଭ କରେ । କବିଙ୍କ ଭାଷାରେ-

"ମୃତ ତରୁଏ ପଲ୍ଲବିତ ହେଲେ
ବୃଦ୍ଧ ଜରତି ବେଶକୁ ଛାଡିଲେ
ନବ ଯଉବନ ଶୋଭା ଦେଖାଇ
ରଙ୍ଗ ଶାଢ଼ୀ ପିନ୍ଧି ଓଢ଼ଣା ଦେଇ ।" (୩)

ବସନ୍ତର ଆଗମନୀରେ ଶିରୀଷ ପୁଷ୍ପ କମନୀୟ ଶୋଭା ଧାରଣା କରିଛି । କବିଙ୍କ ଭାଷାରେ-

"ଶିରୀଷ କୁସୁମ ବୃକ୍ଷରେ ଅଛି
ଝରାଝୁମ୍ପା ପ୍ରାୟ ଶୋଭା ଦିଶୁଛି ।
ସୁନ୍ଦର ପଣରେ କେ ତାକୁ ଅଛି
ମୂଳରେ ପାଖୁଡା ଦେଇଛି ବିଛି ।" (୪)

କେବଳ ଶିରୀଷ ନୁହେଁ, ମଧୁମାଳତୀ, ଚମ୍ପା, ବକୁଳ, ନାଗେଶ୍ୱର, ସୁନାରୀ, ଟଗର, ମଲ୍ଲୀ, ତରାଟ, ନିଆଳି, ମୁଚୁକୁନ୍ଦ, ପଳାସ ଆଦି ପୁଷ୍ପ ସମ୍ଭାରର ବିମଳ ସୌନ୍ଦର୍ଯ୍ୟର

ବର୍ଣ୍ଣନା କବି କରିଛନ୍ତି । କବିଙ୍କ ଭାଷାରେ-

ନାଗେଶ୍ୱର ଫୁଲ ଝୁଲିଣି ରହି
"ଝୁଲୁ ଝୁଲୁ କାହିଁ ପଡ଼ଇ ମହୀ
ମୁଚୁକୁନ୍ଦ ଫୁଲ ବୃକ୍ଷର ତଳ
ପଡ଼ିବାରୁ ବାସୁଥାଇ ବିରଳ
* * *
ସୁନାରୀ, ପାଟଳୀ ଦିଶେ ସୁନ୍ଦର
ଚିତ୍ର କଲା ପ୍ରାୟେ ବୃକ୍ଷ ଉପର ।"(୫)

ଏହି 'ବସନ୍ତ' କବିତାରେ ପ୍ରାକୃତିକ ସୌନ୍ଦର୍ଯ୍ୟର ସ୍ୱାଭାବିକ, ବାସ୍ତବ ଚିତ୍ରଣ ସହିତ କବି ଚୈତ୍ରପୂର୍ଣ୍ଣିମା ତିଥିରେ ରାଧା-କୃଷ୍ଣଙ୍କର 'ବସନ୍ତରାସ' ର କମନୀୟ, ରସମୟ, ଚିତ୍ରମୟ ବର୍ଣ୍ଣନା ମଧ କରିଛନ୍ତି । 'ଗ୍ରୀଷ୍ମ' କବିତାରେ କବି ଗ୍ରୀଷ୍ମଋତୁରେ ରୌଦ୍ରଦଗ୍ଧ ପୃଥିବୀବାସୀଙ୍କର ଦୁଃଖ-କଷ୍ଟର ଚିତ୍ରଣ କରିଛନ୍ତି । ରୌଦ୍ରତାପର ପ୍ରଚଣ୍ଡ ତ୍ରାସରେ ସର୍ପକୁଳ ଏବଂ ମୀନମାନେ ସଂକଟରେ ପଡିବାର ଦୃଶ୍ୟ କବି ଚିତ୍ରଣ କରିଛନ୍ତି । କବିଙ୍କ ଭାଷାରେ-

"ସର୍ପ ପାଣିଖାଇ ଚଳେ
ଲେଉଟି ଆସିବା ବେଳେ
ତପତ ବାଲିରେ ପୋଡି ରହିଲା ରେ
* * * *
ତପତ ଜଳକୁ ଚାହିଁ
ମୀନମନେ ଭୟ ପାଇ
ଧୀବର ଜାଲରେ ଯାଇଁ ପଡିଲା ରେ ।"(୬)

ସେହିପରି 'ବର୍ଷା' କବିତାରେ କବି ବର୍ଷାକାଳୀନ ପ୍ରକୃତିର ରୁଦ୍ର-ସୁନ୍ଦର ରୂପର ଚିତ୍ରଣ ସହିତ ଏହି ଋତୁରେ ଅନୁଷ୍ଠିତ ବିଭିନ୍ନ ପର୍ବ-ପର୍ବାଣୀ, ଅନୁଷ୍ଠାନ ଆଦିର ଅବତାରଣା କରିଛନ୍ତି । ବର୍ଷା ଆଗମନରେ ପଦ୍ମ ଫୁଲ ଦୁଃଖୀ ହେଲାବେଳେ କଇଁଫୁଲ ଆନନ୍ଦ ବିଭୋରିତ ହୁଏ । ତରୁଲତାମାନେ ପୁଷ୍ପ ଶୋଭିତ ଓ ଫଳବିମଣ୍ଡିତ ହୋଇଉଠନ୍ତି । କିଆ, ମାଳତୀ, କଦମ୍ବ, ଜୁଇ, ଜାଇ ଆଦି ପୁଷ୍ପମାନେ ମୁକୁଳିତ ହୋଇ ହସିଉଠନ୍ତି ।

ଛତୁମାନେ ରାଜଛତ୍ର ପ୍ରାୟେ ଧରିତ୍ରୀର ଶୋଭା ମଣ୍ଡନ କରନ୍ତି । ହଂସ-ହଂସରାଳି, ଚକ୍ରବାକ-ଚକ୍ରବାକୀ ପ୍ରମୁଖ ପକ୍ଷୀକୁଳ ଜଳକେଳିରେ ମଗ୍ନ ରହିବାର ଦୃଶ୍ୟ କବି ବର୍ଣ୍ଣନା କରିଛନ୍ତି । 'ଶରତ' କବିତାରେ ଶରତର ଶାନ୍ତ, ସୁନିର୍ମଳ ପ୍ରାକୃତିକ ଶୋଭାର କମନୀୟ ଚିତ୍ର ବର୍ଣ୍ଣିତ । ଶରତ ପ୍ରକୃତି ଭିତରେ କବି ମାନବିକ ଚେତନାର ପରିପ୍ରକାଶ ସହିତ ଆଧାତ୍ମିକ-ଭକ୍ତି ଭାବନାର ବିମଳ ଚିତ୍ର ପ୍ରକଟନ କରିଛନ୍ତି । ଏହି ଋତୁରେ ଦୁର୍ଲ୍ଲଭ କଳା ତୁଳସୀ, ଦୟଣା ଏବଂ ଅଗସ୍ତି ବୃକ୍ଷ ପୁଷ୍ପିତ ହୋଇ ଶୋଭାମୟ ରୂପ ଧାରଣ କରେ । ଶରତର ପଦ୍ମ, ଗଙ୍ଗଶିଉଳି, ଜୁଇ, ଜାଇ ଫୁଲମାନେ ଧରାକୁ ସୁଶୋଭିତ କରନ୍ତି । ଏହି ଶରତ ଋତୁରେ ଲକ୍ଷ୍ମୀ-ନାରାୟଣ ଖେଳ ଓ ରାଇ-ଦାମୋଦର ମିଳନ ପର୍ବ ଅନୁଷ୍ଠିତ ହୁଏ । 'ଶୀତ' କବିତାରେ କବି ହେମଋତୁର ମଞ୍ଜୁଳ ବର୍ଣ୍ଣନା କରିଛନ୍ତି । ଏହି ଋତୁ ପଦ୍ମବନ ପାଇଁ ବିନାଶର କାଳ । ଏହି କବିତାରେ କବି ବିଭିନ୍ନ ସାମାଜିକ ବିଧି-ବିଧାନର ଚିତ୍ର ସହିତ ବିଭିନ୍ନ ଋତୁସହ ଆମ୍ର ବୃକ୍ଷର ସଂପର୍କକୁ ସୂଚିତ କରିଛନ୍ତି । କବିଙ୍କ ଭାଷାରେ-

"ପୁଷରେ ଆମ୍ବରେ ଠୁଳ
 ମାଘ ମାସରେ ବଉଳ
ଫଗୁଣେ ହୋଇ ଚଣା
 ଚଇତ୍ରେ ହୋଇବ ପଣା ।"(୭)

ଏହି ଋତୁରେ ପବିତ୍ର ପୌଷ ପୂର୍ଣ୍ଣମୀ ଓ ମାଘ ପୂର୍ଣ୍ଣମୀ ଅନୁଷ୍ଠିତ ହୁଏ । ଋତୁ ସଂପର୍କୀତ ଏହି ସବୁ କବିତା ଗୁଡ଼ିକ ବିଭିନ୍ନ ରାଗ-ରାଗିଣୀ ଓ ଛନ୍ଦ ଯୁକ୍ତ ହୋଇ ସ୍ୱଚ୍ଛ-ସୁନିର୍ମଳ ଜଳଧାରା ଶୋଭିତ ଚିତ୍ର ନଦୀଟିଏ ଭଳି କବିଙ୍କର ହୃଦୟ କନ୍ଦରକୁ ଝରିଆସିଛି । ଏହା ସହିତ ଏଥିରେ ଛଅ ଗୋଟି ଆଧାତ୍ମିକଭାବ ସମ୍ବଳିତ, ଭକ୍ତିପୂତ ଜଣାଣ ମଧ ସନ୍ନିବିଷ୍ଟ ହୋଇଛି । 'ଜଣାଣ-୧' ରେ କବି ଦାରୁବ୍ରହ୍ମ ଚତୁର୍ଦ୍ଧା ମୂର୍ତ୍ତି ପ୍ରଭୁ ଶ୍ରୀ ଜଗନ୍ନାଥଙ୍କର ଅପରୂପ ଦିବ୍ୟ ଶୋଭା ର ବର୍ଣ୍ଣନା ସହିତ ତାଙ୍କ ଅପୂର୍ବ ମହିମାର ପ୍ରକଟନ କରିଛନ୍ତି । 'ଜଣାଣ-୨' ରେ କବି ଶ୍ରୀ ନନ୍ଦ ନନ୍ଦନ ମଧୁସୂଦନଙ୍କୁ ନିଜର ଦୁଃଖ-କଷ୍ଟ ଲାଘବ ପାଇଁ ଅଭିମାନ ଅନୁରଞ୍ଜିତ ଭକ୍ତିପୂର୍ଣ୍ଣ ହୃଦୟରେ ନିବେଦନ କରିଛନ୍ତି । 'ଜଣାଣ-୩' ରେ କବି ମହାପ୍ରଭୁ ପରଂବ୍ରହ୍ମ ଭଗବାନ ବିଷ୍ଣୁଙ୍କର ତ୍ରିବିଧ ରୂପ ଯଥା-କୃଷ୍ଣ, ରାମ, ବୁଦ୍ଧରୂପୀ ଜଗନ୍ନାଥଙ୍କର ମହିମା ପ୍ରକଟନ ସହିତ ସେମାନଙ୍କର ସ୍ତୁତି କରିଛନ୍ତି । 'ଜଣାଣ-୪' ରେ ନାରାୟଣ ଶ୍ରୀ ମଧୁସୂଦନଙ୍କର ମହିମା ବର୍ଣ୍ଣନ ସହିତ ସ୍ତୁତି ଗାନ କରିଛନ୍ତି । 'ଜଣାଣ-୫' ରେ ଭଗବାନଙ୍କର ଦଶାବତାର ରୂପର ବର୍ଣ୍ଣନା ସହିତ ଜଗନ୍ନାଥଙ୍କ କୃଷ୍ଣ

ରୂପର ମହିମା ପ୍ରକଟନ କରିଛନ୍ତି । 'ଜଣାଣ-୬' ରେ ଢେଙ୍କାନାଳର ଆରାଧ୍ୟ ଦେବତା ଶ୍ରୀ ବଳଦେବଙ୍କର ଅପାର ମହିମାର ଭଜନ ଓ ସ୍ତୁତି ଗାନ କରିଛନ୍ତି । କବିଙ୍କ ଭାଷାରେ-

"ଜୟ ଜୟ ବଳଦେବ
ତୁମ୍ଭେ ଦେବଙ୍କ ଉପରେ ଦେବ ହେ
ଜୟ ବଳରାମ, ସିଦ୍ଧ କର କାମ
ଜୟ ଜୟ ହଳଧାରୀ ହେ ।" (୮)

'ଦୀନବନ୍ଧୁ କୋଇଲି' ରଚନାଟି ଏକ ଶୋକ ଗୀତିକା । ଏହା ଚଉତିଶା ରୀତିରେ 'କ' ଠାରୁ 'କ୍ଷ' ଅକ୍ଷର ଅନୁକ୍ରମରେ ଚଉତିରିଶଟି ପଦରେ ରଚିତ । ଢେଙ୍କାନାଳ ର ରାଜା ଦୀନବନ୍ଧୁ ମହୀନ୍ଦ୍ର ବାହାଦୂରଙ୍କ ପରଲୋକ ପ୍ରାପ୍ତିକୁ ଉପଲକ୍ଷ୍ୟକରି କବି ଏହି ଶୋକ ଗୀତିକାଟି ରଚନା କରିଥିଲେ । ଧର୍ମପରାୟଣ, ପ୍ରଜାବତ୍ସଳ ରାଜା ଦୀନବନ୍ଧୁଙ୍କର ଅକାଳ ମୃତ୍ୟୁ ପାଇଁ କବି ନିଜର ଆରାଧ୍ୟ ଦେବତା ଶ୍ରୀହରିଙ୍କୁ ଦାୟୀ କରିଛନ୍ତି । ଯେଉଁଥିପାଇଁ କବି ଲେଖିଛନ୍ତି -

"କୋଇଲି ! ନ୍ୟାୟ ନ' କଲେ ଶ୍ରୀହରି
ଭସାଇ ଦେଲେ ନଗରୀ ।
ନିଷ୍ଟେ ଭାସିଗଲା, କେ ଥୟ କରିବ
ପୁତ୍ର-ବାଳକ ତାଙ୍କରି ଲୋ କୋଇଲି ।" (୯)

କବି ରାଜାଙ୍କର ଆତ୍ମୀୟ ପରିଜନ ଓ ପ୍ରଜାକୁଳଙ୍କୁ ଶାନ୍ତନା ଦେଇ ରାଜାଙ୍କର ମହିମା ଗାନ କରିଛନ୍ତି । କବି କହିଛନ୍ତି-

"ଶ୍ରୀବନ୍ତ ପୁରୁଷ ଗଲେ
ଶିରୀ ଛଡାଇଣ ନେଲେ
ଏ ପାପ ପୁରୀରେ କାହିଁକି ରହନ୍ତେ
ବଇକୁଣ୍ଠ ବିଜେ କଲେ ଲୋ' କୋଇଲି ।"(୧୦)

ସୁଲକ୍ଷଣା ଦେବୀଙ୍କର କବିତା ଗୁଡ଼ିକୁ ଅନୁଧ୍ୟାନ ଓ ଅନୁଶୀଳନରୁ ଜଣାଯାଏ-ଏହି କବିତା ଗୁଡ଼ିକ ଆଧୁନିକ ଚେତନାର ବେଶ୍ ନିକଟବର୍ତ୍ତୀ । ରାଧାନାଥ, ମଧୁସୂଦନ, ଗଙ୍ଗାଧର, ନନ୍ଦକିଶୋର ପ୍ରମୁଖ ଆଧୁନିକ ସ୍ରଷ୍ଟା ମାନଙ୍କର ସେ ସମକକ୍ଷ ନ' ହେଲେହେଁ; ସେମାନଙ୍କର ନମସ୍ୟା । ତାଙ୍କ ସୃଷ୍ଟି ଓଡ଼ିଆ କାବ୍ୟ କାନନରେ ଆପାଙ୍‌କ୍ତେୟ ନୁହେଁ ।

ତାଙ୍କ 'ପାରିଜାତମାଳା' ଉତ୍କଳୀୟ କାବ୍ୟ-କାନନର ଏକ ସର୍ଗୀୟ ପାରିଜାତ ସଦୃଶ । ତାଙ୍କର ପ୍ରତିଟି କବିତାର ସର୍ଗୀୟ ଭାବସଂପଦ, ଅପୂର୍ବ ରସମୟ ଦିବ୍ୟ ଆହ୍ଲାଦ- ଏହାକୁ ପାରିଜାତର ସର୍ଗୀୟ ସୁଷମା ଓ ନୈସର୍ଗିକ ସୌରଭରେ ଉଦ୍ଭାସିତ, ସୁବାସିତ କରିଅଛି । ସରଳ-ତରଳ, ହୃଦୟସ୍ପର୍ଶୀ ଭାଷା, ଭାବ, ସୁମଧୁର ରାଗ ଓ ହୃଦୟର ଅପୂର୍ବ ଭକ୍ତିମତ୍ତା ରେ ଜାରିତ ହୋଇ ଏହି କବିତା ଗୁଡ଼ିକ ବେଶ୍ ହୃଦୟଗ୍ରାହୀ, ସର୍ବଜନାଦୃତ ଓ କାଳଜୟୀ କଳାର ଗୌରବ ଲାଭ କରିପାରିଛି ।

## କବିରତ୍ନ ଭିକାରୀ ଚରଣ ଦାଶ (ଖ୍ରୀ.ଅ. ୧୮୫୮-୧୯୬୪):

କବି ଭିକାରୀ ଚରଣଙ୍କ ଜନ୍ମ ଢେଙ୍କାନାଳ ଜିଲ୍ଲାର ହିନ୍ଦୋଳ ଉପଖଣ୍ଡସ୍ଥିତ ବାଲିକିଆରୀ ଗ୍ରାମରେ ଖ୍ରୀ.ଅ. ୧୮୫୮ ରେ । ଭାରତୀୟ ସ୍ୱାଧୀନତା ସଂଗ୍ରାମ ଓ ଗଡ଼ଜାତ ଆନ୍ଦୋଳନର ସେ ଜଣେ ସମର୍ଥ ସାରଥୀ ଥିଲେ । ଦେଶ ମାତୃକାର ମୁକ୍ତି ଓ ସ୍ୱାଧୀନତା ପାଇଁ ତାଙ୍କ ହୃଦୟରେ ଯେଉଁ ଅଭିଳାଷ ଜାଗିଉଠିଥିଲା, ତା'ର ବୈପ୍ଳବିକ ପରିପ୍ରକାଶ ତାଙ୍କ ସୃଷ୍ଟି ଭିତରେ ପରିଲକ୍ଷିତ ହୁଏ । ବିଦେଶୀ କୁ-ଶାସନ ଓ ଭ୍ରଷ୍ଟ ରାଜତନ୍ତ୍ର ବିରୁଦ୍ଧରେ ସେ ବିଦ୍ରୋହ ଓ ବିପ୍ଳବର ସ୍ୱର ଟେକି ଥିଲେ । ତାଙ୍କ ରଚିତ କାଳଜୟୀ କଳାକୃତି ଗୁଡ଼ିକହେଲା- 'ଶକ୍ରାବତିଶ ବିଳାସ' କାବ୍ୟ, କାବ୍ୟ ରତ୍ନାବଳୀ, ସ୍ୱଦେଶ କୋଇଲି, ଘରେ ଘରେ ଚଳା ଅରଟ, ହିନ୍ଦୋଳ ଭ୍ରମଣ, ଜାତକ ଅଳଂକାର, ରସତନ୍ତ୍ର ପ୍ରଭୃତି । ଏହି ସବୁ କାବ୍ୟ କୃତି ଗୁଡ଼ିକ ଭିତରୁ କେତେକରେ ପୌରାଣିକ ଆଦର୍ଶ, ଆଧାତ୍ମିକ ଭାବନା ଓ ଭକ୍ତି ଚେତନା ଫୁଟି ଉଠିବା ସହ ଆଉ କେତେକରେ ଗାନ୍ଧୀବାଦୀ ଦର୍ଶନ ଓ ଆଦର୍ଶ ଫୁଟି ଉଠିଥିଲା ।

'ଶକ୍ରାବତିଶ ବିଳାସ' କାବ୍ୟଟି ଏକ କାଳଜୟୀ କଳାକୃତି । ରୀତିଯୁଗୀୟ ଆଳଂକାରିକ କାବ୍ୟ ଶୈଳୀରେ ଏହି କାବ୍ୟଟି ରଚିତ । ଏହା ଆଦ୍ୟ 'ସ', 'ଶ', 'ଷ' ଅକ୍ଷର ନିୟମରେ ରଚିତ । ଏହି କାବ୍ୟର ପାଣ୍ଡୁଲିପିଟି ୧୯୬୧ ମସିହାରେ ଓଡିଶା ସାହିତ୍ୟ ଏକାଡେମୀ ଦ୍ୱାରା ସମ୍ମାନିତ ହୋଇଥିଲା । ଭିକାରୀ ଚରଣ ହେଉଛନ୍ତି- ଓଡିଶା ସାହିତ୍ୟ ଏକାଡେମୀ ଦ୍ୱାରା ସମ୍ବର୍ଦ୍ଧିତ ଢେଙ୍କାନାଳ ମାଟିର ପ୍ରଥମ ସ୍ରଷ୍ଟା । ମାତ୍ର-ଦୁର୍ଭାଗ୍ୟର ବିଷୟ ଏହି ପାଣ୍ଡୁଲିପି ଟି ଏପର୍ଯ୍ୟନ୍ତ ମଧ ପ୍ରକାଶିତ ହୋଇପାରିନାହିଁ । କବିଙ୍କର 'କାବ୍ୟରତ୍ନାବଳୀ' ରଚନାଟି ମଧ ଏକ ଅମଳିନ କଳାକୃତି । ସଙ୍ଗୀତଶାସ୍ତ୍ର ସମ୍ବନ୍ଧୀୟ ଏହା ଏକ ପ୍ରାମାଣିକ କାବ୍ୟଗ୍ରନ୍ଥ । 'ସ୍ୱଦେଶ କୋଇଲି' ଏବଂ ଚଳା ଅରଟ ରଚନା ଦୁଇଟ

ଭାରତୀୟ ସ୍ୱାଧୀନତା ସଂଗ୍ରାମ ଓ ଗଡ଼ଜାତ ଆନ୍ଦୋଳନର ପୃଷ୍ଠଭୂମି ଉପରେ ରଚିତ । ଏହି ଦୁଇ ରଚନାରେ ଦେଶର ସ୍ୱାଧୀନତା ସଂଗ୍ରାମ, ଜାତୀୟ ମୁକ୍ତି ଆକାଙ୍‌କ୍ଷା, ଗାନ୍ଧୀବାଦୀ ଆଦର୍ଶ, ଗଡ଼ଜାତ ରାଜାମାନଙ୍କର ଅନ୍ୟାୟ, ଅତ୍ୟାଚାର ଅନ୍ଧାରୀ ଶାସନ ଓ ତା' ବିରୁଦ୍ଧରେ ଭୟଙ୍କର ପ୍ରଜା ଆନ୍ଦୋଳନର ଚିତ୍ର ଫୁଟି ଉଠିଛି । 'ହିନ୍ଦୋଳ ଭ୍ରମଣ' ରଚନାଟି ମଧ୍ୟ ଦେଶପ୍ରେମ ମୂଳକ, ଜାତୀୟବାଦୀ ଚିନ୍ତା-ଚେତନାର ଏକ ମହାର୍ଘ କୃତି । ତତ୍କାଳୀନ ଗଡ଼ଜାତ ରାଜାମାନଙ୍କର ଅନ୍ଧାରୀ ଶାସନର କ୍ରୁରତା, କୁ-ଶାସନ, ଶୋଷଣ-କଷଣ, ଅନ୍ୟାୟ, ଅତ୍ୟାଚାରର ବାସ୍ତବ ଚିତ୍ର ଏଥିରେ ପ୍ରକଟିତ । ବ୍ରିଟିଶ୍ ଶାସନତନ୍ତ୍ର ବିରୁଦ୍ଧରେ ଭୟଙ୍କର ପ୍ରତିବାଦ ଓ ବିଦ୍ରୋହର ସ୍ୱର ଏଥିରେ ତୀବ୍ରଭାବରେ ପ୍ରକଟିତ । ଏହି କାରଣରୁ ତତ୍କାଳୀନ ବ୍ରିଟିଶ୍ ପଲ୍‌ଟିକାଲ୍ ଏଜେଣ୍ଟ ବେଜେଲ ଗେଟ୍ ସାହେବଙ୍କର ରୋଷର ଶିକାର ସେ ହୋଇଥିଲେ । ତତ୍କାଳୀନ ହିନ୍ଦୋଳର ରାଜାଥିଲେ- ଜନାର୍ଦ୍ଦନ ସିଂହ ମର୍ଦ୍ଦରାଜ । ସେ ଜଣେ ଗୁଣୀ, ସାହିତ୍ୟାନୁରାଗୀ ବ୍ୟକ୍ତି ଥିଲେ । ସେ ରସଲତା ଏବଂ ମାଧବାନନ୍ଦ କାବ୍ୟ ନାମରେ ଦୁଇଖଣ୍ଡି କାବ୍ୟ ରଚନା କରିଥିଲେ । ଜଣେ କବି ହୋଇ ସେ କବି ଭିକାରୀ ଚରଣଙ୍କ ପ୍ରତି ସାହାଯ୍ୟର ହାତ ବଢ଼ାଇଥିଲେ । ରାଜା ଜନାର୍ଦ୍ଦନ ମର୍ଦ୍ଦରାଜଙ୍କ ହସ୍ତକ୍ଷେପ ଫଳରେ ଭିକାରୀ ଚରଣ ବ୍ରିଟିଶ୍ ସରକାରଙ୍କ ରୋଷର ଶିକାର ରୁ ମୁକ୍ତି ପାଇଥିବାର ଜଣାଯାଏ । ଭିକାରୀ ଚରଣଙ୍କର 'ଜାତକ ଅଳଂକାର' ଗ୍ରନ୍ଥଟି ଜ୍ୟୋତିଷଶାସ୍ତ୍ର ସଂପର୍କୀତ ଏକ ରଚନା । 'ରସତନ୍ତ୍ର' ଗ୍ରନ୍ଥଟି ମଧ୍ୟ ଏକ ଆଳଂକାରିକ କାବ୍ୟସୃଷ୍ଟି । ଏହା ବ୍ୟତୀତ କବିଙ୍କର ଆହୁରି ଅନେକ ରଚନା ରହିଅଛି । ଯେଉଁ ଗୁଡିକ କି' ମହାକାଳର ଦନ୍ତକ୍ଷତ ଦ୍ୱାରା ବିନଷ୍ଟ ଏବଂ କୀଟଦ୍ରଷ୍ଟ ହୋଇ ଦୁଷ୍ପ୍ରାପ୍ୟ ହୋଇଅଛି ।

## ଦାମୋଦର ପଟ୍ଟନାୟକ (ଖ୍ରୀ.ଅ. ୧୮୬୨-୧୯୧୫):

ଦାମୋଦର ପଟ୍ଟନାୟକ ଖ୍ରୀ.ଅ. ୧୮୬୨ ଫେବୃଆରୀ ମାସ ୨୨ ତାରିଖ ପବିତ୍ର ଶ୍ରୀପଞ୍ଚମୀ ତିଥିରେ ଢେଙ୍କାନାଳ ସହର ସ୍ଥିତ ବେବର୍ତ୍ତା ନିବାସରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତା ନିତ୍ୟାନନ୍ଦ ପଟ୍ଟନାୟକ ପାଲଲହଡାର ମୂଳ ବାସିନ୍ଦା ଥିଲେ । ପରବର୍ତ୍ତୀ ସମୟରେ ସେ ଢେଙ୍କାନାଳ ଗଡ଼ ସ୍ଥିତ ବେବର୍ତ୍ତା ନିବାସରେ ସ୍ଥାୟୀ ବାସ କରିଥିଲେ । ଦାମୋଦରଙ୍କ ମାତା ଥିଲେ-ସୁଲକ୍ଷଣାଦେବୀ । ମାତା ସୁଲକ୍ଷଣାଙ୍କର ପ୍ରଭାବ ବାଳକ ଦାମୋଦର ଉପରେ ପଡିଥିଲା । ଦାମୋଦର ଢେଙ୍କାନାଳ ସହରରେ ପ୍ରାଥମିକ

ଓ ମାଧ୍ୟମିକ ଶିକ୍ଷା ସମାପ୍ତି କରି କଟକସ୍ଥିତ ରେଭେନ୍‌ସା କଲିଜିଏଟ୍ ସ୍କୁଲ୍ ଏବଂ ପରେ ରେଭେନ୍‌ସା କଲେଜରେ ଏଫ୍. ଏ. ବା ଆଇ.ଏ. ଅଧ୍ୟୟନ କରିଥିଲେ । ଏଫ୍. ଏ. ପାଶ୍ ପରେ ଦାମୋଦର ବିଭିନ୍ନ ଗଡ଼ଜାତ ମାନଙ୍କରେ ମ୍ୟାନେଜର ତଥା ଦେଓ୍ୱାନ୍ ରୂପରେ କାର୍ଯ୍ୟ କରିଥିଲେ । ଦାମୋଦର ମୁଖ୍ୟତଃ କେନ୍ଦୁଝର, ଆଠମଲ୍ଲିକ, ତାଳଚେର, ହିନ୍ଦୋଳ, ଆଠଗଡ଼, ନରସିଂହପୁର, ପ୍ରଭୃତି ଗଡ଼ଜାତ ଗୁଡ଼ିକରେ ଦେବାନ ରୂପରେ କାର୍ଯ୍ୟ କରିଥିଲେ ।

ଦାମୋଦର ନିଜର କର୍ମମୟ ଜୀବନ ଭିତରେ ବି' ସାହିତ୍ୟ ସାଧନାରେ ନିଜକୁ ନିୟୋଜିତ କରିଥିଲେ । ଜନନୀ ସୁଲକ୍ଷଣାଦେବୀଙ୍କର ଆଶୀର୍ବାଦ ଓ ପ୍ରେରଣା ତାଙ୍କୁ ଲେଖନୀ ଚାଳନାପାଇଁ ଅନୁପ୍ରେରିତ କରିଥିଲା । ଦାମୋଦର ଏକାଧାରରେ ଥିଲେ ଜଣେ ଦକ୍ଷ ପ୍ରଶାସକ, ବିଜ୍ଞ ଗବେଷକ ଓ ସମାଲୋଚକ ବଳିଷ୍ଠ ପ୍ରାବନ୍ଧିକ, ପ୍ରଚଣ୍ଡ ପ୍ରତିଭାଧର କବି, ପ୍ରାଚୀନ ସଙ୍ଗୀତ ଏବଂ ସାହିତ୍ୟର ସଂକଳକ ଓ ଉତ୍ତର ରକ୍ଷକ । ଏହି ମହାନ୍ ଦୈବତ ପ୍ରତିଭା ଦାମୋଦରଙ୍କର ଖ୍ରୀ.ଅ. ୧୯୧୫ ଡିସେମ୍ବର ମାସ ୯ ତାରିଖରେ ୫୩ ବର୍ଷ ବୟସରେ ନରସିଂହପୁର ଗଡ଼ଜାତ ରାଜ୍ୟର ଦେବାନ ଥିବା ସମୟରେ ଅକାଳ ମୃତ୍ୟୁ ଘଟିଥିଲା । ତାଙ୍କର ଅକାଳ ମୃତ୍ୟୁ ଆଧୁନିକ ଓଡ଼ିଆ ସାହିତ୍ୟ ସର୍ବୋପରି ଢେଙ୍କାନାଳ ସାହିତ୍ୟର ଅପୂରଣୀୟ କ୍ଷତି ଘଟାଇଥିଲା ।

**ରଚନା ସମଗ୍ର:** ଦାମୋଦର ଉଭୟ ପଦ୍ୟ ଓ ଗଦ୍ୟ ସାହିତ୍ୟର ଜଣେ ସଫଳ ସ୍ରଷ୍ଟା । ସେ କାବ୍ୟ-କବିତାମାନ ରଚନା ସହିତ ପ୍ରବନ୍ଧ ରଚନା, ସମାଲୋଚନା ଓ ସଂପାଦନା କ୍ଷେତ୍ରରେ ମଧ୍ୟ କୃତିତ୍ୱ ହାସଲ କରିପାରିଥିଲେ । ତାଙ୍କର କାବ୍ୟ-କବିତା କୃତି ଗୁଡ଼ିକ ହେଲା- କପିଳାସ କ୍ଷେତ୍ର (୧୮୮୫), ଚିତ୍ରୋତ୍ପଳା(୧୮୯୩), ଜୀବନଚମ୍ପୂ (୧୯୦୨), ଜାତୀୟ ସଂଗୀତ (୧୯୦୩), ବାଲିଯାତ୍ରା (୧୯୦୪), ପଦ୍ମମୁଖୀ (୧୯୦୮), ଭଲପିଲା (୧୯୧୧), ଶ୍ରୀ ଜଗନ୍ନାଥ ସଂକୀର୍ତ୍ତନ (୧୯୧୩) । ତାଙ୍କ ରଚିତ ପ୍ରବନ୍ଧ-ସମାଲୋଚନା ଗୁଡ଼ିକହେଲା - ମହିମାଧର୍ମ (୧୮୮୩), ଢେଙ୍କାନାଳ ଗଡ଼ (୧୮୯୨), ସମାଲୋଚକ କବିଭୂଷଣ (୧୮୯୩), ସମାଲୋଚକ ରାମନାରାୟଣ (୧୮୯୩), ଚିତ୍ରୋତ୍ପଳା ଓ ସମାଲୋଚକ (୧୮୯୩), ନବୋଦିତ ସୂର୍ଯ୍ୟ ପ୍ରଭୃତି । ଦାମୋଦରଙ୍କ ଏହି ପ୍ରବନ୍ଧ-ସମାଲୋଚନା ଗୁଡ଼ିକ ତତ୍କାଳୀନ ଉତ୍କଳଦୀପିକା, ଉତ୍କଳ ସାହିତ୍ୟ, ସମ୍ବଲପୁର ହିତୈଷିଣୀ ଆଦି ପତ୍ର-ପତ୍ରିକାରେ ପ୍ରକାଶିତ

ହୋଇଥିଲା । ଦାମୋଦରଙ୍କ ସଂପାଦନା ସାହିତ୍ୟ ଗୁଡ଼ିକ ହେଲା- ସମର ତରଙ୍ଗ ସଂପାଦନା, ଚତୁର ବିନୋଦ ସଂପାଦନା, ପାରିଜାତମାଳା ସଂପାଦନା । ସଙ୍ଗୀତ ରଚନା ସଂପର୍କୀତ ଗ୍ରନ୍ଥ : ସଙ୍ଗୀତ ସାଗର (ସାତଖଣ୍ଡ)-(୧୮୮୯), ସଙ୍ଗୀତ ସର୍ବସାର (୧୮୯୬) ।

**କପିଳାସ କ୍ଷେତ୍ର (୧୮୮୫):** ଏହା ଏକ ପ୍ରାକୃତିକ ସୌନ୍ଦର୍ଯ୍ୟ ଗର୍ଭିତ ଐତିହାସିକ କ୍ଷୁଦ୍ର ଖଣ୍ଡ କାବ୍ୟ। ଏଥିରେ ତିନିଗୋଟି ଅଧ୍ୟାୟ ରହିଛି । ଇତିହାସ, କିମ୍ବଦନ୍ତୀ, ପୌରାଣିକ କଥାବସ୍ତୁ ଓ କପିଳାସ କ୍ଷେତ୍ରର ପ୍ରାକୃତିକ ସୌନ୍ଦର୍ଯ୍ୟକୁ ଆଧାର କରି କବି ଏହି 'କପିଳାସକ୍ଷେତ୍ର' କାବ୍ୟ ରଚନା କରିଛନ୍ତି । ପୁରାଣ ପ୍ରସିଦ୍ଧ ଶୈବକ୍ଷେତ୍ର କପିଳାସ ସଂପର୍କୀତ ଏହା ୍କ ପ୍ରମାଣିକ କାବ୍ୟ ଗ୍ରନ୍ଥ । ଏଥିରେ କପିଳାସ କ୍ଷେତ୍ରର ଉତ୍ପତ୍ତି, ମହିମା, ୍'ର ପୌରାଣିକ ଆଖ୍ୟାନ ସହିତ ପ୍ରକୃତିର ଅପୂର୍ବ ରୂପ ଶୋଭା ବର୍ଣ୍ଣିତ । ସମଗ୍ର ୍ବ୍ୟଟି କଳହଂସ କେଦାର ରାଗରେ ରଚିତ ହୋଇଅଛି ।

ପ୍ରଥମ ଅଧ୍ୟାୟରେ କପିଳାସ କ୍ଷେତ୍ର ଉତ୍ପତ୍ତିର ପୌରାଣିକ ଆଖ୍ୟାନର ମନୋଜ୍ଞ ବର୍ଣ୍ଣନା କବି କରିଛନ୍ତି । ଲଙ୍କାଧିପତି ରାବଣ କୈଳାସପର୍ବତ ଉତ୍ପାଟନ କରି ରଥ ଉପରେ ନିଜ ରାଜ୍ୟକୁ ବୋହିନେବା ସମୟରେ କୈଳାସ ପର୍ବତର ଗୋଟିଏ ଗିରୀଶୃଙ୍ଗ ଢେଙ୍କାନାଳଠାରେ ନିପତିତ ହୋଇ ପବିତ୍ର କପିଳାସ ଧାମର ସୃଷ୍ଟି କରିଛି ବୋଲି କବି ସୂଚିତ କରିଛନ୍ତି । କବିଙ୍କ ଭାଷାରେ-

"ମଦ ଗର୍ବିତ ଯେଉଁଦିନ ରାବଣ
କଲାକ କଇଳାଶ ଉତ୍‌ପାଟନ
ପଡ଼ି ଗୋଟାଏ ଶୃଙ୍ଗ ତହିଁ ଏଠାରେ
କୈଳାସ ସମକ୍ଷେତ୍ର ହେଲା ଧରାରେ ।" (୧୧)

ଦ୍ୱିତୀୟ ଅଧ୍ୟାୟରେ କପିଳାସ କ୍ଷେତ୍ରର ମହିମା ବର୍ଣ୍ଣନା କବି କରିଛନ୍ତି । ତୃତୀୟ ଅଧ୍ୟାୟରେ କପିଳାସ କ୍ଷେତ୍ରର ଐତିହାସିକ ବୃତ୍ତାନ୍ତ ସହିତ ଉତ୍କଳ ଇତିହାସର କେତେକ ଅଜ୍ଞାତ, ମହନୀୟ ଅଧ୍ୟାୟର ଉନ୍ମୋଚନ କରିଛନ୍ତି । ଉତ୍କଳର ଗଜପତି ସମ୍ରାଟ ପୁରୁଷୋତ୍ତମ ଦେବଙ୍କର କାଞ୍ଚି ଅଭିଯାନ ଓ ତାଙ୍କ ବୀରତ୍ୱ, ମହିମାର ପ୍ରକଟନ ସହିତ ପ୍ରତାପରୁଦ୍ର ଦେବଙ୍କର କପିଳାସ କ୍ଷେତ୍ର ଆଗମନ, ଷଣ୍ଢହତ୍ୟା ପାତକ ଦୋଷରୁ ମୁକ୍ତି ପାଇଁ ତାଙ୍କର ଶିବଙ୍କ ପୂଜା-ଆରାଧନା ର ବର୍ଣ୍ଣନା କବି କରିଛନ୍ତି । ଏହା ସହିତ କପିଳାସ

ପୀଠର ଆଧ୍ୟାତ୍ମିକ ମହିମା, ଏଠାକାର ପ୍ରସିଦ୍ଧ ଜାଗରଯାତ୍ରା, ବିଲଙ୍କାଗଡ଼, ବିଭିନ୍ନ ଶୈଳଗୁମ୍ଫା, ଋଷିଆଶ୍ରମ ଓ ପ୍ରାକୃତିକ ସୌନ୍ଦର୍ଯ୍ୟର ଚାରୁଚିତ୍ରଣ କବି କରିଛନ୍ତି ।

**ଜୀବନ ଚମ୍ପୂ (୧୯୦୨):** ଏହା କେତେ ଗୁଡ଼ିଏ କ୍ଷୁଦ୍ର କ୍ଷୁଦ୍ର ଗୀତିମୟ କବିତା ଓ ଜଣାଣର ସମାହାର । ଏହି ରଚନା ଗୁଡ଼ିକରେ ବିଭିନ୍ନ ରାଗ, ତାଳ ଓ ବୃତ୍ତର ମନୋଜ୍ଞ ପ୍ରୟୋଗ କବି କରିଛନ୍ତି । ମଣିଷ ଜୀବନକୁ ଧର୍ମୀୟ ଭାବନାରେ ଅନୁପ୍ରାଣିତ କରାଇ ନୀତି, ଆଦର୍ଶ ନିଷ୍ଠକରି ଗଢ଼ି ତୋଳି ସୁନୀତି ଓ ସୁରୁଚିର ପଥରେ ଗତି କରାଇବାପାଇଁ ଏହି ଗୀତିକା ଓ ଜଣାଣ ଗୁଡ଼ିକରେ କବି ଆହ୍ୱାନ ଦେଇଛନ୍ତି । ଯେଉଁ ପଥ ସତ୍ୟ, ସନାତନ, ଚିରନ୍ତନ ଓ ଅବିନାଶୀ; ସେହି ଶାଶ୍ୱତ ପଥରେ ମଣିଷ ସମାଜକୁ ଗତି କରାଇବାପାଇଁ କବି ବାଟ ଦେଖାଇଛନ୍ତି । ମଣିଷ ହୃଦୟରେ ଆତ୍ମଜ୍ଞାନର ଜାଗ୍ରତ କରାଇ ତାକୁ ଅଧ୍ୟାତ୍ମ ଉତ୍ତରିତ ଚେତନାରେ ତଲ୍ଲୀନ ହେବା ପାଇଁ ଆହ୍ୱାନ ଦେଇଛନ୍ତି । ବାସ୍ତବରେ ମଣିଷ ଜୀବଦ୍ଦଶାରେ କିପରି ଈଶ୍ୱର ଉପଲବ୍ଧି ଓ ଆଧ୍ୟାତ୍ମ ଉତ୍ତରିତ ଦିବ୍ୟଜୀବନ ବିତାଇ ପାରିବ, ସେହି ପ୍ରେରଣା 'ଜୀବନଚମ୍ପୂ' ରେ ନିହିତ ଅଛି ।

**ଜାତୀୟ ସଂଗୀତ (୧୯୦୩):** ଏହା ଏକ ଜାତୀୟ ଚେତନାଧର୍ମୀ, ଦେଶପ୍ରେମ ମୂଳକ ରଚନା । ଓଡ଼ିଆ ପ୍ରାଣରେ ଆତ୍ମସାଭିମାନ, ଜାତୀୟ ଅଭିମାନ ଦେଶପ୍ରେମ, ମୁକ୍ତିଭାବନା ଓ ସାଧୀନ ଚେତନା ଜାଗ୍ରତ କରାଇବା ଏହି ରଚନାର ମୂଳଲକ୍ଷ୍ୟ । କବି ଓଡ଼ିଆ ପ୍ରାଣରେ ଆତ୍ମସଚେତନତା ଓ ଆତ୍ମଜାଗୃତି ସୃଷ୍ଟି ପାଇଁ ଅତୀତ ଉତ୍କଳର ମହନୀୟ ଯଶ, ଗର୍ବ ଓ ଗୌରବର ଗୁଣଗାନ କରିଛନ୍ତି । କବିଙ୍କ ଭାଷାରେ-

"ନାହିଁ ଆଗ ଯଶ, ନାହିଁ ସେ ସାହସ
ନାହିଁ ସେ ଉଲ୍ଲାସ ସ୍ୱ-ଦେଶ ଭିତରେ
ଯା'ର ଜୟଭେରୀ ଗଙ୍ଗା-ଗୋଦାବରୀ
ଶୁଣିଥିଲେ ଦିନେ, ଚକିତ ଅନ୍ତରେ ।" (୧୨)

ଏଦେଶର ଭାଗ୍ୟବିପର୍ଯ୍ୟୟ, ପରାଧୀନର ଶୋଷଣ, କଷଣ ଓ ଅତୀତ ଗର୍ବ-ଗୌରବର ଅବଲୁପ୍ତି ପାଇଁ କବି ଅତ୍ୟନ୍ତ କ୍ଷୋଭ ପ୍ରକାଶ କରିଛନ୍ତି । ଦେଶ ଓ ଜାତିର ଉନ୍ନତି ପାଇଁ, ଜାତୀୟ ଜୀବନର ମଙ୍ଗଳ ବିଧାନ ପାଇଁ କବି ମାନବସେବା, ନିଃସ୍ୱାର୍ଥପରତା ଓ ଆତ୍ମତ୍ୟାଗ ଉପରେ ଗୁରୁତ୍ୱ ଦେଇଛନ୍ତି । ଆତ୍ମ ସ୍ୱାର୍ଥର ଜଳାଞ୍ଜଳି ଓ ମାନବ ସମାଜର

ସେବା ହିଁ ମାନବ ଜୀବନର ପ୍ରକୃତ କୀର୍ତ୍ତି ବୋଲି କବି କହିଛନ୍ତି । କବିଙ୍କ ଭାଷାରେ-

"ଦଣ୍ଡକ କୀରତିବନ୍ତ ଜୀବନ ମୂଲ୍ୟ ଅନନ୍ତ
ଯୁଗକ ଖାଲି ବଞ୍ଚିବା ଅକାରଣ
ସୁନ୍ଦର ହୃଦୟମାଳା ଶୋଭୁ ନୀଳାଚଳ ଗଳା
ଜାତୀୟ ଜୀବନ ପାଉ ସନମାନ ।" (୧୩)

ମୁଖ୍ୟତଃ କବି ମାନବ ଜୀବନର ଅନ୍ତର୍ନିହିତ ବିକାଶ ସହିତ ଜାତୀୟ ସ୍ୱାଭିମାନ, ସ୍ୱାତନ୍ତ୍ର୍ୟ ଓ ଜାତୀୟ ଜୀବନର ପରିପୂର୍ଣ୍ଣ ବିକାଶ ଚାହିଁଛନ୍ତି ।

**ବାଲିଯାତ୍ରା (୧୯୦୪) :** ଏହା ଏକ ଦୀର୍ଘ କବିତା । ଓଡ଼ିଶାର ସମୃଦ୍ଧ ଅତୀତର ଗୌରବାବହ ନିଶାଣ 'ବାଲିଯାତ୍ରା' ହିଁ ଏହି କବିତାର ପ୍ରାଣବାଣୀ । ଅତୀତ ଉତ୍କଳର ସମୃଦ୍ଧମୟ ନୌ-ବାଣିଜ୍ୟ ପରଂପରା, ଉତ୍କଳୀୟ ସଂସ୍କୃତି ଓ ଓଡ଼ିଆ ଜାତିର ଗର୍ବ, ଗୌରବର ଗାଥା ଏଥିରେ ପ୍ରକଟିତ । କବି ଚାହିଁଛନ୍ତି ଅତୀତର ସେଇ ଗର୍ବ, ଗୌରବ, ସାହସ ଓ ବୀରତ୍ୱର ରଣଭେରୀ ପୁଣିଥରେ ବାଜିଉଠୁ । ଯେଉଁଥିପାଇଁ କବି ଲେଖିଛନ୍ତି-

"ଜାତୀୟ ଜୀବନ ଟେକ ସଂରକ୍ଷଣେ
ଜୀବନ କରୁ ବିହାର
ଶୋଣିତ ଗର୍ବରେ ନାଚୁ ଧମନୀରେ
ବୀରତ୍ୱ ପ୍ରସରୁ ଘରୁ-ବାହାର ।"(୧୪)

ଅତୀତ ଉତ୍କଳର ଗୌରବମୟ ଗାଥାର ବର୍ଣ୍ଣନା ସହିତ କବି କଟକର ମହାନଦୀ କୂଳର ଗଡ଼ଗଡ଼ିଆ ଘାଟରେ କାର୍ତ୍ତିକ ପୂର୍ଣ୍ଣିମା ଅବସରରେ ପ୍ରତିବର୍ଷ ଅନୁଷ୍ଠିତ 'ବାଲିଯାତ୍ରା' ର ଅନୁପମ ବର୍ଣ୍ଣନା କରିଛନ୍ତି । ଏହାସହିତ ଉତ୍କଳର ଲୋକ ସଂସ୍କୃତି, ଓଡ଼ିଆ ମାନଙ୍କର ଚଳଣୀ ଓ ରୀତି-ନୀତିର ମନୋଜ୍ଞ ବର୍ଣ୍ଣନା ଏଥିରେ କବି କରିଛନ୍ତି ।

**ପଦ୍ମମୁଖ (୧୯୦୮) :** ଏହା ଏକ ଆଧ୍ୟାତ୍ମିକ ଭକ୍ତିଭାବାପନ୍ନ ଓ ପବିତ୍ର ଦାମ୍ପତ୍ୟ ପ୍ରେମ ଚିତ୍ର ସମ୍ବଳିତ ଏକ ମହାର୍ଘ କଳାକୃତି । କବି ଏହାକୁ 'ଦାମ୍ପତ୍ୟ ପ୍ରେମ ଲୀଳାମୃତ' କବ୍ୟ ରୂପରେ ଅଭିହିତ କରିଛନ୍ତି । କବି ସଂସାରୀକ ଜୀବନରେ ପତି-ପତ୍ନୀଙ୍କୁ ସୂର୍ଯ୍ୟ ଏବଂ ଚନ୍ଦ୍ର ରୂପରେ ଅଭିହିତ କରି ଏଇ ଧରାପୃଷ୍ଠରେ ପବିତ୍ର ଦାମ୍ପତ୍ୟପ୍ରେମ ରସର ଅପୂର୍ବ ପ୍ରବାହ ଛୁଟାଇଛନ୍ତି । ମାନବ ଜୀବନରେ ପବିତ୍ର ପ୍ରେମର ମହତ୍ତ୍ୱ ପ୍ରକଟନ ସହିତ କବି

ପ୍ରୀତିତତ୍ତ୍ୱ ର ସୁନ୍ଦର ବ୍ୟାଖ୍ୟା କରିଛନ୍ତି । କବି ଙ୍କ ଭାଷାରେ-

"ପ୍ରୀତି କି' ଅମୂଲ୍ୟ ଧନ
ପ୍ରୀତି ମିଠା ଲାଗି ସୃଷ୍ଟି ଜୀବନ
ସ୍ୱର୍ଗ-ମର୍ତ୍ତ୍ୟ-ପାତାଳ ଭୁବନ ।
* * * *
ଯେ ପ୍ରେମେ ନାହିଁ ବିରହ
ପ୍ରେମ କଳ୍ପଲତା ତାକୁ ନ' କହ
ଲୌହପିଟଣାରୁ ବଳି ଦେହ ।" (୧୫)

ମାନବ ଜୀବନର ଦାମ୍ପତ୍ୟପ୍ରେମ-ପ୍ରଣୟ ଦେଇ କବି ପଦ୍ମମୁଖୀ ନାରାୟଣ ଓ ପଦ୍ମାଳୟା ମାତା ଲକ୍ଷ୍ମୀଙ୍କର ଚିରନ୍ତନୀ, ଶାଶ୍ୱତ ଦାମ୍ପତ୍ୟ ପ୍ରେମ ବିଳାସର ଚିତ୍ର ପକଟନ କରିଛନ୍ତି । ପଦ୍ମମୁଖୀ ନାରାୟଣଙ୍କର ପାଦ-ପଦ୍ମ ଲାଭ ପାଇଁ ପଦ୍ମମୁଖୀଙ୍କ ପ୍ରତି ନିଷ୍କାମ, ନିଷ୍କପଟ ପ୍ରୀତି ହିଁ ଏକ ମାତ୍ର ମାଧ୍ୟମ ବୋଲି କବି ସୂଚିତ କରିଛନ୍ତି । କବିଙ୍କ ଭାଷାରେ-

"ତରିବାକୁ ଭବଧାମ
ପଦ୍ମମୁଖୀ-ପ୍ରୀତି ଏକା ଉତ୍ତମ
ଲଭିବାକୁ ଶ୍ରୀ ପୁରୁଷୋତ୍ତମ ।"(୧୬)

ମୋଟାମୋଟି ଭାବରେ କବି ଏଥିରେ ବିଶ୍ୱସୃଷ୍ଟି ରହସ୍ୟର ପ୍ରସଙ୍ଗ ଅବତାରଣାକରି, ସୃଷ୍ଟିର ମୂଳାଧାର ପରଂବ୍ରହ୍ମ ପଦ୍ମମୁଖୀ ଶ୍ରୀ ନାରାୟଣଙ୍କର ଲୀଳାବିଳାସ ଓ ଅପାର ମହିମାର ବର୍ଣ୍ଣନା କରିଛନ୍ତି ।

**ଭଲପିଲା (୧୯୧୧) :** ଏହା ଏକ ନୀତି-ଉପଦେଶ ମୂଳକ, ଶିଶୁ ଶିକ୍ଷା ସମ୍ବଳିତ ଗୀତିକା । ମଣିଷ ସମାଜକୁ ସୁ-ନୀତି ଓ ସୁ-ରୁଚିର ଆଦର୍ଶରେ ଅନୁପ୍ରାଣିତ କରାଇବା ଲକ୍ଷ୍ୟରେ କବି ଏହି ନୀତିଶିକ୍ଷା, ଉପଦେଶ ମୂଳକ, ଆଧ୍ୟାତ୍ମିକ-ଭକ୍ତିଭାବ ସମ୍ବଳିତ ଗୀତିକା ଗୁଡ଼ିକ ରଚନା କରିଛନ୍ତି । ଏଥିରେ ବିଦ୍ୟାର୍ଥୀ ର ଶିକ୍ଷା-ଦୀକ୍ଷା, ଇଶ୍ୱର ବିଶ୍ୱାସ, ଭକ୍ତିଭାବନା, ଗୁରୁଜନସେବା, ସମାଜସେବା, କର୍ମସାଧନା ଓ ଦେଶପ୍ରେମ ଭାବନା ସଂପର୍କରେ ଆଲୋକପାତ କରିଛନ୍ତି ।

**ଶ୍ରୀ ଜଗନ୍ନାଥ ସଂକୀର୍ତ୍ତନ (୧୯୧୩) :** ଏହା ଏକ ଆଧ୍ୟାତ୍ମିକ, ତତ୍ତ୍ୱ ମୂଳକ ରଚନା । ଜଗନ୍ନାଥ ସଂସ୍କୃତିର ପ୍ରଚାର ଓ ପରିପ୍ରସାର ଅଭିଲକ୍ଷ୍ୟରେ କବି ଏହା ରଚନା

କରିଥିବାର ଜଣାଯାଏ । ଭାରତୀୟ ସନାତନ ହିନ୍ଦୁ ଧର୍ମର ଆରାଧ ଦେବତା ପରଂବ୍ରହ୍ମ ଶ୍ରୀକୃଷ୍ଣ ଏବଂ ଉତ୍କଳୀୟ ଧର୍ମ-ଜଗତର ପରମାରାଧ ପରଂବ୍ରହ୍ମ ଶ୍ରୀ ଜଗନ୍ନାଥଙ୍କର ନାମ ମହିମାର ସଂକୀର୍ତ୍ତନ ଏଥିରେ କରାଯାଇଛି । କାବ୍ୟାରମ୍ଭରେ କବି ଭଗବାନ ପରଂବ୍ରହ୍ମ ଶ୍ରୀକୃଷ୍ଣଙ୍କର ସ୍ତୁତି, ସ୍ତବ ଓ ସଂକୀର୍ତ୍ତନ ସହିତ ପରଂବ୍ରହ୍ମ ଜଗନ୍ନାଥ ଓ ବାଗ୍‌ଦେବୀ ବୀଣାପାଣି ସରସ୍ଵତୀଙ୍କର ସ୍ତୁତି ଓ ଗୁଣ କୀର୍ତ୍ତନ କରିଛନ୍ତି । ଏହି ସଂକୀର୍ତ୍ତନ ମାଧ୍ୟମରେ କବି ସମଗ୍ର ବିଶ୍ୱରେ ହରି ପ୍ରେମର ନାମାମୃତ ବାଣ୍ଟିବାକୁ ଚାହିଁଛନ୍ତି । କବିଙ୍କ ଜୀବନୀ ଚରିତରୁ ଜଣାଯାଏ- ନରସିଂହପୁର ଗଡ଼ଜାତର ଶ୍ରଦ୍ଧାପୁର ଠାରେ ଅବସ୍ଥାନ କାଳରେ କବି ଜଗନ୍ନାଥଙ୍କର ଦିବ୍ୟପ୍ରେମନାମାମୃତ ପାନର ମହାର୍ଘ ସୁଯୋଗ ଲାଭ କରିଥିଲେ । ଯା' ଫଳରେ ସେ କାୟମନୋବାକ୍ୟରେ ଜଗନ୍ନାଥଙ୍କର ଭକ୍ତି, ନାମସଂକୀର୍ତ୍ତନ ଓ ପ୍ରେମରସ ପାନରେ ଉନ୍ମତ୍ତ ରହିଥିଲେ ।

ମୋଟାମୋଟି ଭାବରେ କବି ଜଗନ୍ନାଥଙ୍କ ସଂକୀର୍ତ୍ତନ ମାଧ୍ୟମରେ ବିଶ୍ୱ ସୃଷ୍ଟିର ରହସ୍ୟ, ମନୁଷ୍ୟର ଜନ୍ମ ରହସ୍ୟ, ତା'ର ଗୃହସ୍ଥାଶ୍ରମ, ପ୍ରେମଧର୍ମ, କର୍ମ, ଜ୍ଞାନ ଓ ଜନ୍ମାନ୍ତର ଆଦିର ବର୍ଣ୍ଣନା କରିଛନ୍ତି । କାବ୍ୟର ପରିସମାପ୍ତିରେ କବି ଜଗନ୍ନାଥ ଏବଂ କୃଷ୍ଣଙ୍କୁ ଏକ ଏବଂ ଅଭିନ୍ନ ରୂପରେ ସୂଚିତ କରି କୃଷ୍ଣ-ଜଗନ୍ନାଥଙ୍କର ନାମ ସଂକୀର୍ତ୍ତନ ଓ ପ୍ରେମରସାମୃତ ପାନରେ ଆନନ୍ଦ ବିଭୋର ହେବାପାଇଁ ବିଶ୍ୱ ମଣିଷ ମାନଙ୍କୁ ଆହ୍ୱାନ ଦେଇଛନ୍ତି ।

**ସଙ୍ଗୀତ ସାଗର (୧୮୮୯) :** ଏହା ଏକ ସଙ୍କଳିତ ସଙ୍ଗୀତ ଗ୍ରନ୍ଥ । ଏଥିରେ ଓଡ଼ିଶାର ବିଭିନ୍ନ ପ୍ରତିଭାଧର କବି ମାନଙ୍କର କେତେକ ମହାନ୍ ସଙ୍ଗୀତ ସହ କବିଙ୍କ ସ୍ୱ-ରଚିତ କେତେକ ସଙ୍ଗୀତ ଏଥିରେ ସ୍ଥାନିତ ହୋଇଛି । ଏଥିରେ ଛଅ ଗୋଟି ତରଙ୍ଗ ରହିଛି ।

**ସଙ୍ଗୀତ ସର୍ବସାର (୧୮୯୬) :** ଏହା ମଧ୍ୟ ଏକ ସଙ୍ଗୀତ ଶାସ୍ତ୍ରୀୟ ଗ୍ରନ୍ଥ । କେତେକ ଲୋକପ୍ରିୟ ପ୍ରାଚୀନ ସଙ୍ଗୀତକୁ କବି ଏଥିରେ ସଂକଳିତ କରି ଏହାକୁ ସଙ୍ଗୀତ ସର୍ବସାର ନାମରେ ନାମିତ କରିଛନ୍ତି । ବିଭିନ୍ନ ରାଗ, ରାଗିଣୀ, ତାଳ, ଲୟ ଆଦି ସାଙ୍ଗୀତିକ ନିୟମ ରେ ଅନୁବନ୍ଧିତ ଏହି 'ସଙ୍ଗୀତ ସାଗର' ଏକ ଅପୂର୍ବ ସାଙ୍ଗୀତିକ କଳା ସୃଷ୍ଟି । ଓଡ଼ିଶୀ ସଙ୍ଗୀତର ସାଙ୍ଗୀତିକ ବୈଶିଷ୍ଟ୍ୟ, ତା'ର ରୂପବୈଚିତ୍ର୍ୟ, ଭାବ ମାଧୁରୀ ଓ ଭାବ ବୈଦଗ୍ଧ୍ୟ ର ପ୍ରକଟନ ପୂର୍ବକ କବି ନିଜର ସାଙ୍ଗୀତିକ ଜ୍ଞାନ, ପାଣ୍ଡିତ୍ୟ, ସଙ୍ଗୀତ ଶାସ୍ତ୍ର ଦର୍ଶିତା ଓ ସଙ୍ଗୀତପ୍ରିୟତା ର ପରିଚୟ ଦେଇ ଯାଇଛନ୍ତି । ଏଥିରେ ସ୍ଥାନିତ ସଙ୍ଗୀତ ଗୁଡ଼ିକର

ସାଙ୍ଗୀତିକ ଆବେଦନ, ଭାବମାଧୁର୍ଯ୍ୟ, ରସଚାତୁର୍ଯ୍ୟ ଓ ଭକ୍ତିପୂତ ଆଧ୍ୟାତ୍ମିକ ଭାବନା ବେଶ୍ ପ୍ରଣିଧାନ ଯୋଗ୍ୟ । ଉତ୍କଳୀୟ ସଂସ୍କୃତିର ପୁନରୁଦ୍ଧାର ଓ ପ୍ରତିଷ୍ଠା ସହିତ ଅବଲୁପ୍ତ ଲୋକପ୍ରିୟ ପ୍ରାଚୀନ ସଙ୍ଗୀତ ସମୂହକୁ ପ୍ରାଚୀନ ତାଳପତ୍ର ପୋଥି ଓ ଛିନ୍ନ ପୃଷ୍ଠା ଭିତରୁ ଉଦ୍ଧାର କରି ତାକୁ ଜୀବନ୍ୟାସ ଦେଇ ଲୋକଲୋଚନକୁ ଆଣିବାରେ କବିଙ୍କର ଉଦ୍ୟମ ନିଶ୍ଚିତ ରୂପେ ପ୍ରଶଂସାର୍ହ । ବାସ୍ତବରେ ଦାମୋଦର ପଟ୍ଟନାୟକ ଢେଙ୍କାନାଳ ମାଟିର ଜଣେ ସୁଯୋଗ୍ୟ ସନ୍ତାନ । କେବଳ ଢେଙ୍କାନାଳ ଗଡ଼ଜାତର ନୁହେଁ ସମଗ୍ର ଉତ୍କଳୀୟ ସାରସ୍ୱତ ଜଗତର ସେ ଥିଲେ ଜଣେ ଅମ୍ଳାନ, କୀର୍ତ୍ତିମାନ ପ୍ରତିଭା ।

**ବାଙ୍କନିଧି ପଟ୍ଟନାୟକ (୧୮୮୯-୧୯୬୧) :**

କବି ବାଙ୍କନିଧିଙ୍କର ଜନ୍ମ ଖ୍ରୀ.ଅ.୧୮୮୯ ରେ ଢେଙ୍କାନାଳର ପାଞ୍ଜିଆ ସାହିରେ । ତାଙ୍କ ପିତା- କୁଞ୍ଜବିହାରୀ ପଟ୍ଟନାୟକ । ବାଲ୍ୟକାଳରୁ ବାଙ୍କନିଧି ଜଣେ ମେଧାବୀ ଛାତ୍ର ଥିଲେ । ସେ ଢେଙ୍କାନାଳ ହାଇସ୍କୁଲ୍ ରୁ ମାଇନର ପାଶ୍ ପରେ ରେଭେନ୍ସା କଲିଜିଏଟ୍ ସ୍କୁଲ୍ ରେ ଅଷ୍ଟମ ଶ୍ରେଣୀରେ ନାମ ଲେଖାଇଥିଲେ । ୧୯୦୯ ମସିହାରେ ବାଙ୍କନିଧି କୃତିତ୍ୱର ସହ ମାଟ୍ରିକୁଲେଶନ୍ ପାଶ୍ କରି ରେଭେନ୍ସା କଲେଜରେ ଆଇ.ଏ. ଶ୍ରେଣୀରେ ନାମ ଲେଖାଇଥିଲେ । ଏହାପରେ ସେ ରେଭେନ୍ସା କଲେଜରୁ ଦର୍ଶନଶାସ୍ତ୍ର ଅନର୍ସରେ ବି.ଏ. ପାଶ୍ ପରେ କଲିକତା ପ୍ରେସିଡେନ୍ସି କଲେଜରେ ଦର୍ଶନଶାସ୍ତ୍ରରେ ଏମ୍.ଏ. ଅଧ୍ୟୟନ କଲେ । ଏମ୍.ଏ. ଅଧ୍ୟୟନ ସହିତ ସେ ଆଇନ ଶିକ୍ଷାରେ ମଧ୍ୟ ଅଧ୍ୟୟନ କରି ଆଇନ ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇଥିଲେ ।

ବାଙ୍କନିଧି ଆଇନ୍ ପାଶ୍ କରି ୧୯୧୬ ମସିହାରେ ଢେଙ୍କାନାଳର ତତ୍କାଳୀନ ରାଜା ସୁରପ୍ରତାପଙ୍କ ଅଧୀନରେ ତହସିଲଦାର ରୂପେ ଚାକିରୀ ଜୀବନ ଅରମ୍ଭ କଲେ । ଜଣେ ଦକ୍ଷ ପ୍ରଶାସକ ଭାବରେ ସେ ଉଭୟ ରାଜା ଏବଂ ପ୍ରଜାଙ୍କର ପ୍ରଶଂସାଭାଜନ ହୋଇ ପାରିଥିଲେ । ୧୯୧୮ ମସିହାରେ ରାଜା ସୁରପ୍ରତାପଙ୍କ ମୃତ୍ୟୁପରେ ବାଙ୍କନିଧି ଚାକିରୀ ଛାଡି କଟକର ମଧୁସୂଦନ ଦାସ ଙ୍କ ନିକଟରେ ସହକାରୀ ଓକିଲଭାବେ କାର୍ଯ୍ୟରେ ଯୋଗଦେଲେ । ମାତ୍ର- ଓକିଲାତି କାର୍ଯ୍ୟ ରେ ତାଙ୍କ ମନ ନ' ଲାଗିବାରୁ ସେ ଓକିଲାତି ଛାଡ଼ି ଶିକ୍ଷକତା ବୃତ୍ତିକୁ ଆପଣେଇ ନେଇଥିଲେ । ବାଙ୍କନିଧି ୧୯୨୦ ମସିହା ବେଳକୁ ଓକିଲାତି ଛାଡି ଖୋର୍ଦ୍ଧା ହାଇସ୍କୁଲ୍ ରେ ପ୍ରଧାନ ଶିକ୍ଷକ ରୂପରେ ଯୋଗଦେଇଥିଲେ । ଏହାପରେ ସେ ମୟୁରଭଂଜର ବାରିପଦା ହାଇସ୍କୁଲରେ ମଧ୍ୟ କିଛି କାଳ ପ୍ରଧାନ ଶିକ୍ଷକ ରୂପେ ଯୋଗଦେଇଥିଲେ । ଏହି ଶିକ୍ଷକତା ହିଁ ତାଙ୍କ ଜୀବନକୁ ଶାନ୍ତି

ଆଣିଦେଇ ପାରଥିଲା । ଜଣେ ଆଦର୍ଶ ଶିକ୍ଷକ ଭାବରେ ସେ କୃତିତ୍ୱ ଅର୍ଜନ କରିପାରିଥିଲେ । ବାଙ୍କନିଧି ନିଜର ଦକ୍ଷତା ଓ କୃତିତ୍ୱ ବଳରେ ୧୯୩୭ ମସିହାରେ ଇଂରେଜ ସରକାରଙ୍କ ଦ୍ୱାରା 'ରାୟ ସାହେବ୍' ଉପାଧିରେ ଭୂଷିତ ହୋଇଥିଲେ ।

ଶିକ୍ଷକତା ସହିତ ବାଙ୍କନିଧି ସାହିତ୍ୟ ସାଧନାକୁ ନିଜ ଜୀବନର ଅନ୍ୟତମ ବ୍ରତ ରୂପେ ଗ୍ରହଣ କରିଥିଲେ । ବାଙ୍କନିଧି ମୁଖ୍ୟତଃ ଗଳ୍ପ ଓ ପ୍ରବନ୍ଧ ରଚନା କ୍ଷେତ୍ରରେ ନିଜର ଦକ୍ଷତା ପ୍ରତିପାଦନ କରି ଯାଇଛନ୍ତି । ସେ ଢେଙ୍କାନାଳ ସାହିତ୍ୟର ଜଣେ ସାର୍ଥକ ଗଦ୍ୟ ଶିଳ୍ପୀ । ବାଙ୍କନିଧିଙ୍କର ଗଦ୍ୟ ରଚନା ଗୁଡିକ ହେଲା- ସାବିତ୍ରୀ ଏବଂ ସୀତା । ଏହି ଦୁଇଖଣ୍ଡି ଜୀବନୀ ଗ୍ରନ୍ଥ । ମହାଭାରତୀୟ ଆର୍ଯ୍ୟ ସଭ୍ୟତା ଓ ସଂସ୍କୃତିର ପ୍ରାଣପିଣ୍ଡ ଭାରତୀୟ ନାରୀର ଆଦର୍ଶ ଓ ମହିମା ଏହି ଦୁଇ ଗ୍ରନ୍ଥରେ ପ୍ରକଟିତ । ବାଙ୍କନିଧିଙ୍କର ଗଦ୍ୟଶୈଳୀ ବେଶ୍ ସରଳ, ସାବଲୀଳ ଓ ପ୍ରାଞ୍ଜଳ । ତାଙ୍କର କଥାଗ୍ରନ୍ଥ ଗୁଡ଼ିକ ହେଲା- ଧୂପଛାୟା, କଥା ଶତକ ଓ ବୀରବଲ୍ କାହାଣୀ । 'ଧୂପଛାୟା' ଏକ ମନୋଜ୍ଞ କଥାଗ୍ରନ୍ଥ । ଏଥିରେ ସାତଗୋଟି ଗଳ୍ପ ସ୍ଥାନିତ ହୋଇଛି । ସେଗୁଡ଼ିକ ହେଲା-ମାଳତୀ, ପୋଷ୍ୟପୁତ୍ର, ପ୍ରବଞ୍ଚନା, ମୋହର ଚୋରୀ, ମୁକ୍ତି, ଲଛମନ୍ ଜୀ ପ୍ରଭୃତି । ଏହି ଗଳ୍ପ ଗୁଡ଼ିକ ଫକୀର ମୋହନଙ୍କ କଥାଶୈଳୀରେ ସମୃଦ୍ଧ । ଏଗୁଡ଼ିକ ଭିତରେ ତତ୍କାଳୀନ ସାମାଜିକ, ଧାର୍ମିକ, ଶୈକ୍ଷିକ ଓ ପାରିବାରିକ ଜୀବନର ବାସ୍ତବ, ଜୀବନ୍ତ ଚିତ୍ର ଫୁଟି ଉଠିଛି । ଏହା ସହିତ ସାମାଜିକ ଜୀବନର ବିଭିନ୍ନ ଅନ୍ଧ ବିଶ୍ୱାସ, କୁ-ସଂସ୍କାର ଓ ସାମାଜିକ ତ୍ରୁଟି-ବିଚ୍ୟୁତି ବିରୁଦ୍ଧରେ ପ୍ରତିବାଦର ସ୍ୱର ଫୁଟି ଉଠିଛି ।

'କଥା ଶତକ' ଗ୍ରନ୍ଥଟି ଏକ ଅନୁଦିତ ରଚନା । ଏହା ଇଶପ୍ ଙ୍କ କାହାଣୀର ଅନୁବାଦ ମାତ୍ର । ନୀତି ଓ ହିତୋପଦେଶରେ ସମୃଦ୍ଧ ଶହେ ଗୋଟି ଇଶପ୍ କାହାଣୀ ଏଥିରେ ସ୍ଥାନିତ । ଏହି କାହାଣୀ ଗୁଡ଼ିକର ଅନୁବାଦ ବେଶ୍ ସରଳ, ଭାବପୂର୍ଣ୍ଣ ଓ ଶିଶୁ ମନୋପଯୋଗୀ ହୋଇପାରିଛି । ଭାଷାର ସାରଲ୍ୟ ଓ ଭାବଗତ ସୌନ୍ଦର୍ଯ୍ୟ ହିଁ ଏହି କାହାଣୀ ଗୁଡ଼ିକୁ ମୌଳିକତା ପ୍ରଦାନ କରିପାରିଛି । ତାଙ୍କର ଅନ୍ୟତମ ରଚନା- 'ବୀରବଲ୍ କାହାଣୀ' ମଧ୍ୟ ଏକ ଅନୁବାଦ କୃତି । ସମ୍ରାଟ ଆକବରଙ୍କ ରାଜପରିଷଦର ପ୍ରତ୍ୟୁତ୍ପନ୍ନମତି ବିଦୂଷକ 'ବୀରବଲ୍' ଙ୍କ ଜୀବନର ବିଭିନ୍ନ ଘଟଣାବଳୀ, ତାଙ୍କର ତୀକ୍ଷ୍ଣ ବୁଦ୍ଧି, ପ୍ରତ୍ୟୁତ୍ପନ୍ନମତିତା ଓ କବିତ୍ୱ ପ୍ରତିଭା ଉପରେ ପ୍ରତିଷ୍ଠିତ କାହାଣୀ ଗୁଡ଼ିକ ଏଥିରେ ସ୍ଥାନିତ ହୋଇଛି । ବୌଦ୍ଧିକତା, ହାସ୍ୟ, ବ୍ୟଙ୍ଗଭରା ଏହି କାହାଣୀ ଗୁଡ଼ିକ ବେଶ୍ ମନଛୁଆଁ ହୋଇ ପାରିଛି ।

ଓଡ଼ିଆ ସାହିତ୍ୟର ଏହି ବରେଣ୍ୟ ପ୍ରତିଭା, ଢେଙ୍କାନାଳ ମାଟିର ପ୍ରଥିତଯଶା ସ୍ରଷ୍ଟା କଥାକାର, ପ୍ରାବନ୍ଧିକ ବାଙ୍କନିଧି ପଟ୍ଟନାୟକ ୧୯୬୧ ମସିହା ମେ ମାସ ୧୩ ତାରିଖରେ ଇହଲୀଳା ସମ୍ବରଣ କରି ପରଲୋକ ଗମନ କରିଥିଲେ ।

**ଶ୍ରୀ ଅଲେଖ ପ୍ରସାଦ ଦାସ (ଖ୍ରୀ.ଅ. ୧୯୦୨- ) :**

ଶ୍ରୀ ଅଲେଖ ପ୍ରସାଦ ଦାସଙ୍କ ଜନ୍ମ ଢେଙ୍କାନାଳ ଜିଲ୍ଲାର ଲାଉଲଇ ଅନ୍ତର୍ଗତ ବୈଦ୍ୟକାଟେଣୀ ଗ୍ରାମରେ । ତାଙ୍କ ପିତାଙ୍କ ନାମ ଗଣେଶ୍ୱର ଦାସ ଏବଂ ମାତାଙ୍କ ନାମ ଗେହ୍ଲୀ ଦେଈ । ଶ୍ରୀଯୁକ୍ତ ଦାସ ଜଣେ ପ୍ରଚଣ୍ଡ ପ୍ରତିଭାଧର ସ୍ରଷ୍ଟା । କାବ୍ୟ-କବିତା, ଗଳ୍ପ, ପ୍ରବନ୍ଧ ଆଦି ମୌଳିକ ରଚନା ସହିତ ସେ ବିଭିନ୍ନ ଗ୍ରନ୍ଥ ଅନୁବାଦ କରିବାରେ ମଧ୍ୟ ସିଦ୍ଧହସ୍ତ ଥିଲେ । କବିଙ୍କର ପୌରାଣିକ କାବ୍ୟକୃତି ଗୁଡ଼ିକ ହେଲା-ଅଭିମନ୍ୟୁବଧ, ସୀତା ଅନୁଚିନ୍ତା, ଶ୍ରୀରାମଚନ୍ଦ୍ର ଦେବ, ଶ୍ରୀରାଧାରସଧାରା ପ୍ରଭୃତି । ତାଙ୍କର ଅନୁଦିତ ଗ୍ରନ୍ଥ ଗୁଡ଼ିକ ହେଲା- ବୁଦ୍ଧ ଚରିତ, ରଘୁବଂଶ, ଋତୁସଂହାର, ମାଳବିକାଗ୍ନିମିତ୍ର, ତୁଳସୀ ରାମାୟଣ ପ୍ରଭୃତି ର ଓଡିଆ ଅନୁବାଦ । ସମୀକ୍ଷା ଗ୍ରନ୍ଥ- ଗୀତା ଓ ମହାଭାରତର ସମୀକ୍ଷା । ଏତଦ୍‌ଭିନ୍ନ ତାଙ୍କର ଆଧୁନିକ ଚେତନା ଓ ଜୀବନ ଧର୍ମୀ ସୃଷ୍ଟି ଗୁଡ଼ିକ ହେଲା-କୋଣାର୍କ ଦର୍ଶନ, ଜୀବନର ଡାକ, ସାତଟି ସଞ୍ଜ ଗପ, ବାଇଆମଣି, ବ୍ୟାସକବି ଫକୀର ମୋହନ ଓ ଭକ୍ତ କବି ମଧୁସୂଦନ ପ୍ରଭୃତି ।

'ବାଇଆମଣି' ଶ୍ରୀଯୁକ୍ତ ଦାସଙ୍କର ଏକ କାଳଜୟୀ କଳାକୃତି । ଏଥିରେ ୧୭ ଗୋଟି କବିତା ସ୍ଥାନିତ ହୋଇଛି । ମାତ୍ର- ଏହି କବିତା ଗୁଡ଼ିକ ଏପରି ଅଙ୍ଗାଙ୍ଗୀଭାବେ ଜଡ଼ିତ ଯେ- ଏହାକୁ ଗୋଟିଏ ଖଣ୍ଡ କାବ୍ୟର ଗୌରବରେ ବିମଣ୍ଡିତ କରାଯାଇପାରେ । କବି ଶିଶୁମାନଙ୍କୁ 'ବାଇଆମଣି' ରୂପେ ସମ୍ବୋଧନ କରି କବିତା ଛଳରେ ସେମାନଙ୍କୁ ଅତୀତ ଉତ୍କଳର ସମୃଦ୍ଧମୟ ପରଂପରା, ମହନୀୟ ଗର୍ବ ଓ ଗୌରବର ବିଜୟ ଗାଥା ଶୁଣାଇଛନ୍ତି । ଉତ୍କଳଭୂମିର ମହତ୍ତ୍ୱ, ଉତ୍କଳର ବୀରପୁରୁଷ ମାନଙ୍କର କୃତିତ୍ୱ, ଉତ୍କଳୀୟମହାର୍ଘ ଜୀବନ ଓ ସଂସ୍କୃତିର ଜୟଗାନ ସହିତ କବି ଉତ୍କଳଭୂମି ର ଅଖଣ୍ଡ ପ୍ରାକୃତିକ ସୌନ୍ଦର୍ଯ୍ୟର ଚାରୁବର୍ଣ୍ଣନା କରିଛନ୍ତି । ଏହା ସହିତ ଉତ୍କଳୀୟ ଧର୍ମୀୟ ଭାବନା, ଆଧ୍ୟାତ୍ମିକ ଅନୁଚିନ୍ତା ଓ ବିଭିନ୍ନ ଆଧ୍ୟାତ୍ମିକ ଉପାସନା କ୍ଷେତ୍ରର ମନୋଜ୍ଞ ବର୍ଣ୍ଣନା କରିଛନ୍ତି । ବାସ୍ତବରେ ଏହି ରଚନାଟି କବିଙ୍କର ଏକ ସାର୍ଥକ କଳା ସୃଷ୍ଟି । କବି ଅଲେଖ ପ୍ରସାଦ ଦାସ ତାଙ୍କର କବିତ୍ୱ ପ୍ରତିଭା ଓ ଅନୁପମ ସୃଷ୍ଟି ସଂପଦ ଗୁଡ଼ିକ ପାଇଁ ଖ୍ରୀ.ଅ.

୧ ୯ ୨ ୯ ରେ ଓଡିଶା ସାହିତ୍ୟ ଏକାଡେମୀ ଦ୍ୱାରା ସମ୍ମାନିତ ହୋଇଥିଲେ । ଢେଙ୍କାନାଳ ମାଟିର ସେ ଜଣେ ବରେଣ୍ୟ ସାରସ୍ୱତ ପ୍ରତିଭା ।

**ଶ୍ରୀ ରାଜକିଶୋର ପଟ୍ଟନାୟକ (କବିଭୂଷଣ) ଖ୍ରୀ.ଅ. ୧ ୯ ୦ ୩ - ୧ ୯ ୯ ୦ ) :**

କବି ରାଜକିଶୋର ପଟ୍ଟନାୟକଙ୍କର ଜନ୍ମ ୧ ୯ ୦ ୩ ମସିହା ଏପ୍ରିଲ୍ ମାସ ୧ ୫ ତାରିଖରେ ଢେଙ୍କାନାଳ ସହର ସ୍ଥିତ ଦେଉଳସାହି ଠାରେ । ତାଙ୍କ ପିତା ଥିଲେ- ଦଧିବାମନ ପଟ୍ଟନାୟକ ଓ ମାତା-କୁନ୍ଦଲତା ଦେବୀ । ରାଜକିଶୋର ବୃତ୍ତିରେ ଜଣେ ଶିକ୍ଷକ ଥିଲେ । ନିଜର ଦକ୍ଷତାବଳରେ ସ୍କୁଲ୍ ଇନିସ୍‌ପେକ୍ଟର ପଦବୀକୁ ଉନ୍ନୀତ ହୋଇ ପାରିଥିଲେ । ଶିକ୍ଷକତା ସହିତ ସେ ସାହିତ୍ୟ ସାଧନାରେ ନିଜକୁ ନିୟୋଜିତ କରିଥିଲେ । ସେ ଏକାଧାରରେ ଥିଲେ ଜଣେ କବି, ପ୍ରାବନ୍ଧିକ, ଗବେଷକ, ଅନୁବାଦକ ଓ ଶିଶୁ ସାହିତ୍ୟିକ । ସଂସ୍କୃତ ଭାଷାରେ ତାଙ୍କର ପ୍ରବଳ ପାଣ୍ଡିତ୍ୟ ଥିଲା । ଯେଉଁଥିପାଇଁ ସେ ସଂସ୍କୃତ ଭାଷାରେ ଅନେକ ଗ୍ରନ୍ଥ ଓଡିଆ ଭାଷାରେ ଅନୁବାଦ କରିବାରେ ସାଫଲ୍ୟ ଅର୍ଜନ କରିପାରିଛନ୍ତି । ରାଜକିଶୋର ପଟ୍ଟନାୟକ ନିଜର କାବ୍ୟିକ ପ୍ରତିଭା ଯୋଗୁଁ ୧ ୯ ୩ ୨ ମସିହାରେ ଢେଙ୍କାନାଳ ରାଜଦରବାରରୁ 'କବିଭୂଷଣ' ଉପାଧିରେ ଭୂଷିତ ହୋଇଥିଲେ । ୧ ୯ ୬ ୮ ମସିହାରେ ଓଡିଶା ସାହିତ୍ୟ ଏକାଡେମୀ ତାଙ୍କୁ ବୟୋଜ୍ୟେଷ୍ଠ ସାରସ୍ୱତ ସାଧକ ସମ୍ମାନରେ ସମ୍ମାନିତ କରିଥିଲେ । ଏହା ସହିତ କବି ଅନେକ ଛୋଟ-ବଡ ସାରସ୍ୱତ ଓ ସାଂସ୍କୃତିକ ଅନୁଷ୍ଠାନ ଦ୍ୱାରା ସମ୍ମାନିତ ମଧ ହୋଇଥିଲେ । ଢେଙ୍କାନାଳ ମାଟିର ଏହି ମହାନ୍ ସାହିତ୍ୟ ସାଧକ କବି ରାଜକିଶୋର ପଟ୍ଟନାୟକ ୧ ୯ ୯ ୦ ମସିହା ମାର୍ଚ୍ଚ ମାସ ୧ ୯ ତାରିଖରେ ଇହଲୀଳା ସମ୍ବରଣ କରିଥିଲେ ।

**ରଚନାବଳୀ :** କବି ନିଜ ଜୀବଦ୍ଦଶା ଭିତରେ ଅନେକ ଗୁଡ଼ିଏ କାବ୍ୟ, କବିତା, ଚଉତିଶା, ପ୍ରବନ୍ଧ, ନିବନ୍ଧ, ଆଲୋଚନା, ଗଳ୍ପ, ଗ୍ରନ୍ଥ ସଂପାଦନା ଓ ଅନୁବାଦ ଏବଂ ପାଠ୍ୟ ପୁସ୍ତକ ଆଦି ରଚନା କରିଯାଇଛନ୍ତି । ତାଙ୍କ ରଚିତ କାବ୍ୟକୃତି ହେଲା-ସପ୍ତଶଯ୍ୟା, ଚୈତନ୍ୟ ଚଉତିଶା । କବିତା ସଂକଳନ ହେଲା-'ଜ୍ୟୋତିରିଙ୍ଗଣ' । ପ୍ରବନ୍ଧ ଓ ଆଲୋଚନା ଗ୍ରନ୍ଥ - ଗୀତାତତ୍ତ୍ୱ ଚିନ୍ତନ( ୧ ମ, ୨ ୟ ଭାଗ), ଶମ୍ଭୁକ୍ଷେତ୍ର କପିଳାସ ଓ ଶ୍ରୀଧର ସ୍ୱାମୀ । ନିବନ୍ଧ- ଭାଗବତ କର୍ମ, ବଡ ଠାକୁର, ଜଗନ୍ନାଥ ସଂସ୍କୃତି ଓ କବି ବ୍ରଜନାଥ, ବାଲ୍ମୀକି ରାମାୟଣ ଓ ଶ୍ରୀ ରାମଚରିତ ମାନସ, ଶକ୍ତି ଓ ଆଦି ଶ୍ରୀ ଶଙ୍କରାଚାର୍ଯ୍ୟ, କପିଳାସ,ଢେଙ୍କାନାଳର ଧର୍ମ ଚେତନା ପ୍ରଭୃତି । ସଂପାଦନା- ବ୍ରଜନାଥ ବଡଜେନା କୃତ ଶ୍ୟାମ ରାସୋତ୍ସବ ଓ

ଗୋପ ବିଳାପର ସଂପାଦନା । ଅନୁବାଦ- ଶ୍ରୀ ଶ୍ରୀ ହରି ଜନ୍ମାଷ୍ଟମୀ, ଗାୟତ୍ରୀ ରାମାୟଣ, ଉଦ୍ଧବ ସନ୍ଦେଶ ଓ ଭ୍ରମର ଗୀତ, ଗୋପାଳ ସ୍ତବରାଜ, ଶ୍ରୀମଦ୍ ଭଗବତ ଗୀତା, ଶ୍ରୀଧର ସ୍ୱାମୀ ଗୀତା, ଶ୍ରୀ ଦୁର୍ଗା ଶତକମ୍, ଶିବ ସହସ୍ର ନାମ ସ୍ତୋତ୍ର ପ୍ରଭୃତି । ଏତଦ୍ ଭିନ୍ନ ସେ ରାମାୟଣ ଓ ମହାଭାରତର କଥାବସ୍ତୁକୁ ନେଇ ଇଂରାଜୀ ଭାଷାରେ ଗଳ୍ପ ଆକାରରେ ପରିପ୍ରକାଶ କରିଛନ୍ତି । ପାଠ୍ୟପୁସ୍ତକ- କବି ସ୍କୁଲ୍ ପାଠ୍ୟକ୍ରମ ଉପଯୋଗୀ ଅନେକ ପାଠ୍ୟ ପୁସ୍ତକ ମଧ ରଚନା କରି ଯାଇଛନ୍ତି । ସେ ଗୁଡ଼ିକହେଲା- ସଜପାଠ (୧ମ, ୨ୟ ଭାଗ), ଶିଶୁ ସାଥୀ, ଶିଶୁ ସଖା, ସହଜପତ୍ର-ଲିଖନ ଶିକ୍ଷା, ଆଦର୍ଶ ମାନସାଙ୍କ, ଜୀବନୀ ପ୍ରବାହ । **କାବ୍ୟ-କବିତା :** ସପ୍ତଶଯ୍ୟା- ଏହା ପ୍ରାକୃତିକ ସୌନ୍ଦର୍ଯ୍ୟ ଗର୍ଭିତ ଏକ ଖଣ୍ଡ କାବ୍ୟ । ଏହା ପାଞ୍ଚଗୋଟି ସର୍ଗ ବା ଶଯ୍ୟା ବିଶିଷ୍ଟ । ଢେଙ୍କାନାଳ ସହର ଅଦୂରସ୍ଥ ପର୍ବତଶ୍ରେଣୀ ଓ ଆଧାତ୍ମିକ ପୀଠ-'ସପ୍ତଶଯ୍ୟା' ର ରମଣୀୟ ପ୍ରାକୃତିକ ଶୋଭା ହିଁ ଏହାର କାବ୍ୟ ରୂପ । ବିଭିନ୍ନ ରାଗ, ରାଗିଣୀ, ବୃତ୍ତ, ଛନ୍ଦ ଓ ଅଳଂକାରର ଶୋଭନ ସମାବେଶରେ ଏହି କାବ୍ୟଟି ବେଶ୍ ଛବିଳ, ସୁଷମାନ୍ୱିତ ଓ ମହିମାମଣ୍ଡିତ ହୋଇ ଉଠିଛି । 'ପ୍ରଥମଶଯ୍ୟା' ରେ କବି ଢେଙ୍କାନାଳ ଗଡ଼ଜାତର ପର୍ବତଶ୍ରେଣୀ 'ସପ୍ତଶଯ୍ୟା' ର ଅବସ୍ଥିତି, ତା'ର ପୌରାଣିକ ମହିମାର ବର୍ଣ୍ଣନ ସହିତ ନୈସର୍ଗିକ ରୂପ ଶୋଭାର ଚିତ୍ରଣ କରିଛନ୍ତି । କବି 'ସପ୍ତଶଯ୍ୟା' କୁ ଢେଙ୍କାନାଳ ଗଡ଼ଜାତର ପର୍ବତମାଳା ମଧ୍ୟରେ ମଉଡ଼ମଣି ରୂପେ ସୂଚିତ କରିଛନ୍ତି । କବିଙ୍କ ଭାଷାରେ-

"ଉତ୍କଳ ଶିଖରୀ ସମାଜେ, ଉଚ୍ଚେ ଟେକିଛି ଧ୍ୱଜା
ଶଇଳ-ମଉଳି-ମୁକୁଟ, ମଣି ସପତ ଶଯ୍ୟା ।

*　　*　　*　　*

ଗଡ଼ଜାତ କୁଳ-ମଣ୍ଡଳ, ଭୂମି ଏ ଢେଙ୍କାନାଳ
ନିଃସର୍ଗ ସୁନ୍ଦର ଶୋଭାର କି'ବା ବିହାର ସ୍ଥଳ ।" (୧୭)

କାବ୍ୟର 'ଦ୍ୱିତୀୟ ଶଯ୍ୟା' ରେ ଋତୁ ବର୍ଣ୍ଣନା ଅବକାଶରେ କବି ଷଡ଼ଋତୁର ଆବାହନ କରିଛନ୍ତି । ଚାରୁ ବସନ୍ତର ଅପରୂପ ଶୋଭାର ବର୍ଣ୍ଣନ ସହିତ କବି ଶରତ, ହେମନ୍ତ, ଗ୍ରୀଷ୍ମ, ବର୍ଷା ଆଦି ଋତୁରେ ପ୍ରାକୃତିକ ସୌନ୍ଦର୍ଯ୍ୟର ବିମଳ ଶୋଭାର ଚିତ୍ରଣ ମଧ କରିଛନ୍ତି । 'ତୃତୀୟ ଶଯ୍ୟା' ରେ କବି ଢେଙ୍କାନାଳ ଗଡ଼ର ଅତୀତ ଇତିହାସର ସ୍ମୃତି ଚାରଣା କରିଛନ୍ତି । ଢେଙ୍କାନାଳରେ ଢେଙ୍କାଶବର ରାଜାର ରାଜତ୍ୱ, ବେଶାଳୀଆ ଗଡ଼ର ବିବରଣୀ, ବେଶାଳିଆ ଗଡ଼ର ରାଜାଙ୍କ ସହ ଢେଙ୍କାଶବରର ଯୁଦ୍ଧ, କରମୂଳପାଟଣା

ଗଡ଼ ଅକ୍ତିଆର, ଢେଙ୍କାନାଳର ରାଜା ତ୍ରିଲୋଚନ ମହୀନ୍ଦ୍ର ବାହାଦୁରଙ୍କ ବୀରତ୍ୱ, ମରହଟ୍ଟା ମାନଙ୍କ ସହ ଯୁଦ୍ଧ ଆଦି ବିଷୟର ବର୍ଣ୍ଣନା କବି କରିଛନ୍ତି । 'ଚତୁର୍ଥ ଶଯ୍ୟା' ରେ କବି ସପ୍ତଶଯ୍ୟାର ଅବକ୍ଷୟ ଯୋଗୁଁ କ୍ଷୋଭ ପ୍ରକାଶ କରିଛନ୍ତି । ଏକଦା ଏହି ଶୈଳଭୂମି କିପରି ମୁନି, ଋଷି, ପଣ୍ଡିତ ଓ ପ୍ରକୃତିପ୍ରେମୀ ମାନଙ୍କୁ ଆକର୍ଷିତ କରିପାରିଥିଲା, ନିଜର ଆଧ୍ୟାତ୍ମିକ ମହିମା ଓ ପ୍ରାକୃତିକ ସୌନ୍ଦର୍ଯ୍ୟରେ ଏ ଭୂମିକୁ କିପରି ମହିମାମଣ୍ଡିତ କରିପରିଥିଲା, କବି ତା'ର ଚିତ୍ର ପ୍ରଦାନ କରିଛନ୍ତି । 'ପଞ୍ଚମ ଶଯ୍ୟା' ରେ ଉତ୍ତୁଙ୍ଗ ଶିଖରୀ ଏହି ସପ୍ତଶଯ୍ୟାର ମହିମାଗାନ କରାଯାଇଛି । ଏହି ପର୍ବତର ଶିଖର ଦେଶରେ ଛିଡାହୋଇ ଚତୁର୍ଦ୍ଦିଗ ଅବଲୋକନ କଲେ ଆଖିରେ ନାଚିଉଠେ- ଅପୂର୍ବ, ଅପରୂପ ପ୍ରାକୃତିକ ସୁଷମା । ଏହି ପରିପ୍ରେକ୍ଷିରେ କବି ଅଦୂରସ୍ଥ ମୈନାକ ଶିଖର, ମାମୁଁ-ଭଣଜା ପାହାଡ, ତଗାମରା ଆଦିର ଅପୂର୍ବ ସୌନ୍ଦର୍ଯ୍ୟ-ଶୋଭା, ଭଟ୍ଟାରିକା ଏବଂ ନୀଳମାଧବ ପୀଠର ମହିମା ଗାନ କରିଛନ୍ତି । ଏହା ସହିତ ରଣପୁର, ବାଙ୍କୀ, କଟକ ନଗରୀ ଆଦିର ମହିମା ବର୍ଣ୍ଣନା ସହ ମହେନ୍ଦ୍ର, ମେଘାସନୀ, ମାଲ୍ୟଗିରି ଆଦିର ମନୋହର ଶୋଭାର ବର୍ଣ୍ଣନା କରାଯାଇଛି । ଏହି 'ସପ୍ତଶଯ୍ୟା' କୁ କବି ଅନେକ ଯୁଦ୍ଧ ବିଭୀଷିକା ଓ ରକ୍ତକ୍ଷୟୀ ସଂଗ୍ରାମର ମୂକ ସାକ୍ଷୀ ରୂପେ ମଧ୍ୟ ବର୍ଣ୍ଣିତ କରିଛନ୍ତି ।

**ଚୈତନ୍ୟ ଚଉତିଶା :** ଏହା ବୈଷ୍ଣବ ଧର୍ମ-ଦର୍ଶନ ସମ୍ବଳିତ ଏକ କ୍ଷୁଦ୍ର ଗୀତିମୟ ରଚନା । 'କ' ଠାରୁ 'କ୍ଷ' ଅକ୍ଷର ଅନୁକ୍ରମରେ ଚଉତିଶା ରୀତିରେ ଏହା ରଚିତ । ମନ-ଚୈତନ୍ୟ କଥୋପକଥନ ଛଳରେ କବି ବୈଷ୍ଣବ ଧର୍ମର ଗୁରୁବାଦ, ଜ୍ଞାନ-ଭକ୍ତି ମାର୍ଗ, ଅଷ୍ଟାଙ୍ଗ ଯୋଗ ସାଧନା, ଷଡ଼ଚକ୍ର ସାଧନା ର ମନୋଜ୍ଞ ବର୍ଣ୍ଣନା କରିଛନ୍ତି । ଜ୍ଞାନ-ଯୋଗ ସାଧନା ମାଧ୍ୟମରେ କିପରି ପରଂବ୍ରହ୍ମରୂପୀ ରାଧା-କୃଷ୍ଣଙ୍କ ସାନ୍ନିଧ ଲାଭ କରିହେବ, ମଣିଷ କିପରି ଏହି ପାପ-ପଙ୍କର ସଂସାର ଭିତରୁ ମୁକ୍ତି ପାଇବ, ସେ ବିଷୟରେ କବି ଏଥିରେ ସୂଚନା ପ୍ରଦାନ କରିଛନ୍ତି ।

**ଜ୍ୟୋତିରିଙ୍ଗଣ :** ଏହା ଏକ କବିତା ସଙ୍କଳନ । ଏହି ସଂକଳନଟିରେ ୨୮ ଗୋଟି କ୍ଷୁଦ୍ର କ୍ଷୁଦ୍ର କବିତା ସ୍ଥାନିତ ହୋଇଛି । ଏହି କବିତା ଗୁଡ଼ିକ କବି ଜୀବନର ପ୍ରାରମ୍ଭିକ ପର୍ଯ୍ୟାୟର କଳାସୃଷ୍ଟି । କବିଙ୍କ ମୃତ୍ୟୁପରେ ୨୦୧୨ ମସିହାରେ ତାଙ୍କ ପୁତ୍ର ଶ୍ରୀମାନ୍ ପରେଶଚନ୍ଦ୍ର ପଟ୍ଟନାୟକ ଉଦ୍ୟମରେ ଏହି କବିତା ଗୁଡ଼ିକ କବିତା ସଙ୍କଳନର ରୂପନେଇ ଆତ୍ମପ୍ରକାଶ ଲାଭ କରିଛି । ଏହି କବିତା ଗୁଡ଼ିକ କବିତାକଳାର ସାର୍ଥକ ଗୌରବରେ ବିମଣ୍ଡିତ ହୋଇ ନପାରିଲେ ମଧ୍ୟ; ଜ୍ୟୋତିରିଙ୍ଗଣ ପରି ନିଜର କ୍ଷୁଦ୍ର ଆଲୋକ-ପ୍ରଭାରେ ଓଡ଼ିଆ ବାଣୀ

ଭଣ୍ଡାରକୁ ଆଲୋକିତ କରିପାରିଛି । ଏଥିରେ ସନ୍ନିବିଷ୍ଟ କବିତା ଗୁଡ଼ିକ ହେଲା- କାହିଁ ତୁମେ ?, ଭାଗ୍ୟ, ଆଦର୍ଶ, ପରିଚୟ, ଭାବାନ୍ତର, ମୁହୂର୍ତ୍ତ, ସମବେଦନା, ପ୍ରଣୟିନୀ, ପଲ୍ଲୀବାଳା, ମଧୁରବେଳା, ନିଦାଘ, ଆଶା, ବ୍ରାହ୍ମମୁହୂର୍ତ୍ତ, ଦେହୀ, ପ୍ରତ୍ୟାଶା, କପିଳାସ, ପ୍ରିୟ ସଜନୀ, ସମୁଦ୍ର ଦର୍ଶନେ, ସନ୍ଧ୍ୟା ସଙ୍ଗୀତ, ଘନାଗମେ, ପାନ୍ଥଶାଳା, ଶୂନ୍ୟପୁରଯାତ୍ରୀ, କବିର ଭାବନା, ବାର୍ଦ୍ଧକ୍ୟ ଭାବନା, ଶ୍ମଶାନେ, ପ୍ରେୟସୀ, ଏହା କି' ଦିବ୍ୟଜ୍ଞାନ ? ପ୍ରଭୃତି । ଏହିସବୁ କବିତା ଗୁଡ଼ିକ ଭିତରେ କବି ହୃଦୟର ଯୌବନକାଳୀନ ରୋମାଣ୍ଟିକ୍ ଭାବନା, ଉଦ୍ଦାମ-ଆବେଗ ପ୍ରବଣତା, ପ୍ରେମବିଳାସ ସହିତ ଈଶ୍ୱରପ୍ରାଣତା ଓ ଆଧ୍ୟାତ୍ମ ଅନୁଭବର ବିମଳ ଚିତ୍ର ଫୁଟିଉଠିଛି ।

**ପ୍ରବନ୍ଧ-ଆଲୋଚନା ଗ୍ରନ୍ଥ :**

**ଗୀତାତତ୍ତ୍ୱ ଚିନ୍ତନ :** ଏହା ଏକ ତତ୍ତ୍ୱନିଷ୍ଠ ପ୍ରବନ୍ଧ ଗ୍ରନ୍ଥ । ଏହା ପ୍ରଥମଭାଗ ଓ ଦ୍ୱିତୀୟଭାଗ- ଏହିପରି ଦୁଇଖଣ୍ଡରେ ରଚିତ । ୧୯୭୯ ମସିହାରେ ଏହା ପ୍ରକାଶ ଲାଭ କରିଥିଲା । ମହାଭାରତୀୟ ଆର୍ଯ୍ୟ ଧର୍ମ-ଦର୍ଶନ, ଆଧ୍ୟାତ୍ମିକ ମାର୍ଗ ଓ ଭକ୍ତି ଚେତନାର କାଳଜୟୀ ଗ୍ରନ୍ଥ- 'ଗୀତା' ରେ ବର୍ଣ୍ଣିତ ବିଭିନ୍ନ ଆଧ୍ୟାତ୍ମିକ ତତ୍ତ୍ୱ, ଦର୍ଶନ ଓ ମତବାଦ ଗୁଡ଼ିକ ସଂପର୍କରେ ଏହି ଗ୍ରନ୍ଥରେ ତାତ୍ତ୍ୱିକ ଆଲୋଚନା କରାଯାଇଛି । 'ପ୍ରଥମଖଣ୍ଡ' ରେ ସଂସାରର ଅନିତ୍ୟତା, ମାୟା, ମିଥ୍ୟାଚାର ର ବର୍ଣ୍ଣନା ସହିତ ଅର୍ଜୁନଙ୍କ ମୋହଭଙ୍ଗ, ତ୍ରିଗୁଣାତୀତ ଚେତନା, ଭଗବତ୍ ଦର୍ଶନ, କର୍ମ, ଜ୍ଞାନ ଓ ଭକ୍ତିଯୋଗ, ଭଗବାନଙ୍କ ଅବତାର ତତ୍ତ୍ୱ, ଆତ୍ମାର ଦେହାନ୍ତର ଗତି, ଭଗବତ୍ କୃପା ଲାଭର ମାର୍ଗ, ସାଧନା ମାର୍ଗ ଓ ସାଧନ ପ୍ରଣାଳୀ, ଯଜ୍ଞଚକ୍ର, ସ୍ତବ ଓ କୀର୍ତ୍ତନ, ନୈଷ୍କର୍ମ୍ୟ ସିଦ୍ଧି, ଗୁରୁବାଦ, ଭଗବତ୍ ବିଭୂତି ଓ ବିଶ୍ୱରୂପ ସଂପର୍କରେ ତାତ୍ତ୍ୱିକ ଆଲୋଚନାମାନ କରାଯାଇଛି । 'ଦ୍ୱିତୀୟଖଣ୍ଡ' ରେ ଅର୍ଜୁନଙ୍କୁ ଯୁଦ୍ଧରେ ପ୍ରବୃତ୍ତ ହେବାପାଇଁ ଶ୍ରୀ କୃଷ୍ଣଙ୍କର ପ୍ରେରଣା, ସନାତନ ଧର୍ମର ବର୍ଣ୍ଣ ବିଭାଗ, ଭଗବାନଙ୍କର ସର୍ବଶ୍ରେଷ୍ଠତ୍ୱ, ଶ୍ରଦ୍ଧାଭକ୍ତି ଚତୁର୍ବିଧ ଭକ୍ତ, ତ୍ୟାଗର ଆଦର୍ଶ, ଜନ୍ମାନ୍ତର ବାଦ, ଧର୍ମାମୃତ, କର୍ମର ହେତୁ ଓ ପ୍ରେରଣା, ସନ୍ନ୍ୟାସ ଓ ତ୍ୟାଗ, ଅଭ୍ୟାସ ଯୋଗ, ଗୀତା ଓ ପ୍ରେମଭକ୍ତି, ଜ୍ଞାନ ଓ ଭକ୍ତି ର ସମନ୍ୱୟ, ତ୍ରିଗୁଣଭେଦ ରହସ୍ୟ ଆଦି ସଂପର୍କରେ ଗଭୀର ଜ୍ଞାନ ଗର୍ଭକ ଓ ତାତ୍ତ୍ୱିକ ବିଚାର-ବିଶ୍ଳେଷଣ କରାଯାଇଛି । ଏହି ରଚନାଟିରୁ ସ୍ରଷ୍ଟାଙ୍କର ଅପୂର୍ବ ପାଣ୍ଡିତ୍ୟ ଓ ଜ୍ଞାନଗଭୀରତାର ପରିଚୟ ମିଳେ ।

**ଶମ୍ଭୁକ୍ଷେତ୍ର କପିଳାସ ଓ ଶ୍ରୀଧର ସ୍ୱାମୀ :** ଏହି ଗ୍ରନ୍ଥଟି ଢେଙ୍କାନାଳର ପ୍ରସିଦ୍ଧ ଶୈବକ୍ଷେତ୍ର କପିଳାସ ଓ ଶ୍ରୀଧର ସ୍ୱାମୀଙ୍କ ଉପରେ ଏକ ପ୍ରାମାଣିକ ତଥ୍ୟ ସମ୍ବଳିତ ଆଲୋଚନା

ମୂଳକ ପ୍ରବନ୍ଧ । ଏହି ଗ୍ରନ୍ଥଟି ୧୯୮୦ ମସିହାରେ ପ୍ରକାଶିତ । ଏହି ଗ୍ରନ୍ଥଟିର ଅଦ୍ୟତମ ଯୁଗ୍ମ ସ୍ରଷ୍ଟା ହେଲେ - ଗୌରେନ୍ଦ୍ର ପ୍ରତାପ ସିଂହଦେଓ । ଏଥିରେ କପିଳାସ କ୍ଷେତ୍ରର ଐତିହ୍ୟ, କିମ୍ବଦନ୍ତୀ ଓ ତା'ର ମହିମା ସମ୍ବନ୍ଧରେ ବହୁ ତଥ୍ୟ ପ୍ରଦାନ କରାଯାଇଛି । କପିଳାସ ସ୍ଥିତ ଶ୍ରୀ ଚନ୍ଦ୍ରଶେଖର ଜୀଉଙ୍କ ମନ୍ଦିର ପ୍ରତିଷ୍ଠା, ତା'ର ଗଠନ କୌଶଳ, ଶିଳ୍ପ କଳାର ଚିତ୍ରଣ ସହିତ ଏହି ମନ୍ଦିରର ପୂଜା-ପଦ୍ଧତି, ଭୋଗବିଧି ଓ ଭୂମିବୃତ୍ତି ର ସୂଚନା ପ୍ରଦାନ କରାଯାଇଛି । ଏହା ସହିତ ଶ୍ରୀମଦ୍ ଭଗବତ୍ ଗୀତା ଓ ଭାଗବତାଦିର ସୁ-ପ୍ରସିଦ୍ଧ ଟୀକାକାର ଶ୍ରୀଧର ସ୍ୱାମୀଙ୍କ ସଂପର୍କରେ ବହୁ ପ୍ରାମାଣିତ ତଥ୍ୟ ଏଥିରେ ରହିଛି । କପିଳାସରେ ଶ୍ରୀଧର ସ୍ୱାମୀଙ୍କର ଅବସ୍ଥାନ, ମଠ ସ୍ଥାପନ, ଶ୍ରୀ ଲକ୍ଷ୍ମୀ-ନୃସିଂହଙ୍କ ଉପାସନା ଓ ନୃସିଂହଙ୍କ କୃପା ବଳରେ ସିଦ୍ଧି ପ୍ରାପ୍ତ ହୋଇ ଟୀକାଭାଷ୍ୟ ଗ୍ରନ୍ଥ ଆଦି ରଚନା ସହିତ ତାଙ୍କର ଜୀବନ ଚରିତ ଓ ଅନ୍ୟାନ୍ୟ କୃତି ସଂପର୍କରେ ଏହି ଗ୍ରନ୍ଥରେ ଆଲୋକପାତ କରାଯାଇଛି । ଏହି ଦୁଇଖଣ୍ଡି ପ୍ରବନ୍ଧ ଆଲୋଚନା ଗ୍ରନ୍ଥ ବ୍ୟତୀତ ରାଜକିଶୋର ଅନେକ ପ୍ରବନ୍ଧ ନିବନ୍ଧ ମାନ ରଚନା କରିଛନ୍ତି, ଯାହା ପୂର୍ବରୁ ସୂଚିତ କରାଯାଇଛି ।

**ସଂପାଦନା:** ଢେଙ୍କାନାଳର ମହାନ୍ ବରପୁତ୍ର ପ୍ରଚଣ୍ଡ ପ୍ରତିଭାର ଅଧିକାରୀ, କବି ବ୍ରଜନାଥ ବଡ଼ଜେନା ଙ୍କ କାବ୍ୟିକ ପ୍ରତିଭା ଓ ସାହିତ୍ୟ କୃତି ଗୁଡ଼ିକୁ ଲୋକ ଲୋଚନକୁ ଆଣିବା ଦିଗରେ ରାଜକିଶୋର ପଟ୍ଟନାୟକ ସାଧୁ ଉଦ୍ୟମ କରିଯାଇଛନ୍ତି । ସେ ବ୍ରଜନାଥଙ୍କର ଶ୍ୟାମରାସୋତ୍ସବ ଓ ଗୋପ ବିଳାପ କାବ୍ୟର ସଂପାଦନା ଓ ପ୍ରକାଶନ କରିଛନ୍ତି ।

**ଅନୁବାଦ:**

**ଶ୍ରୀ ଶ୍ରୀ ହରି ଜନ୍ମାଷ୍ଟମୀ :** ଏହା ଏକ ଟୀକା ବା ବ୍ୟାଖ୍ୟା ଗ୍ରନ୍ଥ । ଏହି ଗ୍ରନ୍ଥଟି ୧୯୮୩ ମସିହାରେ ପ୍ରକାଶିତ ହୋଇଥିଲା । 'ଶ୍ରୀମଦ୍ ଭାଗବତ' ଦଶମ ସ୍କନ୍ଦର ଶ୍ରୀକୃଷ୍ଣ ଜନ୍ମ ଲୀଳା ପ୍ରସଙ୍ଗ ହିଁ ଏହି ଗ୍ରନ୍ଥର ମୁଖ୍ୟ ବିଷୟ ବସ୍ତୁ । ଶ୍ରୀଧରସ୍ୱାମୀଙ୍କ ଟୀକା ଅନୁସରଣରେ ଏହି ଗ୍ରନ୍ଥ ରଚନା କରାଯାଇଛି । ମଥୁରା ଧାମରେ କଂସ କାରାଗାରରେ ଦେବକୀଙ୍କ ଗର୍ଭରୁ ଭଗବାନ ଶ୍ରୀକୃଷ୍ଣ ଜନ୍ମ ନେଇଛନ୍ତି । ପିତା ବସୁଦେବ ଓ ମାତା ଦେବକୀ ନିଜ ପୁତ୍ରର ପରାତ୍ପର ରୂପକୁ ଦେଖି କୃଷ୍ଣରୂପୀ ଭଗବାନଙ୍କୁ ସ୍ତୁତି କରିଛନ୍ତି । ତଥାପି ଉଭୟଙ୍କ ମନରେ ଶଙ୍କା ଓ ସନ୍ଦେହ ସୃଷ୍ଟି ହୋଇଛି - କାଳେ କଂସ ଅନ୍ୟ ସନ୍ତାନଙ୍କ ପରି କୃଷ୍ଣଙ୍କୁ ମାରିଦେବ । ମାତ୍ର କୃଷ୍ଣ ଐଶ୍ୱର୍ଯ୍ୟ ଜ୍ଞାନ ବଳରେ ମାତା ଦେବକୀଙ୍କ ମନରୁ ଏହି ଭୟ, ସନ୍ଦେହ ଓ ଶଙ୍କା ଦୂର କରିଛନ୍ତି । କୃଷ୍ଣଙ୍କ ନିର୍ଦ୍ଦେଶରେ ବସୁଦେବ ବାଳକ କୃଷ୍ଣଙ୍କୁ ବକ୍ଷରେ ଧରି ଗୋକୁଳ ଅଭିମୁଖେ ଯାତ୍ରା କରିଛନ୍ତି । ସେହିସମୟରେ ଯୋଗମାୟାଙ୍କ ପ୍ରଭାବରେ

ସମଗ୍ର ଗୋପବାସୀ ଗାଢ଼ ନିଦ୍ରାଭିଭୂତ ହୋଇ ପଡିଛନ୍ତି । ଯଶୋଦାଙ୍କ କୋଳରେ କୃଷ୍ଣଙ୍କୁ ରଖିଦେଇ ଯଶୋଦାଙ୍କ ନବଜାତ କନ୍ୟାକୁ ଧରି ବସୁଦେବ ମଥୁରା କାରାଗୃହକୁ ବାହୁଡି ଆସିଛନ୍ତି । ସମସ୍ତଙ୍କ ଅଗୋଚରରେ ଏହି ଅଲୌକିକ ଲୀଳା ଘଟିଯାଇଛି । ଏହି ସବୁ ଘଟଣାବଳୀକୁ କବି ଅତି ସୁନ୍ଦର, ସରଳ, ସାବଲୀଳ ଓ ଭାବମୟ ରୂପରେ ଏହି ଗ୍ରନ୍ଥରେ ଅଭିବ୍ୟକ୍ତ କରିଛନ୍ତି ।

**ଗାୟତ୍ରୀ ରାମାୟଣ :** ମହର୍ଷି ବାଲ୍ମୀକି କୃତ ରାମକଥା ସମ୍ବଳିତ ଗ୍ରନ୍ଥ 'ରାମାୟଣ' ର ଆଦର୍ଶରେ କବି ଏହି 'ଗାୟତ୍ରୀ ରାମାୟଣ' ରଚନା କରିଛନ୍ତି । ଏହା ୧୯୮୩ ମସିହାରେ ପ୍ରକାଶିତ ହୋଇଥିଲା । ମୂଳ ରାମାୟଣର ୨୪,୦୦୦ ସଂଖ୍ୟକ ଶ୍ଳୋକର କଥା ବସ୍ତୁକୁ କବି ଗାୟତ୍ରୀ ମନ୍ତ୍ରର ୨୪ ଗୋଟି ଅକ୍ଷରକୁ ଭିତ୍ତି କରି ମାତ୍ର ୨୪ ଟି ଶ୍ଳୋକ ଭିତରେ ଏହି ଗାୟତ୍ରୀ ରାମାୟଣ ରଚନା କରିଛନ୍ତି ।

ମହର୍ଷି ବାଲ୍ମୀକି ଅଯୋଧ୍ୟାର ରାଜା ଦଶରଥଙ୍କ ପୁତ୍ର ରାମଚନ୍ଦ୍ରଙ୍କୁ ସ୍ୱୟଂ ଭଗବାନ ପୁରୁଷୋତ୍ତମ ବିଷ୍ଣୁ ରୂପରେ ଜାଣି ମଧ, ନିଜ ଗୁରୁ ନାରଦଙ୍କୁ ରାମଚନ୍ଦ୍ରଙ୍କ ବିଷୟରେ ଜିଜ୍ଞାସା କରିଛନ୍ତି । ଦେବର୍ଷି ନାରଦ ଶ୍ରୀ ରାମଚନ୍ଦ୍ରଙ୍କ ଜନ୍ମ ବୃତ୍ତାନ୍ତ, ଆକୃତି, ପ୍ରକୃତି, ଗୁଣାବଳୀ ଓ ମହିମାର ଯେଉଁ ସୂଚନା ଦେଇଛନ୍ତି ତାକୁ କବି ସୁନ୍ଦର ଭାବରେ ବର୍ଣ୍ଣନା କରିଛନ୍ତି । ମହର୍ଷି ବିଶ୍ୱାମିତ୍ରଙ୍କ ସହ ରାମଚନ୍ଦ୍ରଙ୍କ ମିଥିଳା ଗମନ, ପଥରେ ଗୌତମ ପତ୍ନୀ ଅହଲ୍ୟାଙ୍କ ଶାପମୋଚନ, ଗଙ୍ଗା ବକ୍ଷରେ ଧୀବରର ରାମଚନ୍ଦ୍ରଙ୍କର ପଦ ପ୍ରକ୍ଷାଳନ ଓ ମିଥିଳା ପ୍ରବେଶ ର ଚିତ୍ର କବି ବର୍ଣ୍ଣନା କରିଛନ୍ତି । ଏହାପରେ କବି ମିଥିଳାରେ ରାମ-ସୀତାଙ୍କର ବିବାହ ସହିତ ଲକ୍ଷ୍ମଣ, ଭରତ, ଶତ୍ରୁଘ୍ନଙ୍କର ଶୁଭ ପରିଣୟର ବର୍ଣ୍ଣନା ମଧ କରିଛନ୍ତି । ଏହାପରେ ବିମାତା କୈକେୟୀଙ୍କ ଚକ୍ରାନ୍ତରେ ରାଜ୍ୟାଭିଷେକ ସୌଭାଗ୍ୟରୁ ବଞ୍ଚିତହୋଇ ରାମଚନ୍ଦ୍ରଙ୍କ ବନ ଗମନ ଓ ବନବାସ, ମାୟା ମୃଗ ପ୍ରସଙ୍ଗ ଓ ସୀତା ହରଣ, ହନୁମାନଙ୍କ ସୀତା ଠାବ, ଲଙ୍କାପୋଡି, ରାମ-ରାବଣ ଯୁଦ୍ଧ ଆଦିର ବର୍ଣ୍ଣନା କବି କରିଛନ୍ତି । ରାମାୟଣର 'ଉତ୍ତରାଖଣ୍ଡ' ର ବର୍ଣ୍ଣନା ଅବକାଶରେ ରାମଚନ୍ଦ୍ରଙ୍କର ରାଜ୍ୟାଭିଷେକ. ରାଜ୍ୟ ଶାସନ ଓ ରାଜ ଧର୍ମର ବର୍ଣ୍ଣନା କରିଛନ୍ତି । ପରେ ସୀତାଙ୍କର ଦୁଇ ଯମଜ ସନ୍ତାନଙ୍କ ସହ ପିତା ରାମଚନ୍ଦ୍ରଙ୍କର ସାକ୍ଷାତ, ସୀତାଙ୍କର ପାତାଳ ପ୍ରବେଶ ଓ ରାମଚନ୍ଦ୍ରଙ୍କର ମାନବ ଲୀଳାରପରିସମାପ୍ତି ଆଦି ବିଷୟକୁ କବି ଅତି ସୁନ୍ଦର, ମନୋଜ୍ଞ ଭାବରେ ବର୍ଣ୍ଣନା କରିଛନ୍ତି ।

**ଉଦ୍ଧବ ସନ୍ଦେଶ ଓ ଭ୍ରମର ଗୀତ :** ଏଥିରେ କବି ଶ୍ରିମଦ୍ ଭାଗବତ 'ଦଶମ ସ୍କନ୍ଧ' ର କଥା ବସ୍ତୁର ଅବତାରଣା କରିଛନ୍ତି । ଏହାର ପ୍ରକାଶ କାଳ- ୧୯୮୨ ମସିହା । କୃଷ୍ଣଙ୍କ ମଥୁରା ଗମନ ପରେ କଂସ କୁ ନିଧନ କରିମଧ କୃଷ୍ଣ ଆଉ ଗୋପ ପୁରକୁ ଫେରିନାହାନ୍ତି । କୃଷ୍ଣଙ୍କ ବିଛେଦରେ ସମଗ୍ର ବ୍ରଜବାସୀ ବିରହ-କାତର ହୋଇ କୃଷ୍ଣଙ୍କ ଆଗମନକୁ ପ୍ରତୀକ୍ଷା କରିଛନ୍ତି । ମାତ୍ର- କୃଷ୍ଣ ବୃନ୍ଦାବନକୁ ନ' ଆସି ନିଜର ପ୍ରିୟ ବୟସ୍ୟ, ଭକ୍ତ ଉଦ୍ଧବଙ୍କୁ ପ୍ରୀତି ସନ୍ଦେଶ ଦେଇ ପଠାଇଛନ୍ତି । ଉଦ୍ଧବ ପ୍ରଥମେ କୃଷ୍ଣଙ୍କ ପିତା-ମାତାଙ୍କୁ ଭେଟି କୃଷ୍ଣଙ୍କର ଶୁଭା-ଶୁଭ ଖବର ଜଣାଇବାପରେ ଗୋପୀକା ମାନଙ୍କ ପାଖକୁ ଯାଇଛନ୍ତି । କୃଷ୍ଣପ୍ରେମ ବିଧୂରା ଗୋପୀମାନେ ନିଜ ନିଜର ସମସ୍ତ ଗୃହକର୍ମ, ସାମାଜିକ ରୀତି, ବନ୍ଧନ ଭୁଲି କୃଷ୍ଣଙ୍କ ବାର୍ତ୍ତା ଜାଣିବା ପାଇଁ ଉଦ୍ଧବଙ୍କୁ ଘେରିଯାଇଛନ୍ତ । କବିଙ୍କ ଭାଷାରେ-

"ଏମନ୍ତ ଭାଷେ କୃଷ୍ଣେ ନିବେଶି ମନ  
ଛାଡି ଗୃହ-କରମ ଗୋପୀକାଗଣ  
ଲୌକିକ ଭାବ ଭୁଲି ଉଦ୍ଧବ ସଙ୍ଗେ  
ପ୍ରିୟ ବାର୍ତ୍ତା ପ୍ରସଙ୍ଗେ ମାତିଲେ ରଙ୍ଗେ ।" (୧୮)

ଗୋପୀମାନେ କୃଷ୍ଣଙ୍କ ସହିତ ସେମାନଙ୍କ ବିଗତ ପ୍ରେମଲୀଳାର ସ୍ମରଣକରି ପ୍ରେମାବିଷ୍ଟ ଓ ମୋହଗ୍ରସ୍ତ ହୋଇ ପଡିଛନ୍ତି । ଏହି ସମୟରେ ଭ୍ରମରଟିଏ ଉଡିଆସି ମୃଦୁ-ମଧୁ ଗୁଞ୍ଜନ କରି ଗୋପୀକା ମାନଙ୍କର ଅଙ୍ଗବଲ୍ଲରୀକୁ ସ୍ପର୍ଶ କରିଛି । ଗୋପୀକା ମାନେ ଭ୍ରମରଟିକୁ କୃଷ୍ଣରୂପ ମନେକରି ତାକୁ କପଟ-ମୃଦୁହାସ ଛନ୍ଦରେ ମୃଦୁଭର୍ତ୍ସନା କରିଛନ୍ତି । କବିଙ୍କ ଭାଷାରେ-

"କାହିଁକିରେ ମଧୁପ ଯଦୁପତିର  
ପୁରୁଣା ଗୁଣାବଳୀ ଶ୍ରୁତି ମଧୁର  
ଶୁଣାଇ ଏତେ ଆମ୍ଭ ମାନଙ୍କ ପାଶେ  
ବନଚାରିଣୀ କୁଳେ ଅବା କି' ଆଶେ ।" (୧୯)

ଉଦ୍ଧବ ଗୋପୀକା ମାନଙ୍କର କୃଷ୍ଣ ବିଛେଦ ଜନିତ ବିରହ-ବିଦଗ୍ଧା ଅବସ୍ଥା ଦେଖି କୃଷ୍ଣଙ୍କର ପ୍ରୀତି ସନ୍ଦେଶ ଶୁଣାଇଛନ୍ତି । ଏହି ସନ୍ଦେଶ ଭିତରେ ବିଶୁଦ୍ଧ ପ୍ରେମଭକ୍ତି ଭାବନା ସହିତ ଆତ୍ମା-ପରାତ୍ମା ଚେତନାର ନିଗୂଢ ରହସ୍ୟ ମଧ ଉଦ୍‌ଘାଟିତ ହୋଇଛି । ବାସ୍ତବରେ ଏହି ରଚନାଟି ଏକ ଅନନ୍ୟ, ଅନୁପମ କାବ୍ୟକୃତି ।

**ଶ୍ରୀମଦ୍ ଭଗବତ୍ ଗୀତା :** ଏହା ସଂସ୍କୃତ 'ଶ୍ରୀମଦ୍ ଭଗବତ୍ ଗୀତା' ର ଓଡ଼ିଆ ଭାଷାରେ ପଦ୍ୟାନୁବାଦ ମାତ୍ର । ଏହାର ପ୍ରକାଶକାଳ- ୧୯୭୭ ମସିହା । ୧୮ଟି ଅଧ୍ୟାୟ ବିଶିଷ୍ଟ ଏହି ଗ୍ରନ୍ଥରେ - ଅର୍ଜୁନଙ୍କ ବିଷାଦଯୋଗ ସହିତ ସାଂଖ୍ୟଯୋଗ, କର୍ମଯୋଗ, ଜ୍ଞାନଯୋଗ, ଧ୍ୟାନଯୋଗ, ଜ୍ଞାନ-ବିଜ୍ଞାନ ଯୋଗ, ଅକ୍ଷର ବ୍ରହ୍ମଯୋଗ, ରାଜବିଦ୍ୟା-ରାଜଗୁହ୍ୟଯୋଗ, ବିଭୂତିଯୋଗ, ଭକ୍ତିଯୋଗ, ବିଶ୍ୱରୂପ ଦର୍ଶନ ଯୋଗ, ପୁରୁଷୋତ୍ତମ ଯୋଗ, ମୋକ୍ଷଯୋଗ ଆଦିର ତାତ୍ତ୍ୱିକ ବର୍ଣ୍ଣନା ରହିଛି ।

**ଶ୍ରୀ ଶ୍ରୀ ଗୋପାଳ ଚୂଡାମଣି ସ୍ତବରାଜ:** ଏହାର ପ୍ରକାଶ କାଳ - ୧୯୮୩ ମସିହା । ଗୌତମୀୟ ତନ୍ତ୍ରୋକ୍ତ ଗୋପାଳ ଚୂଡାମଣୀ ସ୍ତବରାଜ କୁ କବି ଗୋପାଳ ସ୍ତବରାଜ ନାମରେ ଅତି ସରଳ, ସାବଲୀଳ ଓଡିଆ ଭାଷାରେ ଅନୁଦିତ କରିଛନ୍ତି । ଏହା ବୈଷ୍ଣବୀୟ ଧର୍ମ-ଦର୍ଶନ ସମ୍ବଳିତ ଏକ କ୍ଷୁଦ୍ର ରଚନା । ଏଥିରେ ବୈଷ୍ଣବ ଧର୍ମ ଜଗତର ଆରାଧ୍ୟ ଦେବତା ଗୋପାଳ ଚୂଡାମଣି ପରଂବ୍ରହ୍ମ ଶ୍ରୀକୃଷ୍ଣଙ୍କର ଅପାର ମହିମା ଓ ଭକ୍ତିର ବର୍ଣ୍ଣନା କରାଯାଇଛି ।

**ଶିବ ଶହସ୍ରନାମ ସ୍ତୋତ୍ରମ୍ :** ଏହା ସଂସ୍କୃତ ଶିବ ଶହସ୍ର ନାମ ସ୍ତୋତ୍ରର ମନୋଜ୍ଞ ସମ୍ପାଦନା । ଏହାର ସରଳ ଓଡିଆ ଅନୁବାଦ ରୂପ ମଧ୍ୟ ଏଥିରେ ସ୍ଥାନିତ ହୋଇଛି । ଏହା ସହିତ କବିଙ୍କର 'ଶ୍ରୀରାଧା ଅଷ୍ଟୋତ୍ତର ଶତନାମ ସ୍ତୋତ୍ର' ନାମକ ଏକ ଅପ୍ରକାଶିତ ରଚନା ରହିଛି । ଏହା ଓଡ଼ିଆ ଲିପିରେ ରଚିତ ଏକ ସଂସ୍କୃତ ସ୍ତୋତ୍ର । ସାମବେଦରେ ଶ୍ରୀରାଧାଙ୍କର ରୂପ-ଗୁଣାଦିର ଯେଉଁ ମହିମା ବର୍ଣ୍ଣିତ ତାହା ଏହି ସ୍ତୋତ୍ରଟିରେ କବି ପ୍ରକଟିତ କରିଛନ୍ତି ।

**ପାଠ୍ୟପୁସ୍ତକ :**

**ଜୀବନୀ ପ୍ରବାହ :** ଏହା ମହାପୁରୁଷ ମାନଙ୍କରଜୀବନୀ ସମ୍ବଳିତ ଏକ ରଚନା । ଶ୍ରୀ ନିତ୍ୟାନନ୍ଦ ପଣ୍ଡାଙ୍କ ସହିତ ଲେଖକ ମିଳିତ ଭାବରେ ଏହା ରଚନା କରିଛନ୍ତି । ଏଥିରେ ବାଳକ ଧର୍ମପଦ, ସାମନ୍ତ ଚନ୍ଦ୍ରଶେଖର, ରାଣୀ ଶୁକଦେଇ, ଫକୀରମୋହନ, ମଧୁବାବୁ, କବିସୂର୍ଯ୍ୟ ବଳଦେବ, ଆଚାର୍ଯ୍ୟ ବିନୋବା ପ୍ରଭୃତି ମହନୀୟ ପ୍ରତିଭା ମାନଙ୍କର ଜୀବନାଦର୍ଶ ସମ୍ପର୍କରେ ଆଲୋକପାତ କରାଯାଇଛି ।

**ସଜପାଠ :** ଏହା ଦୁଇଗୋଟି ଖଣ୍ଡରେ ବିଭକ୍ତ । ଏହାର ପ୍ରକାଶ ସମୟ ୧୯୪୫ ମସିହା । ଏଥିରେ ଶିଶୁମାନ ଉପଯୋଗୀ ବିଭିନ୍ନ ମହନୀୟ ବ୍ୟକ୍ତିତ୍ୱ, ଗୁରୁତପୂର୍ଣ୍ଣ ସ୍ଥାନ ଓ ଜ୍ଞାନ-ବିଜ୍ଞାନ ସଂପର୍କୀତ ନୂତନ ତଥ୍ୟର ଉପସ୍ଥାପନା କରାଯାଇଛି ।

**ଶିଶୁ ସଖା :** ଏହାର ପ୍ରକାଶ କାଳ ୧୯୪୦ ମସିହା । ଏଥିରେ ଶିଶୁ ଉପଯୋଗୀ କେତେଗୁଡ଼ିଏ ଶିକ୍ଷଣୀୟ, ନୀତିନିଷ୍ଠ ଗଳ୍ପ ଓ ଉପାଖ୍ୟାନର ଅବତାରଣା କରାଯାଇଛି ।

**ଶିଶୁଗଳ୍ପ :** ଏହା ଦୁଇଗୋଟି ଖଣ୍ଡରେ ବିଭକ୍ତ । ଏହାର ପ୍ରଥମ ଭାଗ ୧୯୩୧ ମସିହା ଏବଂ ଦ୍ୱିତୀୟ ଭାଗ ୧୯୪୧ରେ ପ୍ରକାଶିତ ହୋଇଥିଲା । ଏହି ଗଳ୍ପ ଗ୍ରନ୍ଥରେ ପୁରାଣ ଓ ଇତିହାସ ସମ୍ବଳିତ ନୀତିନିଷ୍ଠ ଆଦର୍ଶ ସ୍ଥାନୀୟ ଚରିତ୍ର ଓ ସେମାନଙ୍କର ମହନୀୟ ଜୀବନୀ ସଂପର୍କରେ ଅବତାରଣା କରାଯାଇଛି । ସମ୍ରାଟ ଅଶୋକ, ଆଲେକ୍‌ଜାଣ୍ଡାର, ପୃଥ୍ୱୀରାଜ ଚୌହାନ, ବାବର, ଆକବର, ଶିବାଜୀଙ୍କ ଠାରୁ ଆରମ୍ଭ କରି ରାଣୀ ପଦ୍ମିନୀ, ସଂଜୁକ୍ତା, ଦୁର୍ଗାବତୀ ଆଦି ମହନୀୟା ନାରୀ ଚରିତ୍ର ମାନଙ୍କର ଅପୂର୍ବ ସାହସ ଓ ବୀରତ୍ୱ ର କାହାଣୀ ଏଥିରେ ଚିତ୍ରିତ ।

**ଆଦର୍ଶ ମାନସାଙ୍କ :** ଏହା ଶିଶୁ ମାନଙ୍କର ବୌଦ୍ଧିକ ଜ୍ଞାନ ଉପଯୋଗୀ ଏକ ରଚନା । ଏହାର ପ୍ରଥମଭାଗ ୧୯୪୬ ମସିହା ଏବଂ ଦ୍ୱିତୀୟଭାଗ ୧୯୫୬ରେ ପ୍ରକାଶିତ ।

**ପଲ୍ଲୀକଥା :** ଏହା କେତେ ଗୁଡିଏ ଅପ୍ରକାଶିତ ମନୋଜ୍ଞ ଗଳ୍ପର ସମାହାର । ଏହି ଗଳ୍ପ ଗୁଡ଼ିକର ରଚନା ସମୟ ୧୯୩୫ ମସିହା ଭିତରେ । ଏହି ଅପ୍ରକାଶିତ ପଲ୍ଲୀକଥା ପାଣ୍ଡୁଲିପିରେ ସ୍ଥାନିତ ଗଳ୍ପ ଗୁଡ଼ିକ ହେଲା- ଶଙ୍କର ମାଳତୀ, ପୂଜାପୋଥି, ହତାଶ, ଶେଷଚେଷ୍ଟା, ବାସନ୍ତୀ କବିର଼ ଶେଷ ସମ୍ବଳ ।

**କବି ଅନ୍ନଦା ଶଙ୍କର ରାୟ (ଖ୍ରୀ.ଅ. ୧୯୦୪ - ୨୦୦୨) :**

ଓଡ଼ିଆ ସବୁଜ କାବ୍ୟ ଆନ୍ଦୋଳନ ଓ ସବୁଜ ସାହିତ୍ୟ ଗୋଷ୍ଠୀର ଅନ୍ୟତମ ପ୍ରାଣପ୍ରତିଷ୍ଠାତା ଅନ୍ନଦା ଶଙ୍କର ଥିଲେ ଢେଙ୍କାନାଳ ମାଟିର ସୁଯୋଗ୍ୟ ସନ୍ତାନ । ସେ ୧୯୦୪ ମସିହାରେ ଢେଙ୍କାନାଳ ସହରସ୍ଥିତ ଗଣେଷ ବଜାର ଠାରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ- ନିମାଇଁ ଚରଣ ରାୟ ଓ ମାତା- ହେମ ନଳିନୀ ଦେବୀ । ଅନ୍ନଦାଶଙ୍କର ବାଲ୍ୟ ଜୀବନରୁ ଜଣେ ମେଧାବୀ ଛାତ୍ର ଥିଲେ । ଢେଙ୍କାନାଳ ହାଇସ୍କୁଲ୍ ରୁ ମାଟ୍ରିକ୍ୟୁଲେସନ୍ ପାଶ୍ ପରେ ସେ କଟକ ସ୍ଥିତ ରେଭେନ୍‌ସା କଲେଜରେ ଏଫ୍.ଏ. ବା ଆଇ.ଏ. ଶ୍ରେଣୀରେ ନାମ ଲେଖାଇଲେ । ରେଭେନ୍‌ସା କଲେଜରୁ ପ୍ରଥମ ଶ୍ରେଣୀରେ ଆଇ.ଏ. ପାଶ୍ ପରେ ଅନ୍ନଦାଶଙ୍କର ପାଟଣା କଲେଜରେ ବି.ଏ. ଶ୍ରେଣୀରେ ଅଧ୍ୟୟନ କଲେ । ସେଠାରୁ ଇଂରାଜୀ ସମ୍ମାନରେ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହେଲେ । ଏହାପରେ ଅନ୍ନଦାଶଙ୍କର ଆଇ.ସି.ଏସ୍. ପରୀକ୍ଷା ଦେଇ ସେଥିରେ କୃତକାର୍ଯ୍ୟ ହୋଇ ଶିକ୍ଷା ନବୀଶ ରୂପରେ ବିଲାତରେ ଦୁଇ ବର୍ଷ କଟାଇଲେ । ଏହାପରେ ସେ ଭାରତ

ଫେରିଆସି ପ୍ରଥମେ ଜଣେ ଜିଲ୍ଲା ମାଜିଷ୍ଟ୍ରେଟ ରୂପରେ ନିଜର ଚାକିରୀ ଜୀବନ ଆରମ୍ଭ କଲେ । ପରବର୍ତ୍ତୀ ସମୟରେ ସେ ବଙ୍ଗଳା ସରକାରଙ୍କର ପ୍ରମୁଖ ସଚିବ ପଦରେ ମଧ ଯୋଗ ଦେଇଥିଲେ ।

ଅନ୍ନଦାଶଙ୍କର ଛାତ୍ର ଜୀବନରୁ ହିଁ କବିତା ରଚନାରେ ହାତ ଦେଇଥିଲେ । ସେ ମୁଖ୍ୟତଃ ଜଣେ ବଙ୍ଗାଳୀ ଥିବାରୁ ପ୍ରଥମେ ବଙ୍ଗାଳୀ ଭାଷା ସହିତ ଓଡ଼ିଆ ଭାଷାରେ କବିତାମାନ ରଚନା କରିଥିଲେ । ରେଭେନ୍‌ସା କଲେଜରେ ଅଧ୍ୟୟନ ସମୟରୁ ହିଁ ତାଙ୍କ କବିତ୍ୱ ପ୍ରତିଭାର ବୀଚକ ବିକାଶ ଘଟିଥିଲା । କବିତା ରଚନା ସହିତ ସେ ବିଭିନ୍ନ ପତ୍ର ପତ୍ରିକା ପ୍ରକାଶନ ଓ ଜାତୀୟ ଜାଗରଣ ଆଣିବାରେ ଉଦ୍ୟମ କରିଥିଲେ । ସବୁଜ କବି ମାନଙ୍କ ସମ୍ମିଳିତ ଉଦ୍ୟମରେ ପ୍ରକାଶିତ 'ଅବକାଶ' ପତ୍ରିକାର ସେ ସଂପାଦକ ଥିଲେ । ଅନ୍ନଦାଶଙ୍କରଙ୍କ ରଚିତ କବିତା ଗୁଡିକ 'ସବୁଜ ସାହିତ୍ୟ ସମିତି' ତରଫରୁ ପ୍ରକାଶିତ 'ସବୁଜ କବିତା' ଓ ସବୁଜ ଅକ୍ଷରରେ ପ୍ରକାଶିତ ହୋଇଥିଲା । ଅନ୍ନଦାଶଙ୍କରଙ୍କ କବିତା ଗୁଡ଼ିକ ପରିମାଣାତ୍ମକ ଦୃଷ୍ଟିରୁ ବହୁତ କମ୍ ହେଲେ ମଧ; ସେଗୁଡ଼ିକ ଗୁଣାତ୍ମକ ଦୃଷ୍ଟିରୁ ବେଶ୍ ସୁଦୂର ପ୍ରସାରୀ ଓ ପ୍ରଭାବଶାଳୀ ଥିଲା । ତାଙ୍କରଚିତ ଓଡ଼ିଆ କବିତା ଗୁଡ଼ିକ ହେଲା- ସବିତା, ସୃଜନ ସ୍ୱପ୍ନ, ପ୍ରଳୟପ୍ରେରଣା, କମଳାବିଳାସୀର ବିଦାୟ, ଯଉବନ ଥରେ ଗଲେ ଆଉ ଆସେନା, ମାନସୀ ଓ ମୁଁ, କୌଣସି ପ୍ରିୟା ପାଇଁ କୌଣସି ପ୍ରିୟ, ପରୀମହଲ, ଚିରନ୍ତନ ନର ଚାହେଁ ଚିରନ୍ତନ ନାରୀ, ନୀରବ କବି । ଏହିସବୁ କବିତା ଗୁଡ଼ିକ ତତ୍କାଳୀନ ଉତ୍କଳ ସାହିତ୍ୟ, ସହକାର, ଯୁଗବୀଣା, ଅବକାଶ ପ୍ରଭୃତି ପତ୍ରିକାରେ ପ୍ରକାଶିତ ହୋଇଥିଲା । ଏହିସବୁ କବିତା ଗୁଡ଼ିକରେ ସବୁଜ ସ୍ୱପ୍ନବିଳାସ, ରୋମାଣ୍ଟିକ୍ ପ୍ରେମ-ପ୍ରଣୟ, ଯୌବନର ଉଦ୍ଦାମତା ଓ ସୌନ୍ଦର୍ଯ୍ୟ ଭାବନା ସହିତ ଜାତୀୟ ଚେତନା, ସାମାଜିକ ବିପ୍ଳବ ଓ ବିଦ୍ରୋହର ସ୍ୱର ମଧ ଫୁଟି ଉଠିଥିଲା । କବି ତାଙ୍କ 'ପ୍ରଳୟ ପ୍ରେରଣା' କବିତାରେ ବିପ୍ଳବର 'ପାଞ୍ଚଜନ୍ୟ' ବଜାଇଥିଲେ । ଜାତୀୟ ଦୁର୍ଦ୍ଦଶା ଓ ଅବକ୍ଷୟ, ସାମାଜିକ ବୈଷମ୍ୟ, ଶୋଷଣ, କଷଣ ବିରୁଦ୍ଧରେ କବି ବିପ୍ଳବର ସ୍ୱର ଟୋଳିଛନ୍ତି । ଏହି କବିତାରେ କବି ପକ୍ଷାଘାତ ଗ୍ରସ୍ତ ସମାଜ ବିରୁଦ୍ଧରେ ପ୍ରତିବାଦର ସ୍ୱର ଟୋଳି ସାମାଜିକ ଶୋଷଣ, କଷଣ, ଅନ୍ୟାୟ, ଅନୀତି, ଅଧର୍ମର ବିନାଶ ଚାହିଁଛନ୍ତି । ପ୍ରଳୟପରେ କବି ନବ ସୃଜନର ସ୍ୱପ୍ନ ଦେଖିଛନ୍ତି-ତାଙ୍କ 'ସୃଜନସ୍ୱପ୍ନ' କବିତାରେ । ଏହି କବିତାରେ ପାର୍ଥୀବତାର ବାଡ ଡ଼େଇଁ କେଉଁ ଏକ ଅପାର୍ଥୀବ ଅମରାବତୀର ସ୍ୱପ୍ନରେ କବି ମସ୍‌ଗୁଲ୍ ହୋଇଛନ୍ତି । ସେହିପରି ତାଙ୍କ 'କୌଣସି ପ୍ରିୟା ପାଇଁ କୌଣସି ପ୍ରିୟ' କବିତାଟି ଏକ ଅପାର୍ଥୀବ

ପ୍ରେମ ଚେତନାରେ ତଲ୍ଲୀନ । ଏହି କବିତାରେ କବିପ୍ରାଣ ପାର୍ଥୀବ ପ୍ରେମ ବନ୍ଧନରୁ ମୁକ୍ତ ହୋଇ ଅପାର୍ଥୀବ, ଚିରନ୍ତନୀ, ଶାଶ୍ୱତ ପ୍ରେମ ପ୍ରତି ଉନ୍ମୁଖ ହୋଇଉଠିଛି । ମାଟିରୁ ଆକାଶ ଉନ୍ମୁଖୀ କବି ପ୍ରାଣ ଯେତେବେଳେ ଉର୍ଦ୍ଧ୍ୱଉଡାଣ ଦେବାକୁ ଆରମ୍ଭ କରିଛି, ସେହି ସମୟରେ କବି ହଠାତ୍ ଓଡ଼ିଆ କବିତା ରଚନାରୁ ସନ୍ୟାସ ନେଇଛନ୍ତି । କବି ଓଡ଼ିଶା ଛାଡି ବଙ୍ଗଳାକୁ ପଳାୟନ କରିନଥିଲେ ହୁଏତ; ଆହୁରି ଅନେକ ପ୍ରଭାବଶାଳୀ କବିତା ଉତ୍କଳଭାରତୀଙ୍କ କବିତା-କାନନରେ ସୁଶୋଭିତ ହୋଇପାରିଥାନ୍ତା । ମାତ୍ର- ଓଡ଼ିଆ ସାହିତ୍ୟର ଦୁର୍ଭାଗ୍ୟ ଅନ୍ନଦାଶଙ୍କର ଓଡ଼ିଶା ଛାଡି ବଙ୍ଗଳା ଚାଲିଗଲେ ଓ ଓଡ଼ିଆ କବିତା ସରସ୍ୱତୀଙ୍କର ଅଶେଷ କ୍ଷତି ସାଧନ ହୋଇଗଲା । ମାତ୍ର- କବି ଓଡ଼ିଆ କାବ୍ୟ ସଂସାରରୁ ବିଦାୟ ଦେଲେ ମଧ, ବଙ୍ଗଳା ଭାଷାରେ ତାଙ୍କର ସାହିତ୍ୟ ସାଧନା ଜାରି ରଖିଥିଲେ । ବଙ୍ଗଳା ଭାଷାରେ ସାରସ୍ୱତ ସର୍ଜନାକରି କବି ଚରମ ସାଫଲ୍ୟ ଓ ସିଦ୍ଧି ଅର୍ଜନ କରିପାରିଥିଲେ । ଅନ୍ନଦାଶଙ୍କରଙ୍କ ଏହି କତିପୟ ଓଡ଼ିଆ କବିତା ସହିତ ୨୨ଗୋଟି ପ୍ରବନ୍ଧ 'ସ୍ୱପ୍ନ' ନାମକ ଏକ ଗଳ୍ପ ଏବଂ 'ବାସନ୍ତୀ' ଉପନ୍ୟାସର ତିନିଗୋଟି ପରିଚ୍ଛେଦ ରଚନା କରିଯାଇଛନ୍ତି । 'ବାସନ୍ତୀ' ଉପନ୍ୟାସଟି ସବୁଜ କବି ମାନଙ୍କର ଏକ ମିଳିତ ସୃଷ୍ଟି କଳା । ଅନ୍ନଦାଶଙ୍କରଙ୍କ ବାନ୍ଧବୀ ଓ ପ୍ରେମୀକା ସରଳାଦେବୀ ମଧ ଏହି ଉପନ୍ୟାସର ଅନ୍ୟତମ ଲେଖିକା । ଅନ୍ନଦାଶଙ୍କର ଏକ ସଫଳ ଭ୍ରମଣ ଗ୍ରନ୍ଥ ହେଲା- 'ପଥେ ପ୍ରବାସେ' । ୟୁରୋପରେ ଅବସ୍ଥାନ ଓ ବିଭିନ୍ନ ସ୍ଥାନ ଭ୍ରମଣ ଜନିତ ସ୍ରଷ୍ଟାଙ୍କର ଯେଉଁ ଅନୁଭବ ଓ ଅନୁଭୂତି ତାହା ଏହି ଗ୍ରନ୍ଥରେ ପ୍ରକଟିତ ହୋଇଛି । ଅନ୍ନଦାଶଙ୍କର ଓଡ଼ିଶା ମାଟିଛାଡି ବଙ୍ଗଳା ଚାଲି ଯାଇଥିଲେ ହେଁ; ତାଙ୍କର ଏହି ଅକ୍ଷୟ ସୃଷ୍ଟି ସଂପଦ ତାଙ୍କୁ ଚିରଦିନ ପାଇଁ ଅକ୍ଷୟ, ଅମର କରି ରଖିଛି ।  କବି ନିଜର ସାଧନା, ସିଦ୍ଧି ଓ ଦକ୍ଷତା ବଳରେ ଭାରତ ସରକାରଙ୍କ ଠାରୁ ପଦ୍ମବିଭୂଷଣ ଉପାଧିରେ ଭୂଷିତ ହୋଇଥିଲେ । ଏହି ମହାନ୍ କାଳଜୟୀ ସ୍ରଷ୍ଟା ଅନ୍ନଦାଶଙ୍କର ୨୦୦୨ ମସିହାରେ ପାର୍ଥୀବଲୀଳା ସମ୍ବରଣ କରି ଅପାର୍ଥୀବ ଅମର ପଥର ଯାତ୍ରୀ ହୋଇଥିଲେ । ଓଡ଼ିଆ ସାହିତ୍ୟ ସର୍ବୋପରି ଢେଙ୍କାନାଳ ସାହିତ୍ୟକୁ ତାଙ୍କର ଅବଦାନ ବାସ୍ତବରେ ଅମାପ, ଅତୁଳନୀୟ ।

**କବି ସଚ୍ଚିଦାନନ୍ଦ ପଟ୍ଟନାୟକ (ଖ୍ରୀ.ଅ. ୧୯୦୬-୧୯୯୦) :**

ସଚ୍ଚିଦାନନ୍ଦ ପଟ୍ଟନାୟକଙ୍କ ଜନ୍ମ ୧୯୦୬ ମସିହା ନଭେମ୍ବର ମାସ ୧୬ ତାରିଖରେ ଢେଙ୍କାନାଳ ଜିଲ୍ଲାର ଖଡ଼ଗପ୍ରସାଦ ଗ୍ରାମରେ । ତାଙ୍କ ପିତାଙ୍କ ନାମ- ଗୁଣନିଧି ପଟ୍ଟନାୟକ ଓ ମାତା- ଦ୍ରୌପଦୀ ଦେବୀ । ସଚ୍ଚିଦାନନ୍ଦ ଯେତେବେଳେ ପାଞ୍ଚ ବର୍ଷ ବୟସର,

ସେତେବେଳେ ତାଙ୍କର ପିତୃ ବିୟୋଗ ଘଟିଥିଲା । ତେଣୁ ସେ ଢେଙ୍କାନାଳ ସହର ସ୍ଥିତ ତାଙ୍କ ମାମୁଁ ଘରେ ରହି ଶିକ୍ଷାଲାଭ କରିଥିଲେ । ପ୍ରଥମେ ସେ ଜର୍ଜ ଉ.ପ୍ରା. ସ୍କୁଲ୍ ଓ ପରେ ଢେଙ୍କାନାଳ ହାଇସ୍କୁଲ୍ ରେ ଅଧ୍ୟୟନ କରିଥିଲେ । ମାଟ୍ରିକ୍ୟୁଲେସନ୍ ପାଶ ପରେ ସେ ଇ.ଟି. ଟ୍ରେନିଂ ନେଇ ଶିକ୍ଷକ ଚାକିରୀରେ ଯୋଗ ଦେଇଥିଲେ । ସଚ୍ଚିଦାନନ୍ଦ ଶିକ୍ଷକତା ବୃତ୍ତି ସହିତ ଜ୍ୟୋତିଷ ବିଦ୍ୟାରେ ମଧ ପାରଙ୍ଗମ ଥିଲେ । ଶିକ୍ଷକତା ଓ ଜ୍ୟୋତିଷ ବିଦ୍ୟା ଚର୍ଚ୍ଚା ସହିତ ସେ କବିତା ରଚନା, ବିଭିନ୍ନ ଗ୍ରନ୍ଥର ଅନୁବାଦ ଓ ଜ୍ୟୋତିଷ ଶାସ୍ତ୍ର ଆଦି ରଚନାରେ ମନ ନିବେଶ କରିଥିଲେ । କବି ସଚ୍ଚିଦାନନ୍ଦଙ୍କ ସାରସ୍ୱତ କୃତି ଗୁଡ଼ିକ ହେଲା- ପ୍ରାୟ ୨୫ ଗୋଟି କବିତା, କିଛି ଜଣାଣ ଓ ପ୍ରବନ୍ଧ, ୪ ଗୋଟି ଅନୁବାଦ ଓ ଗୋଟିଏ ଜ୍ୟୋତିଷଶାସ୍ତ୍ର ଗ୍ରନ୍ଥ । ତାଙ୍କ ବିରଚିତ କବିତା ଗୁଡ଼ିକ କବି ସଚ୍ଚିଦାନନ୍ଦ ପଟ୍ଟନାୟକ ସ୍ମରଣିକାରେ ସନ୍ନିବିଷ୍ଟ । ଏଗୁଡ଼ିକ ହେଲା-ଶ୍ରୀମା, ସୁନ୍ଦର ରାଣୀ, ଠାକୁରାଣୀ, ମାତୃଭୂମି ଖଡଗ ପ୍ରସାଦ, ଆମ ମାତୃଭୂମି ଓଡ଼ିଶା, ଜୀବଭାବନା, ବୃଦ୍ଧାବସ୍ଥା ଆଗମେ, ମୃତ୍ୟୁ ପୂର୍ବରୁ ଲକ୍ଷଣ ଜାଣିବା, ଜ୍ୟେଷ୍ଠ ପୁତ୍ର ବଗଲା, ମୃତ୍ୟୁ କଷ୍ଟ ନିବାରଣ ଉପାୟ, ଛାୟା ଦର୍ଶନ, ଢେଙ୍କାନାଳରୁ କଟକ ଗମନ, ମହାଳୟା ଶ୍ରାଦ୍ଧ ପୂର୍ବରୁ ତର୍ପଣ, ସୁରପ୍ରତାପଙ୍କ ଶ୍ରାଦ୍ଧ ଦିବସ ଉପଲକ୍ଷେ କବିତା, ଜଗନ୍ନାଥ ମହାପ୍ରଭୁଙ୍କ ଗୁଣ୍ଡିଚା ମନ୍ଦିର ଠାରୁ ବାହୁଡ଼ାବିଜୟ, ବାଷ୍ପୀୟରଥ, ଶ୍ରୀ ଶ୍ରୀ ଜଗନ୍ନାଥ ଜଣାଣ, ଠାକୁରଙ୍କ ରଥକୁ ପହଣ୍ଡି ବିଜେ ପ୍ରଭୃତି । ତାଙ୍କ ରଚିତ ପ୍ରବନ୍ଧ ହେଲା- ମୁଦ୍ରଣ ପ୍ରକ୍ରିୟାର ବିକାଶ, ଢେଙ୍କାନାଳ ଇତିହାସ । ତାଙ୍କର ଅନୁଦିତ ଗ୍ରନ୍ଥ ଗୁଡ଼ିକ ହେଲା- ଶ୍ରୀମଦ୍ ଭଗବତ୍ ଗୀତାର ପଦ୍ୟାନୁବାଦ, ଶ୍ରୀମଦ୍ ଭାଗବତର ପଦ୍ୟାନୁବାଦ, ଶ୍ରୀଚଣ୍ଡୀ ପୁରାଣ ଏବଂ ସଂକ୍ଷିପ୍ତ ରାମାୟଣ । ତାଙ୍କର ଜ୍ୟୋତିଷ ବିଦ୍ୟା ସଂପର୍କୀତ ଏକ ମହାନ ଗ୍ରନ୍ଥ ହେଲା- 'ଅଙ୍ଗବିଦ୍ୟା ଦର୍ପଣ' । ଏହି ଗ୍ରନ୍ଥଟି ୧୯୮୫ ମସିହାରେ ପ୍ରକାଶିତ । ଏହି ଗ୍ରନ୍ଥଟି ଜ୍ୟୋତିଷ ବିଦ୍ୟା ବା ସାମୁଦ୍ରିକ ବିଦ୍ୟା ସଂପର୍କୀତ ଏକ କାଳଜୟୀ ସୃଷ୍ଟି । ଏଥିରେ ହସ୍ତରେଖା ବିଧି, ହସ୍ତଲକ୍ଷଣ, ଗ୍ରହ ବିଚାର, ମସ୍ତକ ରେଖା, ଆୟୁ ରେଖା, ବନ୍ଧନୀ ଓ ମୁଦ୍ରିକା, ସ୍ତ୍ରୀ-ଲକ୍ଷଣ, ଜନ୍ମଫଳ, ଛାୟା ଦର୍ଶନ ଓ ତା'ର ବିଧି ଆଦିର ତାତ୍ତ୍ୱିକ, ତଥ୍ୟପୂର୍ଣ୍ଣ ବର୍ଣ୍ଣନା ରହିଛି । ବାସ୍ତବରେ ଜ୍ୟୋତିଷ ଶାସ୍ତ୍ର ଓ ସାମୁଦ୍ରିକ ବିଜ୍ଞାନ ତତ୍ତ୍ୱ ସମ୍ବଳିତ ଏହା ଏକ ମନୋଜ୍ଞ କାବ୍ୟରୂପ । ଢେଙ୍କାନାଳ ମାଟିର ଏହି କାଳଜୟୀ ସ୍ରଷ୍ଟା ଓ ମହାନ୍ ସାଧକ, କବି ସଚ୍ଚିଦାନନ୍ଦ ପଟ୍ଟନାୟକ ୧୯୯୦ ମସିହା ଅକ୍ଟୋବର ମାସ ୩୦ ତାରିଖରେ ଢେଙ୍କାନାଳ ସହର ସ୍ଥିତ କୁଞ୍ଜକାନ୍ତ ଠାରେ ଇହଲୀଳା ସମ୍ବରଣ କରିଥିଲେ ।

## କବି ଗୌରହରି ପଣ୍ଡା (ଖ୍ରୀ.ଅ. ୧୯୧୩-୨୦୧୧) :

କବି ଗୌରହରି ପଣ୍ଡାଙ୍କ ଜନ୍ମ ୧୯୧୩ ମସିହା ଅକ୍ଟୋବର ମାସ ୧୦ ତାରିଖରେ ଢେଙ୍କାନାଳ ଜିଲ୍ଲାର କାମାକ୍ଷା ନଗର ଅନ୍ତର୍ଗତ ସାଆନ୍ଦା ଗ୍ରାମରେ । ଗୌରହରି ମୁଖ୍ୟତଃ ଥିଲେ ଜଣେ ପଣ୍ଡିତ କବି । ତାଙ୍କ କବିତ୍ୱ ଭିତରେ ପାଣ୍ଡିତ୍ୟର ଗଭୀର ପ୍ରଭାବ ପରିଦୃଷ୍ଟ । ପୁରାଣ, ଇତିହାସ ଓ କିମ୍ବଦନ୍ତୀ କୁ ନେଇ କବି ଅନେକ ଗୁଡ଼ିଏ କାବ୍ୟ କୃତି ରଚନା କରିଯାଇଛନ୍ତି । ସେଗୁଡ଼ିକ ହେଲା- କପିଳାସ (ଐତିହାସିକ କାବ୍ୟ), କପିଳାସ (ପ୍ରକୃତି କାବ୍ୟ), ସପ୍ତଶଯ୍ୟା (ପ୍ରକୃତି କାବ୍ୟ) । ତାଙ୍କର ପୌରାଣିକ କାବ୍ୟ କୃତି ଗୁଡିକ ହେଲା- ଅଧ୍ୟାତ୍ମ ରାମାୟଣ, କିଷ୍କିନ୍ଧ୍ୟା, ସୀତା ଅନ୍ୱେଷଣ, ଉଦ୍ଧବ ସନ୍ଦେଶ, ପବନ ଦୂତ, ଭରତ ମିଳନ, ଭାନୁମତିସ୍ୱୟମ୍ବର, କାକଭୂଷଣ୍ଡ ପ୍ରଭୃତି । ଏହା ସହିତ କବିଙ୍କର 'ଶ୍ରୀ ଚନ୍ଦ୍ରଶେଖର ବନ୍ଦନା' ନାମରେ ଏକ ରଚନା ମଧ୍ୟ ରହିଛି ।

**କପିଳାସ (୧୯୫୮):** ଏହା ଏକ ଐତିହାସିକ କାବ୍ୟ । ଇତିହାସର ତଥ୍ୟ ଓ କିମ୍ବଦନ୍ତୀକୁ ନେଇ ଏହି କାବ୍ୟଟି ରଚିତ । ଏଥିରେ ଉତ୍କଳର ରାଜନୈତିକ ପ୍ରେକ୍ଷାପଟ୍ଟ, ଧର୍ମ, ଦର୍ଶନ, ସଂସ୍କୃତି, ଇତିହାସ ଓ କିମ୍ବଦନ୍ତୀର ମନୋଜ୍ଞ, ମଞ୍ଜୁଳ ପରିପ୍ରକାଶ ଘଟିଅଛି । ଏହି କାବ୍ୟଟି ସାତଗୋଟି ସର୍ଗ ବିଶିଷ୍ଟ । 'ପ୍ରଥମ ସର୍ଗ' ରେ ଉତ୍କଳର ଗଙ୍ଗବଂଶୀ ଗଜପତି ମଦନ ମାହାଦେବଙ୍କର ଜଗନ୍ନାଥ ଭକ୍ତି, ପ୍ରଜାନୁରଞ୍ଜନ ଓ ବୈଦିକ ବ୍ରାହ୍ମଣ୍ୟ ଧର୍ମ ପ୍ରତି ସମ୍ମାନ ପ୍ରଦର୍ଶନର ଚିତ୍ର ପ୍ରକଟିତ । ତତ୍କାଳୀନ ଓଡ଼ିଶାରେ ତାନ୍ତ୍ରିକ ବୌଦ୍ଧ ଧର୍ମର ଭ୍ରଷ୍ଟାଚାର, ବୌଦ୍ଧ କାପାଳିକ ମାନଙ୍କର ହଠଯୋଗର ଚମତ୍କାରିତା, ବୌଦ୍ଧ ଓ ବ୍ରହ୍ମଣ୍ୟଧର୍ମ ମଧ୍ୟରେ ପ୍ରତିଦ୍ୱନ୍ଦ୍ୱିତାର ଚିତ୍ର ମଧ୍ୟ ପ୍ରକଟିତ । ରାଜା ମଦନଦେବ ବୌଦ୍ଧ କାପାଳିକ ଓ ବ୍ରାହ୍ମଣ ପଣ୍ଡିତ ଉଭୟଙ୍କର ଜ୍ଞାନର ଶ୍ରେଷ୍ଠତ୍ୱ ଜାଣିବା ପାଇଁ ଏକ ପରୀକ୍ଷାର ଆୟୋଜନ କରିଛନ୍ତି । ରାଜା ଏକ ସୁବର୍ଣ୍ଣ କଳସ ଭିତରେ ନାଗସାପଟିଏ ଗୋପନରେ ରଖି ତା' ଭିତରେ କ'ଣ ଅଛି ବୋଲି ଉଭୟ ବୌଦ୍ଧସନ୍ୟାସୀ ଏବଂ ବ୍ରାହ୍ମଣ ପଣ୍ଡିତଙ୍କୁ ପଚାରିଛନ୍ତି । କବିଙ୍କ ଭାଷାରେ-

"ଗୋପନେ କଳସେ ରଖାହେବ ନାଗ ସର୍ପ
ଯେ' କହି ନପାରିବ ତା'ର ଖର୍ବ ହେବ ଦର୍ପ ।(୨୦)

ବୌଦ୍ଧ ସନ୍ୟାସୀ ପ୍ରଥମେ ଉତ୍ତରରେ କହିଛନ୍ତି- କଳସ ଭିତରେ ନାଗସାପ ଅଛି । ମାତ୍ର- ବ୍ରାହ୍ମଣ ପଣ୍ଡିତ କହିଲେ- କଳସ ଭିତରେ କେବଳ ଭସ୍ମ ହିଁ ଅଛି । ଯେତେବେଳେ ସମସ୍ତ ସଭାସଦ୍‌ଙ୍କ ସମ୍ମୁଖରେ କଳସ ଉନ୍ମୋଚନ କରାଗଲା, ଦେଖାଗଲା

ତା'ଭିତରେ ଭସ୍ମ ହିଁ ଥିଲା । ଏଠାରେ କିମ୍ବଦନ୍ତୀ ଛଳରେ ବ୍ରାହ୍ମଣ ପଣ୍ଡିତ ବା ବୈଦିକ ବ୍ରାହ୍ମଣ୍ୟଧର୍ମର ବିଜୟ କଥା ହିଁ ସୂଚିତ ହୋଇଛି । ଏହାପରେ କବି ଉତ୍କଳର ରାଜା ଅନଙ୍ଗଭୀମ ଦେବଙ୍କୁ ରାଜା ମଦନ ମହାଦେବଙ୍କର ପୁତ୍ର ରୂପେ ଅଭିହିତ କରିଛନ୍ତି । ଯୁବରାଜ ଅନଙ୍ଗ ଭୀମଦେବ ପ୍ରଚୀନ କୋଦାଳକ ନଗରୀ ଠାରେ ଅବସ୍ଥାନ କାଳରେ ତତ୍କାଳୀନ ସ୍ବମ୍ଭ ରାଜାମାନଙ୍କ ସହିତ ଯୁଦ୍ଧକରି ସେମାନଙ୍କୁ ପରାସ୍ତ କରିଥିଲେ । ଏହି ଯୁଦ୍ଧରେ ଅନଙ୍ଗଭୀମଦେବଙ୍କ ହାତରେ ବହୁ ବ୍ରାହ୍ମଣ ଯୋଦ୍ଧା ବଧ ହୋଇଥିଲେ । ଯା' ଫଳରେ ଅନଙ୍ଗଭୀମଦେବ ବ୍ରହ୍ମହତ୍ୟା ପାତକରୁ ମୁକ୍ତି ପାଇବାପାଇଁ ମହାପ୍ରଭୁ ଶ୍ରୀ ଜଗନ୍ନାଥଙ୍କର ଶରଣାପନ୍ନ ହୋଇଥିଲେ । ଯୁବରାଜଙ୍କର ଭକ୍ତି ନିଷ୍ଠା ଦେଖି ସ୍ୱୟଂ ଜଗନ୍ନାଥ ଶୂନ୍ୟବାଣୀ କଲେ- କପିଳାସ ପୀଠ ଯାଇ ସେଠାରେ ଶ୍ରୀ ଚନ୍ଦ୍ରଶେଖରଙ୍କୁ ଆରାଧନା କଲେ ଏହି ବ୍ରହ୍ମ ହତ୍ୟା ମହାପାପରୁ ତୁମେ ମୁକ୍ତ ହେବ । କବିଙ୍କ ଭାଷାରେ-

"ନିଶୀ ଶେଷଯାମେ ଉଭାସିତ ହେଲା
ଦିବ୍ୟ ଆଲୋକରେ ବଡ଼ ଦେଉଳ
ଅଶରୀରୀ ବାଣୀ କହିଲା- ଅନଙ୍ଗ
କପିଳାସ ତୁମେ ଚଞ୍ଚଳ-ଚଳ ।"(୨୧)

'ଦ୍ୱିତୀୟସର୍ଗ' ରେ ଜଗନ୍ନାଥଙ୍କ ଠାରୁ ଦୈବବାଣୀ ଶୁଣି ଅନଙ୍ଗଭୀମଦେବ ଢେଙ୍କାନାଳସ୍ଥିତ କପିଳାସ କ୍ଷେତ୍ର ଯାଇ, ସେଠାରେ ଚନ୍ଦ୍ରଶେଖର ମହାଦେବଙ୍କୁ ଆରାଧନା କରିଛନ୍ତି । 'ତୃତୀୟସର୍ଗ' ରେ ନିର୍ଝର ଶୋଭିତ କପିଳାସ କ୍ଷେତ୍ରର ଶୁଦ୍ଧ, ସାତ୍ତ୍ୱିକ, ଆଧ୍ୟାତ୍ମିକ ଭାବର ବର୍ଣ୍ଣନା ସହିତ ତା'ର ପ୍ରାକୃତିକ ସୁଷମା ବର୍ଣ୍ଣନା କରାଯାଇଛି । 'ଚତୁର୍ଥସର୍ଗ' ରେ କପିଳାସ କ୍ଷେତ୍ରର ମହିମା ଓ ତା'ର ପୌରାଣିକ ଆଖ୍ୟାନ ବର୍ଣ୍ଣିତ ହୋଇଛି । କପିଳାସ କ୍ଷେତ୍ରରେ ମହର୍ଷି କପିଳମୁନିଙ୍କର ଅବସ୍ଥାନ, ଲଙ୍କା ଅଭିଯାନ ସମୟରେ ରାମଚନ୍ଦ୍ରଙ୍କର ଏହି କପିଳାସ କ୍ଷେତ୍ରରେ ଶିବଙ୍କ ଆରାଧନା, କୋଦାଳକ ମଣ୍ଡଳସ୍ଥିତ ନାଧରାଠାରେ ଦେବୀ ରାମଚଣ୍ଡୀଙ୍କର ସ୍ଥାପନା ଓ ଆରାଧନା ଆଦି କିମ୍ବଦନ୍ତୀର ବର୍ଣ୍ଣନା କରାଯାଇଛି । ଏହା ସହିତ ଲାଙ୍ଗୁଳାନରସିଂହ ଦେବଙ୍କର କପିଳାସ ମନ୍ଦିରର ନିର୍ମାଣ ପ୍ରସଙ୍ଗ ମଧ୍ୟ ବର୍ଣ୍ଣିତ ହୋଇଛି । 'ପଞ୍ଚମସର୍ଗ' ରେ ଯୁବରାଜ ଅନଙ୍ଗଭୀମଦେବ କିପରି ଚନ୍ଦ୍ରଶେଖରଙ୍କ ପାଖରେ ନିଜକୁ ସମର୍ପଣ କରି ଏହି ଅଞ୍ଚଳରେ ନିଜର ସେନାପତି ଓ ପାତ୍ରମନ୍ତ୍ରୀ ମାନଙ୍କଦ୍ୱାରା ବିଭିନ୍ନ ସେବା ଓ ଜନମଙ୍ଗଳ କାର୍ଯ୍ୟ କରାଇଥିଲେ, ତା'ର ବର୍ଣ୍ଣନା କରାଯାଇଛି । 'ଷଷ୍ଠସର୍ଗ' ରେ ଯୁବରାଜ ଅନଙ୍ଗଭୀମଦେବ ଯେଉଁ ରୁଦ୍ରାଭିଷେକ

ଆୟୋଜନ କରାଇଥିଲେ ତା'ର ବର୍ଣ୍ଣନା କରାଯାଇଛି । 'ସପ୍ତମ ସର୍ଗ' ରେ କପିଳାସ ଗିରି ଶିଖରରେ ଅବସ୍ଥିତ ବିଲଙ୍କାଗଡ଼ର ବର୍ଣ୍ଣନା କରାଯାଇଛି । ବିଲଙ୍କାଗଡ଼ର ପ୍ରବଳ ପତାପୀ, ଅତ୍ୟାଚାରୀ ଶବର ରାଜାଙ୍କୁ ଅନଙ୍ଗଭୀମଦେବ ଯୁଦ୍ଧରେ ପରାସ୍ତକରି ଜନପଦବାସୀଙ୍କୁ ଲୁଣ୍ଠନ ଓ ଅତ୍ୟାଚାରରୁ ମୁକ୍ତି କରିବାର ଚିତ୍ର ବର୍ଣ୍ଣନା କରାଯାଇଛି । ପରିଶେଷରେ ଯୁବରାଜ ଅନଙ୍ଗଭୀମଦେବ ଶ୍ରୀ ଚନ୍ଦ୍ରଶେଖରଙ୍କ କରୁଣାରୁ ବ୍ରହ୍ମହତ୍ୟା ପାତକରୁ ମୁକ୍ତ ହୋଇ ଶ୍ରୀକ୍ଷେତ୍ର ପ୍ରତ୍ୟାଗମନ କରିବା ଚିତ୍ର ବର୍ଣ୍ଣନା କରାଯାଇଛି ।

**କପିଳାସ (ପ୍ରକୃତି କାବ୍ୟ - ୧୯୯୪):** ଏହା ପ୍ରାକୃତିକ ସୌନ୍ଦର୍ଯ୍ୟ ଗର୍ଭିତ ଏକ ଖଣ୍ଡ କାବ୍ୟ । ଏହି କାବ୍ୟଟି ସର୍ଗବନ୍ଧ ବିହୀନ । କାବ୍ୟାରମ୍ଭରେ କବି ଢେଙ୍କାନାଳର ପ୍ରସିଦ୍ଧଶୈବକ୍ଷେତ୍ର କପିଳାସର ଅଧିଷ୍ଠାତା ଦେବତା ଶ୍ରୀଚନ୍ଦ୍ରଶେଖରଙ୍କର ବନ୍ଦନା ସହିତ କପିଳାସର ପ୍ରାକୃତିକ ସୌନ୍ଦର୍ଯ୍ୟର ଚିତ୍ରଣ କରିଛନ୍ତି । ଏହା ସହିତ ଢେଙ୍କାନାଳ ଭୂ-ଖଣ୍ଡର ଅବସ୍ଥିତି ଓ ତା'ର ସୃଷ୍ଟି ଇତିହାସ ଉନ୍ମୋଚିତ କରିଛନ୍ତି । ଏହି ଜିଲ୍ଲାରେ ଅବସ୍ଥିତ ଗିରି ଶ୍ରେଣୀ, ଜଳଧାରା ଓ କାନନ ଭୂମିର ଅପରୂପ ଶୋଭା ବର୍ଣ୍ଣନା କରିଛନ୍ତି । କବି ଏହି କପିଳାସକୁ ଉତ୍କଳ ଭୂମିର ପବିତ୍ର ବାରାଣସୀ ରୂପେ ଅଭିହିତ କରିଛନ୍ତି । କବିଙ୍କ ଭାଷାରେ-

"ପର୍ବତ ସାନୁରେ ରାଜେ ଶମ୍ଭୁ କ୍ଷେତ୍ର
ଉତ୍କଳର ବାରାଣସୀ ତୀର୍ଥଖ୍ୟାତ ।"(୨୨)

ବାରାଣସୀ କ୍ଷେତ୍ରତୁଲ୍ୟ ଏହି କପିଳାସ ଏକ ପବିତ୍ର ପୁଣ୍ୟଭୂମି । କବି ଏହି କ୍ଷେତ୍ରର ମହିମା ଓ ସ୍ୱର୍ଗୀୟ ସୁଷମାର ବର୍ଣ୍ଣନା କରି ଲେଖିଛନ୍ତି-

"ନମୋ କପିଳାସ ଶିବ, ଶୁଭ ସତ୍ୟ
ଉତ୍କଳର ପୁଣ୍ୟ ପର୍ଯ୍ୟଟନ କ୍ଷେତ୍ର
ପ୍ରାକୃତିକ ଶୋଭା ସୁଷମା ମଣ୍ଡିତ
ଯେତେ ଦେଖିଲେ ହେଁ, ନୁହେଁ ଶାନ୍ତ ଚିତ୍ତ ।"(୨୩)

କବି ଏହି କ୍ଷେତ୍ରର ଶୁଦ୍ଧ-ପୂତ ବାୟୁ ଓ ପବିତ୍ର ନିର୍ଝର କିପରି ମଣିଷର ସ୍ୱାସ୍ଥ୍ୟପକ୍ଷେ ଅତ୍ୟନ୍ତ ହିତକର ଏବଂ ଜୀବନଦାୟୀ ତାହା ସୂଚିତ କରିଛନ୍ତି । ଏହା ସହିତ ପାର୍ବତ୍ୟ କାନନମାଳା ଓ ବନ୍ୟପୁଷ୍ପର ଅପରୂପ ଶୋଭାସମ୍ଭାରର ବର୍ଣ୍ଣନା କବି କରିଛନ୍ତି । କବିଙ୍କ ଭାଷାରେ-

"ସୁନାରି ଗଛରୁ ହରିତ ବରଣ
ଝୁଲୁଥାଏ ଫୁଲ ପେଣ୍ଡା ଅଗଣନ

ଉଚ୍ଚ ଗିରି ଶିଖେ ଶିମିଳି, ପଳାସ,
ରକ୍ତବର୍ଣ୍ଣ ପୁଷ୍ପ ହରଇ ମାନସ ।"(୨୪)

ପରିଶେଷରେ କବି କପିଳାସ କ୍ଷେତ୍ରର କିମ୍ବଦନ୍ତୀ, ଇତିହାସ ଓ ମହିମାର ବର୍ଣ୍ଣନା କରିଛନ୍ତି । ଏହି କ୍ଷେତ୍ରରେ ଯୋଗ ସାଧନାରତ କପିଳମୁନିଙ୍କ ନାମାନୁସାରେ ଏହି ସ୍ଥାନର ନାମ 'କପିଳାସ' ହୋଇଛି ବୋଲି କବି ସୂଚିତ କରିଛନ୍ତି । ପୁନଶ୍ଚ କୈଳାସ ପର୍ବତକୁ ରାବଣ ରଥ ଉପରେ ବୋହିନେବାବେଳେ ଏଠାରେ ପର୍ବତ ଶୃଙ୍ଗର କିୟଦଂଶ ପଡି ତାହା କ୍ରମେ 'କପିଳାସ' ନାମରେ ଖ୍ୟାତ ହେବାକଥା ମଧ କବି ସୂଚିତ କରିଛନ୍ତି । ବାସ୍ତବରେ ଏହି କାବ୍ୟଟି ଇତିହାସ, କିମ୍ବଦନ୍ତୀ ଓ ପ୍ରାକୃତିକ ସୌନ୍ଦର୍ଯ୍ୟ ଗର୍ଭିତ ଏକ ମହାର୍ଘ କାବ୍ୟ କୃତି ।

**ସପ୍ତଶଯ୍ୟା (୨୦୦୧) :** ଏହାମଧ ଏକ ପ୍ରାକୃତିକ ସୌନ୍ଦର୍ଯ୍ୟ ଗର୍ଭିତ କାବ୍ୟ । ଢେଙ୍କାନାଳଗଡ଼ ଅଦୂରସ୍ଥ ସପ୍ତଋଷିଙ୍କର ଆଶ୍ରମ ଓ ରାମଭକ୍ତି ଉପାସନାର ପ୍ରାଚୀନ ପୀଠ -ଏହି ସପ୍ତଶଯ୍ୟା ପର୍ବତମାଳାର ପ୍ରାଚୀନ ଐତିହ୍ୟ ଓ ପୌରାଣିକ ମହିମାର ବର୍ଣ୍ଣନା ସହିତ କବି ଏହାର ପ୍ରାକୃତିକ ପରିବେଶର ନୈସର୍ଗିକ ରୂପଶୋଭାର କମନୀୟ ଚିତ୍ରଣ କରିଛନ୍ତି । ଏହି କାବ୍ୟଟି ସାତଗୋଟି ପର୍ବ ବା ଶଯ୍ୟା ଗର୍ଭିତ । ଏହି ସାତଗୋଟି ପର୍ବ ବା ଶଯ୍ୟା ଗୁଡିକହେଲା- ୧- ପ୍ରଥମଶଯ୍ୟା ୨- ଉଦ୍ୟାନଶଯ୍ୟା ୩-ଦେବଶଯ୍ୟା ୪-ପବିତ୍ରତୀର୍ଥଶଯ୍ୟା ୫-ପ୍ରାବୃଟଶଯ୍ୟା ୬- ପର୍ବତ ଆରୋହଣଶଯ୍ୟା ୭- ନିମ୍ନଭୂମିଶଯ୍ୟା । ଏହି ପ୍ରତିଟି ଶଯ୍ୟାର କାବ୍ୟିକ ବର୍ଣ୍ଣନା ଅତି ମନୋହର ଓ ରସମୟ ହୋଇପାରଛି । ଏହାର ପ୍ରାକୃତିକ ଶୋଭା ବର୍ଣ୍ଣନା ଅବକାଶରେ କବି ବନନିର୍ଝରର ମନୋରମ ଦୃଶ୍ୟ, ପର୍ବତମାଳାର ଶୋଭା, ବନ୍ୟପୁଷ୍ପର ସୌନ୍ଦର୍ଯ୍ୟ ଓ ସୁରଭିର ଚିତ୍ରଣ କରିଛନ୍ତି । ଏହି କାବ୍ୟରେ କବିବର ରାଧାନାଥଙ୍କର ପ୍ରକୃତି ବର୍ଣ୍ଣନାର ପ୍ରଭାବ ପରିଦୃଷ୍ଟ ହୁଏ । ରାଧାନାଥଙ୍କ 'ଚିଲିକା'ର ପ୍ରାକୃତିକ ସୌନ୍ଦର୍ଯ୍ୟ ବର୍ଣ୍ଣନାପରି କବି ଗୌରହରି ସପ୍ତଶଯ୍ୟା ପର୍ବତମାଳାର ପ୍ରାକୃତିକ ଶୋଭା ବର୍ଣ୍ଣନା କରିଛନ୍ତି । ଗୌରହରି ସପ୍ତଶଯ୍ୟାକୁ ଉତ୍କଳ ପ୍ରକୃତିର ଅପରୂପ ଶୋଭାର ନନ୍ଦନକାନନ ରୂପେ ଚିତ୍ରଣ କରିଛନ୍ତି । ଯାହାକି- ଉତ୍କଳ ଲକ୍ଷ୍ମୀଙ୍କ ଲୀଳା-ବିଳାସର କ୍ଷେତ୍ର । କବିଙ୍କ ଭାଷାରେ-

"ଉତ୍କଳ ପ୍ରକୃତି ଉଦ୍ୟାନର ଶିରୀ
ସପ୍ତଶଯ୍ୟା ସମାହାର ସପ୍ତଗିରି
ମରତେ ଦୁର୍ଲ୍ଲଭ ସୁଷମା କାନନ

ଉତ୍କଳ କମଳା ବିଳାସ ଉଦ୍ୟାନ ।
ମର୍ତ୍ତ୍ୟର ସ୍ୱର୍ଗକୁ ନିଶ୍ରେଣୀ ବା' ଏହି
ମର୍ତ୍ତ୍ୟବାସୀ ସୁଖେ ସ୍ୱର୍ଗ ଯିବାପାଇଁ ।" (୨୫)

ଏହି ସପ୍ତଶଯ୍ୟା ପାର୍ବତ୍ୟମାଳା ଢେଙ୍କାନାଳ ମାଟିର ନନ୍ଦନକାନନ ତୁଲ୍ୟ । ଯେଉଁଥିପାଇଁ କବି ଲେଖିଛନ୍ତି-

"ଢେଙ୍କାନାଳଧରା ନନ୍ଦନକାନନ
ପ୍ରକୃତି ସୁନ୍ଦରୀ ରମ୍ୟ ବାସ ସ୍ଥାନ ।
ଦର୍ଶନେ କବିର ମାନସ କାସାରେ
ଶକ ଶତଦଳ ବିକାଶେ ଉତ୍‌ଫୁଲେ ।
ଯେତେ ଦେଖିଲେ ଯେ' ତୃପ୍ତି ନ' ଆସଇ
ଆଉ ଦେଖିବାକୁ ମାନସ ବଳଇ ।"(୨୬)

ଏହି ପାର୍ବତ୍ୟମାଳାର ଶ୍ୟାମଳ ବୃକ୍ଷଲତା, ପୁଷ୍ପ ମାନଙ୍କର ଅପରୂପ ସୌନ୍ଦର୍ଯ୍ୟ ସମ୍ଭାର କବି ଲେଖନୀରେ ଫୁଟିଉଠିଛି । ସୁନାରୀ ବୃକ୍ଷରେ ସୁବର୍ଣ୍ଣ ବର୍ଣ୍ଣର ସୁନାରୀ ଫୁଲର ଶୋଭା କୁ କବି ଅତି ଚମତ୍କାର ଭାବରେ ବର୍ଣ୍ଣନା କରିଛନ୍ତି -

"ସୁନାରୀ ଗଛର ଡାଳେ ଲମ୍ବମାନ
ସୁବର୍ଣ୍ଣ ବରଣ ପୁଷ୍ପଗୁଚ୍ଛମାନ
ପବନ ହିଲ୍ଲୋଳେ ମନ୍ଦେ ହଲି ହଲି
ଅଭିମାନେ ରଚେ ଅଳି ସଙ୍ଗ କେଳି ।"(୨୭)

ସୁନରୀ ବଲ୍ଲୀରେ ମଧୁପର ଏହି ପ୍ରେମ ଆଲିଙ୍ଗନକୁ କବି ଆଧ୍ୟାତ୍ମିକତାର ପ୍ରଲେପ ଦେଇ ରାଧାକୃଷ୍ଣଙ୍କର ଯୁଗନଦ୍ଧ ମିଳନ ରୂପର ପରିକଳ୍ପନା କରିଛନ୍ତି । କବିଙ୍କ ଭାଷାରେ-

"ଭୃଙ୍ଗ ଗଣେ ଶୋହେ ସ୍ୱର୍ଣ୍ଣ ପୁଷ୍ପଦଳ
ହେମ ଅଙ୍ଗେ କୃଷ୍ଣବର୍ଣ୍ଣ ବିକଶିତ
ଅପରୂପ ଶୋଭା ହୁଏ ପ୍ରକାଶିତ
ରାଧା-କୃଷ୍ଣ ତତ୍ତ୍ୱ ରସର ମାଧୁରୀ
ମାଦକେ ରସିକ ଚିତ୍ତ ନିଏ ହରି ।" (୨୮)

କେବଳ ସେତିକି ନୁହେଁ; ସପ୍ତଶଯ୍ୟା ଗିରିଶୃଙ୍ଗର ଅପରୂପ ଶୋଭାର କମନୀୟ ବର୍ଣ୍ଣନା ମଧ କବି କରଛନ୍ତି । କବିଙ୍କ ଭାଷାରେ-

"ଗିରି ଶୃଙ୍ଗ ଶୁଭ୍ର ଜଳଦ ମଣ୍ଡିତ
ମୁକୁଟ ମସ୍ତକେ ଯଥା ବିଭୂଷିତ ।
ମଧ୍ୟେ ମଧ୍ୟେ ତହିଁ ବିଦ୍ୟୁତ ଝଟକ
ହୀରାଖଣ୍ଡ ଆଭା କରଇ ପ୍ରକଟ ।" (୨୯)

'ପାର୍ବତ୍ୟ ଆରୋହଣ ଶଯ୍ୟା' ରେ କବି ବୀରଭୂମି ଢେଙ୍କାନାଳ ମାଟିର ଐତିହ୍ୟ, ମହତ୍ତ୍ୱ ଓ ମହିମାର ଯଶଗାନ କରିଛନ୍ତି । ସେହିପରି 'ନିମ୍ନଭୂମି ଶଯ୍ୟା' ରେ ଏହି ଭୂ-ଖଣ୍ଡର ଆଦିମ ଅଧିବାସୀ ମାନଙ୍କର ସରଳ ଜୀବନ ଚିତ୍ରର ଚିତ୍ରଣ କରିଛନ୍ତି । ଏହି ପ୍ରାକୃତିକ ସୌନ୍ଦର୍ଯ୍ୟଗର୍ଭିତ, ପବିତ୍ରପୀଠ ଯେ' ଦିନେ ଆର୍ଯ୍ୟବିଦ୍ୟା, ଆର୍ଯ୍ୟ ସଂସ୍କୃତି ଓ ଆର୍ଯ୍ୟ ମହିମାରେ ସମଗ୍ର ଭାରତବର୍ଷକୁ ସମୁଜ୍ଜ୍ୱଳ କରିବ- ଏହି ଆଶା କବି ପ୍ରତିପୋଷଣ କରିଛନ୍ତି । ଯେଉଁଥିପାଇଁ କବି ଲେଖିଛନ୍ତି-

"ସୌନ୍ଦର୍ଯ୍ୟ ବିଳାସୀ ହେ ଗିରି ସୁନ୍ଦର
ତୋ କୋଳରେ ରାଜୁ କଲ୍ୟାଣ ନଗର ।

*　　*　　*　　*

ଗୁରୁ କୁଳାଶ୍ରମ ହେଉ ପ୍ରତିଷ୍ଠିତ
ପ୍ରାଚ୍ୟ ଆର୍ଯ୍ୟ ବିଦ୍ୟା ହେଉ ପ୍ରଚାରିତ ।
ଅଶାନ୍ତ ଭାରତବାସୀଙ୍କ ଜୀବନ
ଶାନ୍ତି-ସୌଭାଗ୍ୟରେ ହେଉ ପରିପୂର୍ଣ୍ଣ ।"(୩୦)

ବାସ୍ତବରେ କବିଙ୍କର ଏହି କାବ୍ୟଟି ଏକ କାଳଜୟୀ କଳା କୃତି । ଢେଙ୍କାନାଳ କାବ୍ୟ-ନନ୍ଦନ କାନନର ଏହା ଏକ ପାରିଜାତ ପୁଷ୍ପ ସଦୃଶ ।

**ଅଧ୍ୟାତ୍ମ ରାମାୟଣ :** ମହର୍ଷି କୃଷ୍ଣଦ୍ୱୈପାୟନ ବେଦବ୍ୟାସ କୃତ ସଂସ୍କୃତ 'ଅଧ୍ୟାତ୍ମରାମାୟଣ' କୁ ଭିତ୍ତିକରି କବି ଓଡ଼ିଆରେ ଏହାର ଭାବାନୁବାଦ କରିଛନ୍ତି । ଏହି ଗ୍ରନ୍ଥରେ ଭାରତୀୟ ଆର୍ଯ୍ୟସଭ୍ୟତା ଓ ସଂସ୍କୃତିର ଜୟଗାନ ସହିତ ମର୍ଯ୍ୟାଦାପୁରୁଷୋତ୍ତମ ଶ୍ରୀରାମଚନ୍ଦ୍ରଙ୍କର ଭଗବାନତ୍ୱର ପ୍ରତିପାଦନ କରାଯାଇଛି । ରାମଚନ୍ଦ୍ର ସ୍ୱୟଂ ପରଂବ୍ରହ୍ମ ଭଗବାନ ରୂପରେ ଚିତ୍ରିତ ହୋଇଛନ୍ତି । ଏହା ସହିତ ରାମଚନ୍ଦ୍ର ଜଣେ ଆଦର୍ଶ, ମର୍ଯ୍ୟାଦାବନ୍ତ ଓ ସତ୍ୟସନ୍ଧା ପୁରୁଷ ରୂପେ ଏଥିରେ ଚିତ୍ରିତ ହୋଇଛନ୍ତି ।

**ଭରତ ମିଳନ :** ଏହା ଏକ ପୌରାଣିକ କାବ୍ୟ । ରାମାୟଣର କଥାବସ୍ତୁ ଆଧାରରେ ଏ କାବ୍ୟଟି ରଚିତ । ରାମଭ୍ରାତ 'ଭରତ'ଙ୍କ ଅସାଧାରଣ ଭ୍ରାତୃଭକ୍ତି ଏହି କାବ୍ୟଟିରେ ପ୍ରକଟିତ ।

ରାମଚନ୍ଦ୍ରଙ୍କର ଚତୁର୍ଦ୍ଦଶ ବର୍ଷବ୍ୟାପୀ ବନବାସ କାଳରେ ଭରତ ରାଜଗାଦି ତ୍ୟାଗକରି ନନ୍ଦୀଗ୍ରାମ ଠାରେ ସନ୍ନ୍ୟାସୀ ର ଜୀବନ ବରଣକରି ଶ୍ରୀରାମଚନ୍ଦ୍ରଙ୍କର ପାଦୁକା ଦ୍ୱୟକୁ ସିଂହାସନରେ ସ୍ଥାପନାକରି ପାଦୁକାର ପୂଜାର୍ଚ୍ଚନା ପୂର୍ବକ ନିଜକୁ ରାମଚନ୍ଦ୍ରଙ୍କର ପ୍ରତିନିଧି ରୂପରେ ରାଜକାର୍ଯ୍ୟ ପରିଚାଳନା କରିଥିଲେ । କବିଙ୍କ ଭାଷାରେ-

"ରହି ଚତୁର୍ଦ୍ଦଶବର୍ଷ ତେଜି କ୍ଷୁଧା-ନିଦ୍ରା<br>
ରାମସ୍ମରି ରାମକାର୍ଯ୍ୟେ ରତ ଯେ ସର୍ବଦା<br>
ଶ୍ରୀରାମ-ସୀତା ସରୋଜ ପଦେ ରଖି ମନ<br>
ପ୍ରେମାନନ୍ଦ ସୁଖେ ତହିଁ ସତେ ମଗନ ।"(୩୧)

ଭରତ ସର୍ବଦା ରାମନାମ, ରାମରସ ଓ ରାମଭକ୍ତି ରେ ତଲ୍ଲୀନ ରହିଛନ୍ତି । ଭରତ ଯେତେବେଳେ ହନୁମାନଙ୍କଠାରୁ ଭ୍ରାତା ରାମଚନ୍ଦ୍ରଙ୍କର ପ୍ରତ୍ୟାବର୍ତ୍ତନର ବାର୍ତ୍ତା ପାଇଛନ୍ତି- ସେତେବେଳେ ସେ ଅଧୀର-ଆବେଗରେ ରାମଚନ୍ଦ୍ରଙ୍କ ପାଦପଦ୍ମରେ ପାଦୁକା ଦୁଇଟିକୁ ପିନ୍ଧାଇ ତାଙ୍କୁ ପାଛୋଟି ଆଣିଛନ୍ତି । କବି ଏଠାରେ ଭରତଙ୍କୁ ଅତି ସୌଭାଗ୍ୟବନ୍ତ ରୂପେ ଅଭିହିତ କରିଛନ୍ତି । କାରଣ- ଯେଉଁ ପଦଯୁଗଳ ଦେବଦୁର୍ଲ୍ଲଭ, ସେହି ପଦଯୁଗଳକୁ ସ୍ପର୍ଶ ଓ ପ୍ରକ୍ଷାଳନ କରିବାର ସୁଯୋଗ ଭରତ ପାଇଛନ୍ତି । ରାମଚନ୍ଦ୍ର ଭରତଙ୍କୁ ପଦତଳୁ ଉଠାଇ ବକ୍ଷରେ ଧାରଣକରି ସ୍ନେହାଲିଙ୍ଗନ କରିଛନ୍ତି । ରାମ-ଭରତଙ୍କର ଏହି ମିଳନ ପର୍ବର ଦୃଶ୍ୟକୁ କବି ଭକ୍ତି ଓ ପ୍ରେମରସର ଅପୂର୍ବ ମହିମାରେ ପ୍ରକଟିତ କରିଛନ୍ତି । କବିଙ୍କ ଭାଷାରେ-

"ବେନିଭାଇ ଶ୍ୟାମରୂପ ଏକ ପରକାର<br>
ଏକ ବୃନ୍ତେ ଶୋଭେ ବେନି ନୀଳ ଇନ୍ଦୀବର ।<br>
ଜ୍ଞାନ-ଭକ୍ତି କର୍ମ ସୂତ୍ରେ ହେଲା କି' ଗ୍ରନ୍ଥନ<br>
ଦେବଙ୍କୁ ଦୁର୍ଲ୍ଲଭ ରାମ-ଭରତ ମିଳନ ।" (୩୨)

ବାସ୍ତବରେ ରାମ-ଭରତଙ୍କର ଏହି ଦେବଦୁର୍ଲ୍ଲଭ ଭ୍ରାତୃ ମିଳନର ଦୃଶ୍ୟକୁ କବି ଏହି କ୍ଷୁଦ୍ର କାବ୍ୟଟିରେ ବର୍ଣ୍ଣିତ କରିଛନ୍ତି ।

**କାକ ଭୂଷଣ୍ଡ ଚରିତ (୧୮୮୩):** ଗୋସ୍ୱାମୀ ତୁଳସୀଦାସଙ୍କ ବିରଚିତ 'ରାମଚରିତମାନସ' ଗ୍ରନ୍ଥର 'କାକଭୂଷଣ୍ଡଚରିତ' ଆଖ୍ୟାୟିକା ଅବଲମ୍ବନରେ କବି ଏହି କାବ୍ୟଟି ରଚନା କରିଛନ୍ତି । ଏହା ରାମଭକ୍ତି ପରଂପରାର ଏକ ମନୋଜ୍ଞ ଭକ୍ତିରସାତ୍ମକ କାବ୍ୟ । ଗରୁଡ ଓ କାକଭୂଷଣ୍ଡଙ୍କ କଥୋପକଥନ ଛଳରେ ରାମ କଥା, ରାମତତ୍ତ୍ୱ ଓ

ରାମଭକ୍ତି ର ଅପୂର୍ବ ମହିବା ବର୍ଣ୍ଣନ- ଏହି କାବ୍ୟର ମୂଳ ଉପଜୀବ୍ୟ । ଏହି ଗ୍ରନ୍ଥଟିରେ ପ୍ରଭୁ ରାମଚନ୍ଦ୍ରଙ୍କର ନିର୍ଗୁଣ, ନିରାକାର ରୂପ ଅପେକ୍ଷା ସଗୁଣ ସାକାର ବ୍ରହ୍ମ ରୂପର ପ୍ରତିଷ୍ଠା ଓ ପ୍ରତିପାଦନ କରାଯାଇଛି । କାକଭୂଷଣ୍ଡ ହେଉଛନ୍ତି- ପରମଜ୍ଞାନୀ ଓ ଶ୍ରେଷ୍ଠ ରାମଭକ୍ତ । ମହାଦେବ ଶିବ, ପରମ ବିଷ୍ଣୁଭକ୍ତ ଗରୁଡଙ୍କୁ ରାମଭକ୍ତିର ମହିମା ଓ ବ୍ରହ୍ମଜ୍ଞାନ ତତ୍ତ୍ୱ ଜାଣିବା ପାଇଁ କାକଭୂଷଣ୍ଡଙ୍କ ପାଖକୁ ପଠାଇଛନ୍ତି । କବିଙ୍କ ଭାଷାରେ:-

"ବିଷ୍ଣୁଭକ୍ତ ବୋଲି ତା'ର ବଡ ଅଭିମାନ
ସେହି ଅଭିମାନ ଚୂର୍ଣ୍ଣ କରିବାପାଇଁ କି'
ପେଷିଲି ଭକତ କାକ-ଭୂଷଣ୍ଡ କତିକି ।" (୩୩)

ଗରୁଡ, ଶିବଙ୍କର ଆଜ୍ଞାପାଇ ସୁମେରୁ ପର୍ବତ ଯାଇ ସେଠାରେ କାକାଭୂଷଣ୍ଡଙ୍କୁ ସାକ୍ଷାତ କରିଛନ୍ତି । କାକାଭୂଷଣ୍ଡ ଗରୁଡଙ୍କୁ ପବିତ୍ର ରାମକଥା ଶୁଣାଇବା ସହିତ ରାମନାମ, ରମାନାମର ମହାତ୍ମ୍ୟ, ରାମତତ୍ତ୍ୱ, ରାମଭକ୍ତି, ଦାସ୍ୟ ଓ ପ୍ରେମଭକ୍ତିର ମହତ୍ତ୍ୱ ଏବଂ ରାମଚନ୍ଦ୍ରଙ୍କର ସଗୁଣତ୍ୱର ପ୍ରତିପାଦନ କରିଛନ୍ତି । ଭୂଷଣ୍ଡଙ୍କଠାରୁ ରାମନାମ ଓ ରାମଭକ୍ତିର ମହାତ୍ମ୍ୟ ଶୁଣି ଗରୁଡଙ୍କର ଜ୍ଞାନୋଦୟ ହୋଇଛି । ଗରୁଡଙ୍କ ହୃଦୟରେଥିବା ଅହଂକାର ଓ ଅଭିମାନର ପାହାଡ ଚୂର୍ଣ୍ଣୀଭୂତ ହୋଇ ହୃଦୟରେ ପ୍ରେମଭକ୍ତିର ଧାରା ପରିପ୍ଳାବିତ ହୋଇଛି । ମୋଟାମୋଟି ଭାବରେ କବି ଏ କାବ୍ୟରେ ରାମଭକ୍ତିର ମହିମା ସହିତ ପ୍ରେମଭକ୍ତିରସର ମହାପ୍ଲାବନ ଘଟାଇଛନ୍ତି । ଯେଉଁଥିପାଇଁ କବି ଲେଖିଛନ୍ତି-

"ଭକ୍ତି ରସମୟ କାବ୍ୟ ମାନସ ଚରିତ
କାକାଭୂଷଣ୍ଡ ଚରିତ ପରମ ପବିତ୍ର ।"(୩୪)

ଏହି କାକଭୂଷଣ୍ଡ ଚରିତଟି କବିଙ୍କର ଓଡ଼ିଆ ପଦ୍ୟାନୁବାଦ ହେଲେହେଁ; ଏଥିରେ କବିଙ୍କର ସ୍ୱକୀୟ ମୌଳିକତା, ଅପୂର୍ବ କବିତ୍ୱ ଫୁଟି ଉଠିଛି ।

**କିଷ୍କିନ୍ଧ୍ୟା :** ଏହା ମଧ୍ୟ ଏକ ପୌରାଣିକ ରଚନା । ମୂଳ ସଂସ୍କୃତ ରାମାୟଣରୁ କଥାବସ୍ତୁ ସଂଗ୍ରହକରି କବି ଏହି କାବ୍ୟର ହର୍ମ୍ୟ ନିର୍ମାଣ କରିଛନ୍ତି । ଏହି କାବ୍ୟଟି ବେଶ୍ ସରଳ, ରସାଳ ଓ ହୃଦୟଗ୍ରାହୀ ହୋଇପାରିଛି ।

**ସୀତା ଅନ୍ୱେଷଣ :** ଏହା ମଧ୍ୟ କବିଙ୍କର ଏକ ମନୋଜ୍ଞ ପୌରାଣିକ କଳା ସୃଷ୍ଟି । ରାମାୟଣର ଭାବଧାରା ଅବଲମ୍ବନରେ କବି ଏହି କଳାତ୍ମକ କାବ୍ୟଟି ରଚନା କରିଛନ୍ତି ।

**ଭାନୁମତୀ ସ୍ୱୟମ୍ବର (୨୦୦୩):** ଏହା ଏକ ପୌରାଣିକ କ୍ଷୁଦ୍ର କାବ୍ୟ । ଏହି କାବ୍ୟଟି ଚାରିଗୋଟି ଛାନ୍ଦ ବିଶିଷ୍ଟ । ରୀତିଯୁଗୀୟ କାବ୍ୟାଦର୍ଶ ଓ ପାଲା-ଦାସକାଠିଆ ଶୈଳୀରେ

ଏହା ରଚିତ । ପ୍ରଥମ ଛାନ୍ଦରେ 'ଭାନୁମତୀ' ର ଜନ୍ମ ବୃତାନ୍ତ ସହିତ ତା'ର ବାଲ୍ୟ, ପୌଗଣ୍ଡ ର ବର୍ଣ୍ଣନା ଏବଂ ଯୌବନ କାଳୀନ ଦୈହିକ ରୂପ ଲାବଣ୍ୟର ଚିତ୍ର ପ୍ରକଟିତ ହୋଇଛି । 'ଦ୍ୱିତୀୟଛାନ୍ଦରେ' ଚାରୁ ବସନ୍ତର କମନୀୟ ବର୍ଣ୍ଣନା କବି କରିଛନ୍ତି । ଏହି ବସନ୍ତ ବର୍ଣ୍ଣନାର ଅବକାଶରେ କୋଶଳର ରାଜା ଓ ପାଟମହିଷି କନ୍ୟା ଭାନୁମତୀର ବିବାହ ପାଇଁ ସ୍ୱୟମ୍ବର ସଭା ଆୟୋଜନର ସିଦ୍ଧାନ୍ତ କରିଛନ୍ତି । 'ତୃତୀୟଛାନ୍ଦ' ରେ କୋଶଳର ବିଦ୍ୟା ନଗରୀରେ ବର୍ଣ୍ଣାଢ୍ୟ ସ୍ୱୟମ୍ବର ଉତ୍ସବର ଚିତ୍ର ବର୍ଣ୍ଣିତ ହୋଇଅଛି । 'ଚତୁର୍ଥଛାନ୍ଦ' ରେ ଭାନୁମତୀ ଦୁର୍ଯ୍ୟୋଧନଙ୍କର ରୂପ, ତେଜ ଓ ସୌନ୍ଦର୍ଯ୍ୟରେ ଆକୃଷ୍ଟ ହୋଇ ଦୁର୍ଯ୍ୟୋଧନଙ୍କୁ ବରଣମାଳା ଦେଇ ବିବାହ କରିବାର ପ୍ରସଙ୍ଗ ବର୍ଣ୍ଣିତ ହୋଇଛି ।

**ଶ୍ରୀ ଚନ୍ଦ୍ରଶେଖର ବନ୍ଦନା :** ଏହା ଶିବଙ୍କର ମହିମା ଓ ଜଗତ କଲ୍ୟାଣକାରୀ ଭାବନା ସମ୍ବଳିତ ଏକ ବନ୍ଦନା । ଏଥିରେ କପିଳାସକ୍ଷେତ୍ରର ଅଧୀଶ୍ୱର ଶ୍ରୀ ଚନ୍ଦ୍ରଶେଖରଙ୍କର ମହିମାର ବନ୍ଦନା ଓ ଜୟଗାନ ସହିତ ଅଶାନ୍ତ ଜଗତ ଓ ଜୀବନକୁ ପ୍ରଶାନ୍ତମୟ କରି ବିଶ୍ୱର କଲ୍ୟାଣ ବିଧାନ କରିବାକୁ କବି ପ୍ରାର୍ଥନା କରିଛନ୍ତି । କବିଙ୍କ ଭାଷାରେ-

"ଜ୍ଞାନର ଗଙ୍ଗା ଚାନ୍ଦିନୀଜ୍ୟୋତ୍ସ୍ନା ଅଙ୍ଗଭୂଷଣ ମହେଶ୍ୱର
ପ୍ରଶାନ୍ତକର ଅଶାନ୍ତ ଜଗତ, ତ୍ରାହିକର ଚନ୍ଦ୍ରଶେଖର ।

ପ୍ରକୃତରେ ଏହି ବନ୍ଦନାଟି ସମଗ୍ର ଜଗତ ଓ ମାନବ ସମାଜର ଶାନ୍ତି, ପ୍ରୀତି ଓ ମଙ୍ଗଳ ପାଇଁ ଅଭିପ୍ରେତ ।

ଢେଙ୍କାନାଳ ମାଟିର ଏହି ମହାପୁରୁଷ, କାଳଜୟୀ ସ୍ରଷ୍ଟା, ମହାନ୍ କବି ଗୌରହରି ପଣ୍ଡା ୨୦୧୧ ମସିହା ଫେବୃୟାରୀ ମାସ ୧୦ ତାରିଖରେ ଇହଲୀଳା ସମ୍ବରଣ କରିଥିଲେ ।

## ଗୋଲକ ବିହାରୀ ଧଳ (ଖ୍ରୀ.ଅ.୧୯୧୯-୧୯୭୪):

ଗୋଲକ ବିହାରୀ ଧଳଙ୍କର ଜନ୍ମ ୧୯୧୯ ମସିହାରେ ଢେଙ୍କାନାଳ ଜିଲ୍ଲାର ଗଞ୍ଜେଇଡିହ ଗ୍ରାମରେ । ତାଙ୍କ ପିତାଙ୍କ ନାମ- ଭୋଳେଶ୍ୱର ଧଳ ଓ ମାତାଙ୍କ ନାମ- [illegible] ଦେବୀ । ଗୋଲକ ବିହାରୀ ଜଣେ ମେଧାବୀ ଛାତ୍ର ଥିଲେ । ସେ ୧୯୩୯ ମସିହାରେ ଢେଙ୍କାନାଳ ବଜ୍ରନାଥ ବଡ଼ଜେନା ହାଇସ୍କୁଲ୍ ରୁ ମାଟ୍ରିକ୍ୟୁଲେଶନ୍ ପାଶ୍ କରି ରେଭେନ୍ସା କଲେଜରେ ଆଇ.ଏ. ଏବଂ ବି.ଏ. ଶ୍ରେଣୀରେ ଅଧ୍ୟୟନ କରିଥିଲେ । ଏହାପରେ ସେ ପାଟଣା ବିଶ୍ୱବିଦ୍ୟାଳୟରୁ ଏମ୍.ଏ. ପାଶ୍ କରି ଅଧାପନା କାର୍ଯ୍ୟରେ ଯୋଗଦେଇଥିଲେ । ଗୋଲକ ବିହାରୀ ପ୍ରଥମେ ସମ୍ବଲପୁର ସ୍ଥିତ ଗଙ୍ଗାଧର ମେହେର

କଲେଜରେ ଅଧ୍ୟାପକ ରୂପେ କାର୍ଯ୍ୟ କରିଥିଲେ । ଏହାପରେ ସେ ଆଗ୍ରା ବିଶ୍ୱବିଦ୍ୟାଳୟରେ ଧ୍ୱନିତତ୍ତ୍ୱ ବିଭାଗର ପ୍ରାଧ୍ୟାପକ ଓ ରେଭେନ୍‌ସା କଲେଜରେ ଓଡ଼ିଆ ବିଭାଗର ଭାଷାତତ୍ତ୍ୱ ପ୍ରଫେସର ରୂପେ ଯୋଗଦେଇଥିଲେ । ଶ୍ରୀଯୁକ୍ତ ଧଳ ଏକାଧାରରେ ଥିଲେ ଜଣେ ଭାଷାତତ୍ତ୍ୱବିତ୍, ପ୍ରାବନ୍ଧିକ ଓ ଅନୁବାଦକ । ଭାଷାତତ୍ତ୍ୱ ଓ ଧ୍ୱନିତତ୍ତ୍ୱ ସଂପର୍କୀତ ବିଭିନ୍ନ ଗବେଷଣା ଗ୍ରନ୍ଥ ର ରଚନା ସହିତ ସେ ଅନେକ ମୌଳିକ ପ୍ରବନ୍ଧ, ଭ୍ରମଣ କାହାଣୀମାନ ରଚନା କରିଯାଇଛନ୍ତି । ଏହା ସହିତ ସେ ଭାରତୀୟ ସାହିତ୍ୟର ଅନେକ ବିଶିଷ୍ଟ ଗ୍ରନ୍ଥର ସଫଳ ଅନୁବାଦ ମଧ କରିଛନ୍ତି । ଗୋଲକ ବିହାରୀ ଧଳଙ୍କର ଭାଷା ଓ ଧ୍ୱନିତତ୍ତ୍ୱ ସଂପର୍କୀତ ଗ୍ରନ୍ଥ ଗୁଡିକ ହେଲା- ଭାଷାଶାସ୍ତ୍ର ପରିଚୟ, ଧ୍ୱନିତତ୍ତ୍ୱ, ଧ୍ୱନିବିଜ୍ଞାନ ଓ ମଣିଷର ଭାଷା । ଏହିସବୁ ଗ୍ରନ୍ଥ ଗୁଡିକ ଓଡ଼ିଭାଷା ଓ ଧ୍ୱନିବିଜ୍ଞାନ ସଂପର୍କୀତ ଏକ ଏକ ମହାନ୍ ଗ୍ରନ୍ଥ । ତାଙ୍କ ରଚିତ ପ୍ରବନ୍ଧ ଗ୍ରନ୍ଥ ଗୁଡିକ ହେଲା- ବିଚାର ଆଲୋଚନା, ଓଡ଼ିଆ କେବେ ?, ଅମର ଜୀବନ, ଅମରଯାତ୍ରୀ, ଅମର କାହାଣୀ । ଏହିସବୁ ଗ୍ରନ୍ଥ ଗୁଡିକ ଭିତରେ ଓଡ଼ିଆ ସଭ୍ୟତା, ସଂସ୍କୃତି ଓ ଜୀବନବୋଧର ମହନୀୟ ଆଲେଖ୍ୟ ପ୍ରତିପାଦନ କରିଛନ୍ତି । ତାଙ୍କ ରଚିତ ପ୍ରବନ୍ଧ ଗୁଡିକ ବେଶ୍ ମୌଳିକ, ତାତ୍ତ୍ୱିକ ଏବଂ ବୌଦ୍ଧିକ । ତାଙ୍କ ରଚିତ ଭ୍ରମଣ ଗ୍ରନ୍ଥ ଗୁଡିକ ହେଲା- ଲଣ୍ଡନ ଚିଠି, ଆମେରିକା ଅନୁଭୂତି, ତାଜମହଲ ର ଦେଶେ । ଏହି ଭ୍ରମଣ ଗ୍ରନ୍ଥ ଗୁଡିକ ବେଶ୍ କାବ୍ୟିକ ରସାଳ ଓ ଭାବପୂର୍ଣ୍ଣ ହୋଇପାରିଛି । ଆମେରିକା ଓ ଲଣ୍ଡନ ଭ୍ରମଣକାଳୀନ ସ୍ରଷ୍ଟାଙ୍କର ଅନୁଭବ, ଅନୁଭୂତି ଓ ଭାବାବେଗର ଏଗୁଡିକ ଏକ ଏକ ମନୋଜ୍ଞ ଫଳଶ୍ରୁତି । ଗୋଲକ ବିହାରୀଙ୍କର ଅନୁଦିତ ଗ୍ରନ୍ଥ ଗୁଡିକହେଲା- ପ୍ରେମଚାନ୍ଦଙ୍କର ଗୋଦାନ, ଗବନ, ପ୍ରେମାଶ୍ରମର ଓଡ଼ିଆ ଅନୁବାଦ । ଅନୁବାଦ କଳାରେ ସ୍ରଷ୍ଟାଙ୍କର ସ୍ୱକୀୟ ମୌଳିକତା ଓ ସ୍ୱାତନ୍ତ୍ର୍ୟ ଫୁଟିଉଠିଛି । ବାସ୍ତବରେ ଶ୍ରୀଯୁକ୍ତ ଧଳ ଢେଙ୍କାନାଳ ମାଟିର ଜଣେ ମହାନ୍ ପ୍ରାବନ୍ଧିକ ଓ ଭାଷାତତ୍ତ୍ୱବିତ୍ ।୧୯୭୪ ମସିହା ଜୁନ୍ ୨୧ ତାରିଖରେ ସେ ଇହଲୀଳା ସମ୍ବରଣ କରିଥିଲେ ।

**ହରମୋହନ ଦାଶ (ଖ୍ରୀ.ଅ. ୧୯୨୭-୨୦୧୨) :**

ଢେଙ୍କାନାଳ ମାଟିର ପ୍ରଥିତଯଶାସ୍ରଷ୍ଟା କବି ହରମୋହନ ଦାଶଙ୍କର ଜନ୍ମ ୧୯୨୭ ମସିହାରେ 'ଧଳପୁର' ଗ୍ରାମରେ । ତାଙ୍କ ପିତା-ବୈରାଗୀ ଚରଣ ଦାଶ ଓ ମାତା- ଲାବଣ୍ୟଦେବୀ । କଳାରେ ସ୍ନାତକ ଡିଗ୍ରୀ ଲାଭପରେ ବି.ଏଡ୍. କରି ହରମୋହନ ଶିକ୍ଷକ ଚାକିରୀରେ ଯୋଗଦେଇଥିଲେ । ସେ ଜଣେ ଛାତ୍ର ବତ୍ସଳ, ଆଦର୍ଶ ଶିକ୍ଷକ ରୂପରେ ନିଜକୁ ପ୍ରତିଷ୍ଠା କରିପାରିଥିଲେ । ଶିକ୍ଷକତା ବୃତ୍ତି ସହିତ ସାହିତ୍ୟ ସାଧନାରେ ମନୋନିବେଶ

କରି ସେ ଜଣେ ସଫଳ କବି ଭାବରେ ନିଜର ସିଦ୍ଧି ଓ ସାଫଲ୍ୟ ଅର୍ଜନ କରିଥିଲେ । କବିଙ୍କ ବିରଚିତ କାବ୍ୟକୃତି ଗୁଡିକ ହେଲା- ଅଭୀଷ୍ଟ ଚିନ୍ତାମଣି, ପ୍ରଣୟତରଙ୍ଗିଣୀ, ହେମକମଳ, ନଚିକେତା, ସତୀ ଅନସୂୟା, ଅଜାମିଳ, କନକେଶ୍ୱର, କଲ୍ୟାଣୀ, ଲାଲ୍ ଗୋଲାପ, ମେଘନାଦ ବଧ, ଚବିଶ ଗରୁ ପ୍ରସଙ୍ଗ । ଏହା ସହିତ କବିଙ୍କର କବିତା କୃତି ଗୁଡିକ ହେଲା- ସ୍ୱର୍ଣ୍ଣପ୍ରଭା, ଇତିକଥାର କାବ୍ୟ, ମଧୁରେଖା, କଳିକା, ନିସ୍ତବ୍ଧ ନିଃସ୍ୱନ, ସିକତାର ଆତ୍ମା, ଗଣକବିତା ପ୍ରଭୃତି । କବିଙ୍କର କାବ୍ୟ କୃତି ଗୁଡିକ ମଧ୍ୟଯୁଗୀୟ ଓଡ଼ିଆ ରୀତି କାବ୍ୟ ପରଂପରା ଓ ସଂସ୍କୃତ ସାହିତ୍ୟର ଆଦର୍ଶରେ ରଚିତ ହେଲେ ହେଁ; ସେଗୁଡିକ ମଧ୍ୟରେ ଆଧୁନିକ ଦୃଷ୍ଟିଭଙ୍ଗୀ ଫୁଟିଉଠିଛି । ସେହିପରି କବିତା ଗୁଡିକର ଶିଳ୍ପ ସଂରଚନା ରେ ମଧ୍ୟ ଆଧୁନିକତାର କଳାକୌଶଳ ଫୁଟିଉଠିଛି ।

**କାବ୍ୟକୃତି:**

**ଅଭୀଷ୍ଟ ଚିନ୍ତାମଣି (୧୯୫୬):** ଏହା ଏକ ପୌରାଣିକ କାବ୍ୟ ସୃଷ୍ଟି । ମହାରାଜା ଦିଲ୍ଲୀପ ଓ କାମଧେନୁଙ୍କର ପ୍ରସଙ୍ଗ ହିଁ ଏ କାବ୍ୟର ମୁଖ୍ୟ ବିଷୟବସ୍ତୁ ।

**ପ୍ରଣୟ ତରଙ୍ଗିଣୀ (୧୯୬୦) :** ଏହା ଐତିହାସିକ କିମ୍ବଦନ୍ତୀ ଓ ଚରତ୍ର ଆଧାରିତ ଏକ ପ୍ରଣୟ ଗର୍ଭିତ ରୋମାଣ୍ଟିକ୍ କାବ୍ୟ । ଏହି କାବ୍ୟର ରଚନା ସମୟ ୧୯୬୦ ମସିହା । ମାତ୍ର ଏହା ୧୯୮୫ ମସିହାରେ ପ୍ରକାଶିତ ହୋଇଅଛି । ମହା ପଣ୍ଡିତ ରାହୁଳ ସାଂକୃତାୟନଙ୍କର କିମ୍ବଦନ୍ତୀ ଆଧାରିତ ଏକ ଗଳ୍ପର ବିଷୟବସ୍ତୁ ଅବଲମ୍ବନରେ କବି ଏହି କାବ୍ୟଟି ରଚନା କରିଛନ୍ତି । ଏହି କାବ୍ୟର ମୁଖ୍ୟ ନାୟକ ସାକେତ ବା ଅଯୋଧ୍ୟାର ମହାନ୍ ପଣ୍ଡିତ ମହାକବି ଅଶ୍ୱଘୋଷ । ଅଶ୍ୱଘୋଷଙ୍କ ପ୍ରେମସିକ୍ତ ଜୀବନର ଏକ ଅଜ୍ଞାତ ଅଧ୍ୟାୟକୁ କବି କାବ୍ୟରୂପ ଦେଇଛନ୍ତି । ଏହି 'ପ୍ରଣୟତରଙ୍ଗିଣୀ' କାବ୍ୟଟି ନଅ ଗୋଟି ସର୍ଗରେ ଅନୁବନ୍ଧିତ । ବିଭିନ୍ନ ରାଗ, ରାଗିଣୀ, ଛନ୍ଦ,ରସ ଓ ଅଳଙ୍କାରର ଶୋଭନ ସମାବେଶରେ ଏହି କାବ୍ୟଟି ବେଶ୍ ରସମୟ ଓ ମାଧୁର୍ଯ୍ୟମଣ୍ଡିତ ହୋଇପାରିଛି । ଏହି କାବ୍ୟର ନାୟକ ଅଶ୍ୱଘୋଷ ଜଣେ ନୈଷ୍ଠିକ ହିନ୍ଦୁ ବ୍ରାହ୍ମଣ । ମାତ୍ର-ନାୟିକା 'ପ୍ରଭା' ଜଣେ ଯବନ କନ୍ୟା । କବି ମାୟାଧର ମାନସିଂଙ୍କର 'କମଳାୟନ' କାବ୍ୟର 'ଦ୍ୱିତୀୟାର୍ଦ୍ଧ' କଥାବସ୍ତୁର ଆଦର୍ଶରେ ଏହି କାବ୍ୟଟି ରଚିତ ହୋଇଥିବାର ଅନୁମିତ ହୁଏ । ଏହାସହିତ ରାମଶଙ୍କର ରାୟଙ୍କର 'ପ୍ରେମତରୀ', ରାଧାନାଥ ରାୟଙ୍କର 'ଉଷା', ଗଙ୍ଗାଧର ମେହେରଙ୍କର 'ତପସ୍ୱିନୀ', 'ପ୍ରଣୟବଲ୍ଲରୀ' ଆଦି କାବ୍ୟର ପ୍ରଭାବ ଏଥିରେ ପରିଦୃଷ୍ଟ । ଏହି କାବ୍ୟର ବର୍ଣ୍ଣନା ଶୈଳୀରେ ରୀତି କବି ଉପେନ୍ଦ୍ରଭଂଜଙ୍କର ପ୍ରଭାବ ମଧ୍ୟ ପରିଦୃଷ୍ଟ ।

ମୋଟାମୋଟି ଭାବରେ ଏହି କାବ୍ୟ ବିଷୟବସ୍ତୁର ଗୁମ୍ଫନଶୈଳୀ, ବର୍ଣ୍ଣନା ନୈପୁଣ୍ୟ, କଳାକୌଶଳ, ରସବିଳାସ, ଭାବମାଧୁରୀ, ଛନ୍ଦ ପ୍ରୟୋଗ ଓ ଆଳଂକାରିକ ବର୍ଣ୍ଣନାରେ ଉଭୟ ରୀତି ଓ ଆଧୁନିକ କାବ୍ୟ ଶୈଳୀର ପ୍ରଭାବ ରହିଛି । ରୀତି ଓ ଆଧୁନିକତାର ଏହା ଏକ ମନୋଜ୍ଞ, ମଧୁମୟ, ପ୍ରୀତିର ଭଣ୍ଡାର ।

'ପ୍ରଣୟତରଙ୍ଗିଣୀ' କାବ୍ୟ ବିଷୟବସ୍ତୁର ଆରମ୍ଭ ଚଇତି ମଧୁପୂର୍ଣ୍ଣିମା ତିଥିରେ ଏବଂ ପରିସମାପ୍ତି ପବିତ୍ର ବୁଦ୍ଧ ପୂର୍ଣ୍ଣିମାରେ । ହିନ୍ଦୁ ଓ ଯବନର ପ୍ରେମ କାହାଣୀକୁ କବି ଏକ ମାନବବାଦୀ ଦୃଷ୍ଟିକୋଣ ନେଇ ସାମାଜିକ ଓ ଆଧାତ୍ମିକ ସ୍ୱୀକୃତି ଦେଇଛନ୍ତି । ଏହାସହିତ ବିଶ୍ୱମାନବିକତା, ବିଶ୍ୱପ୍ରେମପ୍ରାଣତା, ଶାନ୍ତି, ମୈତ୍ରୀ, ପ୍ରୀତିର ପ୍ରତିଷ୍ଠା ସହିତ ଧର୍ମରାଜ୍ୟରେ ଜାତି-ଧର୍ମ-ବର୍ଣ୍ଣ ଭେଦରେ ସମାନତାର ଉଦ୍‌ଘୋଷଣା କରିଛନ୍ତି । ନାୟକ ଅଶ୍ୱଘୋଷ ଏବଂ ନାୟିକା ପ୍ରଭା ପ୍ରଭୁ ବୁଦ୍ଧଙ୍କର ଶରଣ ନେଇ ସେମାନଙ୍କର ପ୍ରଣୟରୂପକ ତରଙ୍ଗିଣୀ କୁ ପରମାତ୍ମାଙ୍କ ପ୍ରୀତି ପାରାବାରରେ ଭସାଇଦେଇଛନ୍ତି ।

**ହେମକମଳ:** ଏହା ଏକ କାଳ୍ପନିକ କାବ୍ୟ । ରୀତି ଯୁଗୀୟ କାବ୍ୟଶୈଳୀରେ ରଚିତ ଏହି କାବ୍ୟଟିରେ ୧୫ ଗୋଟି ସର୍ଗ ରହିଛି । ବିଦର୍ଭନରେଶ ଇନ୍ଦ୍ରନୀଳ ଓ ରାଣୀ ପଦ୍ମାବତୀଙ୍କର ପ୍ରେମ, ପ୍ରଣୟ, ପରିଣୟ, ବିଚ୍ଛେଦ ଓ ପୁନର୍ମିଳନ ର ରସମୟ ଚିତ୍ରରେ ଏହି କାବ୍ୟଟି ରସାଣିତ । ପୌରାଣିକ କଥାବସ୍ତୁକୁ କାଳ୍ପନିକ ରଙ୍ଗଦେଇ କବି ଏହି 'ହେମକମଳ' କାବ୍ୟର ହେମହର୍ମ୍ୟ ନିର୍ମାଣ କରିଛନ୍ତି । ଏକଦା ଦେବର୍ଷି ନାରଦ ମାନସସରୋବରରୁ ଅସିଥିବା 'ସ୍ୱର୍ଣ୍ଣକମଳ' କୁ ସ୍ୱର୍ଗ ସୁନ୍ଦରୀ ପ୍ରତିଯୋଗୀତାର ବିଜେତାଙ୍କୁ ଦିଆଯିବାର ଘୋଷଣା କଲେ । ଯା' ଫଳରେ ସ୍ୱର୍ଗପୁରର ସୁନ୍ଦରୀ ପ୍ରତିଯୋଗୀତାରେ ଇନ୍ଦ୍ରଙ୍କ ପତ୍ନୀ ସଚୀଦେବୀ, କାମଦେବଙ୍କ ପତ୍ନୀ-ରତିଦେବୀ, ଯକ୍ଷରାଜାଙ୍କ ପତ୍ନୀ-ଦେବୀମୃଗଜା ପ୍ରମୁଖ ଭାଗନେଲେ । ଏହି ପ୍ରତିଯୋଗୀତାର ବିଚାରକ ଥିଲେ- ମର୍ତ୍ତ୍ୟର ରାଜା- ବିଦର୍ଭ ନରେଶ ଇନ୍ଦ୍ରନୀଳ । ଇନ୍ଦ୍ରନୀଳ ରତିଦେବୀଙ୍କୁ ସୁନ୍ଦରୀ ପ୍ରତିଯୋଗୀତାରେ ବିଜେତା ରୂପେ ଘୋଷଣା କରିବାରୁ ସଚିଦେବୀ କ୍ଷୁବ୍‌ଧ ହୋଇ 'କଳିଦେବ'ଙ୍କ ମାଧମରେ ରାଜା ଇନ୍ଦ୍ରନୀଳ ଓ ତାଙ୍କ ପ୍ରିୟତମା ପତ୍ନୀ ପଦ୍ମାବତୀଙ୍କ ମଧରେ ମନୋମାଳିନ୍ୟ, ବିଭେଦ ଓ ବିଚ୍ଛେଦ ସୃଷ୍ଟି କଲେ । ବିଚ୍ଛେଦ ଓ ବିରହରେ ଜର୍ଜରିତ ରାଜ-ଦମ୍ପତି ପୁଣି ପରବର୍ତ୍ତୀ ସମୟରେ ଅଙ୍ଗିରାଜ ଙ୍କ ଆଶ୍ରମରେ ମିଳିତ ହୋଇ କିପରି ସୁଖରେ ଦାମ୍ପତ୍ୟ ଜୀବନ ଅତିବାହିତ

କଲେ; ତା'ର ଚିତ୍ର କବି ଦେଇଛନ୍ତି । ଏହି ପୌରାଣିକ କଥାବସ୍ତୁକୁ କବି କଳ୍ପନାର ରଙ୍ଗଦେଇ ଅଭିନବ ରୂପରେ ଉପସ୍ଥାପିତ କରିଛନ୍ତି । ଏହି କାବ୍ୟଟି ହରମୋହନଙ୍କ କାବ୍ୟିକ ପ୍ରତିଭାର ଏକ ଶ୍ରେଷ୍ଠ ନିଦର୍ଶନ।

**କନକେଶ୍ୱର (୧୯୯୮) :** ଏହା ଚଉସ୍ତରୀଟି ପଦରେ ରଚିତ ଏକ କ୍ଷୁଦ୍ର କାବ୍ୟ । ସୁନ୍ଦର, ଲଳିତଶବ୍ଦ ଓ ପଦବିନ୍ୟାସ ଏବଂ ଅପୂର୍ବ ଛନ୍ଦ ଯୋଜନାରେ ଏହି କାବ୍ୟଟି ସୁଷମାନ୍ୱିତ ହୋଇଉଠିଛି । ଏଥିରେ ଅତୀତ ଐତିହ୍ୟର ପ୍ରଖ୍ୟାପନ ସହିତ ପ୍ରାକୃତିକ ପରିବେଶର କମନୀୟ ଶୋଭା ଚିତ୍ରିତ ହୋଇଛି । ଇତିହାସ ଓ ଲୋକକଥାର ମନୋଜ୍ଞ ସମନ୍ୱୟ ଏହି କାବ୍ୟରେ ଘଟିଛି । ଢେଙ୍କାନାଳର ଏକଘରକିଆସ୍ଥିତ ପ୍ରସିଦ୍ଧ କନକେଶ୍ୱର ଶିବମନ୍ଦିରର ପ୍ରାଚୀନଐତିହ୍ୟ, କୀର୍ତ୍ତିରାଜି ଓ ଆଧ୍ୟାତ୍ମିକ ଭାବନା ଏହି କାବ୍ୟଟି ରେ ପ୍ରକଟିତ ।

ଏକଦା ଚନ୍ଦ୍ରପୁରର ରାଜା କନକକେଶରୀ ମୃଗୟାବିନୋଦ ଅବସରରେ ଏକ ସୁନ୍ଦରୀ ତରଣୀକୁ ଅରଣ୍ୟରେ ଭେଟିଛନ୍ତି । ଫଣୀଆଚ୍ଛାଦିତ ଏକ ଶୋଭନ ଶିବଲିଙ୍ଗ ପାଖରେ ଉପବେଶନ କରି ସେହି ସୁନ୍ଦରୀ ଏକ ପୁଷ୍ପହାର ଗୁନ୍ଥିବାରେ ନିମଗ୍ନ ଥିଲା । ନିକଟରେ ଏକ ବାଘୁଣୀ ତା'ର ଶାବକ ସହିତ ସେହି ସୁନ୍ଦରୀ ତରୁଣୀ ଓ ଶିବଲିଙ୍ଗକୁ ଜଗିରହିଥିଲା । ରାଜା ଏପରି ଅପୂର୍ବ ଦୃଶ୍ୟ ଦେଖି ବିସ୍ମୟ-ବିମୂଢ଼ ହୋଇପଡିଥିଲେ । ସେହି ସମୟରେ ଶୂନ୍ୟବାଣୀ ହେଲା- ହେ ରାଜନ୍ ! ତୁମେ ଏହି ସ୍ଥାନରେ ମନ୍ଦିରଟିଏ ନିର୍ମାଣକରି ଏହି ଶିବଲିଙ୍ଗକୁ ପ୍ରତିଷ୍ଠା କର । ଯା'ଫଳରେ ସୋମବଂଶୀ ରାଜା କନକ କେଶରୀ ଏଠାରେ ଏକ ଭବ୍ୟ ଶିବମନ୍ଦିର ନିର୍ମାଣ କରାଇ ତା'ର ନାମରଖିଥିଲେ- 'କନକେଶ୍ୱର' । ଏହି ଅଲୌକିକ କିମ୍ବଦନ୍ତୀ ଆଧାରରେ କବି ଏହି କାବ୍ୟଟି ରଚନା କରିଛନ୍ତି । ଏହି କାବ୍ୟରେ କବି ଐତିହାସିକ ଭୀମନଗରୀ, ନାଧରା ରାମଚଣ୍ଡୀ ପୀଠର ବର୍ଣ୍ଣନା ସହିତ ବ୍ରାହ୍ମଣୀନଦୀ ଦକ୍ଷିଣ ଅବବାହିକାର ପ୍ରାକୃତିକ ଶୋଭାର ଚିତ୍ରଣମଧ କରିଛନ୍ତି ।

**ଲାଲ ଗୋଲାପ (୧୯୫୪):** ଏହା ଏକ ସର୍ଗବନ୍ଧ ବିହୀନ କ୍ଷୁଦ୍ର କାବ୍ୟ । କବି ଏହି ରଚନାଟିକୁ ଏକ 'ଗଳ୍ପ-କାବ୍ୟ' ରୂପେ ଅଭିହିତ କରିଛନ୍ତି । କଥା ବା ଗଳ୍ପକୁ ଆଧାର କରି କବି ଏହାର କାବ୍ୟରୂପ ପରିକଳ୍ପନା କରିଛନ୍ତି । ମାୟାଧର ମାନସିଂଙ୍କର 'ସାଧବଝିଅ' ଅବଲମ୍ବନରେ ଏହି କାବ୍ୟଟି ରଚିତ ହୋଇଥିବାର ଅନୁମିତ ହୁଏ । ରାଜକୁମାର ଓ ରାଜକୁମାରୀଙ୍କ ପ୍ରେମ କାହାଣୀ କୁ କବି ଅତ୍ୟନ୍ତ ରସମୟ ଓ

କମନୀୟ ଭାବରେ ବର୍ଣ୍ଣନା କରିଛନ୍ତି । ଏହି ରଚନାଟି ମୁଖ୍ୟତଃ କାହାଣୀଧର୍ମୀ, ଗଳ୍ପକଥନ ଶୈଳୀରେ ରଚିତ ।

**କଲ୍ୟାଣୀ (୧୯୫୬) :** ଏହା ଏକ ସମାଜ ସଂସ୍କାରଧର୍ମୀ ଛନ୍ଦୋବଦ୍ଧ କାବ୍ୟ । ସମାଜର ରୁଢ଼ିବାଦୀ ପରଂପରା ଓ ସାମାଜିକ ବୈଷମ୍ୟ ବିରୁଦ୍ଧରେ କବି ଏ କାବ୍ୟରେ ସ୍ୱର ଉତ୍ତୋଳନ କରିଛନ୍ତି । କବିଙ୍କର 'ସତୀଅନସୂୟା', ନଚିକେତା ଏବଂ ଅଜାମିଳ ଆଦି କାବ୍ୟ ପୌରାଣିକ ଉପାଖ୍ୟାନକୁ ନେଇ ରଚିତ । ତାଙ୍କର 'ମେଘନାଦ ବଧ' କାବ୍ୟଟି ଏକ ଅନୂଦିତ ରଚନା । ବଙ୍ଗୀୟ କବି ମାଇକେଲ ମଧୁସୂଦନ ଦତ୍ତଙ୍କର 'ମେଘନାଦ ବଧ' ର ଏହା ଓଡ଼ିଆ ଅନୁବାଦ ମାତ୍ର । କବିଙ୍କ ଶେଷ ଜୀବନର ସର୍ବଶେଷ ସ୍ମାରକୀ ହେଲା- ଚବିଶ ଗୁରୁ ପ୍ରସଙ୍ଗ (୨୦୧୧) । ଭାଗବତର ଦଶମସ୍କନ୍ଧ ବର୍ଣ୍ଣିତ ଯଦୁରାଜା-ଅବଧୂତ ସମ୍ବାଦର ଚବିଶଗୁରୁ ପ୍ରସଙ୍ଗ ହିଁ ଏହି ରଚନାର ପ୍ରତିପାଦ୍ୟ ବିଷୟ ।

**କବିତାକୃତି :**

**ସ୍ୱର୍ଣ୍ଣପ୍ରଭା (୧୯୫୪) :** ଏହି କବିତା ସଂକଳନଟି ଅଧୁନିକ କବିତାର ଏକ ମନୋଜ୍ଞ କଳା ସୃଷ୍ଟି । ଏହା କବିଙ୍କ କବିତା ରଚନାର ପ୍ରଥମ ଅର୍ଘ୍ୟ । ନୂତନ ଛନ୍ଦ ଯୋଜନା ଓ ଅଭିନବ ଶୈଳୀରେ ଏହି କବିତା ଗୁଡିକ ରଚିତ । ସାଧିନତା ପରବର୍ତ୍ତୀ ସମୟର ସମାଜ ଜୀବନର ତୃଟିବିଚ୍ୟୁତି ଓ ରାଜନୈତିକ ଅବକ୍ଷୟ, ଭ୍ରଷ୍ଟାଚାରର ଦିଗ ଏହି କବିତା ଗୁଡିକରେ ପ୍ରକଟିତ । ଏହି କବିତା ଗ୍ରନ୍ଥରେ କାବ୍ୟ ପୁରୁଷ ବେଶ୍ ସମାଜ ସଚେତନ, ସାମାଜିକ ଅଙ୍ଗୀକାରବଦ୍ଧ, ସମ୍ବେଦନଶୀଳ ଓ ପ୍ରତିକ୍ରିୟାଶୀଳ ।

**ଇତିକଥାର କାବ୍ୟ (୧୯୮୧) :** ଏହା ଏକ ଗାଥା କବିତା ସଙ୍କଳନ । ଏଥିରେ ୧୫ ଗୋଟି ଗାଥାଧର୍ମୀ କବିତା ସ୍ଥାନିତ ହୋଇଛି । ସେଗୁଡିକ ହେଲା- ଶାନ୍ତିଭିକ୍ଷା, ରତ୍ନକାମନା, ଭକ୍ତର ଅଭିଶାପ, ଚ୍ୟବନପ୍ରାସ, ବୈଶାଳୀବଧୂ, ତୀର୍ଥପଥେ, ବୃଦ୍ଧକନ୍ୟା, ଦୁଇଭାଇ, ପ୍ରଳୟପୟୋଧିଜଳେ, ପତ୍ନୀପରୀକ୍ଷା, ଜୀବନ୍ତ ସମାଧି, ଅନ୍ତିମଦୃଶ୍ୟ, ଚନ୍ଦନହଜୁରୀ ଜୟ, ଶୋଣିତ ତୀର୍ଥ । ଏହିସବୁ କବିତା ଗୁଡିକରେ ଭାରତୀୟ ଆର୍ଯ୍ୟସଭ୍ୟତା, ସଂସ୍କୃତିର ମହନୀୟତା, ଉଚ୍ଚାଙ୍ଗ ଆଧତ୍ମିକ ଭାବନା, ମାନବିକ ଆଦର୍ଶ, ନୈତିକ ମୂଲ୍ୟବୋଧ, ଉନ୍ନତ ଜାତୀୟ ଜୀବନ ଓ ଦାମ୍ପତ୍ୟ ପ୍ରେମର ପବିତ୍ରତା ଫୁଟିଉଠିଛି । ପୁରାଣକଥା, ଐତିହାସକ ତଥ୍ୟ, ଲୋକକଥା ଓ କିମ୍ବଦନ୍ତୀ କୁ ଆଧାର କରି କବି ଏହି କବିତା ଗୁଡିକ ରଚନା କରିଛନ୍ତି । ଏହି ଗ୍ରନ୍ଥଟିରେ ତାଙ୍କର କାବ୍ୟ ଗୁରୁ ରାଧାମୋହନ ଗଡ଼ନାୟକଙ୍କର କାବ୍ୟାଦର୍ଶ ପ୍ରତିଫଳିତ ହୋଇଛି ।

**ମଧୁରେଖା (୧୯୯୦) :** ଏହା ଏକ ରୋମାଣ୍ଟିକ୍ ଚେତନାଧର୍ମୀ କବିତା ସଂକଳନ । ସବୁଜ-ରୋମାଣ୍ଟିକ୍ କାବ୍ୟମାନସର ପ୍ରତିଫଳନ ଏହି କବିତା ଗୁଡ଼ିକରେ ଦେଖାଯାଏ । ଏଥିରେ ସନ୍ନିବିଷ୍ଟ କବିତା ଗୁଡ଼ିକ ହେଲା- ମଧୁମୟକର, ପ୍ରଭୁର ଚରଣେ, କବିତାଲେଖେ, ଜୀବନ ଗୀତ, ମାଟିରକବି, ଅଶ୍ରୁ, କାନ୍ତ-ବୃନ୍ଦାବନ, ବଂଶୀ ଶୁଭେନାହିଁ, ପୂର୍ଣ୍ଣମନା, ଯଦୁବଂଶର ଶେଷକଥା, ହସିଉଠେ କାଦମ୍ବରୀପୁରୀ, କୁହୁଡି, ହଂସର ବିଳାପ, ଘନଆସ, ଆସ ମା' ଲକ୍ଷ୍ମୀ, ହେମନ୍ତ ଅମ୍ବା, ହଳଦୀବସନ୍ତ, ପରଶମଣି, ସତ୍ୟକାମ, ଆରୁଣୀ, ଶବରୀ, ହେମନ୍ତ ଆସ, ଆସ ବରଷା, ଅମୃତପଥ, ଫୁଲରୀଘାଟ, ପ୍ରବୃଦ୍ଧ ବଟବୃକ୍ଷ, ଅପରାହ୍ନର କବିତା, ଅନ୍ଧ କବିର ସ୍ୱପ୍ନ ପ୍ରଭୃତି । ଏହିସବୁ କବିତା ଗୁଡ଼ିକରେ ଉପନିଷଦୀୟ ମଧୁମୟ ଚେତନା ଆଧ୍ୟାତ୍ମିକ ଅନ୍ୱେଷା ଓ ଭକ୍ତିଭାବନା ମଧ୍ୟ ଫୁଟିଉଠିଛି । କବିଙ୍କର ଗଭୀର ଜୀବନାନୁଭୂତି, ରୋମାଣ୍ଟିକ୍ ପ୍ରାଣତା ଓ ପ୍ରକୃତିପ୍ରତି ମମତ୍ୱବୋଧ ମଧ୍ୟ ଏହି କବିତା ଗୁଡ଼ିକରେ ପ୍ରତିଫଳିତ ।

**ନିସ୍ତବ୍ଧନିଃସ୍ୱନ (୨୦୦୬) :** ଏହା ଏକ ଉତ୍ତରିତ ଚେତନାର କଳା ସୃଷ୍ଟି । ଏହି ସଂକଳନଟିରେ ସନ୍ନିବିଷ୍ଟ କବିତା ଗୁଡ଼ିକ ହେଲା- କବି ଓ କବିତା, ଫେରନ୍ତା ଯଦି, ସାୟାହ୍ନ କକ୍ଷରେ, ସମର୍ପଣ, ପରିଣତି, ସଙ୍ଗମ, ହେ କବି, ଜନ୍ମାନ୍ତର, ନୀଳାଦ୍ରୀନାୟକ, ଦାରୁବ୍ରହ୍ମ, ହଜିଯାଇଛି, ବର୍ଷାରାଗ, ଯବି ମୁଁ ଗୋଡାଇ, କବିର ଗୌରବ, ଦୃଷ୍ଟିପାତ, ଫେରୁଛି ନୀଡେ, ପୂର୍ଣ୍ଣତା, ପୌଷଉଷାରେ, ଶୂନ୍ୟପୁରୁଷରେ, ଜୀବନ ଶୁଦ୍ଧ ହେଉ, କବିତା-କୋଣାର୍କ, ଚାଲ ଏକାନ୍ତ, ଦାରିଦ୍ର୍ୟ ଦର୍ଶନ, ପଚାଶବର୍ଷ ତଳେ, ବିବର୍ଣ୍ଣ ସାକ୍ଷର, ସ୍ୱାଗତ ଶତାବ୍ଦୀ, ବନ୍ଦ୍ କରନା ଚାଲି ।

ଏହିସବୁ କବିତା ଗୁଡ଼ିକରେ ଉଭୟ ରୋମାଣ୍ଟିକ୍, ବାସ୍ତବବାଦୀ ଚେତନା ଓ ଦୃଷ୍ଟିଭଙ୍ଗୀ ପ୍ରକଟିତ । ସାମାଜିକ ଅଧୋଗତି, ନୈତିକ ଅଧୋପତନ ଓ ମାନବିକତାର ଅବକ୍ଷୟ କବି ପ୍ରାଣରେ କ୍ଷୋଭ ସୃଷ୍ଟି କରିଛି । କବି ସାମାଜିକ ଦୁଃସ୍ଥିତି, ଦୁର୍ଗତି, ରାଜନୈତିକ ଭ୍ରଷ୍ଟାଚାର ଓ ଗଣତାନ୍ତ୍ରିକ ତ୍ରୁଟି-ବିଚ୍ୟୁତି ବିରୁଦ୍ଧରେ ତୀବ୍ର ସ୍ୱର ଉତ୍ତୋଳନ କରିଛନ୍ତି । ଭାରତୀୟ ସୁ-ଉଚ୍ଚ ମୂଲ୍ୟବୋଧ, ମାନବୀୟ ଆଦର୍ଶ, ମହନୀୟ ଜୀବନଧାରା ଓ ଉତ୍ତୁଙ୍ଗ ଆଧ୍ୟାତ୍ମିକ ସଂସ୍କୃତିର ଜୟଗାନ କରିଛନ୍ତି । ପାର୍ଥୀବ ମଣିଷକୁ କବି ଅପାର୍ଥୀବ, ଅନନ୍ତ ଉନ୍ମୁଖୀ କରାଇବାର ପ୍ରୟାସ କରିଛନ୍ତି । ସଂସାରର ଅସାରତା, ଅନିତ୍ୟତା ଓ ମୃତ୍ୟୁବଳୟ ଭିତରୁ କବି ନିତ୍ୟ, ଶାଶ୍ୱତ, ଚିରନ୍ତନୀ ଅମୃତ-ଆଲୋକର ସନ୍ଧାନ ଦେଇଛନ୍ତି । ଅପୂର୍ଣ୍ଣ ମଣିଷକୁ କବି ପରିପୂର୍ଣ୍ଣ, ଅଧ୍ୟାତ୍ମ ଉତ୍ତରିତ କରିବାକୁ ଚାହିଁଛନ୍ତି ।

ଯେଉଁଥିପାଇଁ କବି ତାଙ୍କ 'ପୂର୍ଣ୍ଣତା' କବିତାରେ ଲେଖିଛନ୍ତି-

ମିଶିଯିବି ଶେଷେ ବିଶ୍ୱରୂପରେ ବିଭବେ
ପୂର୍ଣ୍ଣତା ଲଭି ଜୀବନେ ବିପୁଳ ଗରବେ ।

ଏହିସବୁ ମହନୀୟ କାବ୍ୟ-କବିତା କୃତି ଗୁଡିକର ମୂଲ୍ୟାଙ୍କନରୁ ଜଣାଯାଏ- କବି ହରମୋହନ ଦାଶ ଆଧୁନିକ ଓଡ଼ିଆସାହିତ୍ୟ ଜଗତର ଜଣେ ପ୍ରଚଣ୍ଡ ପ୍ରତିଭାର ସ୍ରଷ୍ଟା । ଢେଙ୍କାନାଳ ମାଟିର ଜଣେ ସୁଯୋଗ୍ୟ ସନ୍ତାନ ।

**ଏକକ ସ୍ରଷ୍ଟା ରାଧାମୋହନ ଗଡ଼ନାୟକ (ଖ୍ରୀ.ଅ. ୧୯୧୧-୨୦୦୦) :**

ରାଧାମୋହନ ଗଡ଼ନାୟକ ପ୍ରାଚୀନ ଢେଙ୍କାନାଳ ରାଜ୍ୟ, ଢେଙ୍କାନାଳ ଗଡ଼ଜାତ ବା ଆଧୁନିକ ଢେଙ୍କାନାଳ ଜିଲ୍ଲାର ସ୍ରଷ୍ଟା ନ ହେଲେ ହେଁ; ସେ ଥିଲେ ଅବିଭକ୍ତ ଢେଙ୍କାନାଳ ଜିଲ୍ଲାର ଜଣେ ପ୍ରଚଣ୍ଡ ପ୍ରତିଭାର ସ୍ରଷ୍ଟା । ସେହି ଦୃଷ୍ଟିରୁ ଢେଙ୍କାନାଳ ସାହିତ୍ୟର ଇତିହାସରେ ତାଙ୍କର କବିକର୍ମ ସ୍ଥାନିତ ହେବା ବାଞ୍ଛନୀୟ ମନେହୁଏ । ତାଙ୍କ ବିନା ଢେଙ୍କାନାଳ ସାହିତ୍ୟର ଇତିହାସ ଅପୂର୍ଣ୍ଣ ମନେହୋଇପାରେ । ଏହି ଅଧ୍ୟାୟରେ ରାଧାମୋହନ ଙ୍କୁ ଜଣେ ଏକକ ସ୍ରଷ୍ଟାରୂପେ ସୂଚିତ କରାଯାଇଅଛି । ଏକକ ସ୍ରଷ୍ଟା କହିବାର ତାତ୍ପର୍ଯ୍ୟ ଏହିଯେ- ନବଗଠିତ ଅନଗୁଳ ଜିଲ୍ଲାର ଜଣେ ଏକାକୀ ସ୍ରଷ୍ଟା ରୂପେ ରାଧାମୋହନଙ୍କୁ ଢେଙ୍କାନାଳ ସାହିତ୍ୟର ଇତିହାସରେ ସ୍ଥାନିତ କରାଯାଇଛି । ଅଭିନବ କାବ୍ୟଶିଳ୍ପ ଦୃଷ୍ଟିରୁ ମଧ ରାଧାମୋହନ ଜଣେ ଏକକ ସାହିତ୍ୟ ସାଧକ । କାରଣ- ସେ ଓଡ଼ିଆ ସାହିତ୍ୟରେ ଏକ ସତନ୍ତ୍ର କାବ୍ୟ ଶିଳ୍ପର ଏକକ ଧାରାଟିଏ ସୃଷ୍ଟି କରିଯାଇଛନ୍ତି । ଏହି ପ୍ରଥିତଯଶା ସ୍ରଷ୍ଟା ରାଧାମୋହନ ଗଡ଼ନାୟକଙ୍କର ଜନ୍ମ ୧୯୧୧ ମସିହା ଅଗଷ୍ଟମାସ ୨୫ ତାରିଖରେ ଅବିଭକ୍ତ ଢେଙ୍କାନାଳ ଜିଲ୍ଲା ଓ ବର୍ତ୍ତମାନର ଅନଗୁଳ ଜିଲ୍ଲାର ଲିଙ୍ଗରା ନଈକୂଳ ସ୍ଥିତ କଲଣ୍ଡାପାଳ ଗ୍ରାମରେ । ତାଙ୍କ ପିତାଙ୍କ ନାମ- ମହାଦେବ ଗଡ଼ନାୟକ ଓ ମାତା - ଗୋଲକମଣିଦେବୀ । ରାଧାମୋହନ ପ୍ରଥମେ 'ଅରାହାଟ' ନିମ୍ନପ୍ରାଥମିକ ବିଦ୍ୟାଳୟ, ତା'ପରେ ଗଡ଼ସନ୍ତରୀ ଉଚ୍ଚ ପ୍ରାଥମିକ ବିଦ୍ୟାଳୟ, ଅନଗୁଳ ମଧ ଇଂରାଜୀ ବିଦ୍ୟାଳୟ ଓ ପରେ ଅନଗୁଳ ଉଚ୍ଚ ଇଂରାଜୀ ବିଦ୍ୟାଳୟରେ ଅଧ୍ୟୟନ କରିଥିଲେ । ରାଧାମୋହନ ମାଟ୍ରିକ୍ୟୁଲେସନ୍ ପରୀକ୍ଷାରେ ଅକୃତ କାର୍ଯ୍ୟ ହୋଇଥିଲେ । ଏହାପରେ ଦୀର୍ଘ ବର୍ଷର ବ୍ୟବଧାନ ପରେ ସେ ଘରୋଇ ଭାବରେ ମାଟ୍ରିକ୍ ପରୀକ୍ଷା ଦେଇ ୧୯୪୭ ମସିହାର ଦ୍ୱିତୀୟ ଶ୍ରେଣୀରେ ପାଶ୍ କରିଥିଲେ । ଏହା ପୂର୍ବରୁ ରାଧାମୋହନ ଜୀବୀକା ଅନ୍ୱେଷଣରେ ଅନଗୁଳସ୍ଥିତ

ସରକାରୀ ରେକର୍ଡ ଅଫିସରେ ଜଣେ ନକଲନବୀଶ ଭାବରେ ଚାକିରୀ କରିଥିଲେ । ପରବର୍ତ୍ତୀ ସମୟରେ ଏହି ଚାକିରୀ ଛାଡି ରାଧାମୋହନ ବାରିପଦା ଯାଇ ସେଠାରେ କିଛି କାଳ ଅବସ୍ଥାନ କରିଥିଲେ । ଏହାପରେ ସେ ପୁଣି ଅନୁଗୁଳ ଫେରିଆସି ଭାରତ-ଇଣ୍ଡଷ୍ଟ୍ରିଆଲ ବ୍ୟାଙ୍କ ରେ ବ୍ରାଞ୍ଚ ମ୍ୟାନେଜର ରୂପେ ଯୋଗ ଦେଇଥିଲେ । ପରେ ୧୯୫୬ ମସିହା ବେଳକୁ ରାଧାମୋହନ ଓଡ଼ିଶା ପ୍ରୌଢ଼ଶିକ୍ଷା ବିଭାଗର ପ୍ରଡକ୍ସନ ଅଫିସର ଭାବରେ ମଧ୍ୟ ଯୋଗଦେଇଥିଲେ । ପରବର୍ତ୍ତୀ ସମୟରେ ରାଧାମୋହନ ବିଭିନ୍ନ ସାରସ୍ୱତ ଓ ସାଂସ୍କୃତିକ ଅନୁଷ୍ଠାନ ସହିତ ଜଡିତ ହୋଇପଡିଥିଲେ । ରାଧାମୋହନ ତାଙ୍କର ସୁଦୀର୍ଘ ସାରସ୍ୱତ ସାଧନାର ଯାତ୍ରାପଥରେ ବହୁ ଯଶ ଓସମ୍ମାନର ଅଧିକାରୀ ହୋଇଥିଲେ । ଏପରିକି 'ସୂର୍ଯ୍ୟ ଓ ଅନ୍ଧକାର' କବିତା ପୁସ୍ତକ ପାଇଁ ସେ ୧୯୭୫ ରେ କେନ୍ଦ୍ରସାହିତ୍ୟ ଏକାଡେମୀ ପୁରସ୍କାର ଓ ୧୯୯୩ ମସିହାରେ ଓଡ଼ିଶା ସାହିତ୍ୟ ଏକାଡେମୀ ପକ୍ଷରୁ 'ଅତିବଡି ଜଗନ୍ନାଥ ଦାସ' ପୁରସ୍କାର ଲାଭ କରିଥିଲେ । ଶିକ୍ଷା ଓ ସାହିତ୍ୟ କ୍ଷେତ୍ରକୁ ତାଙ୍କର ଅବଦାନ ପାଇଁ ଭାରତ ସରକାର ରାଧାମୋହନଙ୍କୁ ପଦ୍ମଶ୍ରୀ ଉପାଧିରେ ମଧ୍ୟ ଭୂଷିତ କରିଥିଲେ । ଏହି ମହାନ୍ ଦୈବତ ପ୍ରତିଭା, କାଳଜୟୀ ସ୍ରଷ୍ଟା ରାଧାମୋହନ ୨୦୦୦ ମସିହା ଫେବୃୟାରୀ ମାସ ୨୧ ତାରିଖରେ ଇହଲୀଳା ସମ୍ବରଣ କରିଥିଲେ ।

**କାବ୍ୟପ୍ରତିଭା :** ରାଧାମୋହନ ଥିଲେ- ସହଜାତ କବିତ୍ୱ ପ୍ରତିଭାର ଅଧିକାରୀ । ସେ ଅନେକ ଗୀତିକବିତା, ଗାଥା କବିତା, କାବ୍ୟ ଓ କାବ୍ୟ ନାଟିକାମାନ ରଚନା କରିଯାଇଛନ୍ତି । ତାଙ୍କର କବିତା କୃତି ଗୁଡ଼ିକ ହେଲା-ବନରାଜିନୀଳା, କୈଶୋରୀକା, ଦୀପଶିଖା, ନବଜାତକ, ସୂର୍ଯ୍ୟ ଓ ଅନ୍ଧକାର ପ୍ରଭୃତି । ତାଙ୍କର ଗୀତି କବିତା ଗ୍ରନ୍ଥ ଗୁଡ଼ିକ ହେଲା-କାବ୍ୟ-ନାୟିକା, ମୌସୁମୀ, ଧୂସରଭୂମିକା । ଗାଥାକବିତା ଗୁଡ଼ିକ ହେଲା- ଉତ୍କଳିକା, ସ୍ମରଣିକା, ପଶୁପକ୍ଷୀର କାବ୍ୟ, ଶାମୁକାର ସ୍ୱପ୍ନ, ଅବାଚୀର ତାରା, ହୀରାଖଣ୍ଡର ଗାଥା, ବିଶ୍ୱଜୀବନ ପଥେ । କାବ୍ୟକୃତି ଗୁଡ଼ିକ ହେଲା- ମାଳିନୀ ନଦୀର ଢେଉ, ମହାଯାତ୍ରାର ଶେଷସର୍ଗ, ଗାନ୍ଧୀଗାଥା, ଅନଗୁଳ ଗାଥା, ନୂତନ ଦ୍ରୌପଦୀ (ଆଧୁନିକ କାବ୍ୟ), ଆଉଜଣେ (ଗୀତିକାବ୍ୟ) ଯାଯାବର ଓ ଜାୟା (ଗୀତିକାବ୍ୟ) । ଏହା ସହିତ ତାଙ୍କର ଅନୂଦିତ କବିତା ଗୁଡ଼ିକ ହେଲା- ମେଘଦୂତ, ଗୀତଗୋବିନ୍ଦ, କୁମାରସମ୍ଭବ, ସୋରାବ୍ ଓ ରୁସ୍ତମ୍ ।

**ବନରାଜିନୀଳା :** ଏହି କବିତା ସଂକଳନଟି ୧୯୬୮ ମସିହାରେ ପ୍ରକାଶିତ । ଏଥିରେ ସ୍ଥାନିତ କବିତା ଗୁଡ଼ିକ କବିଙ୍କର ପ୍ରାରମ୍ଭିକ କାବ୍ୟଜୀବନ ର କଳାସୃଷ୍ଟି । ଏଥିରେ ସନ୍ନିବିଷ୍ଟ କବିତା ଗୁଡ଼ିକ- କିଏ ଗୋ ତୁ ?, ମୁ କି' କେବେ ଦୀନହୀନ, ଜଳରେ

ଚିତାନଳ, ସ୍ୱାଗତ ହେ ଗଣପତି, ନିର୍ଝର, ତୁମେ ଏକା ମୋ ପଥଶଙ୍ଖାଳି, ଦିଲ୍ଲୀପ ଓ ନନ୍ଦିନୀ, ଆମେ ଓ ଭାରତ, ମା' ଓ ପୁଅ, ଚାହିଁଥିବି ତୁମ ପଥ, ଆମଗାଁ କଲଣ୍ଡାପାଳ,ସ୍ୱ-ଦେଶ ପ୍ରେମ, ରାଜଜେମା, ହସ ଓ କାନ୍ଦ, ଅନ୍ଧବାଳକ, ଶର ଓ ଗୀତ, ଜୟନ୍ତ ଓ ଦେବଦୂତ, କବିର ଗୀତ ।

**କୈଶୋରିକା (୧୯୫୩) :** ଏଥିରେ ସନ୍ନିବିଷ୍ଟ କବିତା ଗୁଡ଼ିକ କବିଙ୍କର କିଶୋରକାଳୀନ ମୁଗ୍ଧମାନସିକତା, ସୌନ୍ଦର୍ଯ୍ୟ ଦୃଷ୍ଟି ଓ ପ୍ରକୃତି ପ୍ରାଣତାରେ ତଲ୍ଲୀନ । ଏହା ସହିତ ଏହି କବିତା ଗୁଡ଼ିକରେ ଜାତୀୟ ଚେତନା, ଜାତୀୟ ମୁକ୍ତି ସଂଗ୍ରାମ ଓ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନର ସ୍ୱପ୍ନ ଫୁଟିଉଠିଛି । ଏଥିରେ ସନ୍ନିବିଷ୍ଟ କବିତା ଗୁଡ଼ିକ ହେଲା-ଭାରତର ନୂଆ ଛାତ୍ର, ଲକ୍ଷ୍ମୀପୌଷ, ମାତଙ୍ଗିନୀ ଦେବୀ, ଚନ୍ଦ୍ରଭାଗାରେ ସୂର୍ଯ୍ୟୋଦୟ, ବନ୍ଧୁ, ସତୀଚଉରା, ଶରତ ନଈର କୂଳେ, ତଅପୋଇ, ନବଉତ୍କଳ ।

**ଦୀପଶିଖା (୧୮୫୬) :** ଏହା ଏକ କାଳଜୟୀ କଳାସୃଷ୍ଟି । ପୁରାଣ ଓ ଇତିହାସର ପୃଷ୍ଠଭୂମି ଉପରେ କବି ଅଧିକାଂଶ କବିତା ରଚନା କରିଛନ୍ତି । ଏଥିରେ ସ୍ଥାନିତ କବିତା ଗୁଡ଼ିକ ହେଲା-ପୁଣ୍ୟଭାରତବର୍ଷ, ଆଁଗେଇଚାଲ, ହୀରାକୁଦବନ୍ଧ, ବାଳବୁଦ୍ଧ, ଦୁର୍ଗାବତୀ, ସାରଳାଦାସ, ଜଗନ୍ନାଥ ଦାସ, ବାପୁଜୀ, ଶମୀକ, ଦୁଇ ଅଭିଯାତ୍ରୀବୀର ଇତ୍ୟାଦି ।

**ସୂର୍ଯ୍ୟ ଓ ଅନ୍ଧକାର (୧୯୭୪) :** ଏହା କବିଙ୍କର ଏକ ଉତ୍ତୁଙ୍ଗ କଳା ସୃଷ୍ଟି । ଏହିଗ୍ରନ୍ଥରେ କବି ସାମାଜିକ ଅନାଚାର, ଭ୍ରଷ୍ଟାଚାର, ରାଜନୈତିକ ଶଠତା, ନଗ୍ନ ଓ ଅଶ୍ଳୀଳତା ବିରୁଦ୍ଧରେ ପ୍ରଚଣ୍ଡ ବୌଦ୍ଧିକ ଆକ୍ରମଣ କରିଛନ୍ତି । ଏହା ସହିତ ସାଂସାରିକ ମାୟା-ବନ୍ଧନର ସୀମା ଅତିକ୍ରମ କରି କବିପ୍ରାଣ ଅମୃତ-ଆଲୋକ ଆଶାୟୀ ହୋଇ ଉଠିଛି । ଏଥିରେ ସନ୍ନିବିଷ୍ଟ କବିତା ଗୁଡ଼ିକ ହେଲା- ବିଦାୟ ହେ ମାଟି, ସୂର୍ଯ୍ୟ ଓ ଅନ୍ଧକାର, ଗୋଟିଏ ସାପର ଆତ୍ମକଥା, ବିରୋଧାଭାସର କବିତା, ଡୁବିବି ଏଥର, ତୁମଲାଗି ଅଗଷ୍ଟ ପନ୍ଦର, ଆଜି ଏ ରୂପାର ଜୟନ୍ତୀରେ, କବିତା ହୁଏନି ବନ୍ଧୁ, ଆସ ହେ ଦରଦୀ, କବି ବନ୍ଧୁ ମାନସିଂହ, ତୁମେ ଆଜି ନାହଁ, ସେହି ସହକାର, ଫେରି ଚାହାଁ, ହେ ମୋର କବିତା ପ୍ରଭୃତି ।

**କାବ୍ୟନାୟିକା (୧୯୪୫):** ଏହା ଏକ ଗୀତି କବିତା ସଂକଳନ । ଏଥିରେ ସନ୍ନିବିଷ୍ଟ କବିତା ଗୁଡ଼ିକ ହେଲା-କବି ହେବାପାଇଁ ବାସନା ମୋର, ମାଟି, ଅପଥଗାମୀ, କନିଅର ଫୁଲ, ମୃତ୍ୟୁ ହେ ତୁମେ, ପଲ୍ଲୀକବି, ଚିରନ୍ତନୀ, ଅଶ୍ରୁସାଧନ, ମାନବ ଓ ଦାନବ, ବ୍ୟଥିତର ଗୀତ, ବସନ୍ତସଖୀ, ବିଜୟିନୀ, ଶ୍ରଦ୍ଧାଞ୍ଜଳି, କବିବଧୂର ଗୌରବ, ତନ୍ମୟୀବର୍ଷା, ପୂର୍ଣ୍ଣିମା

ସ୍ୱର୍ଣ୍ଣ, ଶ୍ରୀ ଓ ହ୍ରୀ, ଘାସଫୁଲ, ମାଟିର ମଣିଷ, ଆଷାଢ଼ ମେଘ, ପିଙ୍ଗଳାର ଅଭିସାର, ଲଳିତା, ବିମୁଗ୍ଧ ଯଯାତି, ଗୋପବାଳାର କୃଷ୍ଣ, କୃଷ୍ଣ ବିରହଣୀ, ଶବରୀ, ଉର୍ମିଳା ପ୍ରଭୃତି । ଏହିସବୁ କବିତା ଗୁଡ଼ିକରେ କବିଙ୍କର ପଲ୍ଲୀପ୍ରାଣତା, ମାଟିମନସ୍କତା, ସୌନ୍ଦର୍ଯ୍ୟ ଦୃଷ୍ଟି ଓ ଆଧ୍ୟାତ୍ମିକ ଅନୁଚିନ୍ତା ଫୁଟିଉଠିଛି ।

**ମୌସୁମୀ (୧୯୫୧) :** ଏହା ଏକ କାଳଜୟୀ ଗୀତି କବିତା ସଂକଳନ । ଏଥିରେ ସନ୍ନିବିଷ୍ଟ କବିତା ଗୁଡ଼ିକ ହେଲା- ମୌସୁମୀ, ସୃଷ୍ଟିର ଅପମାନ, ଉଦ୍ଧାମ ସିଂ, ମନ୍ଦିର ଓ ସମାଧି, ତୁମେ ଆପେ ଜାଣି ଉଠ, ହେ କବି ନୋଗୁଚି, ଜୟଗାନ୍ଧୀ, ସେନାନୀ ସୁଭାଷ, ମୁକ୍ତ ଭାରତ ଆଜି, ଅଦ୍ଭୁତ ସେ ମାନବ ପଦେ, କୃଷ୍ଣଚନ୍ଦ୍ରଗଡ଼ ପ୍ରଭୃତି । ଏହିସବୁ କବିତା ଗୁଡ଼ିକରେ ଉଦାତ୍ତ ମାନବିକତା, ଶାନ୍ତି, ମୈତ୍ରୀ, ପ୍ରୀତିର ବାର୍ତ୍ତା, ସାଧିନତା ଓ ମୁକ୍ତି ସଂଗ୍ରାମ ପାଇଁ ଆହ୍ୱାନ, ସାମାଜିକ-ଶୋଷଣ-କଷଣରୁ ମୁକ୍ତି ପାଇଁ ପ୍ରତିବାଦ ଓ ବିଦ୍ରୋହର ସ୍ୱର ଫୁଟିଉଠିଛି । ଓଡ଼ିଆ ପ୍ରାଣରେ ଆତ୍ମଜାଗରଣ, ଆତ୍ମ ସଚେତନତା ଓ ଜାତୀୟ ଜାଗରଣର ଆହ୍ୱାନ କବି କରିଛନ୍ତି । କବିଙ୍କ ଭାଷାରେ-

"ମୃତ୍ୟୁର କୋଳୁଁ ଜାଗ ମୁର୍ଦ୍ଧାର
ଗଡ଼ନାୟକ ମୁଁ ଡାକେ
ଜାଗରେ ଶହୀଦ୍ ଜାଗ
ପ୍ରାଣଭରା ଏଇ ଉତ୍ସବେ ଆଜି
ଅଛିରେ ତୋହରି ଭାଗ ।"(୩୫)

**ଧୂସର ଭୂମିକା (୧୯୬୦) :** ଏହି ସଂକଳନଟି ମଧ୍ୟ ଏକ ମହାର୍ଘ କଳାସୃଷ୍ଟି । ଏହାର କବିତା ଗୁଡ଼ିକ ବହୁଭାବ, ବହୁରସରେ ବିମଣ୍ଡିତ । ଏଥିରେ କବି ଯୁଦ୍ଧଧ୍ୱସ୍ତ, ପାଣ୍ଡୁର, ବିବର୍ଣ୍ଣ, ଧୂସର ପୃଥିବୀରେ ଶ୍ୟାମଳ, ସୁନ୍ଦର, ଶୁଭ୍ର ଜୀବନର କାମନା କରିଛନ୍ତି । ଏଥିରେ ସନ୍ନିବିଷ୍ଟ କବିତା ଗୁଡ଼ିକ ହେଲା- ଅଗ୍ନି ପୃଥ୍ୱୀ, ବିବି ଖାତୁନ୍ ଓ ଶିଳ୍ପୀ, କିଂଶୁକ, ମୁ ଦେଖୁଛି ଆଷାଢ଼ର ସ୍ୱପ୍ନ, ରବୀନ୍ଦ୍ର, ଅରବିନ୍ଦ, କୁଳବୃଦ୍ଧ ମୁଁ ହିମାଚଳ, କିଏ ତାକୁ ମାରିପାରେ, ଜାନୁଆରୀ ୨୬, କବି ଓ ଶୀଳ୍ପୀ, ସ୍ମୃତିର ପାଣ୍ଡୁଲିପି, ହେ ମୋର ଜାତୀୟ ବୀର, ସତ୍ୟ ଓ ଶାନ୍ତି, କଳଙ୍କିତ ମୁହିଁ କଳାକାର, ଆଚାର୍ଯ୍ୟ ହରିହର, ବିଦାୟ ବିପ୍ଳବ ।

**ଉତ୍କଳିକା (୧୯୪୫):** ଏହା ଏକ ଗାଥା କବିତା ସଂକଳନ । ଅତୀତ ଉତ୍କଳର ଗୌରବମୟ ଐତିହ୍ୟରେ ଏହି ଗ୍ରନ୍ଥଟି ସମୃଦ୍ଧ । ଏଥିରେ ସନ୍ନିବିଷ୍ଟ କବିତା ଗୁଡ଼ିକ ହେଲା-

ବିଶ୍ୱଜୀବନପଥେ, ସ୍ମରଣିକା, ମରିନାହିଁ ସେ'ତ ମରଣଜୟୀ, ଅନ୍ଧର ଚକ୍ଷୁଲାଭ, ଭାଇ, ବୀରାରାଣୀ ଶୁକଦେଇ, ବଢ଼େଇପିଲା, ପ୍ରଭାବତୀର ଅଭିଜାନ, ବାଇମୁଣ୍ଡି, ମଦନ ମଣିର ଗାନ, ମଣି କାଞ୍ଚନ ଯୋଗ, ଚାଖି ଖୁଣ୍ଟିଆ, ପ୍ରାଣର ପରସ, ସ୍ମୃତିର ଫଳକ, ମଣିସାଆନ୍ତରା ଇତ୍ୟାଦି । ଏହିସବୁ କବିତା ଗୁଡିକରେ ଅତୀତର ଗୌରବାବହ ଐତିହ୍ୟ ଓ ମହନୀୟ ସ୍ମୃତିରାଜିର ଚିତ୍ରଣସହ ତ୍ୟାଗଦୀପ୍ତ, ମାନବିକ ଆଦର୍ଶ, ବୀରତ୍ୱ, ଜାତି ପ୍ରେମ ପ୍ରାଣତାର ଉଦାତ୍ତ ଚିତ୍ର ଫୁଟିଉଠିଛି । କବି 'ମରିନାହିଁ ସେ'ତ ମରଣ ଜୟୀ' କବିତାରେ 'ସନାତନ' ଚରିତ୍ର ମାଧମରେ ଉତ୍କଳୀୟ ଜୀବନର ଆତ୍ମସ୍ୱାଭିମାନ, ମହନୀୟତ୍ୟାଗ, ନିଃସ୍ୱାର୍ଥପରତା ଓ ଉଚ୍ଚାଙ୍ଗ ଜୀବନବୋଧର ଚିତ୍ରଣ କରିଛନ୍ତି । 'ସନାତନ' ଚରିତ୍ର ଦେଇ କବି ତ୍ୟାଗ ଓ ମାନବିକତାର ମହାଦ୍ୟୁତି ଉକୁଟାଇ ଲେଖିଛନ୍ତି-

"ଭାତ ପୁଟୁଳାଟି ଜଡ଼ାଇ ବୁକେ
ଭୂଇଁ ଶେଜ ତଳେ ଶୋଇପଡିଲା ସେ
ବିରାମ ସୁଖେ ।
*   *   *   *
ବେଳ ଖସିଗଲା ଖରା ମଉଳିଲା
ଆଉ ତ' କାହିଁ, ସନାତନ ତହୁଁ ଉଠିଲା ନାହିଁ ।"(୩୬)

**ସ୍ମରଣିକା (୧୯୫୦) :** ଅତୀତ ଉତ୍କଳର ଗୌରବାବହ ସ୍ମୃତି ଓ ଏକ ବୃହତ୍ତର ଜାତୀୟ ଚେତନାର ଅଭ୍ରାନ୍ତ ସ୍ମାରକୀ- 'ସ୍ମରଣିକା' । ଐତିହାସିକ କଥାବସ୍ତୁର ଆଧାରରେ ଏହି ଗାଥା କବିତା ଗ୍ରନ୍ଥଟି ରଚିତ । ଏଥିରେ ସ୍ଥାନିତ କବିତା ଗୁଡ଼ିକ ହେଲା- ଯାତ୍ରାବାତା କାରାବାସେ, କୋଟନିସ୍ ଆଉ ଫେରିନାହିଁ, କୌମୁଦୀର ଅବଦାନ, ଗୁର୍ଖା ସିପାହୀ, ସ୍ମୃତିର ଫଳକ, ସତୀ, ରତ୍ନଲାଭ, ସୈନିକ ନାରୀ ଇତ୍ୟାଦି ।

**ପଶୁପକ୍ଷୀର କାବ୍ୟ (୧୯୫୯) :** ଏହା ଏକ ଅଭିନବ କଳାସୃଷ୍ଟି । ଅବକ୍ଷୟମୁଖୀ ସମାଜ, ଅପସୃୟମାଣ ମାନବ ଜୀବନ, ମନୁଷ୍ୟର ନୈତିକ ଓ ଚାରିତ୍ରିକ ଅଧୋଗତିକୁ ଉପଲକ୍ଷ୍ୟକରି କବି ଏହି କବିତା ଗୁଡ଼ିକ ରଚନା କରିଛନ୍ତି । ପଶୁ-ପକ୍ଷୀଙ୍କ ହୃଦୟରେ ମାନବିକତା ଓ ମାନବିକ ଅନୁଭୂତିର ଅଭିବ୍ୟକ୍ତ କବି ସୂଚାଇଛନ୍ତି । ଅପର ପକ୍ଷରେ ମଣିଷଠାରେ ପାଶବିକତା ଓ ହିଂସ୍ରତା ବଢ଼ି ଚାଲିଛି । ତେଣୁ ଏହି କବିତା ଗୁଡ଼ିକରେ ମଣିଷ ଭିତରୁ ପଶୁତ୍ୱ, ହିଂସ୍ରତା ର ବିଲୋପ ଘଟାଇ ମାନବୀୟ ମୂଲ୍ୟବୋଧ ଓ ସୁ-

ଗୁଣାବଳୀର ପ୍ରତିଷ୍ଠା ପାଇଁ ଆହ୍ୱାନ ଦେଇଛନ୍ତି । ଏଥିରେ ସନ୍ନିବିଷ୍ଟ କବିତା ଗୁଡ଼ିକ ହେଲା- ପ୍ରଥମ କବିତା, ଚନ୍ଦ୍ର ଦେହେ ଶଶାର ଛବି, ଗୋଲାପ ଓ ବୁଲ୍‌ବୁଲ୍, ମରୁ ର ଇଗଲ୍, ଚିତ୍ରଗ୍ରୀବ, ବଉଳା ଓ ମହାବଳ, ବୋ, ଶୁଆ ଓ ଦେବଦୂତ, ବଳାକା, ଚୈତକ, ହଂସଦୂତ-୧, ହଂସଦୂତ-୨, ପଶୁରାଜ, ଲାଇକା ଇତ୍ୟାଦି ।

**ଶାମୁକାର ସ୍ୱପ୍ନ (୧୯୬୧) :** ଏହାମଧ୍ୟ ଏକ ସଫଳ ଗାଥାକୃତି । ଏଥିରେ ସନ୍ନିବିଷ୍ଟ କବିତା ଗୁଡ଼ିକ ହେଲା- ଶ୍ରୀୟାଚଣ୍ଡାଳୁଣୀ, ବାଲ୍ମୀକି, ଶ୍ରମଣାର ଅତିଥି ଚର୍ଚ୍ଚା, ଗୁହକ, ଏକଲବ୍ୟ, ଶମ୍ବୁକ, ରଇଦାସ, ରକ୍ତ ଓ ଦୁଗ୍ଧ, ଆନନ୍ଦ ଓ ପ୍ରକୃତି, ରାମି ଓ ଚଣ୍ଡୀଦାସ ପ୍ରଭୃତି ।

**ଅବାଚୀର ତାରା (୧୯୮୨) :** ଏହା ଏକ ମନୋଜ୍ଞ କବିତା ସଂକଳନ । ଏଥିରେ ସ୍ଥାନିତ କବିତା ଗୁଡ଼ିକ ହେଲା- ଦାରୁଦେବତା, ମଣିଷ ସୁନ୍ଦର, ସ୍ତବ୍ଧ ଆଜିମୋର ଦୃଷ୍ଟି, ପ୍ରଥମ ବୌଦ୍ଧ, ସମରାୟ, ନଚିକେତା, ମାର୍କଣ୍ଡେୟ, ସାତକୋଶିଆର ଜଳେ, ଆଉରଙ୍ଗଜେବ୍ ପ୍ରତି ଶିବାଜୀ, ତାମାଦୋରା, ତୁଳସୀ ଗୋ, ବୀତ ଶୋକ, ଅବାଚୀର ତାରା ପ୍ରଭୃତି ।

**ହୀରାଖଣ୍ଡର ଗାଥା (୧୯୮୬) :** ପଶ୍ଚିମ ଓଡ଼ିଶାର କେତେକ ଐତିହାସିକ ତଥ୍ୟ ଓ କିମ୍ବଦନ୍ତୀ ଉପରେ ଏହା ଆଧାରିତ । ଏଥିରେ ସନ୍ନିବିଷ୍ଟ କବିତା ଗୁଡ଼ିକ ହେଲା- ଜରାଓର ସିଂ ଦେଓ, ତୁଳସୀ ଗୋ ଦୀନଦୁଃଖୀ, ତୁମେ କେଉଟୁଣୀ, ମୋ ଜୀବନ ପଛେ ନର୍କେ ପଡିଥାଉ, ସତୀ ଆଜି ମଙ୍ଗୁଳୁର ରାଈ, ଇତିକଥା ନୁହେଁ, ଇତିହାସ, ଭାଇ-ଭାଇ, ରତନ ସିଂହ, ପୀତବାସ ଶଡ଼ଙ୍ଗୀ ଇତ୍ୟାଦି ।

**ବିଶ୍ୱଜୀବନ ପଥେ :** ଏହା ଏକ ସାର୍ଥକ ଗାଥା କବିତା । ଓଡ଼ିଶା ମାଟିର ମହାନ ଜନନାୟକ, ଦେଶପ୍ରେମୀ, ସମାଜସେବୀ, କର୍ମବୀର ପଣ୍ଡିତ ଗୋପବନ୍ଧୁଙ୍କ ତ୍ୟାଗପୂତ ଜୀବନ ଉପରେ ଏହା ଆଧାରିତ ।

ରାଧାମୋହନ ଅନଗୁଳ ଜିଲ୍ଲା ବା ଢେଙ୍କାନାଳ ଜିଲ୍ଲା ବାସୀଙ୍କ ପାଇଁ କେବଳ ଗର୍ବ ଓ ଗୌରବ ନୁହଁନ୍ତି; ସମଗ୍ର ଉତ୍କଳ ଭୂମିର ସେ ଜଣେ ସୁଯୋଗ୍ୟ ସନ୍ତାନ ।

## - ପାଦଟୀକା -

୧. ସୁଲକ୍ଷଣାଦେବୀ - ପାରିଜାତମାଳା-ପୃ-୩
୨. ସୁଲକ୍ଷଣାଦେବୀ - ବଡଦେଉଳ, ପାରିଜାତମାଳା-ପୃ-୨୪
୩. ସୁଲକ୍ଷଣାଦେବୀ - ବସନ୍ତ, ପାରିଜାତମାଳା-ପୃ-୨୮
୪. ତତ୍ରୈବ - ପୃ-୩୦
୫. ତତ୍ରୈବ - ପୃ-୩୧
୬. ସୁଲକ୍ଷଣାଦେବୀ - ଗ୍ରୀଷ୍ମ- ପାରିଜାତମାଳା-ପୃ-୩୮, ୩୯
୭. ସୁଲକ୍ଷଣାଦେବୀ - ଶୀତ- ପାରିଜାତମାଳା-ପୃ-୫୭
୮. ସୁଲକ୍ଷଣାଦେବୀ - ଜଣାଣ-୬, ପାରିଜାତମାଳା-ପୃ-୬୮
୯. ସୁଲକ୍ଷଣାଦେବୀ - ଦୀନବନ୍ଧୁ କୋଇଲି, ପାରିଜାତମାଳା-ପୃ-୬୦
୧୦. ତତ୍ରୈବ - ପୃ-୬୧
୧୧. ଦାମୋଦର ପଟ୍ଟନାୟକ - କପିଳାସକ୍ଷେତ୍ର, ପ୍ରଥମ ଅଧ୍ୟାୟ, ଦମୋଦର ଗ୍ରନ୍ଥାବଳୀ-ପୃ-୨
୧୨. ଦାମୋଦର ପଟ୍ଟନାୟକ - ଜାତୀୟ ସଙ୍ଗୀତ, ଦାମୋଦର ଗ୍ରନ୍ଥାବଳୀ - ପୃ-୪୧
୧୩. ତତ୍ରୈବ - ପୃ-୪୪
୧୪. ଦାମୋଦର ପଟ୍ଟନାୟକ - ବାଲିଯାତ୍ରା - ଦାମୋଦର ଗ୍ରନ୍ଥାବଳୀ - ପୃ-୮୪
୧୫. ଦାମୋଦର ପଟ୍ଟନାୟକ - ପଦ୍ମମୁଖୀ - ଦାମୋଦର ଗ୍ରନ୍ଥାବଳୀ - ପୃ-୯୬
୧୬. ତତ୍ରୈବ - ପୃ-୧୦୪
୧୭. ରାଜକିଶୋର ପଟ୍ଟନାୟକ - ସପ୍ତଶଯ୍ୟା, ପ୍ରଥମ ଶଯ୍ୟା, ରାଜକିଶୋର ରଚନାବଳୀ-ପୃ-୫୩
୧୮. ରାଜକିଶୋର ପଟ୍ଟନାୟକ - ଉଦ୍ଧବ ସନ୍ଦେଶ ଓ ଭ୍ରମର ଗୀତ-ପୃ-୨୪-୨୫
୧୯. ତତ୍ରୈବ - ପୃ-୨୭
୨୦. ଗୌରହରି ପଣ୍ଡା - କପିଳାସ (ଐତିହାସିକ କାବ୍ୟ), ପ୍ରଥମ ସର୍ଗ-ପୃ-୩
୨୧. ତତ୍ରୈବ - ପୃ-୧୩
୨୨. ଗୌରହରି ପଣ୍ଡା - କପିଳାସ (ପ୍ରକୃତି କାବ୍ୟ)-ପୃ-୩
୨୩. ତତ୍ରୈବ - ପୃ-୪
୨୪. ତତ୍ରୈବ - ପୃ-୫

୨୫. ଗୌରହରି ପଣ୍ଡା - ସପ୍ତଶଯ୍ୟା, ପ୍ରଥମ ଶଯ୍ୟା-ପୃ-୧
୨୬. ତତ୍ରୈବ - ପୃ-୧
୨୭. ତତ୍ରୈବ - ଦେବଶଯ୍ୟା-ପୃ-୩
୨୮. ତତ୍ରୈବ - ପୃ-୩
୨୯. ତତ୍ରୈବ - ପ୍ରାବୃଟ ଶଯ୍ୟା-ପୃ-୮
୩୦. ତତ୍ରୈବ - ନିମ୍ନଭୂମି ଶଯ୍ୟା-ପୃ-୧୨
୩୧. ଗୌରହରି ପଣ୍ଡା - ଭରତମିଳନ-ପୃ-୩
୩୨. ତତ୍ରୈବ - ପୃ-୯
୩୩. ଗୌରହରି ପଣ୍ଡା - କାକଭୂଷଣ ଚରିତ-ପୃ-୮
୩୪. ତତ୍ରୈବ - ପୃ-୫୧
୩୫. ରାଧାମୋହନ ଗଡନାୟକ - କୃଷ୍ଣଚନ୍ଦ୍ର ଗଡ଼-ମୌସୁମୀ, ଗଡ଼ନାୟକ ଗ୍ରନ୍ଥାବଳୀ, ପୃ-୩୫୨
୩୬. ରାଧାମୋହନ ଗଡନାୟକ - ମରିନାହିଁ ସେ'ତ ମରଣ ଜୟୀ, ଉତ୍କଳିକା- ଗଡ଼ନାୟକ ଗ୍ରନ୍ଥାବଳୀ, ପୃ-୨୩୬



# ପଞ୍ଚମ ଅଧ୍ୟାୟ
# (ଆଧୁନିକ ସାହିତ୍ୟର ଅନ୍ୟକତିପୟ ସ୍ରଷ୍ଟା)

**ପଣ୍ଡିତ ରାମଚନ୍ଦ୍ର ନନ୍ଦ (୧୮୫୭-୧୯୪୮) :**

ରାମଚନ୍ଦ୍ର ନନ୍ଦଙ୍କର ଜନ୍ମ ୧୮୫୭ ମସିହାରେ ଢେଙ୍କାନାଳ ଜିଲ୍ଲାର ନୂଆଭଗୀରଥପୁର ଶାସନରେ । ତାଙ୍କ ପିତାଥିଲେ- ବୈରାଗୀ ନନ୍ଦ ଓ ମାତା- ରାଈଦେବୀ । ଶ୍ରୀଯୁକ୍ତ ନନ୍ଦ କଟକ ନର୍ମାଲଟ୍ରେନିଂ ସ୍କୁଲ୍‌ରୁ କୃତିତ୍ୱର ସହ ପାଶ୍ କରିବାପରେ ପ୍ରଥମେ 'ଢେଙ୍କାନାଳ ଷ୍ଟେଟ୍' ରେ ବନ୍ଦୋବସ୍ତ ଅଧିକାରୀ ଭାବରେ ଚାକିରୀ ଜୀବନ ଆରମ୍ଭ କରିଥିଲେ । ପରବର୍ତ୍ତୀ ସମୟରେ ସେ ଏହି ଚାକିରୀ ଛାଡି ଶିକ୍ଷକତା କରିଥିଲେ । ରାମଚନ୍ଦ୍ର ନନ୍ଦ ଜଣେ ସଂସ୍କୃତ ବିଶାରଦ, ବିଦ୍ୱାନ୍ ପଣ୍ଡିତ ଥିଲେ । ତାଙ୍କର ସଂସ୍କୃତ ଭାଷାରେ ଗଭୀର ବ୍ୟୁତ୍ପତ୍ତି ସହ ହିନ୍ଦୀ, ବଙ୍ଗଳା, ଇଂରାଜୀ ଭାଷାରେ ମଧ୍ୟ ଦକ୍ଷତା ଥିଲା । ସେ ଏକାଧାରରେ ଥିଲେ ଜଣେ ବେଦାନ୍ତତତ୍ତ୍ୱବିତ୍, ନ୍ୟାୟଶାସ୍ତ୍ର ବିଶାରଦ, ଐତିହାସିକ, ଗବେଷକ ଏବଂ ପ୍ରତ୍ନତତ୍ତ୍ୱବିତ୍ । ଆଧୁନିକ ଓଡ଼ିଆ ସାହିତ୍ୟ ତଥା ଢେଙ୍କାନାଳ ସାହିତ୍ୟ ଜଗତରେ ଆଧୁନିକ ଚେତନା ଓ ଅଭିନବ ଅଭିରୁଚିର କୌଣସି ଅନୁବର୍ତ୍ତନ କରିନଥିଲେ ମଧ୍ୟ, ସେ ଢେଙ୍କାନାଳର ଐତିହ୍ୟ, ସଂସ୍କୃତି ଓ ଇତିହାସ କୁ ନେଇ ଯେଉଁସବୁ ଗ୍ରନ୍ଥମାନ ରଚନା କରିଯାଇଛନ୍ତି, ତାହା ବାସ୍ତବରେ ପ୍ରଶଂସାର୍ହ । ତାଙ୍କର ଢେଙ୍କାନାଳ ଇତିହାସ, ଢେଙ୍କାନାଳ ଭୂଗୋଳ, ହିନ୍ଦୋଳ ଇତିହାସ, ହିନ୍ଦୋଳ ଭୂଗୋଳ ପ୍ରଭୃତି ଗ୍ରନ୍ଥ ଉତ୍ତର ପୀଢି ମାନଙ୍କୁ ପଥ କଢ଼ାଇବାରେ ସହାୟକ ହୋଇଛି । ତାଙ୍କର ଦତ୍ତକ କୌମୁଦୀ ଏବଂ ଦତ୍ତକ ମୀମାଂସା ଏକ ଏକ ଅମଳିନ କୃତି । ପଣ୍ଡିତ ରାମଚନ୍ଦ୍ର ନନ୍ଦଙ୍କ ବହୁମୁଖୀ ପ୍ରତିଭାରେ ମୁଗ୍ଧ ହୋଇ ତତ୍କାଳୀନ ଢେଙ୍କାନାଳର ରାଜା ସୁରପ୍ରତାପ ତାଙ୍କୁ 'ଭକ୍ତିବିନୋଦ' ଉପାଧିରେ ଭୂଷିତ କରିଥିଲେ ।

**କେଶବଚନ୍ଦ୍ର ମିଶ୍ର (୧୮୭୫-୧୯୫୫):**

କେଶବଚନ୍ଦ୍ର ମିଶ୍ରଙ୍କର ଜନ୍ମ ଢେଙ୍କାନାଳ ଜିଲ୍ଲାର ଭୁବନ ଶାସନରେ । ସେ ଜଣେ ଆଦର୍ଶ, ଛାତ୍ରବତ୍ସଳ ଶିକ୍ଷକ ଥିଲେ । ସାହିତ୍ୟ ପ୍ରତି ତାଙ୍କର ପ୍ରଗାଢ଼ ରୁଚି ଥିଲା । ସେ ଓଡ଼ିଆ ଭାଷାରେ ଅନେକ କାବ୍ୟ, ଉପନ୍ୟାସ, ନାଟକ ଓ ପ୍ରବନ୍ଧମାନ ରଚନା କରିଯାଇଛନ୍ତି ।

ତାଙ୍କ ରଚିତ ସାରସ୍ୱତ କୃତି ଗୁଡିକ ହେଲା-

କାବ୍ୟ : ନୀତି ରତ୍ନାବଳୀ (୧୯୦୮), ବୈତରଣୀ (୧୯୩୪), ପ୍ରହ୍ଲାଦ ଚରିତ (୧୯୩୪)

ନାଟକ : ଶୋଭନା (୧୯୩୧)

ଉପନ୍ୟାସ : ନାଏବ ବାବୁ

ପ୍ରବନ୍ଧ : ହିନ୍ଦୁଧର୍ମ ଶିକ୍ଷା (୧୯୩୫), ଭୂୟାଁ ଜାତି (୧୯୩୫), ବିରୋଧିବୈଷ୍ଣବ (୧୯୩୪)

ଶ୍ରୀଯୁକ୍ତ ମିଶ୍ର ତତ୍କାଳୀନ ସାମାଜିକ ଜୀବନ, ସାମାଜିକ କୁ-ସଂସ୍କାର ଓ ଅନ୍ଧବିଶ୍ୱାସ ତଥା ତତ୍କାଳୀନ ସମୟର ପ୍ରାଣସ୍ପନ୍ଦନକୁ ନେଇ ଏହି ସବୁ ସୃଷ୍ଟି ଗୁଡ଼ିକ ସର୍ଜନା କରିଯାଇଛନ୍ତି ।

**ବନମାଳୀ ସିଂହ :**

ବନମାଳୀଙ୍କର ଜନ୍ମ ଢେଙ୍କାନାଳ ସହରରେ । ସେ ଜଣେ ବିଦ୍ୱାନ ପଣ୍ଡିତ ଓ ଗୁଣୀ ବ୍ୟକ୍ତି ଥିଲେ । ସେ ଢେଙ୍କାନାଳର ରାଜା ଭଗୀରଥୀ ମହୀନ୍ଦ୍ର ବାହାଦୂରଙ୍କ ସମସାମୟିକ ଥିଲେ । ସେ ଢେଙ୍କାନାଳ ଷ୍ଟେଟ୍‌ର ଦେବାନ୍ ମଧ୍ୟ ଥିଲେ । ସେ ଥିଲେ ଜଣେ ଜାତିପ୍ରେମୀ ଓ ଜାତୀୟବାଦୀ ସ୍ରଷ୍ଟା । ଓଡ଼ିଆ ଭାଷା ସୁରକ୍ଷା ଆନ୍ଦୋଳନର ସେ ଜଣେ ସକ୍ରୀୟ କର୍ମୀଥିଲେ । ଓଡ଼ିଆ ଭାଷା ଓ ସାହିତ୍ୟର ସୁରକ୍ଷା, ଓଡ଼ିଆ ଭାଷା-ସାହିତ୍ୟର ଉନ୍ନତି ପାଇଁ ସେ ଆପ୍ରାଣ ଉଦ୍ୟମ କରିଯାଇଛନ୍ତି । ସେ ବିଭିନ୍ନ ଟୀକାଗ୍ରନ୍ଥ ରଚନା, ଅନୁବାଦ ସହ ଓଡ଼ିଆ ସାହିତ୍ୟର ଅନେକ ମହାନ୍ ଗ୍ରନ୍ଥର ସଂପାଦନା ମଧ୍ୟ କରିଯାଇଛନ୍ତି । ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କ 'ଶକୁନ୍ତଳା' କାବ୍ୟର ସେ ଓଡ଼ିଆ ଅନୁବାଦ କରିଛନ୍ତି । ଏହା ସହିତ କବି ଉପେନ୍ଦ୍ର ଭଂଜଙ୍କର ରସପଞ୍ଚକ, ଲାବଣ୍ୟବତୀ ଓ ପ୍ରେମସୁଧାନିଧି କାବ୍ୟର ଟୀକାଗ୍ରନ୍ଥ ମଧ୍ୟ ରଚନା କରିଯାଇଛନ୍ତି ।

**ଚନ୍ଦ୍ରଶେଖର ପାଣି :**

ଚନ୍ଦ୍ରଶେଖର ପାଣିଙ୍କର ଜନ୍ମ ଢେଙ୍କାନାଳର ମୁକ୍ତାଦେଈପୁର ଶାସନରେ । ସେ ଢେଙ୍କାନାଳ ଷ୍ଟେଟ୍ ର ଦେବାନ୍ ମଧ୍ୟ ଥିଲେ । ଚନ୍ଦ୍ରଶେଖର ମୁଖ୍ୟତଃ ଜଣେ ନାଟ୍ୟକାର ଥିଲେ । ପୁରାଣ ଓ ଇତିହାସର କଥାବସ୍ତୁ କୁ ନେଇ ସେ ଅନେକ ଗୁଡ଼ିଏ ନାଟକ ରଚନା କରିଯାଇଛନ୍ତି । ତାଙ୍କ ରଚିତ ନାଟକ ଗୁଡ଼ିକ ହେଲା- ଭକ୍ତବୀର, ବୀରତ୍ରିଲୋଚନ, ରଘୁଅରକ୍ଷିତ, ଚନ୍ଦ୍ରହାସ, କଳିକୁଳ ଚନ୍ଦ୍ରମା, ବାଲୁକାପିଣ୍ଡ, ଇନ୍ଦିରା

ପରିଣୟ ପ୍ରଭୃତି । 'ବୀର ତିଲୋଚନ' ଏକ ପାଞ୍ଚଅଙ୍କ ବିଶିଷ୍ଟ ଐତିହାସିକ ନାଟକ । ଢେଙ୍କାନାଳର ରାଜା ତ୍ରିଲୋଚନ ମହୀନ୍ଦ୍ର ବାହାଦୂରଙ୍କ ସହିତ ମରହଟ୍ଟା ବାହିନୀର ଦୀର୍ଘ ୧୮ ଦିନ ବ୍ୟାପୀ ଯେଉଁ ଯୁଦ୍ଧ ହୋଇଥିଲା, ସେହି ଇତିହାସ ପ୍ରସିଦ୍ଧ ଯୁଦ୍ଧ ହିଁ ଏହି ନାଟକର ମୁଖ୍ୟ କଥାବସ୍ତୁ। ଏହି ଯୁଦ୍ଧରେ ଢେଙ୍କନାଳ ପାଇକବାହିନୀ ଦ୍ୱାରା ବେରାରପତିଙ୍କ ପ୍ରତିନିଧି ମରହଟ୍ଟା ସେନାପତି ଚିମନାଜୀ ଶୋଚନୀୟଭାବେ ପରାସ୍ତହୋଇ ଢେଙ୍କାନାଳ ରାଜାଙ୍କ ସହିତ ସନ୍ଧି କରିଥିଲେ । ଏପରିକି ଚିମନାଜୀ ରାଜା ତ୍ରିଲୋଚନଙ୍କର ଅପୂର୍ବ ବୀରତ୍ୱ, ସାହସ, ସମର କୌଶଳ, ପରିପକ୍ୱ ବିବେକ ଶକ୍ତି ଓ ଦେଶପ୍ରେମର ଭୂୟସୀ ପ୍ରଶଂସାକରି ତ୍ରିଲୋଚନଙ୍କୁ ଝାଡ଼ଖଣ୍ଡର ବାଦ୍‌ଶାହାରୂପେ ସ୍ୱୀକୃତି ଓ ସମ୍ମାନ ଦେଇଥିଲେ ।

**ବୈଷ୍ଣବ ଚରଣ ମହାପାତ୍ର (୧୮୯୯-୧୯୩୦):**

ବୈଷ୍ଣବ ଚରଣ ମହାପାତ୍ରଙ୍କ ଜନ୍ମ ୧୮୯୯ ମସିହାରେ ଢେଙ୍କାନାଳ ଜିଲ୍ଲାର ବଳଭଦ୍ରପୁର ଶାସନକେଶେରିଆଠାରେ । ବୈଷ୍ଣବ ଚରଣ ମୁଖ୍ୟତଃ ଜଣେ କବି ଥିଲେ । ପରିବେଶ ଓ ପ୍ରକୃତି କୁ ନେଇ ସେ ଅଧିକାଂଶ ସୃଷ୍ଟି ସର୍ଜନା କରିଛନ୍ତି । ତାଙ୍କ ରଚିତ ସାରସ୍ୱତ କୃତି ଗୁଡ଼ିକ ହେଲା- ଲଳିତା ସୁନ୍ଦରୀ, କପିଳାସ, ନବବାଟିକା ପଲ୍ଲୀ ପ୍ରକୃତି, ବଳଦେବ ଚଉତିଶା ଏବଂ ବୈଷ୍ଣବ ଗ୍ରନ୍ଥାବଳୀ ପ୍ରଭୃତି ।

**ନଗେନ୍ଦ୍ରନାଥ ମହାପାତ୍ର (୧୮୯୯-୧୯୫୦) :**

ନଗେନ୍ଦ୍ରନାଥ ମହାପାତ୍ରଙ୍କର ଜନ୍ମ ୧୮୯୯ ମସିହାରେ ଢେଙ୍କାନାଳ ଜିଲ୍ଲାର ବଳଭଦ୍ରପୁର ଶାସନ କେଶରିଆ ଠାରେ । ଶ୍ରୀ ମହାପାତ୍ର ଏକାଧାରରେ ଜଣେ ଶିକ୍ଷକ, ଐତିହାସିକ ଓ ଗବେଷକ । ଇତିହାସ, ସଂସ୍କୃତି, କଳା ଓ ପ୍ରତ୍ନତତ୍ତ୍ୱ ସମ୍ବନ୍ଧୀୟ ବହୁତଥ୍ୟ ସେ ଦେଇଯାଇଛନ୍ତି । ଏକଦା ସେ ଢେଙ୍କାନାଳଷ୍ଟେଟ୍‌ର ରିସର୍ଚ୍ଚ ଅଫିସର ରୂପେ ଦାୟିତ୍ୱ ନିର୍ବାହ କରିଥିଲେ । ଏହା ସହିତ ସେ ବଙ୍ଗ-ବିହାର ପ୍ରଦେଶର ରିସର୍ଚ୍ଚ ପଣ୍ଡିତ ରୂପରେ ମଧ୍ୟ ନିଜର ଖ୍ୟାତି ଅର୍ଜନ କରିଥିଲେ । ଶ୍ରୀ ମହାପାତ୍ର ଓଡ଼ିଆ ଭାଷାରେ ସାରସ୍ୱତ କୃତିମାନ ରଚନା କରିବା ସହିତ ପତ୍ର-ପତ୍ରିକା ପ୍ରକାଶନ ଓ ସଂପାଦନାରେ ମଧ୍ୟ ବ୍ରତୀ ରହିଥିଲେ । ଏକଦା ସେ ତାଳଚେରରୁ ପ୍ରକାଶିତ 'ଗଡ଼ଜାତବାସିନୀ' ପତ୍ରିକାର ସଂପାଦନା ଦାୟିତ୍ୱରେ ଥିଲେ । ତାଙ୍କ ରଚିତ ସାରସ୍ୱତ କୃତି ଗୁଡ଼ିକ ହେଲା- ଶ୍ରୀନାଗନାଥ ଶତକମ୍, ସେବ କାଳର କଥା, ଢେଙ୍କାନାଳର ସଂକ୍ଷିପ୍ତ ଇତିହାସ ଏବଂ ରତ୍ନପ୍ରଭାଙ୍କ ଶ୍ରୀକର-ଶ୍ରୀ ।

**ନାଗନାଥ ଶତକମ୍ :** ଏହା ଏକ ଇତିହାସ ତଥ୍ୟ ସମ୍ବଳିତ ଆଧ୍ୟାତ୍ମିକ ରଚନା । ଏହି ଗ୍ରନ୍ଥରେ ଢେଙ୍କାନାଳର ପ୍ରାଚୀନ ଆଧ୍ୟାତ୍ମିକ ପୀଠ ନାଗନାଥ ମନ୍ଦିରର ସୃଷ୍ଟି ଇତିହାସ,

ଆଧ୍ୟାତ୍ମିକ ଭାବାବେଗ ଓ ମହାତ୍ମ୍ୟ ବର୍ଣ୍ଣିତ । ଲେଖକ ଏହି ଗ୍ରନ୍ଥରେ 'ନାଗନାଥପୀଠ' କୁ ସୋମନାଥ, କେଦାରନାଥ, ବୈଦ୍ୟନାଥ, ରାମନାଥ ଆଦି ପବିତ୍ର ଧାମର ସମକକ୍ଷ ଓ ପ୍ରତିସ୍ପର୍ଦ୍ଧୀ ରୂପେ ସୂଚିତ ଓ ଅଭିହିତ କରିଛନ୍ତି । ଏହି ନାଗନାଥ ଧାମରେ ଜଗନ୍ନାଥଙ୍କ ପବିତ୍ର ମହାପ୍ରସାଦ 'ନିର୍ମାଲ୍ୟ' ପରି ଏକଦା ନିର୍ମାଲ୍ୟ ଭୋଗ ହେଉଥିବାର ଲେଖକ ସୂଚିତ କରିଛନ୍ତି । ଏହି ପ୍ରାଚୀନ ଧାମର ପ୍ରାଚୀନ ଦେଉଳଟି ସମୟକ୍ରମେ ସମୟର ଦନ୍ତାଘାତରେ ଭାଙ୍ଗିଯିବାପରେ ସେହି ସ୍ଥାନ ଉପରେ ନୂତନ ଦେଉଳ ଗଢ଼ା ଯାଇଥିବାର କଥା ଲେଖକ ଉପସ୍ଥାପନ କରିଛନ୍ତି ।

**ସେବକାଳର କଥା :** ଏହା ଏକ ମନୋଜ୍ଞ, ଅଭିନବ ଗଦ୍ୟ ଗ୍ରନ୍ଥ । ଗଳ୍ପ କଥନ ଶୈଳୀରେ ଲେଖକ ଏହି ଗ୍ରନ୍ଥରେ ଢେଙ୍କାନାଳର ସୃଷ୍ଟି ଇତିହାସ, ଏମାଟିର ଐତିହ୍ୟ, ଧର୍ମ-ଦର୍ଶନ, ସଂସ୍କୃତି ର ରୂପାୟନ ସହିତ ଢେଙ୍କାନାଳ ରାଜବଂଶର ପ୍ରଥିତଯଶା ରାଜା-ମହାରାଜା, ସିଦ୍ଧ ମହାପୁରୁଷ, ମହାନ୍ କବି, ପଣ୍ଡିତ ମାନଙ୍କର ବ୍ୟକ୍ତିତ୍ୱ ଓ ପ୍ରତିଭାର ସୂଚନା ଓ ମୂଲ୍ୟାଙ୍କନ କରିଛନ୍ତି । ଲେଖକ ଏହି ଗ୍ରନ୍ଥରେ ଓଡ଼ିଶାର ପ୍ରଚୀନ ନାଗ ସଂସ୍କୃତିର ପ୍ରାଚୀନ ପୀଠ-ନାଗନାର ନାଗନାଥ ମନ୍ଦିର, ପ୍ରସିଦ୍ଧ ଶୈବପୀଠ କପିଳାସ କ୍ଷେତ୍ର, ପ୍ରଚୀନ କୋଦାଳକ ନଗରୀ ବା କୁଆଳୋର ପ୍ରାଚୀନ ଐତିହ୍ୟ, ଢେଙ୍କାନାଳ ଗଡ଼ର ପଶ୍ଚିମ ପ୍ରାନ୍ତରେ ଅବସ୍ଥିତ ପ୍ରାଚୀନ ଭୀମନଗରୀଗଡ଼, ନାଧରା ଗ୍ରାମସ୍ଥିତ ସିଦ୍ଧ ରାମଚଣ୍ଡୀ ମନ୍ଦିର, ଢେଙ୍କାନାଳ ସହରସ୍ଥିତ ଶ୍ରୀସିଦ୍ଧ ବଳଦେବଜୀଉ ମନ୍ଦିର ପ୍ରଭୃତି ସଂପର୍କରେ ତାତ୍ତ୍ୱିକ, ଜ୍ଞାନଗର୍ଭକ ସୂଚନା ପ୍ରଦାନ କରିଛନ୍ତି । ଏହାସହିତ ଏହି ମାଟିର ସାହିତ୍ୟ ଓ ସଂସ୍କୃତିକୁ ପ୍ରାଣବନ୍ତ କରିଥିବା ଲବ୍ଧପ୍ରତିଷ୍ଠ ବିଦ୍ୱାନ ଓ କବି କୃଷ୍ଣଦାସ, ଶ୍ରୀଧରସ୍ୱାମୀ, ବ୍ରଜନାଥ ବଡ଼ଜେନା, ସୁଲକ୍ଷଣା, ମହିମା ଗୋସାଇଁ ପ୍ରଭୃତିଙ୍କ ସଂପର୍କରେ ସୂଚନା ପ୍ରଦାନ କରିଛନ୍ତି । ଇତିହାସ ପ୍ରସିଦ୍ଧ 'ଢେଙ୍କାଶବର' ର ପ୍ରସଙ୍ଗ, ବର୍ଗୀ ଆଉ ଢେଙ୍କାନାଳର ସବାଶେଷ ବଡ଼ ଲଢ଼େଇ ସଂପର୍କରେ ମଧ୍ୟ ଲେଖକ ଆଲୋକପାତ କରିଛନ୍ତି । ବାସ୍ତବରେ ଏହି ଗ୍ରନ୍ଥଟି ଢେଙ୍କାନାଳର ପ୍ରଚୀନ ଐତିହ୍ୟ, ସଂସ୍କୃତି ଓ ଇତିହାସର ଏକ ମୂକସାକ୍ଷୀ ।

**ଢେଙ୍କାନାଳର ସଂକ୍ଷିପ୍ତ ଇତିହାସ :** ଏହା ଐତିହାସିକ ତଥ୍ୟ ଓ ତତ୍ତ୍ୱ ରେ ସମୃଦ୍ଧ ଏକ କାଳଜୟୀ ଗ୍ରନ୍ଥ । ଢେଙ୍କାନାଳ ଗଡ଼ର ପ୍ରତିଷ୍ଠା, ଢେଙ୍କାନାଳର ରାଜବଂଶ ଓ ଢେଙ୍କାନାଳ ଇତିହାସ ସଂପର୍କୀତ ଏହା ଏକ ପ୍ରାମାଣିକ ଗ୍ରନ୍ଥ ।

**ରତ୍ନପ୍ରଭାଙ୍କ ଶ୍ରୀକର-ଶ୍ରୀ :** ଏହା ଏକ ରାଜ ପ୍ରଶସ୍ତି ଓ ସ୍ତୁତିମୂଳକ ଖଣ୍ଡକାବ୍ୟ । ଏହି ଖଣ୍ଡକାବ୍ୟଟି ସଂସ୍କୃତଭାଷାରେ ରଚିତ । ଏଥିରେ ଉତ୍କଳର ପ୍ରାଚୀନ ନଗପତି ମାନଙ୍କର

ସୂଚନା ଓ ସେମାନଙ୍କର ବୀରତ୍ୱ-ମହିମାର ବର୍ଣ୍ଣନ ସହିତ ଢେଙ୍କାନାଳଗଡ଼ର ରାଣୀ ରତ୍ନପ୍ରଭା ଦେବୀଙ୍କର ପାଣ୍ଡିତ୍ୟ, ପ୍ରତିଭା ଓ ମହନୀୟତାର ଚିତ୍ର ପ୍ରକଟିତ। ଏହି ରଚନାଟିରୁ କବିଙ୍କର ରାଜପରିବାର ପ୍ରତି ଅନୁରକ୍ତି ଓ ରାଣୀଙ୍କ ପ୍ରତି ଥିବା ତାଙ୍କ ହୃଦୟର ଶ୍ରଦ୍ଧା-ସମ୍ମାନର ପରିଚୟ ମିଳେ।

**ଶ୍ରୀ ସୂର୍ଯ୍ୟନାରାୟଣ ପଟ୍ଟନାୟକ (୧୯୦୧-୧୯୯୨):**

ସୂର୍ଯ୍ୟନାରାୟଣଙ୍କର ଜନ୍ମ ୧୯୦୧ ମସିହା ଅକ୍ଟୋବର ମାସ ୬ ତାରଖରେ ଢେଙ୍କାନାଳ ସହରର ବେବର୍ତ୍ତା ସାହିରେ। ତାଙ୍କ ପିତା ଥିଲେ ଢେଙ୍କାନାଳର ମହାନ୍ ସାରସ୍ୱତ ସ୍ରଷ୍ଟା ତଥା ଦେବାନ୍ ଦାମୋଦର ପଟ୍ଟନାୟକ ଏବଂ ମାତା ସୀତା ଦେବୀ। ଦାମୋଦରଙ୍କର ଜଣେ ସୁଯୋଗ୍ୟ ସନ୍ତାନ ଥିଲେ-ସୂର୍ଯ୍ୟନାରାୟଣ। ପିତାଙ୍କପରି ତାଙ୍କଠାରେ ମଧ ସାରସତ ପ୍ରତିଭାର ପ୍ରଭା ବିଚ୍ଛୁରିତ ହୋଇଥିଲା। ସେ ଏକାଧାରରେ ଥିଲେ ଜଣେ କବି, ପ୍ରାବନ୍ଧିକ, ସମାଲୋଚକ ଓ ସଂକଳକ। ସେ ନିଜର ମୌଳିକ କବିତା, ପ୍ରବନ୍ଧ ଆଦି ରଚନା କରିବା ସହିତ ବିଭିନ୍ନ ପୁସ୍ତକ ସଂକଳନ ଓ ସଂପାଦନା କାର୍ଯ୍ୟ ମଧ କରିଯାଇଛନ୍ତି। ସୂର୍ଯ୍ୟନାରାୟଣଙ୍କର କବିତା ଗୁଡ଼ିକ ବେଶ୍ ରୋମାଣ୍ଟିକ୍ ଓ ପ୍ରାଣବନ୍ତ। ତାଙ୍କର ପ୍ରଣୟ ପ୍ରବାହ, ମଧୁସ୍ମୃତି, ତ୍ରିଲୋଚନ- ପ୍ରଭୃତି କବିତା ଗୁଡ଼ିକ ଏକ ଏକ ସାର୍ଥକ କଳାତ୍ମକ ଅଭିବ୍ୟକ୍ତି। କବି ନିଜର ପରଲୋକଗତା ପତ୍ନୀଙ୍କ ସ୍ମୃତିରେ 'ସ୍ମୃତିଶିଖା' ନାମରେ ଏକ ଗ୍ରନ୍ଥ ସଂକଳନ କରିଯାଇଛନ୍ତି। ସେ ବ୍ରଜନାଥ ବଡଜେନାଙ୍କର 'ଚତୁରବିନୋଦ' ର ସଂପାଦନା ସହିତ ପିତା ଦାମୋଦର ପଟ୍ଟନାୟକଙ୍କର 'ସଙ୍ଗୀତ ସାଗର' ଓ ପିତାମହୀ ସୁଲକ୍ଷଣା ଦେବୀଙ୍କର 'ପାରଜାତମାଳା' ର ସଂପାଦନା କରିଯାଇଛନ୍ତି।

ଜୀବନର ସାୟାହ୍ନରେ ସେ ରଚନା କରିଛନ୍ତି- ନିଜର ଆତ୍ମଜୀବନୀ ଗ୍ରନ୍ଥ- 'ଆତ୍ମଲିପି'। ଏହି ଆତ୍ମଜୀବନୀ ଗ୍ରନ୍ଥଟି ସ୍ରଷ୍ଟା ୧୯୮୮ ମସିହା ବେଳକୁ ରଚନା କରିଛନ୍ତି। ଏହି 'ଆତ୍ମଲିପି' ଟି ତିନିଗୋଟି ପର୍ଯ୍ୟାୟଭୁକ୍ତ। ୧- ପୂର୍ବାହ୍ନର ସୂର୍ଯ୍ୟ, ୨- ମଧ୍ୟାହ୍ନର ସୂର୍ଯ୍ୟ, ୩- ଅପରାହ୍ନର ସୂର୍ଯ୍ୟ। ଏହି 'ଆତ୍ମଜୀବନୀ' ଗ୍ରନ୍ଥଟି ଓଡ଼ିଆ ଜୀବନୀସାହିତ୍ୟର ଏକ ଅମଳିନ କୃତି। ଶ୍ରୀଯୁକ୍ତ ପଟ୍ଟନାୟକ ପତ୍ର-ପତ୍ରିକା ସଂପାଦନା ଓ ପ୍ରକାଶନ ସହ ମଧ ଜଡ଼ିତ ଥିଲେ। ଏକଦା ସେ 'ସତ୍ୟଦୀପ' ପତ୍ରିକାର ସଂପାଦନା ଦାୟିତ୍ୱ ମଧ ନିର୍ବାହ କରିଥିଲେ। ଶ୍ରୀଯୁକ୍ତ ପଟ୍ଟନାୟକ ଜଣେ ଧର୍ମପରାୟଣ, ସଂସ୍କୃତିବନ୍ତ, ସମାଜସେବୀ ଥିଲେ। ଶ୍ରୀମା-ଅରବିନ୍ଦଙ୍କର ସେ ଥିଲେ ପରମ ଅନୁଗାମୀ। ସାହିତ୍ୟ କ୍ଷେତ୍ରରେ ତାଙ୍କର ଅବଦାନ ପାଇଁ ୧୯୯୦ ମସିହାରେ ସେ ଓଡ଼ିଶା ସାହିତ୍ୟ ଏକାଡ଼େମୀ

ଦ୍ୱାରା ସମ୍ମାନିତ ହୋଇଥିଲେ । ୧୯୯୨ ମସିହା ଅଗଷ୍ଟମାସ ୧୫ ତାରିଖରେ ଏହି ଦୈବତ ପ୍ରତିଭା, ଢେଙ୍କାନାଳ ମାଟିର ମହାନ୍ ସ୍ରଷ୍ଟା ଇହଲୀଳା ସମ୍ବରଣ କରିଥିଲେ ।

**ଶ୍ରୀ ବିଦ୍ୟାଧର ମହାନ୍ତି (୧୯୦୮-୧୯୮୧):**

କବି ବିଦ୍ୟାଧର ମହାନ୍ତିଙ୍କ ଜନ୍ମ ଢେଙ୍କାନାଳ ଜିଲ୍ଲାର ନାଧରା ଗ୍ରାମରେ ୧୯୦୮ ମସିହାରେ । ସେ ଜଣେ ଜାତୀୟବାଦୀ ଓ ଗାନ୍ଧିବାଦୀ ସ୍ରଷ୍ଟା । ଭାରତୀୟ ସ୍ୱାଧିନତା ସଂଗ୍ରାମ, ଜାତୀୟ ମୁକ୍ତି ଚେତନା, ସମାଜ-ସଂସ୍କାର ଲିପ୍ସା ଓ ମାନବିକ ମୂଲ୍ୟବୋଧ ନେଇ ସେ ଅନେକ ସାରସ୍ୱତ ସୃଷ୍ଟି ସର୍ଜନା କରିଯାଇଛନ୍ତି । ତାଙ୍କ ରଚିତ ସାରସ୍ୱତ କୃତି ଗୁଡ଼ିକ- କବିତାବଳୀ, ଆବାହନୀ, ସୁରସଭା, ଗାନ୍ଧୀ କିଏ ?, ଗାଁ ମଜଲିସ୍ ପ୍ରଭୃତି । ଏହି ସବୁ ରଚନା ଗୁଡ଼ିକ ଢେଙ୍କନାଳ ସାହିତ୍ୟର ଏକ ଏକ ଅମୂଲ୍ୟ କୃତି ।

**ରତ୍ନପ୍ରଭାଦେବୀ (୧୯୦୯- ୨୦୦୧ ) :**

ରତ୍ନପ୍ରଭାଦେବୀଙ୍କର ଜନ୍ମ ଘଟିଥିଲା ଷଢ଼େଇକଳା ରାଜବଂଶରେ, ୧୯୦୯ ମସିହା ଡିସେମ୍ବର ମାସ ୯ ତାରିଖରେ । ତାଙ୍କ ପିତାଥିଲେ-ଷଢ଼େଇକଳାର ମହାରାଜା ସ୍ୱର୍ଗତ ଆଦିତ୍ୟପ୍ରସାଦ ସିଂହଦେଓ ଓ ମାତା- ରାଣୀ ପଦ୍ମିନୀ କୁମାରୀ । ଆଦିତ୍ୟପ୍ରସାଦ ଜଣେ କଳାପ୍ରେମୀ, ସଂସ୍କୃତିସମ୍ପନ୍ନ ବ୍ୟକ୍ତି ଥିଲେ । ସଙ୍ଗୀତ, ନୃତ୍ୟ, ନାଟକ ପ୍ରତି ତାଙ୍କର ଗଭୀର ଅନୁରାଗ ଥିଲା । ସେ 'ଶୈବ୍ୟା' ନାମକ ଏକ ନାଟକ ମଧ୍ୟ ରଚନା କରିଥିଲେ । ରାଣୀ ପଦ୍ମିନୀ ଦେବୀ ମଧ୍ୟଥିଲେ ଜଣେ ସାରସ୍ୱତପ୍ରାଣା ବିଦୂଷୀ ମହିଳା । ସେ ଷଢ଼େଇକଳାର ଆରାଧ୍ୟା ଦେବୀ 'ମା ପାଉଡ଼ୀ' ଙ୍କ ଅପାର ମହିମାକୁ ଭିତ୍ତିକରି 'ଉତ୍ପଳା' ନାମକ ଏକ ଭକ୍ତିଭାବାପନ୍ନ ଆଧ୍ୟାତ୍ମିକ ଗ୍ରନ୍ଥ ରଚନାକରିଥିଲେ । ଉଭୟ ପିତା-ମାତାଙ୍କର ସାରସ୍ୱତ ପ୍ରତିଭାର ପ୍ରଭା ରାଣୀ ରତ୍ନପ୍ରଭାଙ୍କୁ ପ୍ରଭାବନ୍ତ କରିଥିଲା । ଯା' ଫଳରେ ସେ କଳାର ପୂଜାରିଣୀ ରୂପରେ ଉଭାହୋଇଥିଲେ । ରତ୍ନପ୍ରଭା ୧୯୨୪ ମସିହା ବେଳକୁ ୧୫ ବର୍ଷ ବୟସରେ ଢେଙ୍କାନାଳ ଗଡ଼ଜାତର ନା'ବାଳକ ରାଜା ଶଙ୍କରପ୍ରତାପ ସିଂହଦେଓ ମହୀନ୍ଦ୍ରବାହାଦୂରଙ୍କୁ ବିବାହ କରିଥିଲେ । ବିବାହର ପରବର୍ଷ ଅର୍ଥାତ୍ ୧୯୨୫ ମସିହାରେ ଶଙ୍କରପ୍ରତାପ ଢେଙ୍କାନାଳ ରାଜସିଂହାସନର ପ୍ରତ୍ୟକ୍ଷ ଶାସନ ଦାୟିତ୍ୱ ଗ୍ରହଣ କରିଥିଲେ । ରାଣୀ ରତ୍ନପ୍ରଭା ଥିଲେ ଅତ୍ୟନ୍ତ ଚତୁରୀ ଓ ବୁଦ୍ଧିମତୀ । ତତ୍କାଳୀନ ଢେଙ୍କାନାଳ ଗଡ଼ଜାତର ପ୍ରଜାମାନଙ୍କର ଅଭାବ-ଅସୁବିଧା ଓ ଅସନ୍ତୋଷକୁ ହୃଦୟଙ୍ଗମ କରିଥିଲେ । ରାଜା ଭଗୀରଥ, ଦୀନବନ୍ଧୁ ଓ ରାଜର୍ଷି ସୁରପ୍ରତାପଙ୍କର ଏହି ଗୌରବୋଜ୍ୱଳ ରାଜବଂଶ ଓ ଭୂମିର ସମ୍ମାନ ରକ୍ଷାପାଇଁ ସେ ଅଣ୍ଟାଭିଡ଼ିଥିଲେ । ନିଜର ବୀଚକ୍ଷଣ ବୁଦ୍ଧି ଓ

ରାଜନୀତିରେ ପଟୁତା ଯୋଗୁଁ ସେ ସ୍ୱାମୀଙ୍କୁ ଶାସନ କାର୍ଯ୍ୟରେ ସହାୟତା କରିବା ସହିତ ପ୍ରଜାମଙ୍ଗଳ ଓ ଜନକଲ୍ୟାଣରେ ବ୍ରତୀ ରହିଥିଲେ ।

ଗଡ଼ଜାତ ଶାସନ କାଳରେ ରାଣୀ ରତ୍ନପ୍ରଭା ଦେବୋତ୍ତର ଓ ସ୍ୱାସ୍ଥ୍ୟବିଭାଗର ପୂର୍ଣ୍ଣ ଦାୟିତ୍ୱ ଗ୍ରହଣ କରିଥିଲେ । ବିଭିନ୍ନ ଧର୍ମପୀଠର ଉନ୍ନତି ଓ ସୁପରିଚାଳନା ପ୍ରତି ସେ ଦୃଷ୍ଟି ଦେଇଥିଲେ । ରାଣୀ ବିଭିନ୍ନ ସମୟରେ ଦେବୋତ୍ତର ପ୍ରତିଷ୍ଠାନ ଓ ଖମାର ପରିଦର୍ଶନକରି ଦେବ ପୂଜାର ସମୟ ନିର୍ଘଣ୍ଟ, ଭୋଗର ମାନ ଏବଂ ପରିମାଣ, ଦେବୋତ୍ତର ସଂପତ୍ତିର ରକ୍ଷଣା-ବେକ୍ଷଣ ସଂପର୍କରେ ଅନୁଧ୍ୟାନକରି ସଠିକ ପଦକ୍ଷେପ ନେଉଥିଲେ । ନାରୀ ଶିକ୍ଷା, ନାରୀ ସ୍ୱାଧୀନତା ଓ ନାରୀ କଲ୍ୟାଣ ଉପରେ ଗୁରୁତ୍ୱ ଦେବାସହିତ ସ୍ୱାସ୍ଥ୍ୟ ଓ ପରିମଳ ବ୍ୟବସ୍ଥାର ସୁପରିଚାଳନା ଉପରେ ସେ ସଜାଗ ଦୃଷ୍ଟି ରଖିଥିଲେ । ମହିଳା ଡ଼ାକ୍ତରଖାନା ପ୍ରତିଷ୍ଠା, ପ୍ରସୂତିଗୃହ ଓ ମାତୃମଙ୍ଗଳ କେନ୍ଦ୍ରମାନ ମଧ୍ୟ ସେ ପ୍ରତିଷ୍ଠା କରିଥିଲେ । ରାଣୀ ରତ୍ନପ୍ରଭା ସ୍କାଉଟ୍-ଗାଇଡ୍‌ର ଜଣେ ସକ୍ରୀୟ ସଭ୍ୟାଥିଲେ । ରତ୍ନପ୍ରଭା ଏହି ସ୍କାଉଟ୍-ଗାଇଡ୍‌ର ବିଭିନ୍ନ ଅଧିବେଶନ ଓ ସମ୍ମିଳନୀରେ ଯୋଗଦେବାକୁଯାଇ ବିଭିନ୍ନ ସମୟରେ ବିଦେଶଯାତ୍ରାକରି ସ୍କାଉଟ-ଗାଇଡ୍ ସଂପର୍କରେ ଅଭୂତପୂର୍ବ ଜ୍ଞାନଲାଭ କରିଥିଲେ । ରାଣୀ ରତ୍ନପ୍ରଭା ଢେଙ୍କାନାଳରେ ପ୍ରଥମେ ବୟେଜ୍ ସ୍କାଉଟ୍ ଏବଂ ଗାର୍ଲସ୍ ଗାଇଡ୍‌ର ପ୍ରଚଳନ କରାଇଥିଲେ । ସେ ବହୁବାର ସ୍କାଉଟ୍-ଗାଇଡ୍‌ର ପ୍ରତିନିଧିତ୍ୱ କରି କଲିକତା, ହଲାଣ୍ଡ ଆଦି ଠାରେ ଅନୁଷ୍ଠିତ ସ୍କାଉଟ୍-ଗାଇଡ୍ ସମ୍ମେଳନରେ ଯୋଗଦାନ କରି ଉଚ୍ଚ ପ୍ରଶଂସିତ ହୋଇଥିଲେ । ସ୍ୱାଧୀନତା ପରବର୍ତ୍ତୀ ସମୟରେ ଗଣତାନ୍ତ୍ରିକ ଶାସନ ବ୍ୟବସ୍ଥାରେ ରାଣୀ ଢେଙ୍କାନାଳରୁ ତିନିଥର ବିଧାୟିକା ରୂପେ ବିଧାନସଭାକୁ ନିର୍ବାଚିତ ମଧ୍ୟ ହୋଇଥିଲେ । ରତ୍ନପ୍ରଭା ସର୍ବପ୍ରଥମେ ୧୯୫୭ ମସିହାରେ କାମାକ୍ଷା ନଗର ନିର୍ବାଚନମଣ୍ଡଳୀରୁ ଓଡ଼ିଶା ବିଧାନସଭାକୁ ବିଧାୟିକାରୂପେ ନିର୍ବାଚିତା ହୋଇଥିଲେ । ପରେ ୧୯୬୧ ମସିହା ଏବଂ ୧୯୬୭ ମସିହାରେ ସେ ଲଗାତର ଦୁଇଥର ଢେଙ୍କାନାଳ ନିର୍ବାଚନ ମଣ୍ଡଳୀରୁ ବିଧାୟିକା ନିର୍ବାଚିତା ହୋଇଥିଲେ । ରତ୍ନପ୍ରଭାଥିଲେ ଜଣେ ନିଃସ୍ୱାର୍ଥପର ସେବିକା ଓ ମହତ୍ ଚରିତ୍ର ସମ୍ପର୍ଣ୍ଣା ମହୀୟସୀ ମହିଳା । ପଦ-ପଦବୀର ମୋହ ଓ ଲାଳସାଠାରୁ ସେ ଥିଲେ ବହୁଦୂରରେ । ଏପରିକି ନିଜଭାଇ ରାଜେନ୍ଦ୍ର ନାରାୟଣ ସିଂହଦେଓଙ୍କମୁଖ୍ୟମନ୍ତ୍ରୀତ୍ୱ କାଳରେ ସେ ମନ୍ତ୍ରୀପଦକୁ ତୁଚ୍ଛ ମନେକରି ଜଣେ ସାଧାରଣ ବିଧାୟିକାରୂପେ ଜନସାଧାରଣଙ୍କ ସେବା କରିଥିଲେ । ରାଜପ୍ରାଚୁର୍ଯ୍ୟର ଅହମିକା ଓ ଭ୍ରାନ୍ତି ତାଙ୍କୁ ସ୍ପର୍ଶ କରିପାରିନଥିଲା । ରତ୍ନପ୍ରଭା ପ୍ରକୃତରେଥିଲେ ନାରୀ ଜଗତର

ଅମୂଲ୍ୟରନ୍ । ସେ-ଏକାଧାରରେ ଥିଲେ ଜଣେ ସୁଶାସିକା, ସମାଜ ସେବିକା, ଧର୍ମପ୍ରାଣା, ସୁ-ଲେଖିକା ବିଦୂଷୀ ମହିଳା ଓ ପ୍ରଜାବତ୍ସଳା ।ଲୋକମୁଖରେ ସେ ରାଜମାତା ରନ୍ନପ୍ରଭାରୂପେ ବନ୍ଦିତା ହେଲେହେଁ; ଢେଙ୍କାନାଳବାସୀଙ୍କ ହୃଦୟରେ ସେ ଜଣେ ଅମୃତମୟୀ ମା'ର ସ୍ଥାନ ଲାଭକରିପାରିଥିଲେ । ସତେ ଯେପରି ସେ ସାକ୍ଷାତ ମା' ଅନ୍ନପୂର୍ଣ୍ଣା-ଲକ୍ଷ୍ମୀ ସଦୃଶା । ରନ୍ନପ୍ରଭାଙ୍କ ପ୍ରତିଭାର ସର୍ବଶ୍ରେଷ୍ଠ ନିଦର୍ଶନ ହେଲା- ତାଙ୍କର ସାରସ୍ୱତ ପ୍ରଭା ଓ ପ୍ରତିଭା । ନିଜର ସାରସ୍ୱତ ପ୍ରତିଭାର ନିଦର୍ଶନ ସ୍ୱରୂପ ସେ ଦୁଇଖଣ୍ଡି ପୁସ୍ତକ ରଚନା କରିଯାଇଛନ୍ତି । ତାଙ୍କର 'ଗାର୍ଲସ୍ ଗାଇଡ୍ ଶିକ୍ଷା' ଏବଂ ନିଜର ଆତ୍ମଜୀବନୀ '୧୯୦୯ ମସିହାରୁ ଏପର୍ଯ୍ୟନ୍ତ' ଗ୍ରନ୍ଥ ଦୁଇଟି ଏକ ଏକ ଅମଳିନ କୃତି । 'ଗାର୍ଲସ୍ ଗାଇଡ୍ ଶିକ୍ଷା' ପୁସ୍ତକଟିରେ ରନ୍ନପ୍ରଭାଙ୍କର ଗଭୀର ଜ୍ଞାନ ଓ ଅନୁଭବର ପରିପ୍ରକାଶ ଘଟିଛି । ସ୍କାଉଟ୍-ଗାଇଡ୍ ସଂପର୍କୀତ ଏହା ଏକ ପ୍ରାମାଣିକ ଗ୍ରନ୍ଥ କହିଲେ ଅତ୍ୟୁକ୍ତି ହେବନାହିଁ ।

'୧୯୦୯ ରୁ ଏପର୍ଯ୍ୟନ୍ତ' ପୁସ୍ତକଟି ରନ୍ନପ୍ରଭାଙ୍କର ଆତ୍ମଜୀବନୀ ଗ୍ରନ୍ଥ । ଏହି ଗ୍ରନ୍ଥଟି ୧୯୯୭ ମସିହାରେ ପ୍ରକାଶିତ ହୋଇଛି । ଏହି ଗ୍ରନ୍ଥଟିରେ ନିଜ ଜୀବନର ବହୁ ଅଙ୍ଗନିଭା ଘଟଣା, କାହାଣୀ, ଢେଙ୍କାନାଳ ରାଜତନ୍ତ୍ର ଓ ଶାସନ ବ୍ୟବସ୍ଥାର ଚିତ୍ର ସହିତ ବିଭିନ୍ନ ଦେଶ ଓ ସ୍ଥାନକୁ ଭ୍ରମଣ ଜନିତ ଅନୁଭବ-ଅନୁଭୂତିର ପରିପ୍ରକାଶ କରିଛନ୍ତି । ଏ ଗ୍ରନ୍ଥରେ ଲେଖକ ନିଜର ବାଲ୍ୟସ୍ମୃତି, ଖଡ୍ଡେଇକଳାର ପ୍ରାକୃତିକ ପରିବେଶ, ନୈସର୍ଗିକ ଶୋଭା ସଂପଦ, ଖଡ୍ଡେଇକଳାର କଳା, ସଂସ୍କୃତି ଓ ଇତିହାସ ସଂପର୍କରେ ଆଲୋକପାତ କରିଛନ୍ତି । ଏହା ସହିତ ଢେଙ୍କାନାଳ ଗଡ଼ଜାତର ଶାସନ ବ୍ୟବସ୍ଥା, ମୋଗଲବନ୍ଦୀ ଅଞ୍ଚଳରେ ବ୍ରିଟିଶ୍ ରାଜ୍ ର ନିର୍ମମ, ନିଷ୍ଠୁର, ଅତ୍ୟାଚାର ଓ ଲୋକମାନଙ୍କର ଦୁଃଖ-ଦୁର୍ଦ୍ଦଶାର ଚିତ୍ର ପ୍ରକଟନ କରିଛନ୍ତି । ରାଣୀ ରନ୍ନପ୍ରଭା ଅତି ସଚେତନ ମାନସରେ ସ୍ୱାମୀ ଶଙ୍କର ପ୍ରତାପଙ୍କର ସ୍ୱେଚ୍ଛାଚାରୀ-କଳଙ୍କିତ ଶାସନକୁ ସୁ-ଶାସନର ରଙ୍ଗ ଦେଇ ତାଙ୍କୁ ଜଣେ ଆଦର୍ଶ ସ୍ଥାନୀୟ ରାଜା ଓ ତୁଙ୍ଗ ବ୍ୟକ୍ତିତ୍ୱର ଅଧିକାରୀ ରୂପେ ସୂଚିତ କରିଛନ୍ତି । ଏହିପରିକି ଶ୍ୱଶୁର ସୁରପ୍ରତାପ ମହୀନ୍ଦ୍ର ବାହାଦୂରଙ୍କ ଯଶ ଓ ଗୁଣଗାନ ମଧ ଏ ଗ୍ରନ୍ଥରେ କରାଯାଇଛି । ଢେଙ୍କାନାଳ ଗଡ଼ଜାତର ଅନ୍ଧାରୀ ଶାସନ ଏବଂ ୧୯୩୮ ମସିହାରେ ମୁଣ୍ଡଟେକି ଉଠିଥିବା ପ୍ରଜା ବିଦ୍ରୋହ ଓ ପ୍ରଜା ଆନ୍ଦୋଳନରେ ରାଜାକର୍ମଚାରୀ ଓ ପୋଲିସ୍ ବାହିନୀ ଯେଉଁ ଅକଥନୀୟ, ଅମାନନୀୟ ଦମନଲୀଳା ଓ ଅତ୍ୟାଚାର କରିଥିଲେ ସେହି କଳଙ୍କରୁ ରାଣୀ ନିଜ ସ୍ୱାମୀଙ୍କ ଶାସନକାଳକୁ କଳଙ୍କ ମୁକ୍ତ କରିବାର ପ୍ରୟାସ ଏହି ଗ୍ରନ୍ଥରେ କରିଛନ୍ତି । ଏହି ଗ୍ରନ୍ଥରେ ଲେଖିକା ଢେଙ୍କାନାଳ ରାଜବଂଶର ବିସ୍ତୃତ ପରିଚୟ

ଦେବା ସହିତ ଶାସନ ପ୍ରଣାଳୀ ସଂପର୍କରେ ଆଲୋକପାତ ମଧକରିଛନ୍ତି । ଏହି ପୂଣ୍ୟାତ୍ମା ମହୀୟସୀ ମହିଳା, ଢେଙ୍କାନାଳ ମାଟିର ଅପୂର୍ବ ନାରୀରତ୍ନ ରାଣୀ ରତ୍ନପ୍ରଭାଙ୍କର ୨୦୦୧ ମସିହା ମେ' ମାସ ୭ ତାରିଖରେ ବୈଶାଖ ପୂର୍ଣ୍ଣିମା ତିଥିରେ ମହାପ୍ରୟାଣ ଘଟିଥିଲା । କରୁଣାମୟୀ ମାତୃସ୍ୱରୂପା ରତ୍ନପ୍ରଭାଙ୍କର ମରଶରୀର ମହାକାଳର କରାଳ ଗର୍ଭରେ ଲୀନ ହୋଇଥିଲେ ହେଁ; ତାଙ୍କର ମହାନ ପବିତ୍ର ଆତ୍ମା କାଳର କପୋଳରେ ଏକ ଉଜ୍ଜ୍ୱଳ ବହ୍ନିଟୀକାରୂପେ ଏବେବି ଦେଦୀପ୍ୟମାନ ।

**ହୃଷୀକେଶ ମହାପାତ୍ର (୧୯୧୦- ) :**

କବି ହୃଷୀକେଶ ମହାପାତ୍ରଙ୍କ ଜନ୍ମ ୧୯୧୦ ମସିହା ଜୁନ୍ ମାସ ୧୬ ତାରିଖରେ ଢେଙ୍କାନାଳ ଜିଲ୍ଲାର ଭଗୀରଥିପୁର ଶାସନରେ । ତାଙ୍କ ପିତା ଦିବାକର ମହାପାତ୍ର ଓ ମାତା ପଦ୍ମାବତୀ ଦେବୀ । ହୃଷୀକେଶ ଜଣେ ଆଦର୍ଶ ଶିକ୍ଷକ ଥିଲେ । ଶିକ୍ଷକତା ସହିତ କାବ୍ୟ-କବିତା ରଚନାରେମଧ ସେ ମନୋନିବେଶ କରିଥିଲେ । ତାଙ୍କ ରଚିତ କବିତା କୃତି ହେଲା- ବଣମଲ୍ଲୀ ଏବଂ ପରିବେଶ କୋଇଲି । ଏହାସହିତ ସେ 'ବନ୍ଦିନୀ' ନାମରେ ଏକ କାବ୍ୟ ମଧ ରଚନା କରିଯାଇଛନ୍ତି । ତାଙ୍କ 'ହୃଷୀକେଶ ଗ୍ରନ୍ଥାବଳୀ' ଢେଙ୍କାନାଳ ସାହିତ୍ୟର ଏକ ଅମୂଲ୍ୟ ଗ୍ରନ୍ଥ ।

**ଶ୍ରୀ ଯୁଧିଷ୍ଠିର ମିଶ୍ର (୧୯୧୧-୧୯୭୧):**

ଯୁଧିଷ୍ଠିର ମିଶ୍ରଙ୍କର ଜନ୍ମ ୧୯୧୧ ମସିହାରେ ଢେଙ୍କାନାଳ ଜିଲ୍ଲାର ଗୋବିନ୍ଦ ବିଦ୍ୟାଧରପୁର, ମାର୍ଥାପୁର ଠାରେ । ତାଙ୍କ ପିତାଥିଲେ- ଲକ୍ଷ୍ମଣ ମିଶ୍ର । ଛାତ୍ରାବସ୍ଥାରୁ ଯୁଧିଷ୍ଠିରଙ୍କର ସାଂରସତ ପ୍ରତିଭାର ବୀକଚ ବିକାଶ ଘଟିଥିଲା । ଉଭୟ ନାଟକ ଓ କାବ୍ୟ-କବିତା ରଚନାରେ ସେ ହାତ ଦେଇଥିଲେ । ହାଇସ୍କୁଲ୍ ଶିକ୍ଷା ସମାପ୍ତି ପରେ ଯୁଧିଷ୍ଠିର ଶିକ୍ଷକ ଚାକିରୀରେ ଯୋଗଦେଇଥିଲେ । ଶିକ୍ଷକତାସହ ସେ ବିଭିନ୍ନ ଯାତ୍ରା ଦଳରେ ଯୋଗଦେଇ ଅଭିନୟ ମଧ କରୁଥିଲେ । ନାଟକ ଅଭିନୟ ସହିତ ସେ ଅନେକ ଗୁଡ଼ିଏ ଯାତ୍ରା ନାଟକ ମଧ ରଚନା କରିଥିଲେ । ତାଙ୍କ ରଚିତ ଯାତ୍ରାନାଟକ ଗୁଡ଼ିକ ହେଲା- ବୀରମାଟି, ଜୟଶଙ୍କ, ଭକ୍ତ ତୁଳସୀ ଦାସ, ମାତୃ ହତ୍ୟା । ଏହିସବୁ ନାଟକ ଗୁଡ଼ିକ ସହିତ ସେ ଅନେକ ଗୁଡ଼ିଏ କାବ୍ୟକୃତି ମଧ ରଚନା କରିଯାଇଛନ୍ତି । ସେଗୁଡ଼ିକ ହେଲା- ପୁଣ୍ୟପରୀକ୍ଷା, ବୃନ୍ଦାବତୀ, ସ୍ୱର୍ଗପୁଷ୍ପ, ଶ୍ରୀମଞ୍ଜରୀ, ବସନ୍ତରାସ, ଶିଶୁଭକ୍ତ, ଅନ୍ତିମଯାତ୍ରା, ଭୂଦାନ ପ୍ରଭୃତି ।

**ପୁଣ୍ୟପରୀକ୍ଷା :** ଏହା ଏକ ପୌରାଣିକ କାବ୍ୟକୃତି । ଏହି କାବ୍ୟଟି ୨୦ ଟି ଛାନ୍ଦ ବିଶିଷ୍ଟ । ଅଯୋଧ୍ୟା ନରେଶ ରାଜା ହରିଶ୍ଚନ୍ଦ୍ରଙ୍କର ସତ୍ୟନିଷ୍ଠା ଓ ଦାନଶୀଳତାର ଯେଉଁ କଠୋର ପରୀକ୍ଷା ମହର୍ଷି ବିଶ୍ୱାମିତ୍ର କରାଇଥିଲେ, ସେହି ପ୍ରସଙ୍ଗ ହିଁ ଏହି କାବ୍ୟର ମୁଖ୍ୟ ବିଷୟ ବସ୍ତୁ । ରାଜା ହରିଶ୍ଚନ୍ଦ୍ର ନିଜର ଦାନଶୀଳତାର ପରୀକ୍ଷା ଦେଇ ସତ୍ୟରକ୍ଷାପାଇଁ ନିଜର ରାଜ୍ୟ, ସିଂହାସନ, ରାଜମୁକୁଟ, ପତ୍ନୀ, ପୁତ୍ର ସବୁକିଛିକୁ ବିସର୍ଜନ କରି ପରିଶେଷରେ ଜୀବନ ବଞ୍ଚାଇବାପାଇଁ ଶ୍ମଶାନ ରକ୍ଷକ ଚଣ୍ଡାଳର କାର୍ଯ୍ୟ କରିଥିଲେ । ଶ୍ମଶାନ ରକ୍ଷକ ଥିବାସମୟରେ ପତ୍ନୀ ଶୈବ୍ୟା ଏବଂ ସର୍ପଦଂଶିତ ପୁତ୍ର ରୋହିତଙ୍କ ସହିତ ରାଜା ହରିଶ୍ଚନ୍ଦ୍ରଙ୍କର ସାକ୍ଷାତ ହୋଇଛି । ରାଜା ହରିଶ୍ଚନ୍ଦ୍ର ସତ୍ୟ ଓ ଧର୍ମର ପୁଣ୍ୟ ପରୀକ୍ଷାରେ ଉତ୍ତୀର୍ଣ୍ଣହୋଇ ପରିଶେଷରେ ପୁତ୍ରର ଜୀବନ ଫେରି ପାଇବା ସହିତ ପତ୍ନୀ, ରାଜ୍ୟ ଏବଂ ରାଜମୁକୁଟ ଫେରି ପାଇଥିଲେ । ଏହି ପ୍ରସଙ୍ଗକୁ କାବ୍ୟରୂପ ଦେଇ କବି ଲେଖିଛନ୍ତି-

"ଦାସତ୍ୱରୁ ମୁକ୍ତି, ଲଭିଲେ ଦମ୍ପତି
ରାଜ୍ୟଭାର ସୁ-ପ୍ରାପତ
ସର୍ଗୁଁ ପୁଷ୍ପ ବୃଷ୍ଟି, ପୀୟୁଷ ସମଷ୍ଟି
ସୃଷ୍ଟି ହେଲା ବିସ୍ତାରିତ ।" (୧)

ଏହି କାବ୍ୟଟି ତା'ର ସାଙ୍ଗୀତିକ ଆବେଦନ କ୍ଷମତା ସହିତ ବିଭିନ୍ନ ରାଗ-ରାଗିଣୀ ଓ ଛନ୍ଦର ଶୋଭନ ସମାବେଶରେ ମହାର୍ଘ ମଣ୍ଡିତ ହୋଇ ପାରଛି ।

**ବୃନ୍ଦାବତୀ :** ଏହା ମଧ୍ୟ ଏକ ପୌରାଣିକ କାବ୍ୟ । ଏହି କାବ୍ୟଟି ରୀତି ଯୁଗୀୟ କାବ୍ୟ ଶୈଳୀରେ 'ବ' ଆଦ୍ୟ ଅନୁପ୍ରାସ ନିୟମରେ ବଙ୍ଗଳାଶ୍ରୀ ରାଗରେ ରଚିତ । ଏହି କାବ୍ୟଟି ସର୍ଗବନ୍ଧହୀନ ବା ଛାନ୍ଦ ବିହୀନ । କାବ୍ୟାରମ୍ଭରେ କବି ପ୍ରାକୃତିକ ସୌନ୍ଦର୍ଯ୍ୟର କମନୀୟ ଶୋଭାର ଚିତ୍ରଣ ସହିତ ସିନ୍ଧୁ ପୁତ୍ର ଜଳନ୍ଧରଙ୍କ ସହିତ 'ବୃନ୍ଦାବତୀ' ଙ୍କ ବିବାହ ପ୍ରସଙ୍ଗ ବର୍ଣ୍ଣନା କରିଛନ୍ତି । ଦୈତ୍ୟରାଜ ଜଳନ୍ଧର କଠୋର ତପସ୍ୟା କରି ବ୍ରହ୍ମାଙ୍କଠାରୁ ତ୍ରିପୁର ବିଜୟୀ ହେବାର ବର ଲାଭ କରିଛି । ଜଳନ୍ଧରର ପ୍ରକୋପରେ ଦେବତାମାନେ ବିଷ୍ଣୁଙ୍କର ଶରଣାପନ୍ନ ହୋଇଛନ୍ତି । ଭଗବାନ ବିଷ୍ଣୁ ଜଳନ୍ଧର ସହ ଯୁଦ୍ଧକରି ପରାସ୍ତ ହୋଇଛନ୍ତି । ବ୍ରହ୍ମାବରରେ ବଳୀୟାନ ଜଳନ୍ଧର ଏହାପରେ ମହାଦେବଶିବଙ୍କ ସହିତ ଯୁଦ୍ଧକରି ତାଙ୍କୁ ମଧ୍ୟ ପରାସ୍ତ କରିଛି । ସ୍ୱୟଂ ମହାଦେବ ଏହାପରେ ବ୍ରହ୍ମାଙ୍କର ଶରଣାପନ୍ନ ହୋଇ ଅସୁରନିଧନ ପାଇଁ ଅନୁରୋଧ କରିଛନ୍ତି । ବ୍ରହ୍ମା ମହାଦେବଙ୍କୁ ଦିବ୍ୟଶକ୍ତି ଓ ଦିବ୍ୟାସ୍ତ୍ର ପ୍ରଦାନ କରିଛନ୍ତି । ଭଗବାନ ବିଷ୍ଣୁ ମଧ୍ୟ ଶିବଙ୍କୁ ନିଜର ସୁଦର୍ଶନ ଚକ୍ର ଦାନ କରିଛନ୍ତି ।

ତଥାପି ଶିବ ଜଳନ୍ଧରଙ୍କୁ ଯୁଦ୍ଧରେ ପରାସ୍ତ ଓ ନିହତ କରିପାରିନାହାନ୍ତି । ଭଗବାନ ବିଷ୍ଣୁ ଅନୁଭବ କରିଛନ୍ତି ଜଳନ୍ଧର-ପତ୍ନୀ 'ବୃନ୍ଦା'ଙ୍କର ସତୀତ୍ୱ ହିଁ ଜଳନ୍ଧରର ଜୀବନ ରକ୍ଷା କରିବାକୁ ସମର୍ଥ ହୋଇପାରିଛି । ତେଣୁ ଜଳନ୍ଧର କୁ ବଧ କରିବାପାଇଁ ଭଗବାନ ବିଷ୍ଣୁ ମାୟା ରୂପଧାରଣ କରି ଜଳନ୍ଧର ବେଶରେ ବୃନ୍ଦାଙ୍କ ସତୀତ୍ୱ ହରଣ କରିଛନ୍ତି । କବିଙ୍କ ଭାଷାରେ -

"ବୃନ୍ଦା ପ୍ରେମେ ହରି ଦିବସ ଶର୍ବରୀ
ମଜ୍ଜି ସତୀତ୍ୱ କରିଲେ ନଷ୍ଟ,
ବିପୁଳାଧୀପତି ଜଳନ୍ଧର ପ୍ରାଣ
ହୋଇଲା ଏବେ ସଙ୍କଟ ।"(୨)

'ବୃନ୍ଦା' ଯେତେବେଳେ ଜାଣିଲେ ଭଗବାନ ବିଷ୍ଣୁ ମାୟାଜଳନ୍ଧର ରୂପ ଧରି ତାଙ୍କ ସତୀତ୍ୱ ହରଣ କରିଛନ୍ତି, ସେତେବେଳେ ସେ ବିଷ୍ଣୁଙ୍କୁ ଭର୍ତ୍ସନା କରିଛନ୍ତି । ବିନାଦୋଷରେ ବିଷ୍ଣୁ କାହିଁକି ତାଙ୍କୁ ଅସତୀ, କଳଙ୍କିନୀ ସଜାଇଲେ ସେ ପ୍ରଶ୍ନ 'ବୃନ୍ଦା' ବିଷ୍ଣୁଙ୍କୁ କରିଛନ୍ତି । ଯା' ଫଳରେ ଭଗବାନ ବିଷ୍ଣୁ ବୃନ୍ଦାବତୀଙ୍କୁ ନିଜ ସହିତ ପୂଜିତ ହେବାର ବର ପ୍ରଦାନ କରିଛନ୍ତି । ବୃନ୍ଦାବତୀ ସମଗ୍ର ବିଶ୍ୱରେ ତୁଳସୀ ରୂପରେ ବିଷ୍ଣୁଙ୍କ ସହିତ ପୂଜାପାଇ ଅୟୁତ ସମ୍ମାନ ଓ ପବିତ୍ରତା ଲାଭକରିଛନ୍ତି । ଏହି ପୌରାଣିକ କଥାବସ୍ତୁକୁ କବି ଅତି କାବ୍ୟିକ ଓ ରସମୟ ରୂପରେ ଏହି କାବ୍ୟରେ ଅଭିବ୍ୟକ୍ତ କରିଛନ୍ତି ।

**ସ୍ୱର୍ଗପୁଷ୍ପ :** ଏହା ୧୩ ଗୋଟି ଛାନ୍ଦ ବିଶିଷ୍ଟ ଏକ ପୌରାଣିକ କାବ୍ୟ । ରୀତିଯୁଗୀୟ କାବ୍ୟଶୈଳୀରେ ବିଭିନ୍ନ ରାଗ, ରାଗିଣୀ, ଛନ୍ଦ ଓ ଅଳଂକାରର ଶୋଭନ ସମାବେଶରେ ଏହି କାବ୍ୟଟି ବେଶ୍ ମନୋରମ ଓ ଆକର୍ଷଣୀୟ ହୋଇପାରିଛି । ତ୍ରିପୁରବିଜୟୀ ନାରକାସୁରର ପ୍ରକୋପ ଓ ଅତ୍ୟାଚାର ରୁ ସ୍ୱର୍ଗର ଦେବତାମାନଙ୍କୁ ରକ୍ଷାକରିବାକୁ ଯାଇ ଭଗବାନ କୃଷ୍ଣ ନାରକାସୁରକୁ ବଧ କରିଛନ୍ତି । ପ୍ରତିଦାନ ସ୍ୱରୂପ ଦେବରାଜ ଇନ୍ଦ୍ର ସ୍ୱର୍ଗର ଦୁର୍ଲ୍ଲଭ ପୁଷ୍ପ 'ପାରିଜାତ' କୁ କୃଷ୍ଣ ଏବଂ ରୁକ୍ମିଣୀଙ୍କୁ ଅର୍ପଣ କରିଛନ୍ତି । ସତ୍ୟଭାମା ଏକଥା ଜାଣିପାରି କୃଷ୍ଣଙ୍କ ଉପରେ ରୋଷ ପ୍ରକଟନ ପୂର୍ବକ ସ୍ୱର୍ଗର ପାରିଜାତ ପୁଷ୍ପ ଆଣିଦେବାପାଇଁ କହିଛନ୍ତି । କୃଷ୍ଣ ସ୍ୱର୍ଗପୁରୀରୁ ପାରିଜାତ ପୁଷ୍ପ ସହ ପାରିଜାତ ବୃକ୍ଷକୁ ଉପାଡ଼ି ଆଣିବାକୁ ଉଦ୍ୟମ କରିଛନ୍ତି । ମାତ୍ର- ଦେବତାମାନେ ପାରିଜାତ ବୃକ୍ଷ ବଦଳରେ ପାରିଜାତ ପୁଷ୍ପ ନେବାପାଇଁ କୃଷ୍ଣଙ୍କୁ ଅନୁରୋଧ କରିଛନ୍ତି । ମାତ୍ର- ସାତଦିନ ପାଇଁ ଏହି ଦିବ୍ୟ ବୃକ୍ଷ ପାରିଜାତ କୁ ମର୍ତ୍ତ୍ୟକୁ ନେବାପାଇଁ କହି କୃଷ୍ଣ ପାରଜାତ ବୃକ୍ଷଧରି ମର୍ତ୍ତ୍ୟକୁ

ପ୍ରତ୍ୟାବର୍ତ୍ତନ କରିଛନ୍ତି । ଏହି ପୌରାଣିକ କଥାବସ୍ତୁଟିକୁ ଅତି ରମଣୀୟ ଓ କାବ୍ୟିକ ରୂପରେ କବି ଏ କାବ୍ୟରେ ଉପସ୍ଥାପନା କରିଛନ୍ତି ।

**ଶ୍ରୀମଞ୍ଜରୀ :** ଏହା ମଧ୍ୟ ଏକ ପୌରାଣିକ କାବ୍ୟସୃଷ୍ଟି । ଏହା ୧୫ ଗୋଟି ଛାନ୍ଦ ବିଶିଷ୍ଟ । ଏହି କାବ୍ୟରେ ଦ୍ୱାରକାଧୀଶ ଶ୍ରୀକୃଷ୍ଣଙ୍କର ଅଷ୍ଟପାଟବଂଶୀଙ୍କ ମଧ୍ୟରୁ ଦେବୀ ସତ୍ୟଭାମାଙ୍କର ଗର୍ବଗଂଜନ ପ୍ରସଙ୍ଗ ସ୍ଥାନିତ ହୋଇଛି । ସତ୍ୟଭାମାଙ୍କର ଗର୍ବଗଂଜନ ସହିତ 'ତୁଳସୀ' ର ମହନୀୟତା ଏଥିରେ ପ୍ରକଟିତ ହୋଇଛି ।

**ବସନ୍ତରାସ :** ଏହା ଆଠ ଗୋଟି ଛାନ୍ଦ ବିଶିଷ୍ଟ ଏକ ବୈଷ୍ଣବୀୟ କାବ୍ୟ । ବୈଷ୍ଣବ ଧର୍ମ-ଦର୍ଶନର ରାଧା-କୃଷ୍ଣ ପ୍ରେମ ତତ୍ତ୍ୱ ଓ ଅପ୍ରାକୃତ ପ୍ରେମଲୀଳାର ମନୋଜ୍ଞ ବର୍ଣ୍ଣନ ଏ କାବ୍ୟରେ କରାଯାଇଛି । ଏ କାବ୍ୟଟିରେ କୃଷ୍ଣଙ୍କ ପ୍ରତି ଅଷ୍ଟପାଟବଂଶୀଙ୍କର ପ୍ରେମ-ପ୍ରୀତି ଅପେକ୍ଷା ରାଧାଙ୍କର ଅଫୁରନ୍ତ ପ୍ରେମନିଷ୍ଠା ଓ ବିରଳ ତ୍ୟାଗର ଚିତ୍ରଣ କରାଯାଇଛି ।

**ଶିଶୁଭକ୍ତ :** ଏହି କାବ୍ୟଟି ୧୧ ଗୋଟି ଛାନ୍ଦ ବିଶିଷ୍ଟ । ରାଜା ଉତ୍ତାନପାଦ ଓ ରାଣୀ ସୁନୀତିଙ୍କ ପୁତ୍ର 'ଧ୍ରୁବ'ର ଚରମ ବିଷ୍ଣୁଭକ୍ତି, କଠୋର ତପସାଧନା ଓ ଭଗବତ୍ ପ୍ରାପ୍ତି ପ୍ରସଙ୍ଗ ହିଁ ଏ କାବ୍ୟର ମୁଖ୍ୟ ବିଷୟ ବସ୍ତୁ ।

**ଅନ୍ତିମଯାତ୍ରା :** ଏହି କାବ୍ୟଟି ମହାଭାରତର ପୃଷ୍ଠଭୂମି ଉପରେ ରଚିତ । 'ମହାଭାରତ'ର ସ୍ୱର୍ଗାରୋହଣ ପର୍ବର କଥାବସ୍ତୁ କୁ ଅବଲମ୍ବନକରି କବି ଏହି କାବ୍ୟଟି ରଚନା କରିଛନ୍ତି । ଏହି କାବ୍ୟଟି ୧୧ ଗୋଟି ଛାନ୍ଦ ବିଶିଷ୍ଟ ଏବଂ 'ଅ' ଅନୁପ୍ରାସ ଆଦ୍ୟଅକ୍ଷର ନିୟମରେ ରଚିତ ।

**ଭୂଦାନ :** ଏହା ଏକ ସମାଜ ସଚେତନଧର୍ମୀ କ୍ରାନ୍ତିକାରୀ କଳା ସୃଷ୍ଟି । ସନ୍ଥ ବିନୋବାଭାବେ ଜୀ ଙ୍କର 'ଭୂଦାନ' ଆନ୍ଦୋଳନର ପୃଷ୍ଠଭୂମି ଉପରେ ଏହି କ୍ଷୁଦ୍ର କାବ୍ୟଟି ରଚିତ । ଏହି କାବ୍ୟଟି ୧୧ ଗୋଟି ଛାନ୍ଦ ବିଶିଷ୍ଟ । ଏଥିରେ କବିଙ୍କର ଜାତୀୟବାଦୀ ଚିନ୍ତାମାନସ ଓ ସମାଜବାଦୀ ଆନ୍ଦୋଳନର ସ୍ୱର ସ୍ୱଷ୍ଟରୂପେ ପ୍ରକଟିତ । ଏହିସବୁ କାବ୍ୟକୃତି ଗୁଡ଼ିକ ସହିତ କବି ଅନେକ ଭଜନ, ଜଣାଣ, ଚଉତିଶାମାନ ରଚନା କରିଯାଇଛନ୍ତି । ତାଙ୍କର 'ସଦାଶିବ ଚଉତିଶା' ଏବଂ 'ମହାମାୟୀ ଚଉତିଶା' ଦୁଇଟି ଓଡ଼ିଆ ଚଉତିଶା ସାହିତ୍ୟର ଏକ ଏକ ଉଜ୍ଜ୍ୱଳ ସୃଷ୍ଟି ।

୧୯୭୧ ମସିହା ଡ଼ିସେମ୍ବର ମାସ ୨ ତାରିଖରେ କବି ଯୁଧିଷ୍ଠୀର ମିଶ୍ର ଇହଲୀଳା ସମ୍ବରଣ କରିଥିଲେ ।

## ବ୍ରଜକିଶୋର ଧଳ (୧୯୧୨- ):

ବ୍ରଜକିଶୋର ଧଳଙ୍କ ଜନ୍ମ ୧୯୧୨ ମସିହା ଏପ୍ରିଲ୍ ମାସ ୪ ତାରିଖରେ ଢେଙ୍କାନାଳ ଜିଲ୍ଲାର ଭାପୁରସ୍ଥ ଗଞ୍ଜେଇଡ଼ିହ ଗ୍ରାମରେ । ତାଙ୍କ ପିତାଙ୍କ ନାମ- ଭୋଳେଶ୍ୱର ଧଳ ଓ ମାତା- ଜହ୍ନଦେବୀ । ବ୍ରଜକିଶୋର ୧୯୨୯ ମସିହାରେ ଢେଙ୍କାନାଳ ସ୍ଥିତ ବି.ବି. ହାଇସ୍କୁଲ୍ ରୁ ମ୍ୟାଟ୍ରିକ୍ୟୁଲେସନ୍ ପାଶ୍ ପରେ ୧୯୩୩ ମସିହା ବେଳକୁ ଢେଙ୍କାନାଳ ଷ୍ଟେଟ୍‌ର ପୋଲିସ ବିଭାଗରେ ଚାକିରୀ କରିଥିଲେ । ରାଜଦରବାର ଅଧୀନରେ ଚାକିରୀକରି ପୋଲିସ୍ ଜୁଲୁମ୍ ଓ ରାଜକୀୟ ସ୍ୱେଚ୍ଛାଚାରିତାକୁ ସେ ଅନୁଭବ କରି ପାରିଥିଲେ । ଯେଉଁଥିପାଇଁ ସେ ଢେଙ୍କାନାଳ ପ୍ରଜା ଆନ୍ଦୋଳନକୁ ସମର୍ଥନ ଜଣାଇଥିଲେ । ଏପରିକି ସେ ପୋଲିସ୍ ଚାକିରୀ ମଧ୍ୟ ଛାଡ଼ିଦେଇଥିଲେ । ୧୯୩୮ ମସିହାରେ ଢେଙ୍କାନାଳ ଗଡ଼ଜାତ ପ୍ରଜା ଆନ୍ଦୋଳନର ସେ ଜଣେ ସକ୍ରୀୟ କର୍ମୀମଧ ଥିଲେ । ଏହା ସହିତ ସେ ଭାରତୀୟ ସାଧିନତା ଓ ମୁକ୍ତି ଆନ୍ଦୋଳନରେ ମଧ ସକ୍ରୀୟ ଅଂଶ ଗ୍ରହଣ କରିଥିଲେ ।

ବ୍ରଜକିଶୋର ଜୀବନର ଅପରାହ୍ନରେ ନିଜ ଅଙ୍ଗେନିଭା ଘଟଣା ଓ ଅନୁଭବକୁ ନେଇ ଏକ ଆତ୍ମଜୀବନୀ ଗ୍ରନ୍ଥ- 'ଭୁଲିବୁନାହିଁ' ରଚନା କରିଯାଇଛନ୍ତି । ଏହି ଗ୍ରନ୍ଥଟି ସେ ୧୯୮୦ ମସିହା ବେଳକୁ ରଚନା କରିଥିଲେ । ଏହା ଲେଖକଙ୍କର ବ୍ୟକ୍ତିଗତ ଜୀବନ କାହାଣୀ ହେଲେହେଁ; ଏଥିରେ ତତ୍କାଳୀନ ଗଡ଼ଜାତ ରାଜାଙ୍କର ଅନ୍ଧାରୀ ଶାସନର ନିର୍ମମ-ନିଷ୍ଠୁର ଅତ୍ୟାଚାର ଓ କୁ-ଶାସନର ବାସ୍ତବଚିତ୍ର ପ୍ରକଟିତ ହୋଇଛି । ଲେଖକ ନିଜେ 'ଭୁଲିବୁନାହିଁ' ଗ୍ରନ୍ଥର ଅନୁକ୍ରମଣିକାରେ ଲେଖିଛନ୍ତି- "ଏହି ରଚନା ହେଉଛି- ନିର୍ମମ ଏକଛତ୍ରବାଦୀ ଶାସନର ଅଙ୍ଗନିଭା ଲହୁଲୁହ ବୋଳା ଅନୁଭୂତିର କାହାଣୀ "।(୩) କେବଳ ଢେଙ୍କାନାଳ ଗଡ଼ଜାତ ନୁହେଁ, ତିଗିରିଆ, ଦଶପଲ୍ଲା, ବଡ଼ମ୍ବା, ଆଠଗଡ଼, ଖଣ୍ଡପଡ଼ା, ନୟାଗଡ଼, ରଣପୁର, ହିନ୍ଦୋଳ, ସୋନପୁର ଆଦି ଗଡ଼ଜାତ ମାନଙ୍କରେ ଘଟିଥିବା ଅନ୍ଧାରୀ ଶାସନର କ୍ରୁରତା ଓ ଏହି କୁ-ଶାସନ, ଅନ୍ୟାୟ, ଅତ୍ୟାଚାର ବିରୁଦ୍ଧରେ ଗଢ଼ିଉଠିଥିବା ପ୍ରଜା ଆନ୍ଦୋଳନର ଚିତ୍ର ସହିତ ନିଜ ଅଙ୍ଗେନିଭା ଘଟଣା ଓ ଅନୁଭୂତିର ନିଛକ ବର୍ଣ୍ଣନା ଏଥିରେ ରହିଛି । ତତ୍କାଳୀନ ଗଡ଼ଜାତର ଶାସନ ବ୍ୟବସ୍ଥା, ଶିକ୍ଷାବ୍ୟବସ୍ଥା, ଭୂମି ଓ ଜଙ୍ଗଲ ଆଇନ୍, ଆଇନ୍ ବ୍ୟବସ୍ଥା ସହିତ ନିଷ୍ଠୁର ରାଜଦଣ୍ଡର ବହୁବିଧ ବ୍ୟବସ୍ଥାର ଚିତ୍ର ଏଥିରେ ପ୍ରକଟିତ । ବେଠି, ବେଗାରି, ଜୋରିମନା, ରସଦ, ମାଗଣ, ତ୍ରିଖଣ୍ଡି ମଜୁରା, ଶୂଳି, ନିଶ ଓପଡା, କୋରଡ଼ା ମାଡ଼, ଚଟାଣ ତଡ଼ା, ଗୃହଦାହ, ଲାଠି, ଚାବୁକ୍‌ପ୍ରହାର, ଜେଲ୍, ଗୁଳିଚାଳନା

ଓ ପାଶବିକ ଅତ୍ୟାଚାର ଆଦିର ଜୀବନ୍ତ ବର୍ଣ୍ଣନା ଏଥିରେ ରହିଛି । ଗଡ଼ଜାତର ଅନ୍ଧାରୀ ଶାସନ ବିରୁଦ୍ଧରେ ମୁଣ୍ଡଟେକି ଉଠିଥିବା ପ୍ରଜା ଆନ୍ଦୋଳନକୁ ରାଜ ଶକ୍ତି କିପରି ନିଷ୍ଠୁର ଭାବରେ ଦମନ କରିଛି, ତା'ର ଚିତ୍ର ମଧ୍ୟ ଏଥିରେ ପ୍ରକଟିତ । ଏହା ସହିତ ଭାରତୀୟ ସ୍ୱାଧିନତା ସଂଗ୍ରାମ ଓ ଜାତୀୟ ମୁକ୍ତି ଆନ୍ଦୋଳନର କତିପୟ ବୀରପୁରୁଷ, ସଂଗ୍ରାମୀ ମାନଙ୍କର ତ୍ୟାଗପୂତ ଜୀବନାଦର୍ଶ ଉପରେ ମଧ୍ୟ ଆଲୋକପାତ କରିଛନ୍ତି । ଏହି 'ଭୁଲିବୁନାହିଁ' ଅତ୍ମଜୀବନୀମୂଳକ ଗ୍ରନ୍ଥ ପାଇଁ ଲେଖକ ୧୯୮୯ ମସିହାରେ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଦ୍ୱାରା ସମ୍ମାନିତ ହୋଇଥିଲେ । ଏହି ଗ୍ରନ୍ଥଟି ଢେଙ୍କାନାଳ ସାହିତ୍ୟର ଇତିହାସରେ ଏକ ଅମୁଲ୍ୟ, ଦୁର୍ଲ୍ଲଭଗ୍ରନ୍ଥ ।

**ଧନେଶ୍ୱର ପାଣି (୧୯୧୨-୨୦୦୬):**

ଧନେଶ୍ୱର ପାଣି ୧୯୧୨ ମସିହାରେ ଜୁନ୍ ମାସ ୧୩ ତାରିଖରେ ଢେଙ୍କାନାଳ ଜିଲ୍ଲାର କାମାକ୍ଷାନଗର ସବ୍‌ଡ଼ିଭିଜନ ଅନ୍ତର୍ଗତ 'ସାଆନ୍ଦା' ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ-ପ୍ରାଣବନ୍ଧୁ ପାଣି ଓ ମାତା-ପଦ୍ମାବତୀ ଦେବୀ । ଶ୍ରୀ ପାଣି ବୃତ୍ତିରେ ଆୟକର ବିଭାଗର ଜଣେ କିରାଣୀ ଥିଲେ ହେଁ ସରକରୀ କାର୍ଯ୍ୟଭାର ଭିତରେ ସାରସ୍ୱତ ସୃଷ୍ଟି କାର୍ଯ୍ୟରେ ନିମଗ୍ନ ରହୁଥିଲେ । ଉଭୟ କବିତା ଓ ପ୍ରବନ୍ଧ ରଚନାକରି ସେ ନିଜର କବିତ୍ୱ ପ୍ରତିଭା ଓ ଦକ୍ଷତାର ପରିଚୟ ଦେଇ ଯାଇଛନ୍ତି । କବି ଧନେଶ୍ୱର ପାଣିଙ୍କର କବିତା କୃତି ଗୁଡ଼ିକ ହେଲା- କବିତାଞ୍ଜଳି, କବିତାଅର୍ଘ୍ୟ, କବିତା ସାଗର, ସାୟଂକାଳଅନୁଚିନ୍ତା, କନ୍ୟାପ୍ରତି, ପତିବ୍ରତା ସାବିତ୍ରୀ, ନେଉଳ ଭାଇର ବାହାଘର ଓ ମଜା କବିତା, ଦାଣ୍ଡପହଁରା ଓଷା, ଷୋଳପାଲା । ଏହା ସହିତ ବିଶ୍ୱାସେ ମିଳଇ କୃଷ୍ଣ ଓ ଜନ୍ଦାପଥର ନାମକ ଦୁଇଖଣ୍ଡି ଗଦ୍ୟ ରଚନା ମଧ୍ୟ ରହିଛି । ଧନେଶ୍ୱର ନିଜର କାବ୍ୟିକ ପ୍ରତିଭା ଓ ସାରସ୍ୱତ ସାଧନା ପାଇଁ ୧୯୯୬ ମସିହାରେ ଓଡ଼ିଶା ସାହିତ୍ୟ ଏକାଡ଼େମୀଦ୍ୱାରା ସମ୍ବର୍ଦ୍ଧିତ ହୋଇଥିଲେ ।

**କବିତାଞ୍ଜଳି (୧୯୮୦):** ଏହା ଏକ ମନୋଜ୍ଞ କବିତା ସଂକଳନ । ଏହି ସଂକଳନଟିରେ ୨୫ ଗୋଟି କବିତା ସ୍ଥାନିତ ହୋଇଛି । ସେଗୁଡ଼ିକ୍ ହେଲା- ଗଣେଷ ସ୍ତୁତି, ଘେନ ଯାହା ଅଛିମୋର, ହାଟ ସଉଦା, ସଂସାର ତତ୍ତ୍ୱ ଚିନ୍ତନ, ଏତିକି ମାଗୁଣି, କର୍ମ ମହତ, କାକର ଖେଦୋକ୍ତି, କାଳକର୍ମ ପ୍ରବାହ, ଚେତାବନୀ, ମହୁମାଛିର କୋହ, ହିତବାଣୀ, ନାମମହାତ୍ମ୍ୟ. ମୋ ଜନମ ଭୂଇଁ ପ୍ରଭୃତି । ଏହିସବୁ କବିତା ଗୁଡ଼ିକ ପାରଂପରିକ ଶୈଳୀ ଓ ପ୍ରଚୀନ ଛନ୍ଦରେ ରଚିତ୍ । ଏ କବିତା ଗୁଡ଼ିକର ଭାଷା ଅତି ସରଳ, ସାବଲୀଳ, ଶ୍ରୁତିମଧୁର ।

ଏହିସବୁ କବିତା ଗୁଡ଼ିକ ଭିତରେ ବ୍ୟକ୍ତି ଓ ସମାଜ ଜୀବନର ବିଭିନ୍ନ ସମସ୍ୟା ଓ ସଂଘର୍ଷର ରୂପାୟନ ସହିତ ଆଧାତ୍ମିକ ଭକ୍ତି ଭାବନାର ବିମଳ ଚିତ୍ର ପ୍ରକଟିତ ହୋଇଛି ।

**କବିତା ଅର୍ଘ୍ୟ (୧୯୮୨):** ଏହା ଏକ ମନୋଜ୍ଞ କବିତା ଗୁଚ୍ଛ । ଏଥିରେ ୨୫ ଗୋଟି ଗୀତିମୟ କବିତା ସ୍ଥାନିତ ହୋଇଛି । ସେଗୁଡିକହେଲା- ଗଣେଷ ସ୍ତୋତ୍ର, ଘେନ ଏ ଦୀନ ଗୁହାରୀ, ଦେଶପ୍ରେମୀ ଗୋପବନ୍ଧୁ, ଦୁନିଆଁ ହାଲ୍, ଶଜନା ବୃକ୍ଷ, ଅଚର୍ଚ୍ଚିତା ଉର୍ମିଳା, ଦାନ୍ତ, ମହାକବି ବ୍ରଜନାଥ, ବ୍ୟାସକବି ଫକୀରମୋହନ, କବି ଗଙ୍ଗାଧର, ବର୍ଷାଋତୁ, ଭାବହିଁ ପ୍ରଧାନ, ଶାନ୍ତିପଥ, ସାଧୁବାଣୀ, ମା' ଦୁର୍ଗେ ପ୍ରଭୃତି । ଏହିସବୁ କବିତା ଗୁଡିକର ଭାଷା ବେଶ୍ ସରଳ ଓ ନିରାଡମ୍ବର । ଅଧିକାଂଶ କବିତାରେ କବି ନୂତନ ଦିଗ ଓ ଦର୍ଶନର ସନ୍ଧାନ କରିଛନ୍ତି । ସମାଜ ଜୀବନରେ ଅବହେଳିତ, ଉପେକ୍ଷିତ ଚରିତ୍ର ମାନଙ୍କର ସନ୍ଧାନ କରିବା ସହିତ ଅନାଦୃତ ପଥର ଉନ୍ମୋଚନ କରିଛନ୍ତି । ଏହି ସଂକଳନଟିରେ ଅଧିକାଂଶ ହିତୋପଦେଶ ମୂଳକ, ନୀତିନିଷ୍ଠ, ଶିକ୍ଷଣୀୟ କବିତା ସ୍ଥାନିତ ହୋଇଛି । ପ୍ରତିଭାବାନ୍ ମହାପୁରୁଷ ମାନଙ୍କର ସ୍ମୃତି ଚାରଣା ମାଧମରେ କବି ପୂଜ୍ୟପୂଜା ଓ ପ୍ରତିଭାଧର ମାନଙ୍କୁ ଯଥାଯୋଗ୍ୟ ସମ୍ମାନ ପ୍ରକଟନ କରିଛନ୍ତି ।

**ପତିବ୍ରତା ସାବିତ୍ରୀ (୧୯୮୦):** ଏହା କବିଙ୍କର ଏକ ଓଷା ଗ୍ରନ୍ଥ । ଭାରତୀୟ ସଭ୍ୟତା ଓ ସଂସ୍କୃତିରେ 'ସାବିତ୍ରୀ' ଚରିତ୍ରର ଥିବା ପବିତ୍ରତା, ଧର୍ମନିଷ୍ଠା ଓ ମହନୀୟ ଆଦର୍ଶ ଏଥିରେ ପ୍ରକଟିତ । ସତୀ, ସାଧ୍ୱୀ ସାବିତ୍ରୀ ନିଜର ପ୍ରତ୍ୟୁତ୍ପନ୍ନମତିତା, ବୀଚକ୍ଷଣ ବୁଦ୍ଧିମତ୍ତା, ସତୀତ୍ୱ ଓ ପାତିବ୍ରତ୍ୟ ବଳରେ ମହାକାଳ ଯମଙ୍କଠାରୁ ନିଜ ସ୍ୱାମୀ ସତ୍ୟବାନଙ୍କର ଜୀବନ ଫେରାଇ ଆଣିବାର ଆବସ୍ଥୁ କୁ କବି ଏଠାରେ କାବ୍ୟରୂପ ଦେଇଛନ୍ତି । ବ୍ରତଚାରିଣୀ, ଭକ୍ତ ଓ ସାହିତ୍ୟ ରସିକ ମାନଙ୍କ ପାଇଁ ଏହା ଏକ ଉପାଦେୟ ବ୍ରତଗ୍ରନ୍ଥ । ଆଧାତ୍ମିକ ଭାବନା, ଇଶ୍ୱର ବିଶ୍ୱାସ ଓ ଭକ୍ତିରସର ଉତ୍କଳ ପ୍ଳାବନରେ ଏହି ଗ୍ରନ୍ଥଟି ବେଶ୍ ସରଳ, ସାବଲୀଳ, ରସାଳ ଓ ବୋଧଗମ୍ୟ ହୋଇପାରିଛି । ଓଡିଆ ବ୍ରତସାହିତ୍ୟର ଏହା ଏକ ଅମୂଲ୍ୟ ଗ୍ରନ୍ଥ । ଏହାଁ ସହିତ 'ଦାଣ୍ଡ ପହଁରା ଓଷା' ନାମକ ଏକ ବ୍ରତଗ୍ରନ୍ଥ ମଧ କବି ରଚନା କରିଛନ୍ତି ।

**ସାୟଂକାଳ ଅନୁଚିନ୍ତା (୧୯୯୫):** ଏହା ଆଧାତ୍ମିକ ଓ ଭକ୍ତିଭାବ ସମ୍ବଳିତ ଏକ କ୍ଷୁଦ୍ର ଗୀତିମୟ ରଚନା । ଏଥିରେ କେତେଗୋଟି ଭଜନ, ଜଣାଣ ଓ ସ୍ତୁତିର ସମାହାର ଘଟିଛି । ଏହି ଗ୍ରନ୍ଥଟିରେ ଆଧାତ୍ମିକ ଭକ୍ତିଭାବନା, ଇଶ୍ୱର ବିଶ୍ୱାସର ପ୍ରକଟନ ସହିତ କବିଙ୍କର ବ୍ୟକ୍ତିଗତ ଜୀବନ ଦର୍ଶନର ଚିତ୍ର ମଧ ପ୍ରକଟିତ ହୋଇଛି ।

**ନେଉଳଭାଇର ବାହାଘର (୧୯୯୬):** ଏହା ଏକ ଶିଶୁମନଯୋଗୀ, ଶିଶୁ ଉପାଦେୟ ଶିକ୍ଷଣୀୟ ରଚନା । ନୀତିଶିକ୍ଷା ଓ ଆଦର୍ଶରେ ଏହି କବିତା ଗୁଡିକ ପରିପୁଷ୍ଟ । ଏଥିରେ ସନ୍ନିବିଷ୍ଟ କବିତା ଗୁଡିକ ହେଲା- ନେଉଳଭାଇର ବାହାଘର, ବାଙ୍କବାବୁ, କଣ୍ଢିଆ ନନା, ପାକୁଆ ଅଜା-ଆଈ, କା' କା କହଇ କାଉ, ମୁଢ଼ି-ନଡିଆ. ଅଜାଙ୍କ ଦାନ୍ତ ଭାଙ୍ଗିଲା, ନେଉଳ ଓ ମୟୁର, ବେଙ୍ଗୁଲି ନାନୀ ବାହାଘର, ବାଘମାମୁଁ, ଭାଲୁର ଧାନଖିଆ, ବିରାଡି ଦୁଧପିଆ, ମୂଷା-ବିରାଡି ବନ୍ଧୁତା, ବାଇ ଚଢ଼େଇ, କାଗଜ-କଲମ କଳି ପ୍ରଭୃତି ।

**କବିତା ସାଗର (୨୦୦୦):** ଏହି ସଂକଳନଟିରେ ୩୧ ଗୋଟି କ୍ଷୁଦ୍ର କବିତା ସ୍ଥାନିତ ହୋଇଛି । ଏହି କବିତା ଗୁଡ଼ିକ ଉପଦେଶ ଓ ନୀତି ଶିକ୍ଷାମୂଳକ । ମାନବ ସମାଜର ସେବା, ଆତ୍ମତ୍ୟାଗ ପାଇଁ ଏହି କବିତା ଗୁଡ଼ିକର ଆହ୍ୱାନ ଦିଆଯାଇଛି । ନଦୀ, ପର୍ବତ, ପାଦପ, ସାଗର, କପିଳାସ ମୃଗବିହାର ଆଦି କବିତାରେ କବିଙ୍କର ସୌନ୍ଦର୍ଯ୍ୟ ଦୃଷ୍ଟି ଓ ପ୍ରକୃତି ପ୍ରାଣତା ଫୁଟିଉଠିଛି । ଗାନ୍ଧୀଜୟନ୍ତୀ ଅନୁଚିନ୍ତା, ଇନ୍ଦିରାଗାନ୍ଧୀ ସ୍ମରଣେ, ଉତ୍କଳଦିବସେ ଚିନ୍ତାଧାରା. ଦେଶସମାଚାର, ଚାଚା ନେହେରୁଙ୍କ ଶତବାର୍ଷିକୀ ଉତ୍ସବ ପ୍ରଭୃତି କବିତାରେ ଦେଶପ୍ରେମ ଭାବନା, ଜାତୀୟ ଚେତନା, ମାଟିପ୍ରତି ମମତ୍ୱବୋଧ, ସାଂପ୍ରଦାୟିକ ସଦ୍‌ଭାବନା ଓ ସମନ୍ୱୟ ଭାବନା ଫୁଟିଉଠିଛି । 'ଚେତାବନୀ' ଶୀର୍ଷକ ୪ ଗୋଟି କବିତା ରେ କବି କର୍ମକୁଣ୍ଠ, ପଥଭ୍ରଷ୍ଟ ମଣିଷକୁ ସତର୍କର ଚେତାବନୀ ଶୁଣାଇଛନ୍ତି ।

କବି ଧନେଶ୍ୱରଙ୍କ ପ୍ରତିଭାର ଏକ ଶ୍ରେଷ୍ଠ ନିଦର୍ଶନ ହେଲା- ତାଙ୍କର ଓଡ଼ିଆ 'ଷୋଳପାଲା' । କବି କର୍ଣ୍ଣବିରଚିତ ବଙ୍ଗଳା-ହିନ୍ଦୀ-ପାର୍ଶୀଭାଷା ମିଶ୍ରିତ 'ଷୋଳପାଲା'ର ଏହା ସାର୍ଥକ ଓଡ଼ିଆ ଅନୁବାଦ । ଓଡ଼ିଆପାଲା ସାହିତ୍ୟର ଏହା ଏକ ଉଜ୍ଜ୍ୱଳ ସ୍ମୃତିସ୍ତମ୍ଭ ।

**ଧନେଶ୍ୱର ପତି (୧୯୧୫-୧୯୭୬):**

କବି ଧନେଶ୍ୱରଙ୍କର ଜନ୍ମ ୧୯୧୫ ମସିହାରେ ଢେଙ୍କାନାଳ ଜିଲ୍ଲାର ହିନ୍ଦୋଳ ଉପଖଣ୍ଡର 'ପଞ୍ଚୁପତା' ଠାରେ । କବି ପ୍ରାଚୀନ ଓ ମଧ୍ୟଯୁଗୀୟ କାବ୍ୟ ଧାରାରେ ଅନେକ ଗୁଡ଼ିଏ କାବ୍ୟକୃତି ରଚନା କରିଯାଇଛନ୍ତି । ତାଙ୍କ ରଚିତ କାବ୍ୟକୃତି ଗୁଡ଼ିକ ହେଲା- ପଲ୍ଲବୀ, ମାଧବୀ, କାବ୍ୟସତୀ, କୀର୍ତ୍ତିଲତା, ରସଧାରା, ପଞ୍ଚମୀ । ଏହିସବୁ କାବ୍ୟକୃତି ଗୁଡ଼ିକ ଭିତରେ କବିଙ୍କର ପରଂପରା ପ୍ରତି ମୋହ ଓ ପୁରୋଦୃଷ୍ଟି ଫୁଟିଉଠିଛି । ଏହି ରଚନାଗୁଡ଼ିକ ନୀତି, ଆଦର୍ଶ ଓ ମାନବିକ ମୂଲ୍ୟବୋଧରେ ମହୀୟାନ ।

## ଆକୁଳାନନ୍ଦ ରାଉତ (୧୯୧୭- ):

ଆକୁଳାନନ୍ଦ ରାଉତଙ୍କର ଜନ୍ମ ୧୯୧୭ ମସିହାରେ ଢେଙ୍କାନାଳ ଜିଲ୍ଲାର 'କାଣ୍ଡବନ୍ଧା' ଗ୍ରାମରେ। ତାଙ୍କ ପିତାଙ୍କ ନାମ ଅର୍ଜୁନ ରାଉତ। କବି ଆକୁଳାନନ୍ଦ ପୁରାଣ ଓ ଆଧାତ୍ମିକ ଭାବଚେତନାକୁ ନେଇ ଅନେକ ଗୁଡ଼ିଏ ଗ୍ରନ୍ଥ ରଚନା କରିଯାଇଛନ୍ତି। ଏହା ସହିତ ଓଡଶାର ଐତିହ୍ୟ, ସଂସ୍କୃତି ଓ କଳାଗତ ଉତ୍କର୍ଷର ଜୟଗାନ ମଧ କରିଛନ୍ତି। ତାଙ୍କ ରଚିତ ସାରସ୍ୱତ କୃତି ଗୁଡ଼ିକହେଲା- ଜଗନ୍ନାଥ-ବଳରାମଙ୍କ ମହାତ୍ମ୍ୟ ଓ ଐତିହ୍ୟ, ଶିବଧନୁ ଭଙ୍ଗ, କୋଣାର୍କ, ଭାଗବତ ସଂବିଧାନ ସଂସ୍ଥା ପ୍ରଭୃତି।

## ପୀତାମ୍ବର ମିଶ୍ର (୧୯୧୮- ) :

ପିତାମ୍ବର ମିଶ୍ରଙ୍କର ଜନ୍ମ ୧୯୧୮ ମସିହାରେ ଢେଙ୍କାନାଳ ଜିଲ୍ଲାର ଭୁବନ ଶାସନ ଠାରେ। ପିତାମ୍ବର ମୁଖ୍ୟତଃ ଜଣେ ନାଟ୍ୟକାର। ପାରମ୍ପରିକ ବା ପ୍ରଥାସିଦ୍ଧ ନାଟ୍ୟ... ସେ ଜଣେ ସଫଳ ସ୍ରଷ୍ଟା। ସେ ଅନେକ ଗୁଡ଼ିଏ ପୌରାଣିକ, ଐତିହାସିକ ଓ ସାମାଜିକ ନାଟକମାନ ରଚନା କରିଛନ୍ତି। ଶ୍ରୀଯୁକ୍ତ ମିଶ୍ରଙ୍କର ନାଟ୍ୟକାର ଜୀବନର ଅୟମାରମ୍ଭଘଟିଥିଲା- ରଙ୍ଗମଞ୍ଚରେ ନାଟକ ଅଭିନୟରୁ। "ପୁରୀର ମୋହନସୁନ୍ଦର ଗୋସାମୀ ଥିଏଟର୍ ରୁ ହିଁ ପୀତାମ୍ବରଙ୍କର ଅଭିନୟ ଜୀବନର ଆରମ୍ଭ ହୋଇଥିଲା। ଏହାପରେ ସେ ବଙ୍ଗଳାର ବ୍ରଜସୁନ୍ଦର ଦେ'ଙ୍କ ଯାତ୍ରା ଦଳରେ ଅଭିନୟ କରିବା ସହିତ ନାଟକ ନିର୍ଦ୍ଦେଶନା ଦେଇଥିଲେ।"(୪) ପରେ ପରେ ପୀତାମ୍ବର ଯାତ୍ରାପାଇଁ ନାଟକ ଓ ଗୀତିନାଟ୍ୟମାନ ରଚନା କରିବାରେ ମନୋନିବେଶ କରିଥିଲେ। ପୀତାମ୍ବରଙ୍କ ନାଟ୍ୟ ପ୍ରତିଭାରେ ମୁଗ୍ଧହୋଇ ତତ୍କାଳୀନ ଢେଙ୍କାନାଳର ରାଜା ଶଙ୍କରପ୍ରତାପ ତାଙ୍କୁ 'ନାଟ୍ୟକଳାଭୂଷଣ' ଉପାଧିରେ ଭୂଷିତ କରିଥିଲେ। ପୀତାମ୍ବର ମିଶ୍ରଙ୍କର ରଚିତ ନାଟକ ଗୁଡ଼ିକହେଲା-ବାଲିରାଜା, କୁହୁକମଣି, ଶ୍ରବଣକୁମାର, ନିଅଁସି ଦ୍ୱିହ, ଭାଗବନ୍ତରା, ଡାକମୁନ୍ସୀ, ବାଲ୍ୟବିଧବା, ବିଶ୍ୱାମିତ୍ର, ତରଣୀସେନ, ଭକ୍ତ ସାଲବେଗ, ଗଙ୍ଗରାଜତ୍ୱ ପ୍ରଭୃତି। ଏହି ନାଟକ ଗୁଡିକ ସହିତ ସେ ଅନେକ ଗୁଡିଏ ଗୀତିନାଟ୍ୟ ମଧ ରଚନା କରିଛନ୍ତି। ସେଗୁଡ଼ିକ ହେଲା- ସୀତା ବିବାହ, ନଳ-ଦମୟନ୍ତୀ, ମଧୁମାଳତୀ, କୁମୁଦିନୀ, ବୀରସୁନ୍ଦର, ମହୀରାବଣ ବଧ ପ୍ରଭୃତି।

## ଶ୍ରୀ ନଟବର ନାୟକ (୧୯୧୯-୨୦୦୬) :

ନଟବର ନାୟକଙ୍କର ଜନ୍ମ ୧୯୧୯ ମସିହାରେ ଢେଙ୍କାନାଳ ଜିଲ୍ଲାର ଭୁବନ ଠାରେ। ସେ ମୁଖ୍ୟତଃ ଜଣେ କବି ଓ ନାଟ୍ୟକାର। ସମାଜ ଜୀବନ, ପୁରାଣ ଚେତନା

ଓ ଆଧାତ୍ମିକ କଥାବସ୍ତୁ କୁ ନେଇ ସେ ତାଙ୍କର ସୃଷ୍ଟି ସର୍ଜନା କରିଛନ୍ତି । ପୌରାଣିକ ଭାବଚେତନା ଓ ଆଧାତ୍ମିକ ଭାବନା ଦେଇ ସେ ସମାଜ ଓ ବ୍ୟକ୍ତି ଜୀବନରେ ଭକ୍ତି ଓ ଧର୍ମୀୟ ଭାବନାର ପ୍ରତିଷ୍ଠା କରିବାକୁ ଚାହିଁଛନ୍ତି । ଶାଣିତ ବ୍ୟଙ୍ଗ ଓ ମଧୁର ହାସ୍ୟରସର ପ୍ରୟୋଗ ମାଧ୍ୟମରେ ସେ ସମାଜ ଓ ମଣିଷ ଜୀବନର ତ୍ରୁଟି-ବିଚ୍ୟୁତିରେ ସଂଶୋଧନ ଆଣିବାକୁ ଚାହିଁଛନ୍ତି । ତାଙ୍କର ମହାର୍ଘ ସାରସ୍ୱତ କୃତି ଗୁଡ଼ିକ ହେଲା-ଭକ୍ତର ଭଗବାନ, ମର୍ତ୍ତ୍ୟେଭୁବନ, ନଳ-ଦମୟନ୍ତୀ, ଦାତାକର୍ଣ୍ଣ, କଂସବଧ, ଜନ୍ମାଷ୍ଟମୀ, ରାଧା-କୃଷ୍ଣ ପ୍ରେମ ମକଦ୍ଦମା, ଗୋପପୁରର ଇଞ୍ଜିନ୍ ଗାଡ଼ି, ବର୍ଣ୍ଣାଢ୍ୟ ଶବ୍ଦ ଚଉତିଶା ପ୍ରଭୃତି ।

**ଶ୍ରୀ ପରଶୁରାମ ମହାପାତ୍ର (୧୯୨୫- ):**

ପରଶୁରାମ ମହାପାତ୍ର ଙ୍କ ଜନ୍ମ ୧୯୨୫ ମସିହାରେ ଢେଙ୍କାନାଳ ଜିଲ୍ଲାର ଗୋବିନ୍ଦପୁରସ୍ଥ ଗଉଡୁଣୀ ବେଢ଼ିଆ ଗ୍ରାମରେ । ତାଙ୍କ ପିତାଙ୍କ ନାମ - ଜୟକୃଷ୍ଣ ମହାପାତ୍ର ଓ ମାତାଙ୍କ ନାମ- ଉଦିଆ ଦେବୀ । ପରଶୁରାମ ଉଭୟ କବିତା ଓ ପ୍ରବନ୍ଧ ରଚନାରେ ସିଦ୍ଧହସ୍ତ । ତାଙ୍କ କବିତା ଗୁଡିକ ଭକ୍ତିଭାବାପନ୍ନ ଓ ଆଧାତ୍ମିକ ଭାବ ସମ୍ବଳିତ । ତାଙ୍କ ରଚିତ ପ୍ରବନ୍ଧ ଗୁଡିକ ଐତିହାସିକ. ତଥ୍ୟ ମୁଳକ ଏବଂ ତାତ୍ତ୍ୱିକ । ଅଧିକାଂଶ ପ୍ରବନ୍ଧରେ ଭ୍ରମଣ ଜନିତ ଅନୁଭବ ଓ ଅନୁଭୁତିର ବାସ୍ତବ, ଜୀବନ୍ତ ଚିତ୍ର ପ୍ରକଟିତ । ତାଙ୍କ ରଚିତ ସାରସ୍ୱତ ସୃଷ୍ଟି ସମ୍ଭାର ଗୁଡିକ ହେଲା-ବାଇଶି ପାହାଚ, ନିର୍ମଳା, କି' ରୂପେ ଭଜିବି ପ୍ରଭୁ, ଯୋଗକ୍ଷେମବହାମ୍ୟହଂ, ଭଗ୍ନ କୋଣାର୍କ, ଗଙ୍ଗା ସାଗର, ଭାରତ ଦର୍ଶନ, ଦ୍ୱାଦଶ- ଜ୍ୟୋତିର୍ଲିଙ୍ଗ ପ୍ରଭୃତି ।

**ଗଙ୍ଗାସାଗର (୧୯୯୫):** ଏହା ଏକ ସଫଳ ଭ୍ରମଣ ବୃତ୍ତାନ୍ତ । ଏହି ଗ୍ରନ୍ଥରେ ଲେଖକ ଗଙ୍ଗାସାଗର ମେଳା ସଂପର୍କୀତ ନିଜର ଅନୁଭବ, ଅନୁଭୂତିର ନିଛକ ପରିପ୍ରକାଶ କରିଛନ୍ତି । ଗଙ୍ଗାମହାତ୍ମ୍ୟ, ଗଙ୍ଗାସାଗର ମେଳାର ବିଶେଷତ୍ୱ, ଗଙ୍ଗା ମାତାଙ୍କର ଭୌଗୋଳିକ ଓ ଐତିହାସିକ ତଥ୍ୟରେ ଏହି ଗ୍ରନ୍ଥଟି ସମୃଦ୍ଧ, ଋଦ୍ଧିମନ୍ତ ହୋଇଛି ।

**ବାଇଶିପାହାଚ (୨୦୦୨):** ଏହା ଏକ ଗୀତି ଗୁଚ୍ଛ । ଏଥିରେ ୨୨ ଗୋଟି କ୍ଷୁଦ୍ର କ୍ଷୁଦ୍ର ଭକ୍ତି ଧର୍ମୀ ଗୀତିକା ସ୍ଥାନିତ ହୋଇଛି। ସେଗୁଡ଼ିକ ହେଲା-ପତିତପାବନ ବାନା, ନୀଳଚକ୍ର, ସିଂହଦ୍ୱାରେ ଲକ୍ଷ୍ମୀ, ପତିତପାବନ, ବାଇଶିପାହାଚ, ବାଳମୁକୁନ୍ଦ, କଳ୍ପବଟ, ବଟ ଗଣେଷ, କ୍ଷେତ୍ରପାଳ, କାଶୀ ବିଶ୍ୱନାଥ, ବାଟମଙ୍ଗଳା, ଭୂଷଣ୍ଡକାକ ଓ ରୋହିଣୀକୁଣ୍ଡ, ଭୁବନେଶ୍ୱରୀ, ମହାଲକ୍ଷ୍ମୀ, ଉତ୍ତରାୟଣୀ, ଦକ୍ଷିଣକାଳୀ, ଗରୁଡ଼ସ୍ତମ୍ଭ ପ୍ରଭୃତି । ଏହିସବୁ କବିତା ଗୁଡ଼ିକ ବେଶ ଆଧାତ୍ମିକ, ଭକ୍ତିଭାବାପନ୍ନ ଓ ତାତ୍ତ୍ୱିକ । ବିଭିନ୍ନ ରାଗ, ରାଗିଣୀ, ଛନ୍ଦ ଓ ସାଙ୍ଗୀତିକ

ମାଧୁର୍ଯ୍ୟରେ ଏହି କବିତା ଗୁଡ଼ିକ ବେଶ୍ ଆବେଦନକ୍ଷମ ଓ ରସୋତ୍ତୀର୍ଣ୍ଣ । ମୋଟାମୋଟି ଭାବରେ ଏହି କବିତା ଗୁଡ଼ିକରେ ବୈଷ୍ଣବୀୟ ଧର୍ମ-ଦର୍ଶନ, ବୈଷ୍ଣବଧର୍ମର ବିଭିନ୍ନ ତତ୍ତ୍ୱ ଓ ଶ୍ରୀକ୍ଷେତ୍ର ବାଇଶିପାହାଚର ମହାତ୍ମ୍ୟ ପ୍ରକଟିତ ହୋଉଛି ।

**ଶ୍ରୀ ହରି ଦାସ (୧୯୨୫-୨୦୦୬):**

ହରି ଦାସଙ୍କ ପ୍ରକୃତ ନାମ ହରେକୃଷ୍ଣ ପଟ୍ଟନାୟକ । ସେ ବୈଷ୍ଣବ ଧର୍ମ ଗ୍ରହଣ ପରେ ନିଜକୁ ହରି ଦାସ ରୂପେ ଅଭିହିତ କରିଥିଲେ । ହରି ଦାସ ୧୯୨୫ ମସିହା ଅଗଷ୍ଟମାସ ୨୮ ତାରିଖରେ ଢେଙ୍କାନାଳ ଜିଲ୍ଲାର ସାରିଆପଦା ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ- ଯଦୁନାଥ ପଟ୍ଟନାୟକ ଓ ମାତା-ଚମ୍ପାଦେବୀ । ହରି ଦାସ ଜିଲ୍ଲା କୃଷି ଓ ଦେବୋତ୍ତର ବିଭାଗ ଅଧିନରେ ଚାକିରୀ କରିଥିଲେ । ପରବର୍ତ୍ତୀ ସମୟରେ ସେ ସପ୍ତଶଯ୍ୟା ନିକଟରେ ଏକ ଆଶ୍ରମ ପ୍ରତିଷ୍ଠାକରି 'ଉତ୍କଳ ସତ୍ୟ ସମାଜ' ଗଠନ କରିଥିଲେ । ଏହି ଉତ୍କଳ ସତ୍ୟସମାଜ ଅନୁଷ୍ଠାନ ମାଧମରେ ହରି ଦାସ ସନାତନ ହିନ୍ଦୁଧର୍ମର ପ୍ରଚାର ଓ ପରିପ୍ରସାର କାର୍ଯ୍ୟରେ ମନୋନିବେଶ ମରିଥିଲେ । "ସତ୍ୟଦୀପ" ନାମରେ ଏକ ପତ୍ରିକା ପ୍ରକାଶନ କରି ତା' ମାଧମରେ ସନାତନ ହିନ୍ଦୁଧର୍ମର ପ୍ରଚାର, ପ୍ରସାର ସହିତ ସାମାଜିକ ଓ ସାଂସ୍କୃତିକ ଆନ୍ଦୋଳନକୁ ତ୍ୱରାନ୍ୱିତ କରିଥିଲେ । ଭାରତ ଧର୍ମମହାସଭାର ସେ ଥିଲେ ଆଜୀବନ ସଦସ୍ୟ । ଧର୍ମ, ସଂସ୍କୃତି ଓ ସମାଜ ସେବାରେ ସେ ନିଜ ଜୀବନକୁ ନିୟୋଜିତ କରିଥିଲେ । ଏହି ସାଧୁ, ମହାପୁରୁଷ ହରି ଦାସ ୨୦୦୬ ମସିହା ଏପ୍ରିଲ ମାସ ୧୮ ତାରିଖରେ ଇହଲୀଳା ସମ୍ବରଣ କରିଥିଲେ । ହରି ଦାସ ଅନେକ ଭଜନ, ଜଣାଣ ଓ ପ୍ରାର୍ଥନା ସହିତ ଆଧାତ୍ମିକ ତତ୍ତ୍ୱ ଓ ଦର୍ଶନ ସମ୍ବଳିତ ଏକ ଗ୍ରନ୍ଥ 'ବାୟାଧନ ଟି' ରଚନା କରିଯାଇଛନ୍ତି । ଏହିଗ୍ରନ୍ଥଟି ତିନି ଖଣ୍ଡରେ ବିଭକ୍ତ । ପ୍ରଥମ ଖଣ୍ଡ ହେଉଛି- ବାଲ୍ୟ ଖଣ୍ଡ, ଦ୍ୱିତୀୟ ଖଣ୍ଡ ହେଉଛି- ଯୌବନ ଖଣ୍ଡ ଓ ତୃତୀୟ ଖଣ୍ଡ ହେଉଛି- ଜରା ଖଣ୍ଡ । ଜୀବ, ପରମ, ବ୍ରହ୍ମ ଓ ଈଶ୍ୱରତତ୍ତ୍ୱ ସଂପର୍କୀତ ଗଭୀର ନିଗୂଢ଼ ଆଧାତ୍ମିକ ତତ୍ତ୍ୱ ଏଥିରେ ପ୍ରକଟିତ । ଏହା ସହିତ ମାନବ ଜୀବନର ପ୍ରକୃତ ସତ୍ୟ ଓ ମଣିଷର ବାସ୍ତବ ଚିତ୍ର ମଧ ଏଥିରେ ପ୍ରକଟିତ । କବି ଜୀବରୂପି ମଣିଷକୁ 'ବାୟାଧନ' ରୂପେ ସମ୍ବୋଧନ କରି ତାକୁ ଧର୍ମନିଷ୍ଠ, କର୍ମ ପ୍ରବଣ ଓ ଈଶ୍ୱରାଭିମୁଖୀ କରାଇବା ପାଇଁ ସାଧୁ ଉଦ୍ୟମ କରିଯାଇଛନ୍ତି । ଜୀବ ବା ମଣିଷ ସାଂସାରିକ ମାୟା-ମୋହ, କାମ-ବାସନା କୁ ଭୁଲି ସତ୍ୟ, ନୀତି, ଅମୃତ ଓ ଆଲୋକର ପଥରେ ଗତି କରିବାପାଇଁ କବି ଦୁର୍ବାର ଆହ୍ୱାନ ଦେଇଛନ୍ତି ।

**ଶ୍ରୀ ଛାୟାକାନ୍ତ ନାୟକ (୧୯୨୬- ):**

ଛାୟାକାନ୍ତ ନାୟକଙ୍କ ଜନ୍ମ ୧୯୨୬ ମସିହାରେ ଢ଼େଙ୍କାନାଳ ଜିଲ୍ଲାର ହିନ୍ଦୋଳ ରୋଡ଼ରେ । ତାଙ୍କ ପିତାଙ୍କ ନାମ ପୀତବାସ ନାୟକ । ଛାୟାକାନ୍ତ ଜଣେ ଆଦର୍ଶ ଶିକ୍ଷକ ଥିଲେ । ଶିକ୍ଷକତା ସହିତ ସେ ସାରସ୍ୱତ ସୃଷ୍ଟି କର୍ମରେ ମଧ୍ୟ ମନୋନିବେଶ କରୁଥିଲେ । ତାଙ୍କ ରଚିତ କବିତା କୃତି ହେଲା- 'କଣିକା', 'ପ୍ରେମତରଙ୍ଗ' ନାମରେ ଏକ କାବ୍ୟ ମଧ୍ୟ ସେ ରଚନା କରିଛନ୍ତି । ତାଙ୍କର ଅନ୍ୟାନ୍ୟ ରଚନା ଗୁଡ଼ିକ ହେଲା- ଭକ୍ତିରସାମୃତ, ମନବୋଧ ଚାଳିଶା, ଶ୍ରୀ ଜଗନ୍ନାଥ ଭାଗବତ ଏବଂ ବିଷ୍ଣୁ ସହସ୍ର ନାମ (ଅନୁବାଦ) । ଏହା ସହିତ ଅନେକ ଭଜନ ଓ ଜଣାଣମାନ କବି ରଚନା କରିଯାଇଛନ୍ତି ।

**ଶ୍ରୀ ଧନେଶ୍ୱର ନନ୍ଦ (୧୯୨୭- ):**

ଧନେଶ୍ୱର ନନ୍ଦଙ୍କର ଜନ୍ମ ୧୯୨୭ ମସିହାରେ ଢ଼େଙ୍କାନାଳ ଜିଲ୍ଲାର ଗନ୍ଧଶଙ୍କରପୁର, ମାଣ୍ଡୁଖୁରା ଠାରେ । ତାଙ୍କପିତାଙ୍କ ନାମ - ତ୍ରିଲୋଚନ ନନ୍ଦ ଓ ମାତା- ମୀନା ଦେବୀ । ଶ୍ରୀ ନନ୍ଦ ମୁଖ୍ୟତଃ ଜଣେ ସଂସ୍କୃତ ପଣ୍ଡିତ ଥିଲେ । ସେ ଶିକ୍ଷକତା ସହିତ କବିତା ରଚନାରେ ହାତ ଦେଇଥିଲେ । କବିଙ୍କର 'ଶାନ୍ତି ଗୀତିକା' ଏବଂ 'ଧନେଶ୍ୱର କବିତାବଳୀ'ଢେଙ୍କାନାଳ ସାହିତ୍ୟର ଏକ ଏକ ମହନୀୟ କଳାକୃତି । କବିଙ୍କର ବିରଚିତ କବିତା ଗୁଡ଼ିକ ବଙ୍ଗଳାଶ୍ରୀ ରାଗରେ ରଚିତ । ଏହି କବିତା ଗୁଡିକରେ ଆଧ୍ୟାତ୍ମିକ ଭକ୍ତିଭାବନା, ଈଶ୍ୱର ପ୍ରାଣତା ସହିତ ଆଧୁନିକ ସମାଜ ଜୀବନର ସତ୍ୟଶୀଳ, ବାସ୍ତବରୂପ ପ୍ରକଟିତ ।

**ଶ୍ରୀ ବିଶେଶ୍ୱର ଭୂତିଆ (୧୯୨୭- ):**

ଶ୍ରୀ ବିଶେଶ୍ୱର ଭୂତିଆଙ୍କ ଜନ୍ମ '୧୯୨୭ ମସିହାରେ ଢ଼େଙ୍କାନାଳ ସହରର ଗୁଡ଼ିଆନାଳୀ ଠାରେ । ତାଙ୍କ ପିତାଙ୍କ ନାମ ନନ୍ଦକିଶୋର ଭୂତିଆ ଓ ମାତା- ଜେମାବତୀ ଦେବୀ । ଶ୍ରୀ ଭୂତିଆ ବୃତିରେ ଜଣେ ସାମ୍ବାଦିକ । ସାମ୍ବାଦିକତା ସହିତ ସାରସ୍ୱତ ସୃଷ୍ଟିକର୍ମରେ ମଧ୍ୟ ମନୋନିବେଶ କରିଛନ୍ତି । ତାଙ୍କ ରଚିତ ସାରସ୍ୱତ କୃତି ଗୁଡ଼ିକ ହେଲା- ଯାଦବ ଗୌରବ, ଯାଦବ ସୌରଭ, ଯାଦବ ଐତିହ୍ୟ ଓ ଯଦୁ ବଂଶର ପରିଚୟ । ଏହିସବୁ ଗ୍ରନ୍ଥଗୁଡ଼ିକ ବେଶ୍ ଐତିହାସିକ, ଐତିହ୍ୟ ଦୀପ୍ତ ଓ ତଥ୍ୟପୂର୍ଣ୍ଣ ।

**ଶ୍ରୀ ବସନ୍ତ କୁମାର ମହାପାତ୍ର (ଶାଣ୍ଡିଲ୍ୟ)(୧୯୨୮-୨୦୦୪):**

ବସନ୍ତ କୁମାର ମହାପାତ୍ର ୧୯୨୮ ମସିହା ଫେବୃୟାରୀ ମାସ ୨୭ ତାରିଖ ଫାଲ୍‌ଗୁନ ଶୁକ୍ଳ ସପ୍ତମୀ ତିଥିରେ ଢେଙ୍କାନାଳ ଜିଲ୍ଲାର ରାମିଆଳ ନଦୀ କୂଳସ୍ଥ ଭଗୀରଥିପୁର ଶାସନରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ- ନିତ୍ୟାନନ୍ଦ

ମହାପାତ୍ର ଓ ମାତା- ସତ୍ୟବତୀ ଦେବୀ । କବି ବସନ୍ତ କୁମାରଙ୍କର ବାଲ୍ୟଶିକ୍ଷା ଆରମ୍ଭ ହୋଇଥିଲା-ତତ୍କାଳୀନ ମଢ଼ି ବା କାମାକ୍ଷାନଗର ର ଗନ୍ନୁପ୍ରଭା ମାଇନର ସ୍କୁଲରେ । ୧୯୪୧ ମସିହାରେ ସେ ମାଇନର ପାଶ୍ ପରେ ଢେଙ୍କାନାଳ ଆସି ଢେଙ୍କାନାଳ ହାଇସ୍କୁଲରେ ଅଷ୍ଟମ ଶ୍ରେଣୀରେ ନାମ ଲେଖାଇଥିଲେ । ୧୯୪୫ ମସିହାରେ ମାଟ୍ରିକ୍ୟୁଲେସନ ପାଶକରି ସେ କଟକ ରେଭେନ୍ସା କଲେଜରେ ଏଫ୍.ଏ. ଶ୍ରେଣୀରେ ନାମ ଲେଖାଇଲେ । ଏଫ୍.ଏ. ବା ଆଇ.ଏ. ପରେ ସେ ରେଭେନ୍ସାରେ ବି.ଏ. ଶ୍ରେଣୀରେ ଅଧ୍ୟୟନ କଲେ । ରେଭେନ୍ସାରୁ ବି.ଏ. ପାସ ପରେ ସେ ଶିକ୍ଷକତା ବୃତ୍ତିରେ ଯୋଗଦେଇଥିଲେ । ସେ ଜଣେ ଆଦର୍ଶ, ଛାତ୍ର ବତ୍ସଳ ଶିକ୍ଷକ ରୂପରେ ନିଜର ସୁନାମ ଅର୍ଜନ କରିଥିଲେ । ଶିକ୍ଷକତା ସହିତ ସେ ସାହିତ୍ୟ ସଂଗଠନ, ସାରସ୍ୱତ ରଚନା ଓ ସମାଜ ସେବାରେ ମନୋନିବେଶ କରିଥିଲେ । 'ଢେଙ୍କାନାଳ ଜିଲ୍ଲା ଲେଖକ ସଂସଦ' ର ସେଥିଲେ- ପ୍ରାଣ ପ୍ରତିଷ୍ଠାତା । ସେ ଏକାଧାରରେ ଥିଲେଜଣେ ବଳିଷ୍ଠ କବି ଓ ଦକ୍ଷପ୍ରାବନ୍ଧିକ । ତାଙ୍କ ରଚନା ଗୁଡିକ ହେଲା- ଚେତନାର ଚନ୍ଦ୍ରଭାଗା, ମଧୁର ଆଳାପ, ସପ୍ତ ପୁରୁଷ, ହିନ୍ଦୁଧର୍ମର ବୈଜ୍ଞାନିକ ବ୍ୟାଖ୍ୟା, ଗଲି-ଅଇଲି ଯାହା ଦେଖିଲି, ଦୁଃଖାତୀତ ପଥ (ଅନୁବାଦ) ଉପଦେଶାମୃତ ।

**ମଧୁର ଆଳାପ (୨୦୦୦):** ଏହା ଏକ ରମ୍ୟ ରଚନା ଧର୍ମୀ ପ୍ରବନ୍ଧ ସଂକଳନ । ଏଥିରେ ୨୧ଟି ଲଘୁ ପ୍ରବନ୍ଧ ସ୍ଥାନିତ ହୋଇଛି । କଥାନକ ଶୈଳୀରେ ହାସ୍ୟ-ବ୍ୟଙ୍ଗ ଛଳରେ ଲେଖକ ନିଜର ବକ୍ତବ୍ୟକୁ ଉପସ୍ଥାପନ କରିଛନ୍ତି । ଆଧୁନିକତା ନାମରେ ସାଂପ୍ରତିକ ସମାଜ ଜୀବନରେ ଯେଉଁ ଅନାଚାର, ଅବକ୍ଷୟ ଓ ଅପସଂସ୍କୃତି ପକ୍ଷ ବିସ୍ତାର କରି ଚାଲିଛି, ଲେଖକ ସେଥିପ୍ରତି ତୀବ୍ର କଟାକ୍ଷ କରିଛନ୍ତି । ବ୍ୟକ୍ତି ଓ ସମାଜର ଦୋଷ ତ୍ରୁଟିକୁ ଦର୍ଶାଇ ବ୍ୟକ୍ତି ଓ ସମାଜ ଜୀବନରେ ପରଶୁଦ୍ଧି, ପରିମାର୍ଜନ ଓ ପରିବର୍ତ୍ତନ ଚାହିଁଛନ୍ତି । ସାମାଜିକ ମଣିଷର ଛଳନା, ପ୍ରବଞ୍ଚନାର ନିର୍ମୋକକୁ ଖସାଇ ତା'ର ବାସ୍ତବ ସତ୍ୟଶୀଳ ରୂପର ପ୍ରକଟନ କରିଛନ୍ତି । ଛଳନା ଓ ପ୍ରବଞ୍ଚନାର ନିର୍ମୋକ ହଟି ଗଲେ ଶୁଦ୍ଧ-ସୁନ୍ଦର ବ୍ୟକ୍ତିତ୍ୱ ଓ ଅନାଡମ୍ବର ଜୀବନଧାରାରେ ସମାଜ ଜୀବନ ଉଛୁଳି ଉଠିବ, ଏହି ପ୍ରତ୍ୟୟ ଓ ସମ୍ଭାବନାରେ ପ୍ରବନ୍ଧ ଗୁଡ଼ିକ ଉର୍ଜ୍ଜସ୍ୱଳ ।

'ସପ୍ତପୁରୁଷ' ଲେଖକଙ୍କର ଆତ୍ମଜୀବନୀ ଗ୍ରନ୍ଥ । ଏଥିରେ ଲେଖକଙ୍କ ବଂଶାବଳୀରପରିଚୟ, ପୂର୍ବପୁରୁଷଙ୍କ ଜୀବନୀ ଓ ଗୌରବଗାନ ସହିତ ନିଜର ଜନ୍ମ, ଶିକ୍ଷା, ଦୀକ୍ଷା, ଜୀବନୀ ଓ ସାରସ୍ୱତ ସାଧନାର ମନୋଜ୍ଞ ଚିତ୍ର ପ୍ରକଟିତ । 'ଗଲି-ଅଇଲି

ଯାହା ଦେଖିଲି' ଲେଖକଙ୍କର ସଫଳ ଭ୍ରମଣ କାହାଣୀ । ଲେଖକଙ୍କର ଆମେରିକା ଭ୍ରମଣ ଜନିତ ଅନୁଭବ ଓ ଅନୁଭୂତିର ନିଚ୍ଛକ ପରିପ୍ରକାଶ ଏହି ଗ୍ରନ୍ଥରେ ଘଟିଛି ।

**ଶ୍ରୀ ସନାତନ ନାଥ (୧୯୨୮- ):**

ସନାତନ ନାଥଙ୍କର ଜନ୍ମ ଢେଙ୍କାନାଳ ଜିଲ୍ଲାର ବଉଳପୁର ଠାରେ ୧୯୨୮ ମସିହା ସେପ୍ଟେମ୍ବର ମାସ ୧ ତାରିଖରେ । ତାଙ୍କ ପିତାଙ୍କ ନାମ କୃତିବାସ ନାଥ ଓ ମାତା- ଦମୟନ୍ତୀ ନାଥ । ଶ୍ରୀ ନାଥଙ୍କର ବାଲ୍ୟଶିକ୍ଷା ଆରମ୍ଭ ହୋଇଥିଲା ବଉଳପୁର ନିମ୍ନ ପ୍ରାଥମିକ ବିଦ୍ୟାଳୟରେ । ପରବର୍ତ୍ତୀ ସମୟରେ ସେ ଢେଙ୍କାନାଳ ହାଇସ୍କୁଲରେ ନାମଲେଖାଇ ୧୯୪୬ ମସିହାରେ ମାଟ୍ରିକ୍ୟୁଲେସନ୍ ପାଶ୍ କରିଥିଲେ । ଏହାପରେ ସେ କଟକ ସେକେଣ୍ଡାରୀ ଟ୍ରେନିଂ ସ୍କୁଲ୍ ରେ ଶିକ୍ଷକ ତାଲିମ ପାଠ୍ୟକ୍ରମରେ ନାମ ଲେଖାଇ ୧୯୪୮ ମସିହାରେ ସେହି ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ । ଶିକ୍ଷକ ଟ୍ରେନିଂ ଶିକ୍ଷା ସମାପ୍ତି ପରେ ୧୯୪୮ ମସିହାରେ ସେ ଢେଙ୍କାନାଳ ହାଇସ୍କୁଲ୍ ରେ ଶିକ୍ଷକ ରୂପରେ ଯୋଗଦାନ କରିଥିଲେ । ପରବର୍ତ୍ତୀ ସମୟରେ ସେ ନିଜର କର୍ତ୍ତବ୍ୟ ନିଷ୍ଠା ବଳରେ ଡେପୁଟି ଇନିସ୍‌ପେକ୍ଟର ପଦବୀକୁ ମଧ ଉନ୍ନୀତ ହୋଇଥିଲେ । ସନାତନ ନାଥ ଢେଙ୍କାନାଳ ମାଟିର ଜଣେ ବରେଣ୍ୟ ସାହିତ୍ୟିକ । ସେ ଅନେକ ଗୁଡ଼ିଏ କାବ୍ୟ, କବିତା, ପ୍ରବନ୍ଧ, ଓଷାବ୍ରତ ଓ ପୁରାଣ ସାହିତ୍ୟମାନ ରଚନା କରିଛନ୍ତି । ତାଙ୍କ ରଚିତ ଏବଂ ପ୍ରକାଶିତ ରଚନା ଗୁଡ଼ିକହେଲା-ଯାଜ୍ଞସେନୀପରିଣୟ (କାବ୍ୟ), ଉଷାପରିଣୟ (କାବ୍ୟ), ଆଞ୍ଜନେୟ ପୁରାଣ, ବାଳ ରାମାୟଣ, କ୍ଷିତିବଂଶ ପୁରାଣ, ପିଲାଙ୍କ ସରଳ ସଂକ୍ଷିପ୍ତ ରାମାୟଣ, ସନ୍ଧ୍ୟା ଉପାସନା, ସେଦିନର କବିତା (କବିତା ସଂକଳନ), ଗାଥା ଓ ବ୍ୟଥା (ଆତ୍ମ ଜୀବନୀ), ଚାଉଳଭଜା ଓଷା, ଦାଣ୍ଡପହଁରା ଓଷା ପ୍ରଭୃତି ।

**ଯାଜ୍ଞସେନୀ ପରିଣୟ :** ଏହା ଏକ ପୌରାଣିକ ରଚନା । ମହାଭାରତର ପୃଷ୍ଠଭୂମି ଉପରେ ଆଧାରିତ ଏହି ରଚନାଟି ୧୯୫୬ ମସିହାରେ ଦ୍ରୌପଦୀ ସ୍ୱୟଂମ୍ବର ନାମରେ ରଚିତ ହୋଇଥିଲା । ମାତ୍ର ପରବର୍ତ୍ତୀ ସମୟରେ ୨୦୦୫ ମସିହାରେ ଲେଖକ 'ଯାଜ୍ଞସେନୀପରିଣୟ' ଶୀର୍ଷକରେ ଏହାକୁ ପ୍ରକାଶିତ କରିଥିଲେ । ଯାଜ୍ଞସେନୀଙ୍କ ଜନ୍ମବୃତାନ୍ତ ଠାରୁ ବିବାହ ପର୍ଯ୍ୟନ୍ତ ଘଟଣାବଳୀ ହିଁ ଏ କାବ୍ୟର ମୁଖ୍ୟ କଥାବସ୍ତୁ ।

**ଉଷା ପରିଣୟ (୧୯୮୦):** ଏହା ଏକ ପୌରାଣିକ କାବ୍ୟ । ବାଣାସୁର ନନ୍ଦିନୀ ଉଷା ଏବଂ କୃଷ୍ଣ ପୌତ୍ର ଅନିରୁଦ୍ଧଙ୍କ ପ୍ରେମ-ପ୍ରଣୟ ଓ ପରିଣୟ ହିଁ ଏହି କାବ୍ୟର ମୁଖ୍ୟ ବିଷୟ ବସ୍ତୁ ।

**ଆଞ୍ଜନେୟ ପୁରାଣ (୨୦୦୧):** ଏହା ମଧ୍ୟ ଏକ ପୌରାଣିକ କାବ୍ୟ । ପ୍ରଭୁ ରାମଚନ୍ଦ୍ରଙ୍କର ପରମଭକ୍ତ ମହାବୀର ହନୁମାନଙ୍କର ଚରିତାବଳୀ ହିଁ ଏହି ଗ୍ରନ୍ଥରେ ବର୍ଣ୍ଣିତ । ଏହା ୭୮ଟି ଅଧ୍ୟାୟ ବିଶିଷ୍ଟ ଏକ ଦୀର୍ଘ କାବ୍ୟ । ମୂଳ ବାଲ୍ମୀକି ରାମାୟଣ, ଆଧ୍ୟାତ୍ମ ରାମାୟଣ, ତୁଳସୀଦାସ କୃତ ରାମଚରିତ ମାନସ, ବଳରାମ ଦାସଙ୍କର ଓଡ଼ିଆ ଦାଣ୍ଡି ରାମାୟଣ ପ୍ରଭୃତିରୁ କଥାବସ୍ତୁ ସଂଗ୍ରହକରି କବି ଏହି ଆଞ୍ଜନେୟ ପୁରାଣର କାବ୍ୟସୌଧ ନିର୍ମାଣ କରିଛନ୍ତି । ଓଡ଼ିଆ ପୁରାଣ ସାହିତ୍ୟ ରଚନା ପରଂପରାର ଏହା ଏକ ମହାନ ଗ୍ରନ୍ଥ । କାବ୍ୟାରମ୍ଭରେ କବି ମଙ୍ଗଳାଚରଣ, ମାରୁତି ବନ୍ଦନା ଓ ପରେ ମହାଦେବ ଶିବଙ୍କ ସଂକଳ୍ପ, ଦେବତା-ଋଷିମାନଙ୍କର ଭଗବାନ ବିଷ୍ଣୁଙ୍କୁ ପ୍ରାର୍ଥନା, ଶ୍ରୀ ରାମଙ୍କ ଅବତାର ପ୍ରସଙ୍ଗ, ମାତା ଅଞ୍ଜନାଙ୍କ ଆଖ୍ୟାନ, ମହାବୀର ହନୁମାନଙ୍କ ଜନ୍ମ, ବାଲ୍ୟଲୀଳା, ଶ୍ରୀରାମଙ୍କ ସହ ହନୁମାନଙ୍କ ସାକ୍ଷାତ, ହନୁମାନଙ୍କ ଲଙ୍କାଯାତ୍ରା, ଅଶୋକ ବନରେ ମାତା ସୀତାଙ୍କ ଠାବ, ସେତୁ ବନ୍ଧ ନିର୍ମାଣ, ରାମ-ରାବଣ ଯୁଦ୍ଧ, ରାବଣ ବଧ, ହନୁମାନଙ୍କ ଅଯୋଧ୍ୟା ଯାତ୍ରା, ରାମ-ସୀତାଙ୍କ ସେବା ଓ ଭକ୍ତି ଭାବନାର ମଞ୍ଜୁଳ ବର୍ଣ୍ଣନା କରାଯାଇଛି ।

**ପିଲାଙ୍କ ସରଳ ସଂକ୍ଷିପ୍ତ ରାମାୟଣ (୨୦୦୬):** ସଂସ୍କୃତ ବାଲ୍ମୀକି ରାମାୟଣର କଥାବସ୍ତୁକୁ ନେଇ କବି ଅତି ସରଳ ସଂକ୍ଷିପ୍ତ ଭାବରେ ଏହି ରାମାୟଣଟି ରଚନା କରିଛନ୍ତି । ଏଥିରେ ରାମାୟଣର ବାଳ କାଣ୍ଡ, ଅଯୋଧ୍ୟା କାଣ୍ଡ, ଆରଣ୍ୟକ କାଣ୍ଡ, କିଷ୍କିନ୍ଧା କାଣ୍ଡ, ସୁନ୍ଦରା କାଣ୍ଡ, ଲଙ୍କା କାଣ୍ଡ ଆଦିର ବିଷୟବସ୍ତୁ କୁ କବି ଓଡ଼ିଆ ଭାଷାରେ ସରଳ, ସାବଲୀଳ ଓ ରସାଳ ଭାବରେ ପରିପ୍ରକାଶ କରିଛନ୍ତି ।

**ଚାଉଳ ଭଜା ଓଷାବ୍ରତ (୨୦୦୭):** ଓଡ଼ିଆ ବ୍ରତ ସାହିତ୍ୟର ଏହା ଏକ ପ୍ରଭାବଶାଳୀ ବ୍ରତ ଗ୍ରନ୍ଥ । ଓଡ଼ିଶାର ଘରେ ଘରେ ଅତି ପରିଚିତ ସାଧବଘର ଉପାଖ୍ୟାନ ଓ କିମ୍ବଦନ୍ତୀର କଥାବସ୍ତୁକୁ ନେଇ କବି ଏହି ବ୍ରତ ଗ୍ରନ୍ଥ ଟି ରଚନା କରିଛନ୍ତି । କବି ଗ୍ରନ୍ଥ ଆରମ୍ଭରେ ପ୍ରଥମେ ମଙ୍ଗଳାଚରଣରେ ଗଣେଷ ଓ ଦେବୀ ଶାରଳାଙ୍କ ବନ୍ଦନା କରି ତା' ପରେ ସାଧବଘର ଉପାଖ୍ୟାନର ଅଧ୍ୟମାରମ୍ଭ କରିଛନ୍ତି । 'ଯାଆ' ମାନଙ୍କର ଗଞ୍ଜଣା ସହ୍ୟକରି ନପାରି ସାନ ସାଧବ ବୋହୂର ଅରଣ୍ୟ ଗମନ, ଅରଣ୍ୟରେ ଶିବ-ପାର୍ବତୀଙ୍କ ଦର୍ଶନ ଏବଂ ପାର୍ବତୀଙ୍କ ନିର୍ଦ୍ଦେଶରେ ସାନବୋହୂର ଚାଉଳଭଜା ଓଷା ବ୍ରତ ପାଳନ, ତା'ର ଦୁଃଖର ବିନାଶ ଓ ଯଶ ସୌଭାଗ୍ୟ ଲାଭ ଆଦି ବିଷୟର ବର୍ଣ୍ଣନା ଏହି ବ୍ରତ ଗ୍ରନ୍ଥରେ କରାଯାଇଛି । ତାଙ୍କର 'ଦାଣ୍ଡପହଁରା' ଓଷା ଗ୍ରନ୍ଥଟି ମଧ୍ୟ ଓଡ଼ିଆ ବ୍ରତ ସାହିତ୍ୟର ଏକ ଅମୂଲ୍ୟ ଗ୍ରନ୍ଥ ।

**ଶ୍ରୀ ଶ୍ରୀନିବାସ ମିଶ୍ର (୧୯୨୮-୨୦୧୪):**

ଶ୍ରୀନିବାସ ମିଶ୍ର ୧୯୨୮ ମସିହାରେ ଢେଙ୍କାନାଳ ଜିଲ୍ଲାର ସଦାଶିବପୁର ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତା ଥିଲେ- ସତ୍ୟବାଦୀ ମିଶ୍ର ଓ ମାତା-ସରସ୍ୱତୀ ମିଶ୍ର । ଶ୍ରୀଯୁକ୍ତ ମିଶ୍ର ଜଣେ ଦକ୍ଷ, ଆଦର୍ଶ ଶିକ୍ଷକ ଥିଲେ । ଶିକ୍ଷକ ଜୀବନର ସୁଦୀର୍ଘ ପଥରେ ସେ ଅନେକ ପ୍ରତିଷ୍ଠା ଓ ଯଶ ସାଉଁଟିଛନ୍ତି । ସେ ଜଣେ ନୀରବ ସାରସ୍ୱତ ସାଧକ ଥିଲେ । ଚିତ୍ରାଙ୍କନ, ସଙ୍ଗୀତ ସାଧନା ସହିତ ସେ କବିତା ରଚନାରେ ମନୋନିବେଶ କରିଥିଲେ । ଶ୍ରୀଯୁକ୍ତ ମିଶ୍ରଙ୍କର ଏକ ମନୋଜ୍ଞ କବିତା ସଂକଳନ ହେଲା-'କବିତା କାଠ ଚମ୍ପାର'(୨୦୦୬) । ଏହି ସଂକଳନଟିରେ ୧୧୦ ଗୋଟି କବିତା ସ୍ଥାନିତ ହୋଇଛି । ଏହି କବିତା ଗୁଡ଼ିକରେ ସ୍ରଷ୍ଟାପ୍ରାଣର ନିବିଡ଼ ଅନୁଭବ, ଅନୁଭୂତି, ଆବେଗ ପ୍ରବଣତା, ମୁକ୍ତି ନିଷ୍ଠତା ଓ ଦାର୍ଶନିକ ଦୃଷ୍ଟିଭଙ୍ଗୀ ଫୁଟିଉଠିଛି । ଏହି କବିତା ଗୁଡ଼ିକ ବହୁଭାବ, ବହୁ ରୂପ ଓ ବହୁ ସମ୍ଭାବନାରେ ଶବଳିତ । ସମାଜ ଜୀବନର ବହୁବିଧରୂପ-ବିଭବ ଓ କବିଙ୍କର ବ୍ୟକ୍ତିଗତ ଜୀବନର ସାନ୍ଦ୍ର-ନିବିଡ଼ଅନୁଭବ, ଅନୁଭୂତିର କଳାତ୍ମକ ପରିପ୍ରକାଶ ଏହି କବିତା ଗୁଡ଼ିକରେ ଫୁଟିଉଠିଛି । ଏହି କବିତା ଗୁଡ଼ିକର ଭାଷା ବେଶ୍ ସରଳ, ସାବଲୀଳ, ରସାଳ ଓ ଭାବ ବେଶ୍ ଲଳିତ ଓ ମଧୁର ।

**ଶ୍ରୀ ବିକ୍ରମ ପଣ୍ଡା (୧୯୨୯- ):**

କବି ବିକ୍ରମ ପଣ୍ଡା ୧୯୨୯ ମସିହାରେ ଢେଙ୍କାନାଳ ଜିଲ୍ଲାର ସରବେରେଣୀଠାରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ-ସୋମନାଥ ପଣ୍ଡା ଓ ମାତା-କଲ୍ୟାଣୀ ଦେବୀ । ବିକ୍ରମ ପଣ୍ଡା ମୁଖ୍ୟତଃ ଜଣେ ସଂସ୍କୃତ ପଣ୍ଡିତ ଥିଲେ । ଶିକ୍ଷକତା ସହିତ ସେ ସାରସ୍ୱତ ସୃଷ୍ଟିକର୍ମରେ ମନୋନିବେଶ କରିଥିଲେ । ତାଙ୍କ ରଚିତ ସାରସ୍ୱତ ସୃଷ୍ଟି ସମ୍ଭାର ଗୁଡ଼ିକ ହେଲା- କାପାଳୀ (କାବ୍ୟ -୧୯୬୦), ଉତ୍ତରାପଥେ (ଭ୍ରମଣ କାହାଣୀ-୧୯୭୮), ଶ୍ରୀମଦ ଭାଗବତର ଓଡ଼ିଆ ଅନୁବାଦ (୧୯୭୮), ଶ୍ରୀମଦ ଭାଗବତ ଦୀପିକା(୧୯୯୨), ଶ୍ରୀମଦ ଭାଗବତ ମହାତ୍ମ୍ୟ (୧୯୯୬), ଭର୍ତ୍ତୃହରି କୃତ ସଂସ୍କୃତ ଶୃଙ୍ଗାର ଶତକ, ବୈରାଗ୍ୟ ଶତକ ଓ ନୀତି ଶତକର ଓଡ଼ିଆ ଅନୁବାଦ । ଏହିସବୁ ରଚନା ଗୁଡ଼ିକ ଢେଙ୍କାନାଳର ସାରସ୍ୱତ, ସାଂସ୍କୃତିକ ଓ ଧାର୍ମିକ ପରଂପରାକୁ ସମୃଦ୍ଧ, ଋଦ୍ଧିମନ୍ତ କରିଅଛି ।

**ଶ୍ରୀ ଶରତ କୁମାର ମିଶ୍ର (୧୯୩୦-୨୦୦୯):**

ଶରତ କୁମାର ମିଶ୍ରଙ୍କ ଜନ୍ମ ୧୯୩୦ ମସିହାରେ ଢେଙ୍କାନାଳ ଜିଲ୍ଲାର ଗଇଲୋ ଠାରେ । ତାଙ୍କ ପିତାଙ୍କ ନାମ ଅନନ୍ତ ଚରଣ ମିଶ୍ର ଓ ମାତା-ସରୋଜିନୀ ଦେବୀ ।

ଶରତ ମିଶ୍ର ମୁଖ୍ୟତଃ ଜଣେ ନାଟ୍ୟକାର । ନାଟକ ଅଭିନୟ, ନାଟ୍ୟ ନିର୍ଦ୍ଦେଶନା ଓ ନାଟକ ରଚନାରେ ସେ ମନୋନିବେଶ କରିଥିଲେ । ଆଇନ ବ୍ୟବସାୟ, ରାଜନୀତି, ସମାଜ ସେବା ଓ ସାହିତ୍ୟ ସଂଗଠନ ସହିତ ସେ ଜଡ଼ିତଥିଲେବି ନାଟ୍ୟ କଳାହିଁ ତାଙ୍କ ପ୍ରତିଭାକୁ ଚରମ ସଫଳତା ଦେଇଥିଲା । ତାଙ୍କ ରଚିତ ନାଟକ ଗୁଡ଼ିକ ହେଲା- ଚୋରାବାଲି, ଦସ୍ୟୁ ନାୟିକା ଫୁଲନଦେବୀ ପ୍ରଭୃତି । ନାଟକ ରଚନା ଅପେକ୍ଷା ନାଟକ ଅଭିନୟ ଓ ନାଟ୍ୟନିର୍ଦ୍ଦେଶନାରେ ବେଶି ଗୁରୁତ୍ୱ ଦେଇଥିଲେ । ଓଡ଼ିଶା ଥିଏଟର ଆନ୍ଦୋଳନର ସେ ଜଣେ ସକ୍ରୀୟ, ସମର୍ପିତ କର୍ମୀ ଥିଲେ । ଢେଙ୍କାନାଳ ମାଟିର ସେ ଜଣେ ସୁଯୋଗ୍ୟ ସାରସ୍ୱତ ସନ୍ତାନ ।

**ଶ୍ରୀ ବିନୋଦ ବିହାରୀ ନନ୍ଦ ( ୧୯୩୦- ) :**

ବିନୋଦ ବିହାରୀଙ୍କ ଜନ୍ମ ୧୯୩୦ ମସିହା ସେପ୍ଟେମ୍ବର ମାସ ୨୦ ତାରିଖରେ ଢେଙ୍କାନାଳ ଜିଲ୍ଲାର ଧଳପୁର ଗ୍ରାମରେ । ତାଙ୍କ ପିତାଙ୍କ ନାମ-ହରମୋହନ ନନ୍ଦ ଓ ମାତା- ଜେମା ଦେଈ । ଶ୍ରୀଯୁକ୍ତ ନନ୍ଦ ବୃତ୍ତିରେ ଜଣେ ଶିକ୍ଷକ । ଶିକ୍ଷକତା ସହିତ ସେ ସାରସ୍ୱତ ସୃଷ୍ଟିକର୍ମରେ ମନୋନିବେଶ କରିଥିଲେ । ସେ ମୁଖ୍ୟତଃ ଜଣେ କାବ୍ୟକାର । ପୁରାଣ ଓ ମହାଭାରତର କଥାବସ୍ତୁକୁ ନେଇ ସେ ଅନେକ ଗୁଡ଼ିଏ କାବ୍ୟ ରଚନା କରିଛନ୍ତି । ଏହାସହିତ ସମାଜ, ସଂସ୍କୃତି ଓ ବ୍ୟକ୍ତି ଜୀବନର ଚିତ୍ର ମଧ ତାଙ୍କ କାବ୍ୟକୃତିରେ ପ୍ରକଟିତ । ତାଙ୍କ ରଚିତ କାବ୍ୟ କୃତି ଗୁଡ଼ିକ ହେଲା-ପ୍ରେମ ପ୍ରବାହିନୀ, ଭକ୍ତର ଭଗବାନ, କାମନା ବିଳାସ, ବିଳାସ ରସବିଳାସୀ, ଶ୍ରୀରାମ ବିଜୟ, ବିଶ୍ୱଚିନ୍ତାମଣି, କଳି କୌତୁକ, ବୀର ବିଚାର, ଋତୁ ସଂହାର, ଶ୍ରୀକ୍ଷେତ୍ର ବିହାର, ରାଧାରମଣ ରାସ ରହସ୍ୟ, ବୀର ବିବୃତି, ବିଧି ବିଚାର, ପାଞ୍ଚାଳୀବିବସନ, କିଷ୍କିନ୍ଧ୍ୟା ବିଜୟ, ଭୋଜିବିଳାସୀ, ସମସ୍ୟାର ସମାଧାନ, ଅଶା ଓ ଅବସ୍ଥା, ଆମ ଠାକୁର, ନମନୀୟା ଢେଙ୍କାନାଳ ପ୍ରଭୃତି । ଏହା ସହିତ ସେ ରାମ ଭଜନ ଚଉତିଶା ଓ ହନୁମାନ ଭଜନ ଚଉତିଶା ମଧ ରଚନା କରିଛନ୍ତି । ଶ୍ରୀଯୁକ୍ତ ନନ୍ଦ 'ମମତାର ମୂଲ' ନାମକ ଏକ ଉପନ୍ୟାସର ସ୍ରଷ୍ଟା ।

**ଶ୍ରୀରାମ ବିଜୟ:** ଏହା ରାମାୟଣର କଥାବସ୍ତୁ ଆଧାରିତ ଏକ ଦୀର୍ଘ କାବ୍ୟ । ଏହି ଗ୍ରନ୍ଥଟି ସାତଗୋଟି ସୋପାନରେ ବିଭକ୍ତ । ଶ୍ରୀରାମଚନ୍ଦ୍ରଙ୍କ ଜନ୍ମ, ଜୀବନୀ, ବୀରତ୍ୱ, ବନବାସ, ରାଜ୍ୟାଭିଷେକ ଓ ରାଜତ୍ୱର ମହନୀୟ ଘଟଣାବଳୀ ଏଥିରେ କାବ୍ୟରୂପ ନେଇଛି । ରାମଭକ୍ତି ପରଂପରାର ଏହା ଏକ ସାର୍ଥକ ଗ୍ରନ୍ଥ ।

**ବିଳାସ ରସ ବିଳାସୀ (୨୦୦୯):** ଏହା ଏକ କୃଷ୍ଣକାବ୍ୟ। ଭଗବାନ ଶ୍ରୀକୃଷ୍ଣ ଓ ତାଙ୍କ ଭକ୍ତଶିରୋମଣି ବିଲ୍ୱମଙ୍ଗଳର ରସବିଳାସ ଏଥିରେ ବର୍ଣ୍ଣିତ ହୋଇଛି। ଏହି କାବ୍ୟଟି ୧୪ ଗୋଟି ଛାନ୍ଦ ବିଶିଷ୍ଟ। ଯମକ, ଅନୁପ୍ରାସ, ଉପଧା ଆଦି ଅଳଂକାର ଏବଂ ବଙ୍ଗଳାଶ୍ରୀ, ରାମକେରୀ, ଶଙ୍କରାଭରଣ, ଚୋଖି, କଲ୍ୟାଣଆହାରୀ, ରସକୂଲ୍ୟା, କାମୋଦୀ, ଆଷାଢ଼ଶୁକ୍ଳ ପ୍ରଭୃତି ରାଗର ପ୍ରୟୋଗରେ କବି ଏହି କାବ୍ୟଟିକୁ ଅଳଂକାରିକ, ରସସିକ୍ତ ଓ ମାଧୁର୍ଯ୍ୟ ମଣ୍ଡିତ କରିଛନ୍ତି।

**କଳି କୌତୁକ (୨୦୧୧):** ଏହା ଏକ କୃଷ୍ଣ କୈନ୍ଦ୍ରିକ ବୈଷ୍ଣବୀୟ କାବ୍ୟ। ଏହି କାବ୍ୟଟି ପାଞ୍ଚଗୋଟି ସର୍ଗ ବିଶିଷ୍ଟ। ଏଥିରେ ଭାରତୀୟ ଆଧାତ୍ମିକ ଜଗତର ପରମାରାଧ ଦେବତା ଭଗବାନ କୃଷ୍ଣଙ୍କର ଅପୂର୍ବ ଲୀଳା ଓ ମହିମା ବର୍ଣ୍ଣିତ ହୋଇଛି। ମୁଖ୍ୟତଃ କୃଷ୍ଣଙ୍କର ବାଲ୍ୟ ଲୀଳା ଓ ମାତା ଯଶୋମତୀ-ଦେବକୀଙ୍କ ମଧ୍ୟରେ ପୁତ୍ର ସ୍ନେହକୁ ନେଇ କଳି-କୌତୁକ ଅତି କମନୀୟ ଭାବରେ ଏଥିରେ ବର୍ଣ୍ଣିତ ହୋଇଛି। ମାତୃ ହୃଦୟର ଅକପଟ ସ୍ନେହ-ମମତା ଏହି କାବ୍ୟଟିକୁ ରସସିକ୍ତ କରିଅଛି। ଏହି କାବ୍ୟରେ କବି ଅନୁପ୍ରାସ, ଯମକ, ଉପଧାଦି ଅଳଂକାର ସହିତ ବିଭିନ୍ନ ରାଗ-ରାଗିଣୀର ପ୍ରୟୋଗ କରିଛନ୍ତି।

**କାମନା ବିଳାସ (୨୦୧୧):** ଏହା ମଧ୍ୟ ଏକ ପୌରାଣିକ କାବ୍ୟ। ଏହି କାବ୍ୟଟି ୧୨ ଗୋଟି ଛାନ୍ଦ ବିଶିଷ୍ଟ। ପୁରାଣ ବର୍ଣ୍ଣିତ ଦେବା-ସୁର ସଂଗ୍ରାମ, ଯୁଦ୍ଧମୃତ ଅସୁର ମାନଙ୍କୁ ଅସୁରଗୁରୁ ଶୁକ୍ରାଚାର୍ଯ୍ୟଙ୍କର ସଂଜୀବନୀ ମନ୍ତ୍ର ବଳରେ ଜୀବନ ଦାନ, ଦେବତା ମାନଙ୍କର ଭାଳେଣୀ, ଶୁକ୍ରାଚାର୍ଯ୍ୟଙ୍କଠାରୁ ସଂଜୀବନୀ ମନ୍ତ୍ର ଆଣିବାପାଇଁ ଦେବଗୁରୁ ବୃହସ୍ପତିଙ୍କ ପୁତ୍ର 'କଚ'ଙ୍କୁ ଶୁକ୍ରାଚାର୍ଯ୍ୟଙ୍କ ପାଖକୁ ପ୍ରେରଣ ଓ କଚଙ୍କର ସଂଜୀବନୀ ମନ୍ତ୍ର ଲାଭ ଆଦି ପ୍ରସଙ୍ଗ ଏ କାବ୍ୟର ମୁଖ୍ୟ ବିଷୟବସ୍ତୁ। ଏହି କାବ୍ୟଟି ବିଭିନ୍ନ ରାଗ-ରାଗିଣୀ ଓ ଅନୁପ୍ରାସ, ଯମକ, ଉପଧା ଆଦି ଅଳଂକାରର ଶୋଭନ ସମାବେଶରେ ବେଶ୍ ଆଳଂକାରିକ, ଭାବମୟ ଓ ମାଧୁର୍ଯ୍ୟମୟ ହୋଇପାରିଛି।

**କିଷ୍କିନ୍ଧ୍ୟା ବିଜୟ (୨୦୧୧):** ଏହା ରାମ ଭକ୍ତି ପରଂପରାର ଏକ ଅମଳିନ କାବ୍ୟ କୃତି। ଏହି କାବ୍ୟଟି ୫ ଗୋଟି ସର୍ଗ ବିଶିଷ୍ଟ। କାବ୍ୟାରମ୍ଭରେ କବି ମର୍ଯ୍ୟାଦାବନ୍ତ ପୁରୁଷ ପ୍ରଭୁ ଶ୍ରୀରାମଚନ୍ଦ୍ରଙ୍କର ସ୍ୱରୂପ ବର୍ଣ୍ଣନା କରିଛନ୍ତି। ଏହାପରେ ସୀତାଙ୍କ ଅନ୍ୱେଷଣରେ ରାମ-ଲକ୍ଷ୍ମଣଙ୍କର ବନପଥ ଭ୍ରମଣ, ହନୁମାନଙ୍କ ସହିତ ସାକ୍ଷାତ, ହନୁମାନଙ୍କ ମୁଖରୁ ସୁଗ୍ରୀବର ଦୁଃଖ ଶ୍ରବଣ, ସୁଗ୍ରୀବଙ୍କ ସହିତ ରାମଚନ୍ଦ୍ରଙ୍କର ସାକ୍ଷାତ ଓ ସଖ୍ୟତା ସ୍ଥାପନ, କିଷ୍କିନ୍ଧ୍ୟା ରାଜା ବାଳୀ ର ଦୌରାମ୍ୟ ଓ ବାଳୀର ବିନାଶ ପାଇଁ ରାମଚନ୍ଦ୍ରଙ୍କର ପ୍ରତିଜ୍ଞା,

ଯୁଦ୍ଧରେ ବାଳିବଧ, ସୁଗ୍ରୀବର ରାଜ୍ୟାଭିଷେକ ପ୍ରଭୃତି ପ୍ରସଙ୍ଗ ବର୍ଣ୍ଣିତ ହୋଇଛି । ଏହି କାବ୍ୟଟି ମଧ ବିଭିନ୍ନ ରାଗ, ରାଗିଣୀ ଓ ଅଳଂକାର ସମାବେଶରେ ମାଧୁର୍ଯ୍ୟ ମଣ୍ଡିତ ହୋଇପାରିଛି ।

**ଭୋଜି ବିଳାସୀ (୨୦୧୧):** ଏହା ଏକ ହାସ୍ୟ-ରସାତ୍ମକ କାବ୍ୟ । ଏହି କାବ୍ୟଟି ୧୬ ଗୋଟି ଛାନ୍ଦ ବିଶିଷ୍ଟ । କାବ୍ୟାରମ୍ଭରେ କବି ଦୋଳ ପର୍ବ ଓ ହୋଲି ଉତ୍ସବର ବର୍ଣ୍ଣାଢ୍ୟ ବର୍ଣ୍ଣନା କରିଛନ୍ତି । ଏହାପରେ କବି ହାସ୍ୟ-ବ୍ୟଙ୍ଗ ଛଳରେ ପରିକଳ୍ପିତ ଏକ ମାଛଭୋଜି ଅନୁଚିନ୍ତା ପ୍ରକଟନ କରିଛନ୍ତି । ଗ୍ରାମ୍ୟ କମିଟିର କର୍ମକର୍ତ୍ତା ମାନଙ୍କ ସହ ଏକ ମାଛ ଭୋଜିର ଆୟୋଜନ କରି ମାଛ ଅଭାବରୁ କିପରି ଅପଦସ୍ତ ଓ ହୀନସ୍ଥା ହେବାକୁ ପଡ଼ିଛି, ତାକୁ କବି ଏଠାରେ କାବ୍ୟରୂପ ଦେଇଛନ୍ତି ।

**ନମନୀୟା ଢେଙ୍କାନାଳ (୨୦୦୯):** ଏହା ୫୪ ଗୋଟି ପଦ ବିଶିଷ୍ଟ ଏକ ଦୀର୍ଘ କବିତା । ସଂପୂର୍ଣ୍ଣ କବିତାଟି ବଙ୍ଗଳାଶ୍ରୀ ରାଗରେ ରଚିତ ହୋଇଛି । ଏହି କବିତାଟିରେ ଢେଙ୍କାନାଳର ପ୍ରାଚୀନ ଐତିହ୍ୟ, ତା'ର ମହନୀୟ ସଂସ୍କୃତି ଓ ମୂଲ୍ୟବୋଧର ପ୍ରକଟନ କରାଯାଇଛି । ଢେଙ୍କାନାଳ ମାଟିର ନଭଶ୍ଚୁମ୍ବୀ କପିଳାସ ଗିରି, ଚନ୍ଦ୍ର ଶେଖର ଜୀଉ ମନ୍ଦିର, ବଳଦେବ ମନ୍ଦିର, ମା' ଦକ୍ଷିଣ କାଳୀ ମନ୍ଦିର, ଭୀମନଗରୀ, ଯତନ ନଗର, ନାଧରା ରାମଚଣ୍ଡୀ, କନକେଶ୍ୱର ଶିବ ମନ୍ଦିର, ଢେଙ୍କାନାଳ ସହରସ୍ଥିତ ପାଣିଓହଳା ପର୍ବତ, ସପ୍ତଶଯ୍ୟା ଆଦି ସ୍ଥାନ ମାନଙ୍କର ମହତ୍ତ୍ୱ ପ୍ରକଟନ କବି କରିଛନ୍ତି । ଏହା ସହିତ ଢେଙ୍କାନାଳର ରାଜା ତ୍ରିଲୋଚନ ମହୀନ୍ଦ୍ର ବାହାଦୂର, ଭଗୀରଥ ମହୀନ୍ଦ୍ର ବାହାଦୂର ଓ ରାଜର୍ଷି ସୁରପ୍ରତାପଙ୍କର ଯଶ ଓ ମହିମାଗାନ କରାଯାଇଛି ।

### ଶ୍ରୀ ଦିବ୍ୟସିଂହ ମିଶ୍ର (୧୯୩୦- ) :

ଦିବ୍ୟସିଂହ ମିଶ୍ରଙ୍କର ଜନ୍ମ ୧୯୩୦ ମସିହା ଜାନୁଆରୀ ମାସ ୧୪ ତାରିଖରେ ଢେଙ୍କାନାଳ ଜିଲ୍ଲାର କମଗରା ଠାରେ । ଶ୍ରୀଯୁକ୍ତ ମିଶ୍ର ସମାଜ ଜୀବନ, ଜାତୀୟ ଜୀବନ ଓ ମାନବିକ ଜୀବନ ବୋଧରେ ତାଙ୍କ ସାରସ୍ୱତ କୃତି ଗୁଡ଼ିକୁ ଜୀବନ୍ତ ଓ ପ୍ରାଣବନ୍ତ କରିଛନ୍ତି । ବ୍ୟକ୍ତି ଓ ସମାଜ ଜୀବନକୁ ଶୃଙ୍ଖଳିତ ଓ ନୀତିନିଷ୍ଠ କରିବାପାଇଁ ସେ ଆହ୍ୱାନ ଦେଇଛନ୍ତି । ଏହା ସହିତ ଜାତୀୟ ଜୀବନର ପରିପୂର୍ଣ୍ଣ ବିକାଶ ଓ ପ୍ରଗତି ପାଇଁ ତାଙ୍କ ଲେଖନୀ ଥିଲା ଗତିମୁଖର । ସେ ଅନେକ ମୌଳିକ ରଚନା ସହିତ କେତେକ ସଂସ୍କୃତ ଗ୍ରନ୍ଥର ଓଡ଼ିଆ ଅନୁବାଦ ମଧ କରିଛନ୍ତି । ତାଙ୍କ ରଚିତ ସାରସ୍ୱତ ସୃଷ୍ଟି ସମ୍ଭାର ଗୁଡ଼ିକ ହେଲା-ନୀତି ମଞ୍ଜୁଷା, ମୋହ ମୁଦ୍ଗର (ଅନୁବାଦ), ମଣିରତ୍ନମାଳା (ଅନୁବାଦ),

ଆମେରିକା ଅନୁଭୂତି, ଜନନୀ-ଜନ୍ମଭୂମି, ଶିକ୍ଷା ଏକ ଜାତୀୟ ସମସ୍ୟା ପ୍ରଭୃତି । ତାଙ୍କର ଏହି ରଚନା ଗୁଡ଼ିକ ମୁଖ୍ୟତଃ ନୀତିନିଷ୍ଠ, ନୈତିକତା ଗର୍ଭିତ ଓ ଶିକ୍ଷଣୀୟ ।

**ଶ୍ରୀ ରୁଦ୍ର ନାରାୟଣ ମିଶ୍ର (୧୯୩୧- ):**

ରୁଦ୍ରନାରାୟଣ ମିଶ୍ରଙ୍କର ଜନ୍ମ ୧୯୩୧ ମସିହା ଫେବୃୟାରୀ ମାସ ୯ ତାରିଖରେ ଢେଙ୍କାନାଳର ମୁଣ୍ଡାଦେଇଂପୁର ଶାସନ ଠାରେ । ତାଙ୍କ ପିତାଙ୍କ ନାମ-ପଦ୍ମନାଭ ମିଶ୍ର ଓ ମାତା-ଚନ୍ଦ୍ରକଳା ଦେବୀ । ଶ୍ରୀଯୁକ୍ତ ମିଶ୍ର ୧୯୫୧ ମସିହାରେ ବି.ଏ., ବି.ଏଡ୍. ପାଶ୍ ପରେ ଶିକ୍ଷକ ଚାକିରୀ କରିଥିଲେ । ସେ ଜଣେ ଆଦର୍ଶବାନ୍, ନୀତିନିଷ୍ଠ, ଛାତ୍ରବତ୍ସଳ ଶିକ୍ଷକ ଥିଲେ । ଚାକିରୀ ଜୀବନର ଅନ୍ତିମ ପର୍ଯ୍ୟାୟରେ ସେ ଢେଙ୍କାନାଳସ୍ଥିତ ବ୍ରଜନାଥ ବଡ଼ଜେନା ଉଚ୍ଚବିଦ୍ୟାଳୟରେ ପ୍ରଧାନ ଶିକ୍ଷକ ଭାବରେ ଅବସର ଗ୍ରହଣ କରିଥିଲେ । ଶ୍ରୀଯୁକ୍ତ ମିଶ୍ର ଜଣେ ବହୁ ଭାଷାବିତ୍, ବହୁ ଶାସ୍ତ୍ରବିତ୍ ବିଦ୍ୱାନ୍ ଥିଲେ । ଉଭୟ ଇଂରାଜୀ ଓ ସଂସ୍କୃତ ଭାଷାରେ ତାଙ୍କର ଗଭୀର ଦକ୍ଷତା ଥିଲା । ସେ ଉଭୟ ଇଂରାଜୀ ଓ ଓଡ଼ିଆ ଭାଷାରେ ଅନେକ କବିତା ରଚନା କରିଯାଇଛନ୍ତି । ଏହା ସହିତ ସେ ଅନେକ ଅନୁବାଦ ସହିତ ମୌଳିକ ରଚନା ମଧ୍ୟ କରିଯାଇଛନ୍ତି । ତାଙ୍କ ରଚିତ ଗ୍ରନ୍ଥ ଗୁଡ଼ିକ ହେଲା- ମାନସ କଥାମୃତ ଲହରୀ, ମାନସ ଗୀତାମୃତ ଲହରୀ, ଶ୍ରୀହନୁମାନ ଚାଳିଶା, ଗୀତାମହାତ୍ମ୍ୟ ଓ ଚଣ୍ଡୀ ଅନୁବାଦ ।

**ମାନସ କଥାମୃତ ଲହରୀ (୧୯୮୧) :** ଏହା ମହାକବି ତୁଳସୀ ଦାସଙ୍କ 'ରାମଚରିତ ମାନସ' ର ଓଡ଼ିଆ ଭାବାନୁବାଦ । 'ରାମଚରିତ ମାନସ' ର ବିଭିନ୍ନ ଆଖ୍ୟାନ, ଉପାଖ୍ୟାନ କୁ ନେଇ କବି ଏହି ମାନସ କଥାମୃତ ଲହରୀ ରଚନା କରିଛନ୍ତି ।

**ମାନସ ଗୀତାମୃତ ଲହରୀ (୧୯୮୩):** ଏହା ସଂସ୍କୃତ ଶ୍ରୀମଦ୍ ଭଗବତ୍ ଗୀତାର ଓଡ଼ିଆ ଭାବାନୁବାଦ ।ଶ୍ରୀମଦ୍ ଭଗବତ୍ ଗୀତା ର ବିଭିନ୍ନ ଆଖ୍ୟାନ ଓ ଉପାଖ୍ୟନକୁ ନେଇ କବି ଏହି ମାନସ ଗୀତାମୃତ ଲହରୀ ରଚନା କରିଛନ୍ତି । ଏହି ଦୁଇଖଣ୍ଡି ଗ୍ରନ୍ଥ ଭାରତୀୟ ଆଧ୍ୟାତ୍ମିକ ଦର୍ଶନ, ଭକ୍ତିଭାବନା ଓ ଈଶ୍ୱର ଚିନ୍ତନର ଏକ ଏକ ଅମୂଲ୍ୟ ଗ୍ରନ୍ଥ ।

**ଶ୍ରୀହନୁମାନ ଚାଳିଶା (୧୯୯୯):** ଏହା ମହାତ୍ମା ତୁଳସୀ ଦାସ କୃତ 'ଶ୍ରୀହନୁମାନ ଚଲୀସା' ର ଓଡ଼ିଆ ପଦ୍ୟାନୁବାଦ । ଶ୍ରୀଯୁକ୍ତ ମିଶ୍ର ମୂଳ ଦୋହା ସହିତ ଅତି ସରଳ, ସାବଲୀଳ, ଭାଷା ଓ ରାସାଳ ଭାବରେ ଏହାର ଓଡ଼ିଆ ପଦ୍ୟାନୁବାଦ କରିଛନ୍ତି । ରାମଭକ୍ତି ପରଂପରା ଓ ଭାରତୀୟ ଭକ୍ତି ପରଂପରା ର ଏହା ଏକ ମହାନ୍ କୃତି ।

**ସଙ୍କଟମୋଚନ ହନୁମାନାଷ୍ଟକ (୧୯୯୯):** ଏହା ଗୋସ୍ୱାମୀ ତୁଳସୀଦାସଙ୍କ ସଙ୍କଟମୋଚନ 'ହନୁମାନାଷ୍ଟକ' ର ପଦ୍ୟାନୁବାଦ ମାତ୍ର। ଏହି ରଚନାଟି ବେଶ୍ ରସାଳ, ଭାବଗର୍ଭକ ହୋଇଛି।

**ଶ୍ରୀ ନବକିଶୋର ପଟ୍ଟନାୟକ (୧୯୩୧- ):**

ନବକିଶୋର ପଟ୍ଟନାୟକଙ୍କ ଜନ୍ମ ୧୯୩୧ ମସିହାରେ ଢେଙ୍କାନାଳ ଜିଲ୍ଲାର ହିନ୍ଦୋଳ ଉପଖଣ୍ଡସ୍ଥିତ ନିମବାହାଲୀ ଗ୍ରାମରେ। ତାଙ୍କ ପିତାଙ୍କ ନାମ ଆର୍ତ୍ତବନ୍ଧୁ ପଟ୍ଟନାୟକ ଓ ମାତା-ସାବିତ୍ରୀ ଦେବୀ। ଶ୍ରୀ ନବକିଶୋର ଉଭୟ କବିତା ଓ ଗଳ୍ପ ରଚନା ରେ ସିଦ୍ଧହସ୍ତ। ତାଙ୍କ ରଚିତ ଦୁଇଖଣ୍ଡ ମହାର୍ଘ କବିତା ସଂକଳନ ହେଲା- ନବପରାଗ ଏବଂ ନବକଳିକା। ତାଙ୍କ ଗଳ୍ପ ସଂକଳନ ହେଲା- 'ନବପଲ୍ଲବ'। 'ନବପରାଗ' କବିତା ସଂକଳନ ସ୍ଥିତ କବିତା ଗୁଡ଼ିକରେ କବି ମଣିଷ ଓ ସମାଜ ଜୀବନର ରୂପଚିତ୍ର ସହ ବିଭିନ୍ନ ସମସ୍ୟାର ରୂପାୟନ କରିଛନ୍ତି। 'ନବକଳିକା' ଟି ସାତଗୋଟି ଭାଗରେ ପ୍ରକାଶିତ ହୋଇଛି। ଏହି କବିତା ଗୁଡ଼ିକରେ ମଧ ସମାଜ ଓ ମଣିଷ ଜୀବନର ସାମଗ୍ରୀକ ରୂପ ବିଭବ ଓ ଭାବବୈଚିତ୍ର୍ୟ ଅତି ବାସ୍ତବ, ସତ୍ୟଶୀଳ ରୂପରେ ପ୍ରକଟିତ ହୋଇଛି।

**ଶ୍ରୀମତୀ ନନ୍ଦିନୀ ଶତପଥୀ (୧୯୩୧-୨୦୦୬):**

ନନ୍ଦିନୀ ଶତପଥୀଙ୍କ ଜନ୍ମ ୧୯୩୧ ମସିହାରେ କଟକ ଠାରେ। ତାଙ୍କ ପିତା ହେଉଛନ୍ତି- ଓଡଶାର ସ୍ୱନାମଧନ୍ୟ ସାହିତ୍ୟିକ- କାଳିନ୍ଦୀ ଚରଣ ପାଣିଗ୍ରାହୀ। ନନ୍ଦିନୀଙ୍କ ମାତାଥିଲେ-ରତ୍ନମଣୀ ଦେବୀ। ନନ୍ଦିନୀ ଢେଙ୍କାନାଳର ଦେବେନ୍ଦ୍ରପ୍ରସାଦ ଶତପଥୀଙ୍କୁ ବିବାହ କରି ଢେଙ୍କାନାଳ ମାଟିର ବୋହୂ ହୋଇଥିଲେ। ଛାତ୍ରଜୀବନରୁ ନନ୍ଦିନୀଥିଲେ ସାହସିନୀ ଓ ବୁଦ୍ଧିମତୀ। କଟକ ର ରେଭେନ୍ସା ବାଳିକା ଉଚ୍ଚ ବିଦ୍ୟାଳୟ ଓ ରେଭେନ୍ସା ମହାବିଦ୍ୟାଳୟର ସେ ମେଧାବୀ ଛାତ୍ରୀ ଥିଲେ। ରେଭେନ୍ସା ମହାବିଦ୍ୟାଳୟରୁ ସେ ଆଇ.ଏ., ବି.ଏ.. ଏବଂ ପରିଶେଷରେ ଓଡ଼ିଆ ଭାଷାସାହିତ୍ୟରେ ଏମ୍. ଏ. ଡିଗ୍ରୀ ମଧ ଲାଭ କରିଥିଲେ। ଛାତ୍ର ଜୀବନରୁ ତାଙ୍କର ଉଭୟ ରାଜନୀତି ଓ ସାହିତ୍ୟ ପ୍ରତି ଅନୁରାଗ ଥିଲା। ୧୯୬୦ ମସିହା ବେଳକୁ ସେ ଓଡ଼ିଶା ପ୍ରଦେଶ ମହିଳା କଂଗ୍ରେସର ସଭାପତି ପଦ ମଣ୍ଡନ କରିଥିଲେ। ୧୯୬୨ ମସିହାରେ ସେ ରାଜ୍ୟସଭାର ସାଂସଦ ରୂପେ ନିର୍ବାଚିତ ହୋଇଥିଲେ। ଏପରିକି ୧୯୬୬ ମସିହାରେ ନନ୍ଦିନୀ ଇନ୍ଦିରାଗାନ୍ଧୀଙ୍କ କେନ୍ଦ୍ରୀୟ ମନ୍ତ୍ରୀମଣ୍ଡଳରେ ସୂଚନା ଓ ପ୍ରସାରଣ ମନ୍ତ୍ରୀପଦ ଲାଭ କରିଥିଲେ। ୧୯୬୮ ମସିହାରେ ନନ୍ଦିନୀ ଦ୍ୱିତୀୟଥର ପାଇଁ ପୁନର୍ବାର ରାଜ୍ୟସଭାକୁ ଯାଇଥିଲେ। ଏପରିକି

ନିଜର ନିଷ୍ଠା ଓ ଅଧ୍ୟବସାୟ ବଳରେ ୧୯୭୧ ମସିହାରେ ନନ୍ଦିନୀ କଟକ ବିଧାନ ସଭା ଉପନିର୍ବାଚନରେ ବିଜୟୀ ହୋଇ ୧୯୭୨-୧୯୭୪ ପର୍ଯ୍ୟନ୍ତ ଓଡ଼ିଶାର ମୁଖ୍ୟମନ୍ତ୍ରୀ ପଦ ମଣ୍ଡନ କରିଥିଲେ । ସେ ପୁଣି ଦ୍ୱିତୀୟଥର ପାଇଁ ମଧ୍ୟ ୧୯୭୪ ରୁ ୧୯୭୬ ପର୍ଯ୍ୟନ୍ତ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଆସନ ଅଳଂକୃତ କରିଥିଲେ । ପରବର୍ତ୍ତୀ ସମୟରେ ମଧ୍ୟ ସେ ଗଁଦିଆ, ଢେଙ୍କାନାଳ ବିଧାନସଭା ଆସନରୁ ବହୁବାର ଓଡ଼ିଶା ବିଧାନ ସଭାକୁ ନିର୍ବାଚିତ ହୋଇଥିଲେ । ବ୍ୟସ୍ତବହୁଳ ଦୀର୍ଘ ରାଜନୀତିକ ଜୀବନଭିତରେ ବି ନନ୍ଦିନୀ ଦେବୀ ସାରସ୍ୱତ ସାଧନା ଓ ସୃଷ୍ଟିକର୍ମରେ ମନୋନିବେଶ କରିଥିଲେ । ସେ ଏକାଧାରରେ ଥିଲେ ଜଣେ ମାନବବାଦୀ କବି ଓ ଗାଳ୍ପିକା । ତାଙ୍କର କବିତା ସଙ୍କଳନ ଗୁଡ଼ିକ ହେଲା- ଉତ୍ତରପୁରୁଷ, ଭ୍ରାନ୍ତି, ମୋ ଭିତରେ ମୁଁ, ମୁଁ ଚଢ଼େଇ କହୁଛି ।ଏହିସବୁ କବିତା ଗୁଡ଼ିକରେ କବିପ୍ରାଣର ସମାଜ ଓ ଜୀବନ ସଂପର୍କୀତ ଗଭୀର ଅନୁଭବ, ଅନୁଭୂତି, ମାନବିକ ସମ୍ବେଦନା ଓ ଆଧାତ୍ମିକ ଆସ୍ପୃହା ଫୁଟିଉଠିଛି । ତାଙ୍କ ରଚିତ ଗଳ୍ପ ସଂକଳନ ଗୁଡ଼ିକ ହେଲା- କେତୋଟି କଥା, ସପ୍ତଦର୍ଶୀ, ଅନୀତିର ପେଡ଼ି, ଜଣେ ଢ଼େଙ୍ଗା ଲୋକର ଇତିବୃତ୍ତି । ତାଙ୍କ ରଚିତ ଗଳ୍ପ ଗୁଡ଼ିକ ବେଶ୍ ମାନବବାଦୀ ଓ ବାସ୍ତବଧର୍ମୀ । ସମାଜ ଓ ମଣିଷ ଜୀବନର ବାସ୍ତବ, ସତ୍ୟଶୀଳ ରୂପର ପ୍ରକଟନ ତାଙ୍କ ଗଳ୍ପ ଗୁଡ଼ିକର ମୁଖ୍ୟ ବୈଶିଷ୍ଟ୍ୟ ।

ନନ୍ଦିନୀଙ୍କ ସାରସ୍ୱତ ପ୍ରତିଭାର ଅନ୍ୟଏକ ନିଦର୍ଶନ ହେଲା- ସେ ଜଣେ ସଫଳ ଅନୁବାଦିକା । ସେ ଅମ୍ରିତାପ୍ରୀତମ୍ ଙ୍କ 'ରିଭେନ୍ୟୁଷ୍ଟାମ୍ପ' ର ଓଡ଼ିଆ ଅନୁବାଦ 'ରିଭେନ୍ୟୁ ଟିକଟ' କରି ସେଥିପାଇଁ ୧୯୯୫ ମସିହାରେ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପୁରସ୍କାର ଲାଭକରିଥିଲେ । ଏହା ସହିତ ସେ ତସ୍ଲିମା ନାସ୍‌ରିନ୍ ଙ୍କର ଶ୍ରେଷ୍ଠକୃତି 'ଲଜ୍ଜା' ର ଓଡ଼ିଆ ଅନୁବାଦ, ମହାଶ୍ୱେତା ଦେବୀଙ୍କ ବଙ୍ଗଳା 'ନିର୍ବାଚିତ ଗଳ୍ପ'ର ଅନୁବାଦ ଏବଂ କୃଷ୍ଣାକମଳିନୀ ଙ୍କ 'ଗାନ୍ଧୀକଥାମୃତ'ର ସଫଳ ଓଡ଼ିଆ ଅନୁବାଦ କରିଛନ୍ତି । ବାସ୍ତବରେ ନନ୍ଦିନୀ ଢେଙ୍କାନାଳ ମାଟିର ଜଣେ ସାର୍ଥକ, କାଳଜୟୀ ସ୍ରଷ୍ଟା ।

**ଶ୍ରୀ ରାଜକିଶୋର ମିଶ୍ର (ଭରଦ୍ୱାଜ)(୧୯୩୨-):**

ରାଜକିଶୋର ମିଶ୍ରଙ୍କର ଜନ୍ମ ୧୯୩୨ ମସିହାରେ ଢେଙ୍କାନାଳ ଜିଲ୍ଲାର ଗଁଦିଆ ଅନ୍ତର୍ଗତ ବରପଦା ଗ୍ରାମରେ । ତାଙ୍କ ପିତାଙ୍କ ନାମ- ସଦାନନ୍ଦ ମିଶ୍ର ଓ ମାତାଙ୍କ ନାମ- ରମ୍ଭାଦେବୀ । ବୃତ୍ତିରେ ସେ ଓଡ଼ିଶା ଅର୍ଥସେବା ବିଭାଗରେ ଜଣେ ପଦସ୍ଥ କର୍ମଚାରୀ । ସରକାରୀ କାର୍ଯ୍ୟ ସହିତ ସେ ସାହିତ୍ୟ ରଚନାରେ ମଧ୍ୟ ମନୋନିବେଶ କରିଥିଲେ । ସେ ଏକାଧାରରେ ଜଣେ କବି, ପ୍ରାବନ୍ଧିକ ଓ ଏକାଙ୍କୀକାର । ତାଙ୍କ ରଚିତ

କବିତାଗ୍ରନ୍ଥ ହେଲା-ନିଷିଦ୍ଧ କବିତା, କିଛି ଅବଲୁପ୍ତ ଚିନ୍ତନ, 'The Song Hijacked'। ସେ ଦୁଇଖଣ୍ଡି ବେତାର ନାଟକ ମଧ୍ୟ ରଚନା କରିଛନ୍ତି । ତାଙ୍କର ଏହି ଛୋଟ ନାଟକ ଦୁଇଟି ହେଲା- ନୂତନ ପ୍ରଭାତ, ନୂତନ ସ୍ୱୟମ୍ବର । ଶ୍ରୀଯୁକ୍ତ ମିଶ୍ର ପ୍ରବନ୍ଧ ରଚନାରେ ମଧ୍ୟ ସିଦ୍ଧହସ୍ତ । ତାଙ୍କ ରଚିତ ପ୍ରବନ୍ଧ ଗ୍ରନ୍ଥ ଗୁଡ଼ିକ ହେଲା- ଅସମ୍ପୂର୍ଣ୍ଣ ସତ୍ୟ, ସଂସ୍କୃତି ଓ ଧର୍ମ, ସମାଜ ଓ ରାଷ୍ଟ୍ର ଏବଂ ସେମାନେ । 'ଅସମ୍ପୂର୍ଣ୍ଣ ସତ୍ୟ' ଏକ ଚିନ୍ତନଶୀଳ, ମନନଶୀଳ ପ୍ରବନ୍ଧ । ସମାଜ ଓ ରାଷ୍ଟ୍ର ପ୍ରବନ୍ଧଟି ଏକ ତତ୍ତ୍ୱନିଷ୍ଠ ପ୍ରବନ୍ଧ । ସମାଜ ଓ ରାଷ୍ଟ୍ର ସଂପର୍କୀତ ବିଭିନ୍ନ ତତ୍ତ୍ୱ ଓ ଚିନ୍ତାଦର୍ଶର ବୌଦ୍ଧିକ ଓ ତାତ୍ତ୍ୱିକ ଅନୁଶୀଳନ କରାଯାଇଛି । 'ଏବଂ ସେମାନେ' ଗ୍ରନ୍ଥଟି ହେଉଛି ସ୍ରଷ୍ଟାଙ୍କର ଆତ୍ମଜୀବନୀ ମୂଳକ ପ୍ରବନ୍ଧ ଗ୍ରନ୍ଥ । ତାଙ୍କର 'ସଂସ୍କୃତି ଓ ଧର୍ମ-(୨୦୧୦)' ପ୍ରବନ୍ଧ ଗ୍ରନ୍ଥଟି ଏକ ପ୍ରତିନିଧି ଶ୍ରେଣୀୟ ଗ୍ରନ୍ଥ । ଏଥିରେ ୧୭ ଗୋଟି ପ୍ରବନ୍ଧ ସ୍ଥାନିତ ହୋଇଛି । ଭାରତୀୟ ଧର୍ମ, ଦର୍ଶନ, ସଂସ୍କୃତି ଓ ମହନୀୟ ଜୀବନଧାରାକୁ ନେଇ ଏହି ପ୍ରବନ୍ଧ ଗୁଡ଼ିକ ରଚିତ । ଭାରତୀୟ ସଂସ୍କୃତିର ସୁଦୂରପ୍ରସାରି ବ୍ୟାପ୍ତି, ତା'ର ଆଧାତ୍ମିକ ମହତ୍ତ୍ୱ, ଭାରତୀୟ ଧର୍ମ ଦର୍ଶନ ର ନିଗୂଢ଼ ତତ୍ତ୍ୱର ତାତ୍ତ୍ୱିକ ନିରୂପଣ ଏହି ଗ୍ରନ୍ଥରେ କରାଯାଇଛି । ଭାରତ ଭୂମିରେ ଉଦ୍ଭୁତ ହିନ୍ଦୁ, ଜୈନ, ବୌଦ୍ଧ ଏବଂ ଶିଖ୍ ଧର୍ମ ଚତୁଷ୍ଟୟର ସୃଷ୍ଟିଉତ୍ସ ନିରୂପଣ ସହିତ ହିନ୍ଦୁ-ବେଦାନ୍ତ ଦର୍ଶନ, ଜୈନ-ବୌଦ୍ଧ ଦର୍ଶନର ତାତ୍ତ୍ୱିକ ବ୍ୟାଖ୍ୟା ଏଥିରେ କରାଯାଇଛି । ଏହା ସହିତ ଧର୍ମରସାର୍ବଜନୀନତା, ମାନବବାଦ ଓ ଗୀତାତତ୍ତ୍ୱର ମହତ୍ୱ ମଧ୍ୟ ଏଥିରେ ବ୍ୟଖ୍ୟା କରାଯାଇଚି । ଶ୍ରୀଯୁକ୍ତ ମିଶ୍ର ଢେଙ୍କାନାଳ ମାଟିର ଜଣେ ସୁଯୋଗ୍ୟ ସନ୍ତାନ ।

**ଶ୍ରୀ ରମେଶ ଚନ୍ଦ୍ର ଧଳ :**

ରମେଶଚନ୍ଦ୍ର ଧଳଙ୍କର ଜନ୍ମ ଢେଙ୍କାନାଳ ଜିଲ୍ଲାର ଗଞ୍ଜେଇଡ଼ିହ ଗ୍ରାମରେ । ସେ ଏକାଧାରରେ ଥିଲେ ଜଣେ କବି ଓ କଥାକାର । ତାଙ୍କ ରଚିତ କବିତା କୃତି ଗୁଡ଼ିକ ହେଲା- ସମୟର ରଙ୍ଗ, ପ୍ରତୀକ୍ଷାରେ, ରାତ୍ରୀର ଅଞ୍ଚଳରୁ ଖିଏ, କ୍ରୁଶବିଦ୍ଧ ଓ ଅନ୍ୟାନ୍ୟ କବିତା । ଏହିସବୁ କବିତାକୃତି ଗୁଡ଼ିକରେ ସ୍ରଷ୍ଟା ହୃଦୟର ନିବିଡ଼ ଅନୁଭବ ଓ ଅନୁଭୂତିର ଜୀବନ୍ତ ପରିପ୍ରକାଶ ସହିତ ସାମାଜିକ ସମସ୍ୟା, ସଙ୍କଟ ଓ ମାନବିକ ସମ୍ବେଦନାର ଚିତ୍ର ଫୁଟିଉଠିଛି । ଶ୍ରୀଯୁକ୍ତ ଧଳଙ୍କର ରଚିତ ଗଳ୍ପ ଗୁଡ଼ିକ ହେଲା- ମୁଠାଏ ନାଲି ଚୁଡି, ଝରଣା ଝରି ଝରି ଯାଏ, ଚମ୍ପକ ବରନ, ଅନ୍ଧକାରର ସୀମା, ଆକାଶର ମୁହଁ, ଶେଷ ଉପହାର, ଅନ୍ତିମ ଶଯ୍ୟା ଇତ୍ୟାଦି । ଏହିସବୁ ଗଳ୍ପଗୁଡ଼ିକ ଭିତରେ ମାନବ ଜୀବନର ଭାବ, ଭାବନା, ସୁଖ-ଦୁଃଖ, ଆଶା-ଆକାଙ୍କ୍ଷା, ସ୍ୱପ୍ନ -ସମ୍ଭାବନା ଓ ଜୀବନ ଯନ୍ତ୍ରଣାର ବାସ୍ତବରୂପ

ପ୍ରକଟିତ ହୋଇଛି । ଶ୍ରୀଯୁକ୍ତ ଧଳ 'ଛିନ୍ନପତ୍ର' ଶୀର୍ଷକ ଏକ ଉପନ୍ୟାସ ମଧ ରଚନା କରିଛନ୍ତି । ଏହା ସହିତ ସେ ଶିଶୁ ଉପଯୋଗୀ ଅନେକ ରଚନା ମଧ କରିଛନ୍ତି । ସେଗୁଡ଼ିକ ହେଲା- ମାଛଙ୍କ ମହାସଭା, ସାପର ସବୁଦ୍ର ଦେଖା, ହୀରା ନଗରୀର କାହାଣୀ, କଥାଟିଏ ଶୁଣିଯାଅ ପ୍ରଭୃତି । ଏହିସବୁ କବିତା, ଗଳ୍ପ, ଉପନ୍ୟାସ ଓ ଶିଶୁ ଉପଯୋଗୀ ରଚନାଗୁଡ଼ିକ ତାଙ୍କ ସାରସ୍ୱତ ପ୍ରତିଭାର ନିଦର୍ଶନ ।

**ଶ୍ରୀ ମାୟାଧର ମିଶ୍ର (୧୯୩୩- ):**

ମାୟାଧର ମିଶ୍ରଙ୍କର ଜନ୍ମ ୧୯୩୩ ମସିହାରେ ଢେଙ୍କାନାଳ ଜିଲ୍ଲାର ସଦାଶିବପୁର ଗ୍ରାମରେ । ତାଙ୍କ ପିତାଙ୍କ ନାମ - ଭାଗବତ ମିଶ୍ର ଓ ମାତା- ଶ୍ରଦ୍ଧାଦେବୀ । ମାୟାଧର ବି.ଏ., ବି.ଏଡ୍, ଡ଼ିଗ୍ରୀ ଲାଭପରେ ଶିକ୍ଷକତା ଜୀବନକୁ ବରି ନେଇଥିଲେ । ଶିକ୍ଷକ ଜୀବନ ସହିତ ସେ କାବ୍ୟ-କବିତା ରଚନାରେ ମଧ ମନୋନିବେଶ କରିଥିଲେ । ତାଙ୍କ ରଚିତ କାବ୍ୟକୃତି ଗୁଡ଼ିକ ହେଲା- ଚିତ୍ରକୂଟ, ଅହଲ୍ୟା ଶାପ ମୋଚନ, ଶ୍ରୀରାମ ଚରିତ, ଶ୍ରୀ ରାମଭକ୍ତ ହନୁମାନ୍, ନୀତି ରତ୍ନ ମଞ୍ଜରୀ, ଶ୍ରୀରାମ ଭଜନାବଳୀ ଏବଂ ଆଧ୍ୟାତ୍ମ ରାମାୟଣର ଓଡ଼ିଆ ଅନୁବାଦ । ମାୟାଧର ମିଶ୍ରଙ୍କର ଅଧିକାଂଶ ରଚନା ଅନୁଦିତ । ପୌରାଣିକ ଚରିତ୍ର, ବିଷୟବସ୍ତୁ ଓ କାବ୍ୟକୃତି ଗୁଡ଼ିକୁ ସେ ସରଳ, ସାବଲୀଳ ଭାଷା ମାଧ୍ୟମରେ ଭାବପୂର୍ଣ୍ଣ ଭାବରେ ଓଡ଼ିଆରେ ଅନୁବାଦ କରିଛନ୍ତି ।

**ଚିତ୍ରକୂଟ (୧୯୯୫) :** ଏହା କବିଙ୍କର ଏକ ଅନୁଦିତ କାବ୍ୟ । ଶ୍ରୀ ରାମେଶ୍ୱର ଦୟାଲ ଦୁବେଙ୍କ ହିନ୍ଦୀ ଭାଷାରେ ରଚିତ 'ଚିତ୍ରକୂଟ' କାବ୍ୟର ଏହା ଓଡ଼ିଆ ପଦ୍ୟାନୁବାଦ । ଏହି କାବ୍ୟଟି ପାଞ୍ଚଗୋଟି ସର୍ଗ ବିଶିଷ୍ଟ । ରାମଚନ୍ଦ୍ର ବନବାସ କାଳରେ ଚିତ୍ରକୂଟରେ ଅବସ୍ଥାନ କରିବା ସମୟରେ ଭରତ, ରାଜଗୁରୁ ବଶିଷ୍ଠ, ମନ୍ତ୍ରୀ ସୁମନ୍ତ ଓ ପାରିଷଦ ମାନଙ୍କୁନେଇ ଚିତ୍ରକୂଟ ଯାତ୍ରା କରିଥିଲେ । ପବିତ୍ର ମନ୍ଦାକିନୀ ନଦୀ କୂଳରେ ଭରତ ରାମଚନ୍ଦ୍ରଙ୍କୁ ସାକ୍ଷାତ କରି ପିତା ଦଶରଥଙ୍କ ମୃତ୍ୟୁ ସମ୍ବାଦ ଜଣାଇବା ସହିତ ଅଯୋଧା ପ୍ରତ୍ୟାବର୍ତ୍ତନ ପାଇଁ ଅନୁରୋଧ କରିଥିଲେ । ମାତ୍ର ବନବାସ ଅବଧି ସରିବାପୂର୍ବରୁ ଅଯୋଧା ପ୍ରତ୍ୟାବର୍ତ୍ତନ କଲେ, ପିତୃ ସତ୍ୟ ଭଗ୍ନ ହେବା କାରଣରୁ ରାମଚନ୍ଦ୍ର ଭରତଙ୍କର ଅନୁରୋଧକୁ ପ୍ରତ୍ୟାଖ୍ୟାନ କରିଥିଲେ । ଏହି କଥା ବସ୍ତୁ ହିଁ ଚିତ୍ରକୂଟ କାବ୍ୟର ମୁଖ୍ୟ ବିଷୟ । ଏହି କାବ୍ୟଟି ଏକ ପଦ୍ୟାନୁବାଦ ହେଲେହେଁ ଏଥିରେ କବିଙ୍କର ସ୍ୱକୀୟ ମୌଳିକତା ଓ କବିତ୍ୱ ପ୍ରତିଭା ଫୁଟିଉଠିଛି । ଏହି କାବ୍ୟଟି ରାମ ଭକ୍ତି ପରମ୍ପରାର ଏକ ଅମଳିନ କଳା ସୃଷ୍ଟି ।

## ପଙ୍କଜିନୀ ଦାଶ (୧୯୩୩- ) :

ପଙ୍କଜିନୀ ଦାଶଙ୍କର ଜନ୍ମ ୧୯୩୩ ମସିହା ଅଗଷ୍ଟ ମାସ ୨୫ ତାରିଖରେ ଢେଙ୍କାନାଳ ଜିଲ୍ଲାର ଧଳପୁର ଗ୍ରାମରେ । ତାଙ୍କ ପିତା- ଶ୍ରୀ ଲଳିତ ମୋହନ ନନ୍ଦ ଓ ମାତା- ମନୋରମା ନନ୍ଦ । ତାଙ୍କ ସ୍ୱାମୀ ହେଉଛନ୍ତି - ସ୍ୱର୍ଗତ କୁଞ୍ଜବିହାରୀ ଦାଶ । ପଙ୍କଜିନୀ ଜଣେ ସୁଲେଖିକା । ମୁଖ୍ୟତଃ ହାସ୍ୟରସାତ୍ମକ, ବ୍ୟଙ୍ଗଧର୍ମୀ, ସମାଜ ଚେତନା ମୂଳକ ରଚନାରେ ସେ ସିଦ୍ଧହସ୍ତା । ଯେଉଁଥିପାଇଁ 'ସରସ ସାହିତ୍ୟ ସମିତି' ତାଙ୍କୁ ହାସ୍ୟ ବିଦୂଷୀ ଉପାଧିରେ ଭୂଷିତ କରିଅଛି । ବାସ୍ତବରେ ସେ ଜଣେ ହାସ୍ୟ-ବ୍ୟଙ୍ଗର ବିଦୂଷୀ ମହିଳା । ଅନେକ ବ୍ୟଙ୍ଗ କବିତା ଓ ବ୍ୟଙ୍ଗ ଗଳ୍ପମାନ ରଚନାକରି ସେ ନିଜର ପ୍ରତିଭାର ଉତ୍କର୍ଷ ପ୍ରତିପାଦନ କରି ପାରିଛନ୍ତି । ଏହି ବିଦୂଷୀ ମହିଳା ୧୯୯୫ ମସିହାରେ କାନ୍ତ କବି ପୁରସ୍କାର ଓ ୧୯୮୮ ସମିହାରେ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଦ୍ୱାରା ସମ୍ବର୍ଦ୍ଧିତ ହୋଇଛନ୍ତି । ଏହା ସହିତ ଅନେକ ଛୋଟ-ବଡ଼ ସାରସ୍ୱତ ଓ ସାଂସ୍କୃତିକ ଅନୁଷ୍ଠାନ ଦ୍ୱାରା ସେ ସମ୍ମାନୀତା ହୋଇଛନ୍ତି । ପଙ୍କଜିନୀ ଜଣେ ବହୁମୁଖୀ ପ୍ରତିଭାର ଅଧିକାରୀ । ସେ ବ୍ୟଙ୍ଗ କବିତା, ବ୍ୟଙ୍ଗ ଗଳ୍ପ ରଚନା ସହିତ ଅନେକ ଶିଶୁ ଉପଯୋଗୀ କାହାଣୀମାନ ରଚନା କରିଛନ୍ତି । ଏପରିକି ଉପନ୍ୟାସ ଓ ନାଟକ ରଚନାରେ ମଧ୍ୟ ସେ ହାତ ଦେଇଛନ୍ତି । ତାଙ୍କ ରଚିତ କବିତା ସଂକଳନ ଗୁଡ଼ିକ ହେଲା- ଶତାବ୍ଦୀର ଯନ୍ତ୍ରଣା, ନାରୀ ଜାଗରଣ, ଗେଣ୍ଡୁମାଳ ବୁଢ଼ାକୁ ଦେବି, ତୁମପାଇଁ ମଜା କବିତା, ଜହ୍ନ ମାମୁଁଙ୍କୁ ଅଳି, ତୋଲାଗି ଗୋପଦାଣ୍ଡ ମନା, ବେଲୁନ୍ ହେଲା ଢ଼ୋ- ପ୍ରଭୃତି । ତାଙ୍କ ରଚିତ ଗଳ୍ପ ସଂକଳନ ଗୁଡ଼ିକ ହେଲା- ମାର୍ ମାର୍ ଭଣ୍ଡାରିଆକୁ, ପରାଜିତା ସୂର୍ପଣଖା, ପୁସ୍ତକ ହରଣ, ଅଜାଗା ଘା'ର ଯନ୍ତ୍ରଣା । ତାଙ୍କ ରଚିତ ଶିଶୁ କାହାଣୀ ଗୁଡ଼ିକ ହେଲା- ଅଜାଙ୍କ ମଜା କାହାଣୀ, କୁନି କାହାଣୀ ମାଳା, ଟିକିଏ ହସ, ନୂଆ ପବୁଆଙ୍କ ମଜା କାହାଣୀ, ସାନ ପିଲାଙ୍କ କାହାଣୀ, ଆମରି ପାଠ ଆମରି ଗପ, ଟିକିଏ ପଢ଼ି ଟିକିଏ ହସ, କାହାଣୀ ନୁହେଁତ ଏ'ତ ଆମରି କଥା, ନ୍ୟାୟବନ୍ତ ରାଜା ପ୍ରଭୃତି । ପଙ୍କଜିନୀ 'ନିନ୍ଦିତା ନିରୂପମା' ନାମରେ ଏକ ଉପନ୍ୟାସ ଓ ଅପାଠୋଇ ବୋହୂ ନାମରେ ଏକ ନାଟକ ମଧ୍ୟ ରଚନା କରିଛନ୍ତି ।

**ମାର୍ ମାର୍ ଭଣ୍ଡାରିଆକୁ(୧୯୯୬):** ଏହା ଏକ ବ୍ୟଙ୍ଗ ଗଳ୍ପ ସଙ୍କଳନ । ଏଥିରେ ୧୪ ଗୋଟି ବ୍ୟଙ୍ଗ ଗଳ୍ପର ମନୋଜ୍ଞ ସମାବେଶ ଘଟିଛି । ଏହି ଗଳ୍ପ ଗ୍ରନ୍ଥରେ ଗାଳ୍ପିକା ମିଥ୍ ବା ପୁରାକଳ୍ପର ପ୍ରୟୋଗ ମାଧ୍ୟମରେ ଆଧୁନିକ ସମାଜ ଓ ମଣିଷ ଜୀବନର ଗୁଣ୍ଠ, ଅବକ୍ଷୟୀ ଦିଗର ନିଖୁଣ ଚିତ୍ର ପ୍ରକଟନ କରିଛନ୍ତି ।

**ଅଜାଗା ଘା'ର ଯନ୍ତ୍ରଣା (୨୦୧୦):** ଏହା ମଧ୍ୟ ଏକ ସାର୍ଥକ ବ୍ୟଙ୍ଗଗଳ୍ପ ସଙ୍କଳନ। ଏହା ଦୁଇଖଣ୍ଡ ରେ ବିଭକ୍ତ। ପ୍ରଥମ ଖଣ୍ଡରେ ୧୭ଟି ଏବଂ ଦ୍ୱିତୀୟ ଖଣ୍ଡରେ ୧୧ ଟି ଗଳ୍ପ ସ୍ଥାନିତ ହୋଇଛି। ମଧୁର ହାସ୍ୟ ଓ ଶାଣିତ ବ୍ୟଙ୍ଗ ଛଳରେ ଗାଳ୍ପିକା ବ୍ୟକ୍ତି ଓ ସମାଜ ଜୀବନର ବିଭିନ୍ନ ତ୍ରୁଟି-ବିଚ୍ୟୁତି, ସାମାଜିକ ସମସ୍ୟା ଓ ସଙ୍କଟ ର ରୂପାୟନ କରିଛନ୍ତି। ମୋଟାମୋଟି ଭାବରେ ଗାଳ୍ପିକା ତାଙ୍କ ଗଳ୍ପ ଗୁଡ଼ିକ ଭିତରେ ସାମାଜିକ ଅଙ୍ଗୀକାରବଦ୍ଧତା ସହିତ ଚଟୁଳ ହାସ୍ୟ ଓ ବ୍ୟଙ୍ଗବିଦ୍ରୁପ ମାଧ୍ୟମରେ ସମାଜ ଓ ବ୍ୟକ୍ତି ଜୀବନକୁ ସଂସ୍କାରିତ, ମାର୍ଜିତ, ସଚେତିତ ଓ ଜାଗ୍ରତ କରିବାର ପ୍ରୟାସ କରିଛନ୍ତି।

**ଶ୍ରୀ ବୀରକିଶୋର ପଟ୍ଟନାୟକ (୧୯୩୪- ):**

ବୀରକିଶୋର ପଟ୍ଟନାୟକଙ୍କ ଜନ୍ମ ୧୯୩୪ ମସିହା ଫେବୃୟାରୀ ମାସ ୧୬ ତାରିଖରେ ଢେଙ୍କାନାଳ ଜିଲ୍ଲାର ଗେଙ୍ଗୁଟିଆ ଗ୍ରାମରେ। ତାଙ୍କପିତାଙ୍କ ନାମ- ଶ୍ରୀ ରାମଚନ୍ଦ୍ର ପଟ୍ଟନାୟକ ଓ ମାତା- ପ୍ରତିମା ପଟ୍ଟନାୟକ। ବୀରକିଶୋର ବୃତ୍ତିରେ ଜଣେ ହୋମିଓପ୍ୟାଥିକ୍ ଡାକ୍ତର ଥିଲେହେଁ, କବିତା ରଚନାରେ ତାଙ୍କର ପ୍ରଗାଢ଼ ରୁଚିଥିଲା। ତାଙ୍କର ଦୁଇଖଣ୍ଡି କବିତା ସଂକଳନ ରହିଛି। ସେଗୁଡ଼ିକ ହେଲା- ଅଭିଳାଷ ଏବଂ ଉପାସନା।

**ଅଭିଳାଷ(୨୦୦୪):** ଏହି ସଙ୍କଳନଟିରେ ୬୮ ଗୋଟି କବିତା ସ୍ଥାନିତ ହୋଇଛି। ଏହି କବିତା ଗୁଡ଼ିକର ପ୍ରତି ଛତ୍ରେ ଛତ୍ରେ ମହାଭାରତୀୟ ଆର୍ଯ୍ୟସଭ୍ୟତା, ସଂସ୍କୃତି ଓ ସନାତନ ହିନ୍ଦୁଧର୍ମର ମହକ ଓ ମହତ୍ତ୍ୱ ପ୍ରକଟିତ ହୋଇଛି। ସ୍ରଷ୍ଟା ହୃଦୟର ଈଶ୍ୱର ପ୍ରାଣତା, ଐକାନ୍ତିକ ଭକ୍ତିଭାବନା, ତ୍ୟାଗ, ତପସ୍ୟା, ତିତୀକ୍ଷା, ଶ୍ରଦ୍ଧା, ସଂଯମ, ଉପାସନା ନିଷ୍କାମ ଭାବନା, ବୈରାଗ୍ୟ, କର୍ମଯୋଗ, ଜ୍ଞାନସାଧନା ଓ ଆତ୍ମଶକ୍ତିର ତୀବ୍ରତା ଏହି କବିତା ଗୁଡ଼ିକ ଭିତରେ ଫୁଟିଉଠିଛି। ଏହା ସହିତ ପ୍ରକୃତିକ ସୌନ୍ଦର୍ଯ୍ୟର ବିମଳ ରୂପଶୋଭା ସହିତ ସୂକ୍ଷ୍ମଦୃଷ୍ଟି ଏହି କବିତା ସଂକଳନରେ ଫୁଟି ଉଠିଛି।

**ଉପାସନା (୨୦୦୯):** ଏହି କବିତା ସଙ୍କଳନଟିରେ ୩୭ଗୋଟି କବିତା ସନ୍ନିବିଷ୍ଟ ହୋଇଛି। ଏହି କବିତା ଗୁଡ଼ିକ ଭିତରେ କବି ସାମାଜିକ ଜୀବନ ଓ ବ୍ୟକ୍ତିଜୀବନକୁ ସୁସଂହତ, ଶୃଙ୍ଖଳିତ, ନୀତିନିଷ୍ଠ, ପବିତ୍ରିତ ଓ ଅଧ୍ୟାତ୍ମ ଉତ୍ତରିତ କରିବା ପାଇଁ ଆହ୍ୱାନ ଦେଇଛନ୍ତି। ସମାଜ ଓ ମଣିଷ ଜୀବନ କିପରି ସତ୍, ନୀତି, ଆଦର୍ଶ ର ପଥରେ, ଆଲୋକର ମାର୍ଗରେ ଗତିକରି ଅମୃତର ସନ୍ଧାନ ପାଇପାରିବ, ମୁକ୍ତିର ବିମୁକ୍ତ ଆନନ୍ଦ ଲାଭକରି ପାରିବ, ସେହି ଅଭିଳାଷ କବି ପ୍ରକଟିତ କରିଛନ୍ତି।

**ଶ୍ରୀ ବସନ୍ତ କୁମାର ନନ୍ଦ ( ୧ ୯୩୫- ):**

ବସନ୍ତ କୁମାର ନନ୍ଦଙ୍କର ଜନ୍ମ ୧ ୯୩୫ ମସିହା ମେ' ମାସ ୨୮ ତାରିଖ ଜ୍ୟେଷ୍ଠମାସ କୃଷ୍ଣପକ୍ଷ ଏକାଦଶୀ ତିଥିରେ ଢେଙ୍କାନାଳ ଜିଲ୍ଲାର ଗଦାଶିଳା ସ୍ଥିତ 'ଟୁଭିନାଳୀ' ଗ୍ରାମରେ । ତାଙ୍କ ପିତାଥିଲେ- ଶ୍ୟାମସୁନ୍ଦର ନନ୍ଦ । ବସନ୍ତ କୁମାର ସାକ୍ଷୀଗୋପାଳସ୍ଥିତ ସତ୍ୟବାଦୀ ଉଚ୍ଚ ବିଦ୍ୟାଳୟରୁ ୧ ୯ ୫୩ ମସିହାରେ ମାଟ୍ରିକ୍ୟୁଲେସନ୍ ପାଶ୍ କରିଥିଲେ । ୧ ୯ ୫ ୭ ମସିହାରେ ସେ ଢେଙ୍କାନାଳ ଚକବନ୍ଦୀ କାର୍ଯ୍ୟାଳୟରେ ଚାକିରୀ ଜୀବନ ଆରମ୍ଭକରି ୧ ୯ ୯ ୫ ମସିହାରେ ଚାକିରୀ ରୁ ଅବସର ଗ୍ରହଣ କରିଥିଲେ । ଶ୍ରୀଯୁକ୍ତ ନନ୍ଦ ଜୀବନର ଅପରାହ୍ନରେ ଚାକିରୀ ଜୀବନରୁ ଅବସର ନେବାପରେ ହିଁ କାବ୍ୟ- କବିତା, ସଙ୍ଗୀତ ଆଦି ରଚନାରେ ମନୋନିବେଶ କରିଥିଲେ । ତାଙ୍କ ରଚିତ କବିତାକୃତି ଗୁଡ଼ିକ ହେଲା-ଭକ୍ତି ସଙ୍ଗୀତ ଶତଦଳ, ଅନାବନା, ଉନ୍ମାଦ । ତାଙ୍କ ରଚିତ ଖଣ୍ଡକାବ୍ୟ ଗୁଡ଼ିକ ହେଲା- କାବ୍ୟମାନସୀ, ଶିହ୍ବୀର ସ୍ମୃତି, ବୋଇତ ବନ୍ଦାଣ, ମ୍ଳାନଚନ୍ଦ୍ର, ଗୁପ୍ତବୃନ୍ଦାବନ, କିଶୋର କାବ୍ୟ, ରୂପାମ୍ବିକା । ଏହିସବୁ କାବ୍ୟ-କବିତା କୃତି ଗୁଡ଼ିକ ଭିତରେ ସ୍ରଷ୍ଟାଜୀବନର ଗଭୀର ଅନୁଭବ, ଅନୁଭୂତି, ଆଧାତ୍ମିକ ଚିନ୍ତନ, ଆତ୍ମଦର୍ଶନ ଓ ପ୍ରାଚୀନ ପରଂପରା, ଐତିହ୍ୟ, ମୂଲ୍ୟବୋଧ ପ୍ରତି ମମତ୍ୱବୋଧ ଫୁଟିଉଠିଛି । ତାଙ୍କ ରଚନା ଗୁଡ଼ିକ ମୁଖ୍ୟତଃ ପାରଂପରିକ ଶୈଳୀ ଓ କାବ୍ୟାଦର୍ଶରେ ରଚିତ ।

**ଭକ୍ତିସଙ୍ଗୀତ ଶତଦଳ (୨୦୦୭):** ଏହା ଶହେଗୋଟି ଭକ୍ତିସଙ୍ଗୀତର ଏକ ମଞ୍ଜୁଳ ଇସ୍ତାହାର । କବି ନିଜେ ଏହି ଗ୍ରନ୍ଥର ପୃଷ୍ଠବନ୍ଧରେ କହିଛନ୍ତି- "ଅବସର ଗ୍ରହଣପରେ ହିଁ ମୋର ଭକ୍ତିସଙ୍ଗୀତ ଲେଖା ଆରମ୍ଭ ।" ଅବସର ପରେ କବି ବିଭିନ୍ନ ତୀର୍ଥସ୍ଥାନ ଭ୍ରମଣ, ବ୍ରହ୍ମଚିନ୍ତନ ଓ ଆଧାତ୍ମ ଭାବନାରେ ତଲ୍ଲୀନ ରହିବା ଦ୍ୱାରା ତାଙ୍କ ହୃଦୟରେ କବିତ୍ୱ ଓ ଭକ୍ତିଭାବନାର ସ୍ଫୁରଣ ଘଟିଥିଲା । ଯା' ଫଳରେ କବି ଏଭଳି ଭକ୍ତିଭାବାପନ୍ନ, ଗୀତିମୟ ସଙ୍ଗୀତ ରଚନା କରିବାରେ ସମର୍ଥ ହୋଇଥିଲେ । ସଙ୍ଗୀତ ଶତଦଳର ପ୍ରତିଟି ଦଳରେ କବିଙ୍କର ଗଭୀର ଜୀବନାନୁଭୂତି, ଆତ୍ମଦର୍ଶନ, ବ୍ରହ୍ମଚିନ୍ତନ ଓ ଆଧାତ୍ମଉତ୍ତରିତ ଚେତନାର ପ୍ରତିଫଳନ ଘଟିଅଛି । କବି ବିଭିନ୍ନ ରାଗ-ରାଗିଣୀ ଯଥା-ରାଗ କାମୋଦୀ, କଳହଂସକେଦାର, କଲ୍ୟାଣଆହାରୀ ଆଦିର ଶୋଭନ ସମାବେଶ ରେ ଏହି ସଙ୍ଗୀତ ଶତଦଳଟିକୁ ଅପୂର୍ବ ସାଙ୍ଗୀତିକ ମୂର୍ଚ୍ଛନାରେ ନିକ୍ୱଣିତ କରିଛନ୍ତି । ସରଳ, ତରଳ ଭାଷା, ରସାଳ ଭାବ ଓ ଅପୂର୍ବ ଭକ୍ତିମତ୍ତା ରେ ଏହି ଭକ୍ତିସଙ୍ଗୀତ ଗୁଡ଼ିକ ପାଠକ ଓ ଶ୍ରୋତାର ମନ-ପ୍ରାଣକୁ ଛୁଇଁବାର ସାମର୍ଥ୍ୟ ରଖିଛି । ବାସ୍ତବରେ ଏହି ସଙ୍ଗୀତ ଶତଦଳଟି ସ୍ରଷ୍ଟାପ୍ରାଣର ଅଧାତ୍ମଉତ୍ତରିତ ଚେତନାର ଏକ ମନୋରମ କଳାସୃଷ୍ଟି ।

**କାବ୍ୟମାନସୀ (୨୦୦୯):** ଏହା ଏକ କ୍ଷୁଦ୍ର ଖଣ୍ଡକାବ୍ୟ । ଏହା ୪୮ ଗୋଟି ପଦ ମଧ୍ୟରେ ସୀମାବଦ୍ଧ । ଏଥିରେ 'ଗୀତ ଗୋବିନ୍ଦ' ର ରଚୟିତା ମହାକବି ଜୟଦେବ ଓ ତାଙ୍କ ପତ୍ନୀ 'ପଦ୍ମାବତୀ' ଙ୍କର ପତିନିଷ୍ଠା, ଈଶ୍ୱରପ୍ରାଣତା ଓ ଈଶ୍ୱରଙ୍କୁ ସାକ୍ଷାତ ଦର୍ଶନ ପାଇବାର ମହାର୍ଘ ଅନୁଭୂତିର ପ୍ରସଙ୍ଗ ବର୍ଣ୍ଣିତ । ପୌରାଣିକ ଚରିତ୍ର ଓ ଇତିହାସର କଥାବସ୍ତୁକୁ ନେଇ ଏହି 'କାବ୍ୟମାନସୀ' ଖଣ୍ଡକାବ୍ୟର ପରିକଳ୍ପନା କବି କରିଛନ୍ତି । ଭକ୍ତିରସ ସହିତ ମଧୁର ପ୍ରେମ ରସର ଉଚ୍ଛଳ ପ୍ଲାପନ ଏଥିରେ ଘଟିଛି । ଏଥିରେ ସ୍ରଷ୍ଟାଙ୍କର ଅପୂର୍ବ କବିତ୍ୱ ଓ ପାଣ୍ଡିତ୍ୟର ମିଳନ ଘଟିଅଛି ।

**ଶିଳ୍ପୀର ସ୍ତୁତି (୨୦୦୯):** ଏହି ଖଣ୍ଡକାବ୍ୟଟି ରାଧାମୋହନ ଗଡ଼ନାୟକଙ୍କର 'ବିବି ଖାତୁନ୍ ଓ ଶିଳ୍ପୀ' କବିତାର ଅବଲମ୍ବନରେ ରଚିତ । ଦିଗ୍‌ବିଜୟୀ ସମ୍ରାଟ ତୈମୁରଲଙ୍ଗ୍‌ଙ୍କୁ ବିଜୟ ଯାତ୍ରାର ପ୍ରୀତି ଉପହାର ଦେବାପାଇଁ ସାହାଜାଦୀ ବିବିଖାତୁନ୍ ଏକ ନଭଶ୍ଚୁମ୍ବୀ ଅଟ୍ଟାଳିକା ନିର୍ମାଣପାଇଁ ଶିଳ୍ପୀଙ୍କୁ ଅନୁରୋଧ କଲାପରି; ଏଥିରେ ବିଦେହର ଯୁବରାଣୀ ମଞ୍ଜୁବାଳା ଶିଳ୍ପୀ ବଂଶୀଧରଙ୍କୁ ଅନୁରୋଧ କରିଛନ୍ତି ଏକ 'ସ୍ୱାଗତ ଆଳୟ' ନିର୍ମାଣ ପାଇଁ । କବିଙ୍କ ଭାଷାରେ-

> ନିର୍ମାଣିବ ଏକ ସୁରମ୍ୟ ନଗର
> କାହିଁ ନାହିଁଥିବ ତା' ପଟ୍ଟାନ୍ତର
> 'ସ୍ୱାଗତ ଆଳୟ' ନାମ ହେବ ତା'ର
> ଦେଖି ରାଜା ହେବେ ମୋଦ ଅପାର ।(୫)

ଯୁଦ୍ଧ ଫେରନ୍ତା ଦିଗ୍‌ବିଜୟୀ ବିଦେହ ମହାରାଜାଙ୍କୁ ମଣି-ମାଣିକ୍ୟ ଖଚିତ ସୁନ୍ଦର ପ୍ରାସାଦ ଉପହାର ରୂପେ ଦେବାପାଇଁ ରାଣୀ ଚାହିଁଛନ୍ତି । ଶିଳ୍ପୀ ମନପ୍ରାଣ ଦେଇ ସୁରମ୍ୟ ଅଟ୍ଟାଳିକା ନିର୍ମାଣ ସହିତ ସେହି ଅଟ୍ଟାଳିକାରେ ରାଣୀଙ୍କର ଏକ ପ୍ରସ୍ତର-ପ୍ରତିମା ମଧ୍ୟ ନିର୍ମାଣ କରିଛନ୍ତି । ରାଣୀଙ୍କର ମୂର୍ତ୍ତିରେ ଅନୁପମ ସୌନ୍ଦର୍ଯ୍ୟର ଶେଷ ସ୍ପର୍ଶ ଦେବାପୂର୍ବରୁ ଶିଳ୍ପୀ ଚାହିଁଛନ୍ତି- ରାଣୀଙ୍କର ରକ୍ତିମାଗଣ୍ଡ ଦେଶରେ ଚୁମ୍ବନଟିଏ ଆଙ୍କିଦେବାପାଇଁ । କବିଙ୍କ ଭାଷାରେ-

> "ନିର୍ଜୀବ ଶିଳାରେ ନିଖୁଣ ଜୀବନ
> ଦେଇ ଗଢ଼ିବାକୁ ମୁ ମଞ୍ଜୁବାଳା
> ଯା'ର ପ୍ରତିମୂର୍ତ୍ତି କରୁଛି ଗଠନ
> ତା'ର ସାହଚର୍ଯ୍ୟ ପାଇଲେ ହେଲା
> ରକ୍ତିମ ଲପନେ ବଧୂଳି ଅଧରେ

ଆଙ୍କିଦେଲେ ସରୁ ଚୁମ୍ବନମାଳା
ଜୀବନ୍ତ ଭାସ୍କର୍ଯ୍ୟ ନିର୍ଜୀବ ପାଷାଣେ
ଫୁଟାଇବି ଏଥି ନାହିଁ ଗୋ ହେଳା ।" (୬)

ଶିଳ୍ପୀଙ୍କର ଏହି ଅନୁରୋଧରେ ରାଣୀଙ୍କ ହୃଦୟରେ କ୍ଷଣିକ ପାଇଁ ହେଲେବି ଦୁର୍ବଳତା ଜାଗିଉଠିଛି । ନବ ବସନ୍ତର ଆଗମନୀରେ ରାଜାଙ୍କ ଅବର୍ତ୍ତମାନରେ ବିରହୀ ରାଣୀଙ୍କ ପ୍ରାଣରେ ମିଳନର ଆକାଂକ୍ଷା ଜାଗିଉଠିଛି । ଯେଉଁଥିପାଇଁ ଯୁବରାଣୀ ଶିଳ୍ପୀର ଅନୁରୋଧ କୁ ଏଡ଼ାଇ ନପାରି ନିଜକୁ ନିଶାର୍ଦ୍ଧରେ ଗୁପ୍ତରେ ଘଡ଼ିକପାଇଁ ଶିଳ୍ପୀଙ୍କ ପାଖରେ ସମର୍ପି ଦେଇଛନ୍ତି । ମାତ୍ର ପରବର୍ତ୍ତୀ ସମୟରେ ପାପବୋଧ ଓ ଅନୁତାପର ଜ୍ୱାଳା ରାଣୀଙ୍କୁ ଦଂଶନ କରି କ୍ଷତାକ୍ତ, ଯନ୍ତ୍ରଣାକ୍ତ କରିଛି । ଦିଗ୍‌ବିଜୟୀ ରାଜା ଫେରିଆସିବାପରେରାଣୀ ନିଜର ଦୋଷ ସ୍ୱୀକାର କରି ଦଣ୍ଡ ବିଧାନ ଚାହିଁଛନ୍ତି । ମାତ୍ର-ରାଜା ଶିଳ୍ପୀ ବଂଶାଧରଙ୍କୁ ମୃତ୍ୟୁଦଣ୍ଡାଦେଶ ଦେଇଛନ୍ତି । ଶିଳ୍ପୀ ନିଜର ମୃତ୍ୟୁକାଳୀନ ଅନ୍ତିମ ଇଚ୍ଛା ପୂରଣ ସ୍ୱରୂପ ରାଣୀଙ୍କ ପାଷାଣ ମୂର୍ତ୍ତିକୁ ଆଲିଙ୍ଗନ ପୂର୍ବକ ଶେଷ ନିଶ୍ୱାସ ତ୍ୟାଗ କରିଛନ୍ତି । ରାଜା ଚିରନ୍ତନୀ ପ୍ରେମର ମହତ୍ତ୍ୱ ବୁଝିପାରି ଶାଶ୍ୱତପ୍ରେମର ସ୍ମୃତି ସ୍ୱରୂପ ଶିଳ୍ପୀ ବଂଶାଧରର ମୂର୍ତ୍ତି ନିର୍ମାଣ କରାଇ ରାଜପ୍ରାସାଦରେ ସ୍ଥାନ ଦେଇଛନ୍ତି । ବାସ୍ତବରେ ଏହି 'ଶିଳ୍ପୀର ସ୍ମୃତି' କାବ୍ୟରୂପ ମଧ୍ୟଦେଇ ସ୍ରଷ୍ଟା ମଣିଷ ମନର ଚିରନ୍ତନୀ, ଶାଶ୍ୱତ ପ୍ରେମର ମହିମା ଓ ଦୀପ୍ତି ପ୍ରକଟିତ କରିଛନ୍ତି ।

**ବୋଇତ ବନ୍ଦାଣ (୨୦୦୯):** ଚାରିଶତ ପଦର ଗୋଟି ପଦ ବିଶିଷ୍ଟ ଏହା ଏକ ଦୀର୍ଘ ଖଣ୍ଡକାବ୍ୟ । ଏହି କାବ୍ୟଟିରେ ଚିରନ୍ତନୀ, ଶାଶ୍ୱତପ୍ରେମ-ପ୍ରଣୟର ଚିତ୍ରଣ ସହିତ ଓଡ଼ିଶାର ପ୍ରାଚୀନ ଐତିହ୍ୟ, ପରଂପରା ଓ ମୂଲ୍ୟବୋଧର ଚିତ୍ରଣ କବି କରିଛନ୍ତି । ଅତୀତର ବର୍ଣ୍ଣାଢ୍ୟ ବୋଇତ ବନ୍ଦାଣ ପରଂପରା ଆଜି କେବଳ ଆନୁଷ୍ଠାନିକ ସ୍ମୃତିରକ୍ଷା ଭିତରେ ସୀମୀତ । କବି ଅତୀତର ଐତିହ୍ୟ, ପରଂପରାକୁ ଆଧୁନିକ ସମାଜ ଓ ଜୀବନ ସହ ଯୋଡ଼ିବାର ପ୍ରୟାସ କରିଛନ୍ତି । ଏଥିପାଇଁ କବି ଏକ କିଶୋରୀ ବାଳିକାର ପ୍ରେମକାହାଣୀ ର ବର୍ଣ୍ଣନା ମାଧମରେ ସାଧବଝିଅର ଅତୀତ ପ୍ରେମକାହାଣୀର ସ୍ମୃତି ଓ ବୋଇତବନ୍ଦାଣର ପରଂପରାକୁ ଉଜ୍ଜୀବିତ କରିଛନ୍ତି ।

**ମ୍ଳାନଚନ୍ଦ୍ର (୨୦୧୦):** ଏହା ଏକ ଐତିହାସିକ କାବ୍ୟକୃତି । ସମ୍ରାଟ ବିମ୍ବିସାର ଓ ତାଙ୍କ ପୁତ୍ର ଅଜାତଶତ୍ରୁ ହିଁ ଏ କାବ୍ୟର ମୁଖ୍ୟ ଚରିତ୍ର । ଭଗବାନ ବୁଦ୍ଧଙ୍କ ଉପାସନା କରିବାରୁ ସମ୍ରାଟ ବିମ୍ବିସାରଙ୍କୁ ବୌଦ୍ଧଧର୍ମ ବିରୋଧି ପୁତ୍ର ଅଜାତଶତ୍ରୁ କାରାରୁଦ୍ଧ କରିଛନ୍ତି ।

ସମ୍ରାଟ ବିମ୍ବିସାର କ୍ଷୁଧା-ତୃଷାରେ ଅତିଷ୍ଠ ହୋଇ ପରିଶେଷରେ ସେହି କାରାଗୃହରେ ମୃତ୍ୟୁବରଣ କରିଛନ୍ତି । ପିତୃହନ୍ତା ଅଜାତଶତ୍ରୁଙ୍କର ଅମାନବୀୟ କାର୍ଯ୍ୟ ଓ ବର୍ବରତାକୁ କବି ଏଥିରେ କାବ୍ୟରୂପ ଦେଇଛନ୍ତି ।

**ରୂପାମ୍ବିକା (୨୦୧୧):** ଏହା ମଧ୍ୟ ଏକ ଐତିହାସିକ ଖଣ୍ଡକାବ୍ୟ । କାଞ୍ଚିରାଜା ସାଲ୍ୱନରସିଂହଦେବଙ୍କ କନ୍ୟାଥିଲେ - 'ରୂପାମ୍ବିକା' । ଯେ'କି ଇତିହାସ ପୃଷ୍ଠାରେ 'ପଦ୍ମାବତୀ' ରୂପେ ପରିଚିତା । କାଞ୍ଚିରାଜଜେମା ବଦ୍ମାବତୀ ଓ ଉତ୍କଳର ଗଜପତି ପୁରୁଷୋତ୍ତମଦେବଙ୍କର ପ୍ରେମ ପ୍ରଣୟ ଓ ପରିଣୟ କାହାଣୀ ହିଁ ଏହି କାବ୍ୟର ମୁଖ୍ୟ ଉପଜୀବ୍ୟ । କାଞ୍ଚିରାଜା ଉତ୍କଳର ଗଜପତି ପୁରୁଷୋତ୍ତମଦେବଙ୍କୁ ଚଣ୍ଡାଳର ଆଖ୍ୟାଦେଇ କନ୍ୟା ସମର୍ପଣ କରିବାକୁ ଅସମ୍ମତି ପ୍ରକାଶ କରିଛନ୍ତି ! ଉତ୍କଳ ସିଂହାସନର ସମ୍ମାନ ଓ ମହତ୍ତ୍ୱ ରକ୍ଷାକରିବାକୁ ଯାଇ ପୁରୁଷୋତ୍ତମଦେବ କାଞ୍ଚି ଅଭିମୁଖେ ଯୁଦ୍ଧ ଘୋଷଣା କରି କାଞ୍ଚିରାଜଜେମା ରୂପାମ୍ବିକାଙ୍କୁ ଉତ୍କଳ ଆଣିଛନ୍ତି । ରାଜା ମହାମନ୍ତ୍ରୀଙ୍କୁ ନିର୍ଦ୍ଦେଶ ଦେଇଛନ୍ତି - ରୂପାମ୍ବିକାଙ୍କୁ ଚଣ୍ଡାଳ ହସ୍ତରେ ଅର୍ପଣ କରିବାପାଇଁ । ମାତ୍ର ବୁଦ୍ଧିମାନ ମହାମନ୍ତ୍ରୀଙ୍କ ନିର୍ଦ୍ଦେଶରେ ସମ୍ରାଟ ପୁରୁଷୋତ୍ତମଦେବ ଛେରାପହଁରା କରିବା ସମୟରେ ରୂପାମ୍ବିକା ଜଗନ୍ନାଥଙ୍କ ଛଡ଼ା ପଦ୍ମଫୁଲମାଳାକୁ ରାଜାଙ୍କ ଗଳାରେ ଲମ୍ବାଇଦେଇ ତାଙ୍କୁ ପତିରୂପେ ବରଣ କରିଛନ୍ତି । ଏହି ଇତିହାସର କଥାବସ୍ତୁକୁ କବି ଅତି କାବ୍ୟମୟରୂପରେ ଅପୂର୍ବ କଳା-କଲ୍ଲୋଳ, ଭାବମାଧୁରୀ ଓ ଭାଷାର ଲାଳିତ୍ୟ ଭିତରେ ପରିପ୍ରକାଶ କରିଛନ୍ତି । ବାସ୍ତବରେ ଶ୍ରୀନନ୍ଦ ଢେଙ୍କାନାଳ ମାଟିର ଜଣେ ସୁଦକ୍ଷ କାବ୍ୟବିନ୍ଧାଣୀ ।

### ଧ୍ରୁବଚରଣ ପଣ୍ଡା (୧୯୩୫- ):

ଧ୍ରୁବଚରଣ ପଣ୍ଡାଙ୍କ ଜନ୍ମ ଢେଙ୍କାନାଳ ଜିଲ୍ଲାର ଜିରାଳ ଗ୍ରାମରେ ୧୯୩୫ ମସିହା ମେ' ମାସ ୨୫ ତାରିଖରେ । ଶ୍ରୀଯୁକ୍ତ ପଣ୍ଡା ମୁଖ୍ୟତଃ ଜଣେ ଶିଶୁ ସାହିତ୍ୟିକ । ଶିଶୁ ମନସ୍ତତ୍ତ୍ୱ ଓ ଶିଶୁଉପଯୋଗୀ କବିତା, କାହାଣୀମାନ ସେ ରଚନା କରିଛନ୍ତି । ଏହା ସହିତ କେତେକ ମହାପୁରୁଷଙ୍କ ଜୀବନୀକଥା ମଧ୍ୟ ରଚନା କରିଛନ୍ତି । ତାଙ୍କ ରଚିତ ସାରସ୍ୱତ କୃତିଗୁଡ଼ିକ ହେଲା- ଫୁଲଝରି, ଝୁମୁକୁ ଝୁମା, ମୋ ପେଁକାଳୀ ବାଜିଲା, ପିଲାଙ୍କ ମଜା କାହାଣୀ, କାହାଣୀ ମୁଣି, ଆଇ ମା'ର ମଜାଗପ, ଶିଶୁପ୍ରେମୀ ରାମକୃଷ୍ଣ, ଉଦୟନାଥ, ଶହୀଦ୍ ଲକ୍ଷ୍ମଣନାୟକ, ଅମର କବି ବ୍ରଜନାଥ ପ୍ରଭୃତି । ଏହିସବୁ ରଚନାଗୁଡ଼ିକ ବେଶ୍ ନୀତିନିଷ୍ଠ, ଆଦର୍ଶବାନ୍ ଓ ଶିକ୍ଷଣୀୟ ।

## ପ୍ରେମମଞ୍ଜରୀ ପଟ୍ଟନାୟକ (୧୯୩୬- ):

ପ୍ରେମମଞ୍ଜରୀଙ୍କ ଜନ୍ମ ୧୯୩୬ ମସିହା ଡ଼ିସେମ୍ବର ମାସ ୧୯ ତାରିଖରେ ଆଠଗଡ଼ର ଖୁଣ୍ଟକଟା ଗ୍ରାମରେ। ତାଙ୍କ ପିତାଥିଲେ- ବଂଶୀଧର ପଟ୍ଟନାୟକ। ପ୍ରେମମଞ୍ଜରୀ ୧୯୫୧ ମସିହାରେ ଢେଙ୍କାନାଳ ଜିଲ୍ଲାର କାମାକ୍ଷାନଗର ଅନ୍ତର୍ଗତ ମହୁଲପାଳ ଗ୍ରାମର ଶ୍ରୀ ଭଗବାନ ପଟ୍ଟନାୟକଙ୍କୁ ବିବାହକରି ଢ଼େଙ୍କାନାଳ ମାଟିର ବୋହୂ ହୋଇଥିଲେ।

ପ୍ରେମମଞ୍ଜରୀ ବିବାହର ଅଳ୍ପ କେଇ ବର୍ଷପରେ ବୈଧବ୍ୟବେଶ ଧାରଣ କରିଥିଲେ। ଗଭୀର ଦୁଃଖ-ଦହନ ଭିତରେ ସେ ନିଜର ଜୀବନ ନୌକାକୁ ଭବସାଗରରେ ଭସାଇ ଦେଇଛନ୍ତି। ବୈଧବ୍ୟ ଯନ୍ତ୍ରଣା, ବ୍ୟକ୍ତିଗତ ଦୁଃଖ-ଦହନ ତାଙ୍କୁ ଶୁଦ୍ଧ ସୁବର୍ଣ୍ଣର ମହାଦ୍ୟୁତିରେ ଉଜୁଟାଇ ପାରିଛି। ଜୀବନର ଅଧିକାଂଶ ସମୟ ଈଶ୍ୱରସେବା, ଈଶ୍ୱର ଆରାଧନା ଓ ଭକ୍ତିଭାବନାରେ ତଲ୍ଲୀନ ରହି ସେ କବିତା ସାଧନା କରିଛନ୍ତି। ନିଜ ବ୍ୟକ୍ତିଗତ ଜୀବନର ଦାବ-ଦହନ, ଅନୁଭବ, ଅନୁଭୂତି ଓ ହୃଦୟର ଭାବାବେଗକୁ ସେ କବିତାର ଦେହଳୀରେ ପରିପ୍ରକାଶ କରିଛନ୍ତି। ଯେଉଁଥିପାଇଁ ତାଙ୍କ କବିତା ଗୁଡ଼ିକ ବେଶ୍ ମାର୍ମିକ, ମାନବିକ ଆବେଦନକ୍ଷମ ଓ ଭକ୍ତିରସରେ ପରିପ୍ଲୁତ ହୋଇପାରିଛି। ତାଙ୍କର 'ଅଭୁଲାସ୍ମୃତି' ଏବଂ 'ପ୍ରେମମୟ ଭଗବାନ' ରଚନା ଦୁଇଟି ବେଶ୍ ମହନୀୟ କଳାସୃଷ୍ଟି। ତାଙ୍କର ଅଭୁଲାସ୍ମୃତି (୨୦୦୨) କବିତା ସଂକଳନଟିରେ ୮୩ଗୋଟି କ୍ଷୁଦ୍ର କ୍ଷୁଦ୍ର କବିତା ସ୍ଥାନିତ ହୋଇଛି। ସେହିପରି ତାଙ୍କର 'ପ୍ରେମମୟ ଭଗବାନ' କେତେଗୁଡ଼ିଏ ଭଜନ ଓ ଜଣାଣର ମନୋଜ୍ଞ ସମାହାରରେ ଋଦ୍ଧିମନ୍ତ ହୋଇଛି। ଏହି ରଚନା ଗୁଡ଼ିକ ଭିତରେ କବୟିତ୍ରୀଙ୍କର ବ୍ୟକ୍ତିଗତ ଜୀବନର ଦାବ-ଦହନ ଚିତ୍ର ସହିତ ଅନ୍ତରର ଅପୂର୍ବ ଭକ୍ତିମତ୍ତା, ଈଶ୍ୱରପ୍ରାଣତା ଓ ଆଧାତ୍ମିକ ଚେତନା ପ୍ରକଟିତ ହୋଇଛି।

## ଶ୍ରୀ ଜୟକୃଷ୍ଣ ସାହୁ (୧୯୩୬- ):

ଜୟକୃଷ୍ଣ ସାହୁଙ୍କର ଜନ୍ମ ୧୯୩୬ ମସିହାରେ ଢେଙ୍କାନାଳ ଜିଲ୍ଲାର ଆଦିପୁରା, ମାର୍ଥାପୁରଠାରେ। ତାଙ୍କ ପିତାଙ୍କ ନାମ ମହନୀ ସାହୁ ଓ ମାତା-ଟିକିଲି ସାହୁ। କୃଷି ଏବଂ ବ୍ୟବସାୟ ଜୟକୃଷ୍ଣଙ୍କ ଜୀବନର ବେଉଷା ହେଲେହେଁ; ନିଶା ତାଙ୍କର ସାହିତ୍ୟ ସାଧନା। ସମାଜ ଓ ମଣିଷ ଜୀବନର ବହୁବିଧ ରୂପ ବିଭବ, ସମାଜ ଓ ମଣିଷର ବିଭିନ୍ନ ସମସ୍ୟା ଓ ସଂକଟର ରୂପାୟନ ସହିତ ସେ ସମାଧାନର ମାର୍ଗ ଦେଖାଇଛନ୍ତି। ତାଙ୍କ ରଚିତ ସାରସ୍ୱତ କୃତି ଗୁଡ଼ିକ ହେଲା- ଜୟକୃଷ୍ଣ କବିତାବଳୀ (୧୯୯୬), ହିମାଳୟ, କାଶ୍ମୀର ଚୁକ୍ତିନାମା, ଗର୍ବାଚୋଭ୍‌ଙ୍କ ଅଶ୍ୱମେଧ ଯଜ୍ଞ, ଫାରା, ପୁଷ୍ପା, ଅତୃପ୍ତ ଆତ୍ମା ପ୍ରଭୃତି।

## ଶ୍ରୀ ସତ୍ୟବ୍ରତ ମହାନ୍ତି (୧୯୩୭-୨୦୦୭):

ସତ୍ୟବ୍ରତ ମହାନ୍ତିଙ୍କ ଜନ୍ମ ୧୯୩୭ ମସିହାରେ ଢେଙ୍କାନାଳ ସହରର ଗୁଡ଼ିଆନାଳୀଠାରେ । ତାଙ୍କପିତାଙ୍କ ନାମ ପୂର୍ଣ୍ଣଚନ୍ଦ୍ର ମହାନ୍ତି ଓ ମାତା- କୃଷ୍ଣପ୍ରିୟା ମହାନ୍ତି । ଶ୍ରୀଯୁକ୍ତ ମହାନ୍ତି ଜଣେ ଆଦର୍ଶ, ନିଷ୍ଠାବାନ୍ ଶିକ୍ଷକ ଥିଲେ । ଶିକ୍ଷକତା ସହିତ କବିତା ରଚନାରେ ମନୋନିବେଶ କରିଥିଲେ । ସେ ଜଣେ ମାନବବାଦୀ ସ୍ରଷ୍ଟା ଥିଲେ । ତାଙ୍କ କବିତା ଭିତରେ ମଣିଷ ପ୍ରତି ମୁଗ୍ଧ ସହାନୁଭୂତି, ସାମାଜିକ ଶାନ୍ତି, ସଂହତି ଓ କ୍ରାନ୍ତିର ବାର୍ତ୍ତା ଫୁଟିଉଠିଛି । ଶ୍ରୀଯୁକ୍ତ ମହାନ୍ତିଙ୍କର ଦୁଇଖଣ୍ଡି ପ୍ରତିନିଧି ସ୍ଥାନୀୟ କବିତା ଗ୍ରନ୍ଥ ହେଲା - ଅନାମିକାର ଅନେକ ନାମ, ବିଭକ୍ତ ବିଭାବରୀ । 'ଅନାମିକାର ଅନେକନାମ' କବି ସତ୍ୟବ୍ରତଙ୍କର ପ୍ରଥମ ପ୍ରକାଶିତ କବିତା ଗ୍ରନ୍ଥ । ଏଥିରେ ୬୦ ଗୋଟି କବିତା ସ୍ଥାନିତ ହୋଇଛି । ଏହି କବିତା ଗୁଡିକରେ ସମାଜ ଓ ମାନବ ଜୀବନର ସୁଖ-ଦୁଃଖ, ପ୍ରେମ-ପ୍ରଣୟ, ଜୀବନ ଯନ୍ତ୍ରଣା ଓ ଈଶ୍ୱର ଅନୁଭବର ବିମଳ ଚିତ୍ର ଫୁଟିଉଠିଛି । ବିଭକ୍ତ ବିଭାବରୀ (୧୯୯୫) କବିତା ସଂକଳନଟିରେ ୬୪ ଗୋଟି କବିତା ସ୍ଥାନିତ ହୋଇଛି । ଏହି କବିତା ଗୁଡ଼ିକ ମାନବିକ ଭାବଚେତନା, ଈଶ୍ୱର ଭାବନା ଓ ଅମୃତ ସନ୍ଧାନର ମହାଦ୍ୟୁତି ରେ ସମୁଜ୍ଜ୍ୱଳ । 'ବିଶ୍ୱର ବିସ୍ମୟ କବିତା'ରେ କବିପ୍ରାଣ ଈଶ୍ୱରାର୍ପିତ ଓ ଅମୃତ ଅନ୍ୱେଷ୍ୟ । ସେହିପରି 'ଝରଣାଟିଏ ମିଳିଯାନ୍ତା' କବିତାରେ କବି ଅମୃତର ସନ୍ଧାନ କରିଛନ୍ତି । ନିରାଶାର ମରୁବାଲିରେ କବି ଖୋଜିଛନ୍ତି ଆଶାର ମହୁଝର, ଭକ୍ତର ଭାଗ୍ୟଲିପି, ତରୀଟିଏ ଦିଅ କବିତାରେ କବିପ୍ରାଣ ମୁକ୍ତିପ୍ରୟାସୀ । ମାୟା-ମୋହ ଗ୍ରସ୍ତ ଦୁସ୍ତର ସଂସାର ସାଗରରୁ ତରୀଟିଏ ମାଧମରେ ପାରିହୋଇ ଅନନ୍ତ ସହିତ ମିଳନ ହେବାପାଇଁ କବି ଆଶା ପ୍ରକଟନ କରିଛନ୍ତି । 'ବିଶ୍ୱହେଉ ନିତ୍ୟ ବୃନ୍ଦାବନ', 'ସବୁ ଯାଇପାରେ ବଦଳି' କବିତାରେ ନୂତନ ସମ୍ଭାବନା ଓ ଆଶା ବିଶ୍ୱାସର ସ୍ୱର ଫୁଟି ଉଠିଛି । ମଣିଷ ସମାଜକୁ ପାପ-ତାପ ଓ ସନ୍ତ୍ରାସରୁ ମୁକ୍ତ କରିବାପାଇଁ 'ହେ ଈଶ୍ୱର କିଛିହେଲେ କର ପ୍ରତିକାର' କବିତାରେ କବି ଭଗବାନଙ୍କୁ ଆହ୍ୱାନ କରିଛନ୍ତି । ଯେଉଁଥିପାଇଁ କବି ଲେଖିଛନ୍ତି-

"ହେ ଈଶ୍ୱର ! ପୁନର୍ବାର କରିବାକୁ ସୃଷ୍ଟିକୁ ସୁନ୍ଦର
କିଛିହେଲେ କର ପ୍ରତିକାର ।" (୭)

ମୋଟାମୋଟିଭାବରେ ଏହିସବୁ କବିତା ଗୁଡ଼ିକରେ କବି ମଣିଷ ସମାଜ ଓ ଜୀବନରୁ ଦୁଃଖ, ଦୈନ୍ୟ, ଅଭାବବୋଧକୁ ହଟାଇ ତା'ଜୀବନକୁ ସୁଖ-ସୌଭାଗ୍ୟ, ପ୍ରାଚୁର୍ଯ୍ୟ ଓ ଆନନ୍ଦମୟ କରି ଗଢ଼ିତୋଳିବାକୁ ଚାହିଁଛନ୍ତି ।

## ଶ୍ରୀ ଅନ୍ତର୍ଯ୍ୟାମୀ ଶତପଥୀ (୧୯୩୭- ):

ଶ୍ରୀ ଅନ୍ତର୍ଯ୍ୟାମୀ ଶତପଥୀଙ୍କର ଜନ୍ମ ୧୯୩୭ ମସିହାରେ ଢେଙ୍କାନାଳର ନୟାଭଗୀରଥିପୁର ଶାସନରେ । ବୃତ୍ତିରେ ସେ ଜଣେ ଶିକ୍ଷକ । ଶିକ୍ଷକତା ସହିତ ସେ ସାହିତ୍ୟ ସାଧନା ରେ ବ୍ରତୀ ରହିଛନ୍ତି । ସେ ଜଣେ ବହୁମୁଖୀ ପ୍ରତିଭାର ଅଧିକାରୀ । କବିତା, ଗଳ୍ପ, ଉପନ୍ୟାସ, ନାଟକ, ପ୍ରବନ୍ଧ ଆଦି କ୍ଷେତ୍ରରେ ସେ ଦକ୍ଷତା ଅର୍ଜନ କରିଛନ୍ତି । ତାଙ୍କ ରଚିତ କବିତା ସଂକଳନ ଗୁଡ଼ିକହେଲା- ଅମର ଦିହୁଡ଼ି (୧୯୬୦), କବିତା ଲତା (୧୯୮୫), କବିତା କଳ୍ପନା, କବିତା ତାଣ୍ଡବ, କଳିକାଞ୍ଜଳି, ନମସ୍ତେ ବାଳକୃଷ୍ଣଙ୍କର ପ୍ରଭୃତି । ତାଙ୍କ ରଚିତ ନାଟ୍ୟକୃତି ଗୁଡ଼ିକ ହେଲା- ବଳୀ-ବାମନ, ନବଜନ୍ମ, ଜନ୍ମଦିନ, ଓଢ଼ଣା, ପ୍ରତିସଂନ୍ଧ୍ୟା, ସାବତଝିଅ । ଉପନ୍ୟାସକୃତି ହେଲା- କୁସୁମଦଳ ଓ ସୁନ୍ଦର ଦିଗନ୍ତ । ଗଳ୍ପସରିତ (୧୯୯୨) ତାଙ୍କର ଏକ ମନୋଜ୍ଞ ଗଳ୍ପ ସଂକଳନ । ଏହା ସହିତ ଶ୍ରୀଯୁକ୍ତ ଶତପଥୀ କର୍ମଜୀବୀ ହୃଷିକେଶ ଏବଂ କବି ଧନେଶ୍ୱର ପାଣି ନାମରେ ଦୁଇଖଣ୍ଡି ଜୀବନୀ ଗ୍ରନ୍ଥର ସଂକଳନ ମଧ୍ୟ କରିଛନ୍ତି ।

## କୁଞ୍ଜବିହାରୀ ନନ୍ଦ (୧୯୩୮- ):

କୁଞ୍ଜବିହାରୀଙ୍କ ଜନ୍ମ ୧୯୩୮ ମସିହାରେ ଢେଙ୍କାନାଳ ସହରସ୍ଥିତ କୁଞ୍ଜକାନ୍ତ ଠାରେ । କୁଞ୍ଜବିହାରୀ ଆକାଶବାଣୀ କଟକ ର ଜଣେ କର୍ମଚାରୀ ଥିଲେ । ଆକାଶବାଣୀ ପ୍ରସାରଣପାଇଁ ସେ ପ୍ରଥମେ ବେତାରନାଟକ ରଚନାରେ ମନୋନିବେଶ କରିଥିଲେ । ପରେ ସେ ଅନେକ ମଞ୍ଚଧର୍ମୀ ନାଟକ ମଧ୍ୟ ରଚନା କରିଛନ୍ତି । ତାଙ୍କ ରଚିତ ନାଟକ ଗୁଡ଼ିକ ନେଶ୍ ସମାଜ ସଚେତନ, ଶିକ୍ଷଣୀୟ ଓ ଜାତୀୟ ଚେତନାଧର୍ମୀ । ତାଙ୍କ ରଚିତ ନାଟକ ଗୁଡ଼ିକ ହେଲା- ଆତଙ୍କ, ଫୁଲମତୀ, ସୁନାପଞ୍ଜୁରୀ, ଘର, ମରିବାକୁ ଚାହେଁନାହିଁ ସୁନ୍ଦରଧରାରେ, ଆପଣଙ୍କ ଭିତରେ କଟକ ପ୍ରଭୃତି । ଶ୍ରୀଯୁକ୍ତ ନନ୍ଦ ତାଙ୍କର ନାଟ୍ୟ ପ୍ରତିଭା ଯୋଗୁଁ ୧୯୬୨ ମସିହାରେ ଓଡ଼ିଶା ସଂଗୀତ ଏକାଡ଼େମୀଦ୍ୱାରା ପୁରସ୍କୃତ ହୋଇଥିଲେ ।

## ଶ୍ରୀ ଗିରୀଶ ଚନ୍ଦ୍ର ନନ୍ଦ(୧୯୩୯- ):

ଗିରୀଶଚନ୍ଦ୍ର ନନ୍ଦଙ୍କର ଜନ୍ମ ୧୯୩୯ ମସିହାରେ ଢେଙ୍କାନାଳ ଜିଲ୍ଲାର କାମାକ୍ଷାନଗର ଠାରେ । ଶ୍ରୀଯୁକ୍ତ ନନ୍ଦ ବୃତ୍ତିରେ ଜଣେ ସାମ୍ବାଦିକ ହେଲେହେଁ; ନିଶା ତାଙ୍କର କବିତା ରଚନା । ସମାଜ ଓ ବ୍ୟକ୍ତି ଜୀବନର ବିଭିନ୍ନ ସମସ୍ୟା, ସଂକଟ ଓ ଜୀବନାଭୂତି କୁ ନେଇ ସେ କବିତା ରଚନା କରନ୍ତି । ତାଙ୍କ ରଚିତ କବିତା ସଂକଳନ ଗୁଡ଼ିକ ହେଲା- ଶାଳବନର କବିତା, ସ୍ମୃତିର ସହର, ଅନ୍ୟଏକ ପୃଥିବୀ ପ୍ରଭୃତି ।

**ଶ୍ରୀ ଯଦୁନାଥ ସାହୁ (୧୯୩୯-):**

ଶ୍ରୀ ଯଦୁନାଥ ସାହୁଙ୍କ ଜନ୍ମ ୧୯୩୯ ମସିହାରେ ଢେଙ୍କାନାଳ ଜିଲ୍ଲାର କୋଟବେରେଣୀ ଠାରେ । ତାଙ୍କ ପିତାଙ୍କ ନାମ-ଦୀନବନ୍ଧୁ ସାହୁ ଓ ମାତା- ଗୁଣ୍ଡୁରୀ ଦେବୀ। ତାଙ୍କ ରଚିତ କବିତା ସଂକଳନ ଅନ୍ତରାଳେ (୧୯୯୪) ଏବଂ ଆଲୋକରେଖା (୨୦୦୨) ଏକ ଏକ ମହନୀୟ ସୃଷ୍ଟି । ତାଙ୍କର 'ଅନ୍ତରାଳେ' କବିତା ସଂକଳନଟିରେ ୪୩ ଗୋଟି କବିତା ସ୍ଥାନିତ ହୋଇଛି । ଏହି କବିତା ଗୁଡ଼ିକ ନିଛକ ବାସ୍ତବବାଦୀ ଓ ଜୀବନଧର୍ମୀ। ମଣିଷର ମନ-ଗହନର ଅନ୍ତରାଳରେ ଲୁକ୍କାୟିତ ଗୋପନତମ ସତ୍ୟକୁ ଉନ୍ମୋଚନ କରିବାର ପ୍ରୟାସ କବି କରିଛନ୍ତି । ଏହା ସହିତ ସମାଜ ଓ ବ୍ୟକ୍ତି ଜୀବନର ବହୁବିଧ ତୃଟି-ବିଚ୍ୟୁତିର ଚିତ୍ର ମଧ୍ଯ ଏହି କବିତା ଗୁଡ଼ିକରେ ଫୁଟିଉଠିଛି । କବିଙ୍କର 'ଆଲୋକରେଖା' କବିତା ସଂକଳନଟିରେ ୩୯ ଗୋଟି କବିତା ସ୍ଥାନିତ ହୋଇଛି । ଏହି କବିତା ଗୁଡ଼ିକରେ ସମାଜ ଜୀବନର ବିଭିନ୍ନ ସଂକଟ ଓ ଦୁଃସ୍ଥିତିର ଚିତ୍ର ପ୍ରକଟନ ସହିତ ମଣିଷର ସ୍ୱାର୍ଥପରତା, ହିଂସ୍ରତା, ଭ୍ରଷ୍ଟାଚାର, ଛଳନା ଓ ପ୍ରତାରଣାର ମୁଖା ଖୋଲିବାର ପ୍ରୟାସ କବି କରିଛନ୍ତି । ଏହି କବିତା ଗୁଡ଼ିକ ସାମାଜିକ ଅଙ୍ଗୀକାରବୋଧରେ ପ୍ରତିଶ୍ରୁତିବଦ୍ଧ । ସମାଜ ଓ ମଣିଷ ଜୀବନରୁ ଅସତ୍ୟ, ଅଧର୍ମ, ଅନ୍ୟାୟ ରୂପକ ଅନ୍ଧକାରକୁ ଦୂରୀଭୂତ କରି ବିମଳ ଆଧାତ୍ମିକ ଆନନ୍ଦ ଓ ଆଲୋକ ସତ୍ତାରେ ଭରିଦେବାକୁ କବି ପ୍ରୟାସ କରିଛନ୍ତି ।

**ଈଶ୍ୱରଚନ୍ଦ୍ର ସାମଲ (୧୯୪୦- ):**

ଈଶ୍ୱରଚନ୍ଦ୍ର ସାମଲଙ୍କ ଜନ୍ମ ୧୯୪୦ ମସିହାରେ ଢେଙ୍କାନାଳ ଜିଲ୍ଲାର ନୂଆଗଡ଼ ଠାରେ । ସେ ଏକାଧାରରେ ଜଣେ କବି ଓ ଗାଳ୍ପିକ । ତାଙ୍କର ରଚନା ଗୁଡ଼ିକ ହେଲା- ଅମ୍ଳାନ ଗୋଧୂଳି, କବିତା ଦେହ ଓ ମନର, ପିଲାଙ୍କ ଗପ, ଗପ ଦେହ ଓ ମନର ପ୍ରଭୃତି ।

**କବିତା ଦେହ ଓ ମନର (୧୯୯୩):** ଏହା କବିଙ୍କର ଏକ ମନୋଜ୍ଞ କବିତା ସଂକଳନ । ଏଥିରେ ୩୪ ଗୋଟି କବିତା ସ୍ଥାନିତ ହୋଇଛି । ମଣିଷ ମନର ପ୍ରେମ, ପ୍ରଣୟ, ଆଶା, ଆକାଙ୍‌କ୍ଷା, ସ୍ୱପ୍ନ, ସମ୍ଭାବନା ଓ କଳ୍ପନା ପ୍ରବଣତା ଏହି କବିତା ଗୁଡ଼ିକର ଦେହଳୀ ରେ ଫୁଟିଉଠିଛି । କବିପ୍ରାଣ ବେଶ୍ ରୋମାଣ୍ଟିକ୍ । ରୂପ ଓ ପ୍ରେମ ପ୍ରାଣତାରେ କବିପ୍ରାଣ ତଲ୍ଲୀନ । ଦେହ ଓ ମନର ଅବ୍ୟକ୍ତ, ଅକୁହା ବେଦନା, ଆଶା, ଆକାଙ୍‌କ୍ଷା ଓ ସ୍ୱପ୍ନବିଳାସ ଏହି କବିତା ଗୁଡ଼ିକରେ ପ୍ରମୂର୍ତ୍ତ ହୋଇଉଠିଛି ।

**ଶ୍ରୀ ବନବିହାରୀ ପଣ୍ଡା (୧୯୪୦- ):**

ବନବିହାରୀ ପଣ୍ଡାଙ୍କର ଜନ୍ମ ୧୯୪୦ମସିହାରେ ଢେଙ୍କାନାଳ ଜିଲ୍ଲାର ଡେ଼ଙ୍ଗାବୋରାଇ ଗ୍ରାମରେ । ଶ୍ରୀଯୁକ୍ତ ପଣ୍ଡା ରସାୟନ ବିଜ୍ଞାନରେ ସ୍ନାତକୋତ୍ତର ଡିଗ୍ରୀ ଲାଭପରେ ପ୍ରଥମେ ଅଧ୍ୟାପନାରେ ଯୋଗ ଦେଇଥିଲେ । ପରବର୍ତ୍ତୀ ସମୟରେ ସେ ଅଧ୍ୟାପନା ଛାଡ଼ି ଭାରତୀୟ ପୋଲସ୍ ସେବାରେ ଯୋଗ ଦେଲେ । ଆଇନ୍-ଶୃଙ୍ଖଳା ରକ୍ଷାର ବ୍ୟସ୍ତ ବହୁଳ ଜୀବନ ଭିତରେ ବି' ସେ ସାରସ୍ୱତ ସୃଷ୍ଟିକର୍ମରେ ମଗ୍ନ ରହୁଥିଲେ । ସେ ଏକାଧାରରେ ଥିଲେ ଜଣେ ନାଟ୍ୟକାର, କବି ଓ ଗାଳ୍ପିକ । ତାଙ୍କର ଛ' ଗୋଟି କବିତା ସଂକଳନ, ତିନି ଗୋଟି ଗଳ୍ପ ସଂକଳନ, ଗୋଟିଏ ଉପନ୍ୟାସ ଏବଂ ଅନେକ ଗୁଡ଼ିଏ ନାଟକ ରହିଛି । ତାଙ୍କ ରଚିତ ନାଟକ ଗୁଡ଼ିକ ହେଲା- ଗେଷ୍ଟ ହାଉସ୍, ଅରଣ୍ୟ, ସୁବର୍ଣ୍ଣରେଖା, ମହାରାଜା, ମୁଖ୍ୟ ଅତିଥି, ରକ୍ତନଦୀ, ସୂର୍ଯ୍ୟପରାଗପରେ, ସମାଧାନ, ନାଟକ ସମଗ୍ର ପ୍ରଭୃତି । ଶ୍ରୀଯୁକ୍ତ ପଣ୍ଡା ତାଙ୍କ 'ଗେଷ୍ଟହାଉସ୍' ନାଟକ ପାଇଁ ୧୯୯୫ ମସିହାରେ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଦ୍ୱାରା ପୁରସ୍କୃତ ହୋଇଥିଲେ । ଏତଦ୍‌ଭିନ୍ନ ୧୯୯୯ ମସିହାରେ ସେ ଓଡ଼ିଶା ସଂଗୀତ ନାଟକ ଏକାଡ଼େମୀଦ୍ୱାରା ମଧ୍ୟ ପୁରସ୍କୃତ ହୋଇଛନ୍ତି ।

**ଶ୍ରୀ ଈଶ୍ୱରଚନ୍ଦ୍ର ମହାପାତ୍ର (୧୯୪୧- ):**

ଈଶ୍ୱରଚନ୍ଦ୍ର ମହାପାତ୍ରଙ୍କ ଜନ୍ମ ୧୯୪୧ ମସିହା ନଭେମ୍ବର ମାସ ୧୧ ତାରଖରେ ଢେଙ୍କାନାଳ ଜିଲ୍ଲା ସାଆନ୍ଦା , ସରବେରେଣୀ ଠାରେ । ତାଙ୍କ ପିତାଙ୍କ ନାମ- ହୃଷୀକେଶ ମହାପାତ୍ର ଓ ମାତା- ମଲ୍ଲୀଦେବୀ । ଶ୍ରୀଯୁକ୍ତ ମହାପାତ୍ର ବୃତ୍ତିରେ ଜଣେ ଶିକ୍ଷକଥିଲେ । ଶିକ୍ଷକତା ସହିତ ସେ କାବ୍ୟ-କବିତା, ଗଳ୍ପ ଓ ପ୍ରବନ୍ଧ ରଚନାରେ ମନୋନିବେଶ କରିଥିଲେ । ତାଙ୍କ ରଚିତ ସାରସ୍ୱତ କୃତି ଗୁଡ଼ିକହେଲା- ଉଚ୍ଛ୍ୱାସ (କାବ୍ୟ), ରାମ- ସୂର୍ପଣଖା ସଓ୍ୱାଲ୍ ଜବାବ୍, ପଢ଼ିଲେ ପାଠ ଜିଣିବ ବାଟ, କୁହୁକ ଦର୍ପଣ, ଗଳ୍ପ ଚୟନ (ଗଳ୍ପ), ପ୍ରବନ୍ଧ ପ୍ରସୂନ (ପ୍ରବନ୍ଧ), ବ୍ରାହ୍ମଣୀ ବିଳାପ (ନାଟକ) ପ୍ରଭୃତି ।

**ଉଚ୍ଛ୍ୱାସ (୧୯୯୭):** ଏହା କବିଙ୍କର ଏକ ମହାର୍ଘ ପୌରାଣିକ କାବ୍ୟ କୃତି । ଏହି କାବ୍ୟଟି ୧୦ଗୋଟି ସର୍ଗ ବା ଅର୍ଘ୍ୟ ବିଶିଷ୍ଟ । ଏଥିରେ ଭାରତୀୟ ଆର୍ଯ୍ୟସଭ୍ୟତା ସଂସ୍କୃତି ଓ ମହନୀୟ ଆଦର୍ଶର ପ୍ରକଟନ ସହିତ ଭାରତୀୟ ନାରୀର ଆଦର୍ଶ, ପାତିବ୍ରତ୍ୟ, ସତୀତ୍ୱ, ପବିତ୍ରତା, ଧୈର୍ଯ୍ୟ ଓ ପ୍ରେମନିଷ୍ଠା ପ୍ରକଟିତ । ଏହି କାବ୍ୟ ଗ୍ରନ୍ଥଟି କବି ଗଙ୍ଗାଧର ମେହେରଙ୍କର 'ତପସ୍ୱିନୀ' କାବ୍ୟାଦର୍ଶ ଅବଲମ୍ବନରେ ରଚିତ । 'ତପସ୍ୱିନୀ' ପରି ଉଚ୍ଛ୍ୱାସ ର ମୁଖ୍ୟ ଚରିତ୍ର- ମହାଦେବୀ ସୀତା । ଏଥିରେ କବି ଭାରତୀୟ ଆର୍ଯ୍ୟସଭ୍ୟତା ଓ ସଂସ୍କୃତିର

ମହନୀୟା ଆର୍ଯ୍ୟନାରୀ ପରମ ପ୍ରତିବ୍ରତା, ମହାସତୀ ତପସ୍ୱିନୀ ସୀତାଙ୍କର ଗଭୀର ପ୍ରେମନିଷ୍ଠା, ପ୍ରତିବ୍ରତ. ପବିତ୍ରତା ତାଙ୍କର ଭାଗ୍ୟ ଓ ଭବିତବ୍ୟର ବର୍ଣ୍ଣନା ସହିତ ପବିତ୍ର ଦାମ୍ପତ୍ୟ ପ୍ରେମର ଚିତ୍ରଣ କରିଛନ୍ତି । ସୀତା ଜଣେ ପତିହିତ ସାଧ୍ୱନୀ, ଆଦର୍ଶ ପତ୍ନୀ । ସ୍ୱାମୀଙ୍କପ୍ରତି ତାଙ୍କର ରହିଛି ଅଖଣ୍ଡ ପ୍ରେମ ଓ ଅତୁଟ ବିଶ୍ୱାସ । ମାତ୍ର- ସୀତା ଯେତେବେଳେ ରାମଚନ୍ଦ୍ରଙ୍କର ଅଶ୍ୱମେଧ ଯଜ୍ଞ ଅନୁଷ୍ଠାନ କଥା ଶୁଣିଛନ୍ତି, ସେତେବେଳେ ତାଙ୍କ ହୃଦୟରେ ମାନବୀ ସୁଲଭ ଶଙ୍କା ଓ ସନ୍ଦେହ ସୃଷ୍ଟି ହୋଇଛି । ସୀତାଙ୍କ ଅନୁପସ୍ଥିତିରେ ସ୍ୱାମୀ ରାମଚନ୍ଦ୍ର ଯଜ୍ଞର ଆୟୋଜନ କରୁଛନ୍ତି କିପରି ? ତେବେ ପତି କ'ଣ ଦ୍ୱିତୀୟ ବିବାହ କଲେ କି ? ଏହି ସନ୍ଦେହ ଓ ଶଙ୍କା ସୀତାଙ୍କ ହୃଦୟରେ ଜାତ ହୋଇଛି । ଯା' ଫଳରେ ସୀତାଙ୍କ ମନରେ ପ୍ରେମ-ପ୍ରୀତିର ଭାବୋଚ୍ଛ୍ୱାସ ସହିତ ଅଶ୍ରୁ ଓ ଆବେଗର କରୁଣ ଉଚ୍ଛ୍ୱାସ ଭରିଉଠିଛି । ସୀତାଙ୍କର ଏହି ଭାବଚ୍ଛ୍ୱାସକୁ କବି ଅତି ସୁନ୍ଦର, ମାର୍ମିକ ଓ ଆବେଗିକ ଭାବରେ କାବ୍ୟରୂପ ଦେଇଛନ୍ତି । ସ୍ୱାମୀ ରାମଚନ୍ଦ୍ର ଦ୍ୱିତୀୟପତ୍ନୀ ଗ୍ରହଣ କରିବାର ଶଙ୍କା ଓ ସନ୍ଦେହ ସୀତାଙ୍କ ମନରେ ଜାତ ହୋଇଥିଲେହେଁ ସେ ସ୍ୱାମୀଙ୍କ ପ୍ରତି ରୁଷ୍ଟ ଭାବାପନ୍ନ ହୋଇ ନାହାନ୍ତି । ବରଂ ସ୍ୱାମୀ ରାମଚନ୍ଦ୍ରଙ୍କର ପାଦତଳର ଦାସୀରୂପେ ରହିବାକୁ ଇଚ୍ଛା ପ୍ରକଟନ କରିଛନ୍ତି । ଯେଉଁଥିପାଇଁ କବି ଲେଖିଛନ୍ତି-

"ପିତୃ ଗୃହାନୀତ ମୋ ଛବି
ରଖି ଶଯ୍ୟା ତଳରେ
ନିତିଦିନ ପଦ ଥୋଇବ
ଦାସୀ ବକ୍ଷ ଉପରେ
ନାରୀକେଳ ସୂକ୍ଷ୍ମ ସୂତାରେ
ବୁଣାଇବ ପାପୋଛ
ସୀତାନାମ ଲେଖି ତହିଁରେ
ପଦ ଥାପିବ ସଞ୍ଜ ।"(୮)

ଭାରତୀୟ ନାରୀର ପତିସେବାପାଇଁ ସ୍ୱାମୀଙ୍କ ପଦତଳେ ନିଜକୁ ଦାସୀ ରୂପରେ ସମର୍ପଣ କରିବାର ଯେଉଁ ତ୍ୟାଗଦୀପ୍ତ ମହାନ ଭାବନା ତାହା ଏଥିରେ ପ୍ରକଟିତ ହୋଇଛି । ବାସ୍ତବରେ ଗଙ୍ଗାଧରଙ୍କର 'ତପସ୍ୱିନୀ' ପରି ଏହି 'ଉଚ୍ଛ୍ୱାସ' କାବ୍ୟଟି ଏକ କାଳଜୟୀ କଳାର ଗୌରବ ବହନ କରିପାରିଛି । ଓଡ଼ିଆ ରାମଭକ୍ତି ପରଂପରାର ଏହା ଏକ ଶ୍ରେଷ୍ଠ କାବ୍ୟ କୃତି ।

**ଶ୍ରୀ ଧନେଶ୍ୱର ମହାରଣା (୧୯୪୧- ):**

ଧନେଶ୍ୱର ମହାରଣାଙ୍କ ଜନ୍ମ ୧୯୪୧ ମସିହାରେ ଢେଙ୍କାନାଳ ଜିଲ୍ଲାର ଗଁଦିଆ, ଲେଥକା ଠାରେ । ତାଙ୍କ ପିତାଙ୍କ ନାମ- ଭୋଳେଶ୍ୱର ମହାରଣା ଓ ମାତା- ସାଗରୀକା ମହାରଣା । ଧନେଶ୍ୱର ମହାରଣା ବୃତ୍ତିରେ ଜଣେ ଶିକ୍ଷକ । ଶିକ୍ଷକତା ସହିତ ସେ ସାହିତ୍ୟ ସାଧନାରେ ମନୋନିବେଶକରି ଅନେକ ଗୁଡ଼ିଏ କାବ୍ୟ, କବିତା ଓ ଜଣାଣମାନ ରଚନା କରିଛନ୍ତି । ତାଙ୍କ ରଚିତ ସାରସ୍ୱତ କୃତି ଗୁଡ଼ିକ ହେଲା- ପଦ୍ମିନୀ, ରଘୁ ଅରକ୍ଷିତ, ମହାମିଳନ, ଦସ୍ୟୁ ରତ୍ନାକର, ଧର୍ମପଦ, ନିକଷାର ସ୍ୱର୍ଗାରୋହଣ, ଶ୍ମଶାନରେ ଗାନ୍ଧାରୀ, ଦାରୁବ୍ରହ୍ମ, ଜଗନ୍ନାଥ ଜଣାଣ ।

**ସୁକାମିନୀ ନନ୍ଦ (୧୯୪୨- ):**

ସୁକାମିନୀଙ୍କ ଜନ୍ମ ୧୯୪୨ ମସିହାରେ ଢେଙ୍କାନାଳ ଜିଲ୍ଲାର ଧଳପୁରଠାରେ । ତାଙ୍କ ପିତା ହେଲେ- ଲଳିତମୋହନ ନନ୍ଦ ଓ ମାତା- ମନୋରମା ଦେବୀ । ସୁକାମିନୀ ମୁଖ୍ୟତଃ ଜଣେ କଥାକାର । ଓଡ଼ିଆ ଉପନ୍ୟାସ ସାହିତ୍ୟକୁ ତାଙ୍କର ଅବଦାନ ଅତୁଳନୀୟ । ତାଙ୍କ ରଚିତ ଉପନ୍ୟାସ ଗୁଡ଼ିକହେଲା- ଶୀଳା, ସୀତା, ବସୁମତୀ, କୃଷ୍ଣା, ଆରଣ୍ୟକ, ଅଶ୍ରୁ, ଅନନ୍ୟା, ମାଧବୀଲତା, ରାଇବିନୋଦିନୀ, ଶଉଦା ନାନୀ, ଅନୁରାଗ, ଶେଷରାଗ, ଅଜ୍ଞାତବାସ, ଲୁତ୍‌ଫା ବେଗମ୍, ବୋଉ, କୋୟଲ୍, ଏଇ ଅନୁରାଧା, ପରାଜିତା ନାୟିକା, ଶର୍ମିଷ୍ଠା, ଶ୍ରାବଣୀ ଗୋ, କୋମଳ ନିଷାଦ ପ୍ରଭୃତି । ଲେଖିକାଙ୍କର ଅନୁରାଗ, ଶ୍ରାବଣୀ ଗୋ ଏବଂ ପରାଜିତା ନାୟିକା ଉପନ୍ୟାସ ତ୍ରୟୀ ଯଥାକ୍ରମେ ଝିଅଟି ସୀତାପରି, ଶ୍ରାବଣୀ ଓ ସଂଯୋଗ ନାମରେ ଚଳଚିତ୍ର ରୂପ ଲାଭ କରିଛି । ଏହିସବୁ ଉପନ୍ୟାସ ଗୁଡ଼ିକର ରଚନା ସହିତ ଲେଖିକା କେତେଗୁଡ଼ିଏ ଗଳ୍ପ ଓ କବିତା ମଧ୍ୟ ରଚନା କରିଛନ୍ତି । ତାଙ୍କ ରଚିତ ଗଳ୍ପ ଗୁଡ଼ିକ ହେଲା- ନୀଳନୟନା, ମଣିମାଙ୍କ ପେଡ଼ି, ଶିଶୁ ଗଳ୍ପମାଳା । ଏତଦ୍‌ଭିନ୍ନ ତାଙ୍କ ରଚିତ କବିତା ଗୁଡ଼ିକ ହେଲା- ଶିଶୁ କବିତା ପୁଷ୍ପ, ଶିଶୁ ସଂଗୀତ ମାଳା, ଭଜନ ପୁଷ୍ପ, ନୂତନ ଓଡ଼ିଶୀ ସଂଗୀତମାଳା ପ୍ରଭୃତି । ଏହିସବୁ ସାରସ୍ୱତ କୃତି ଗୁଡ଼କ ଭିତରେ ବ୍ୟକ୍ତି ଓ ସମାଜ ଜୀବନର ସାମଗ୍ରୀକ ରୂପଚିତ୍ର ଫୁଟିଉଠିଛି । ସମାଜ ଓ ବ୍ୟକ୍ତି ଜୀବନର ବିଭିନ୍ନ ସମସ୍ୟା, ସଂଘର୍ଷ ଓ ସଙ୍କଟର ରୂପାୟନ ସହିତ ମଣିଷ ଜୀବନର ଚିରନ୍ତନୀ ଜୀବନ ସଂଗ୍ରାମର ଚିତ୍ର ତାଙ୍କ ସୃଷ୍ଟିଭିତରେ ଫୁଟିଉଠିଛି ।

**ଅନସୂୟା ନନ୍ଦ (୧୯୪୨- ):**

ଅନସୂୟାଙ୍କର ଜନ୍ମ ୧୯୪୨ ମସିହାରେ ଢେଙ୍କାନାଳ ଜିଲ୍ଲାର ଭଗୀରଥପୁର ଶାସନଠାରେ । ତାଙ୍କ ପିତାଙ୍କ ନାମ - ମୁରଲୀଧର ମହାପାତ୍ର ଓ ମାତା- କୌଶଲ୍ୟା ଦେବୀ । ଅନୁସୂୟା କାମାକ୍ଷାନଗର ଅନନ୍ତପୁର ନିବାସୀ ଶ୍ରୀ ବିଦ୍ୟାଧର ନନ୍ଦଙ୍କୁ ବିବାହ କରିଛନ୍ତି । ଅନସୂୟା ମୁଖ୍ୟତଃ ଜଣେ କବି ଓ କାବ୍ୟକାର । ଅନସୂୟାଙ୍କ ରଚିତ କାବ୍ୟକୃତି ଗୁଡ଼ିକ ହେଲା- ସୁଭଦ୍ରା ବିଜୟ (୧୯୮୧), ସୀତା ବନବାସ (୧୯୮୨), ଧନୁଭଗ୍ନ (୧୯୯୦), ବାଲୁଙ୍କା ପୂଜା (୧୯୯୧), ମନବୋଧ ରାମାୟଣ, ନାଗାର୍ଜୁନ ବେଶ ବର୍ଣ୍ଣନା ଓ ଦଶାବତାର (୧୯୯୫), ସାବିତ୍ରୀ ବ୍ରତ କଥା, ରାମ ନାମାମୃତ (ଜଣାଣ), ଚିତ୍ତବିନୋଦନ ଚଉତିଶା, ଭକ୍ତି ଅର୍ଘ୍ୟ (ଭଜନ), ଭକ୍ତିସୌରଭ, ଶିକ୍ଷା ସୌରଭ ଓ ଶିଶୁ ଶ୍ରୀ । ଏହିସବୁ ସରସ୍ୱତ କୃତି ଗୁଡ଼ିକ ଭିତରେ ଲେଖିକା ପୁରାଣର ଧର୍ମ, ଆଧ୍ୟାତ୍ମିକତା ଓ ଭକ୍ତି ଭାବନାର ପ୍ରକଟନ ମାଧ୍ୟମରେ ସାମାଜିକ ଜୀବନକୁ ଶୁଦ୍ଧ-ପୂତ, ସୁନ୍ଦର ଓ ସୁ-ସଂହତ କରିବାକୁ ଚାହିଁଛନ୍ତି ।

**ଶ୍ରୀ ଭ୍ରମରବର ବିଶ୍ୱାଳ (୧୯୪୨- ):**

ଭ୍ରମରବର ବିଶ୍ୱାଳଙ୍କ ଜନ୍ମ ୧୯୪୨ ମସିହାରେ ଢେଙ୍କାନାଳର ନରଣପଡ଼ା, କୁଆଳୋ ଠାରେ । ତାଙ୍କ ପିତାଙ୍କ ନାମ ପୀତବାସ ବିଶ୍ୱାଳ ଓ ମାତା- ବୈଦେହୀ ଦେବୀ । ଭ୍ରମରବର ବୃତ୍ତିରେ ଜଣେ ଶିକ୍ଷକ । ଶିକ୍ଷକତା ସହିତ କାବ୍ୟ, ଗଳ୍ପ, ଉପନ୍ୟାସ, ନାଟକ ଆଦି ରଚନାରେ ସେ ସିଦ୍ଧହସ୍ତ । ତାଙ୍କର 'ଅଷ୍ଟଶମ୍ଭୁ' କାବ୍ୟ ଏକ ଆଧ୍ୟାତ୍ମିକ ଓ ଭକ୍ତିଭାବାପନ୍ନ ସୃଷ୍ଟି । ତାଙ୍କ ରଚିତ ଗଳ୍ପ ଗୁଡ଼ିକ ହେଲା- ଦେବଦାସୀ, ଆହତ କପୋତୀ, ଫୁଲରାଣୀ । ଉପନ୍ୟାସ ଗୁଡ଼ିକ ହେଲା- ଜାୟା ଓ ଜନନୀ, ଭଗ୍ନୀ, ଏଇ ଗାଁ ମା' ମାଟି ପ୍ରଭୃତି । 'ତମସା' ନାମରେ ଏକ ନାଟକ ମଧ୍ୟ ସେ ଲେଖିଛନ୍ତି । ଏହିସବୁ ସୃଷ୍ଟି ସଂପଦ ଗୁଡ଼ିକ ଭିତରେ ସ୍ରଷ୍ଟା, ଧର୍ମ ଓ ଆଧ୍ୟାତ୍ମିକ ଭାବନା, ଈଶ୍ୱର ବିଶ୍ୱାସ, ମାତୃଭୂମି ପ୍ରେମ, ନାରୀଜାତି ପ୍ରତି ସମ୍ମାନ ଭାବନା ର ପ୍ରକଟନ କରିଛନ୍ତି ।

**ଶ୍ରୀ ନିତ୍ୟାନନ୍ଦ ମିଶ୍ର (୧୯୪୨- ):**

ଶ୍ରୀ ନିତ୍ୟାନନ୍ଦ ମିଶ୍ରଙ୍କର ଜନ୍ମ ୧୯୪୨ ମସିହା ମେ' ମାସ ୧୧ ତାରିଖରେ । ତାଙ୍କ ପିତାଙ୍କ ନାମ- ପଣ୍ଡିତ ଗଣନାଥ ମିଶ୍ର ଓ ମାତା- ଦୁଲ୍ଲମଣୀ ଦେବୀ । ଇତିହାସରେ ସ୍ନାତକୋତ୍ତର ଡିଗ୍ରୀ ଲାଭପରେ ନିତ୍ୟାନନ୍ଦ ଅଧ୍ୟାପନାକୁ ନିଜର ବୃତ୍ତିରୂପେ ବରି ନେଇଥିଲେ । ଜନ୍ମଭୂମି ସଂସିଧା ଛାଡ଼ି ପବିତ୍ର ସାରସ୍ୱତ ଭୂମି ଢେଙ୍କାନାଳ

ମାଟିର ଆକର୍ଷଣରେ ଆକର୍ଷିତହୋଇ ରହିଗଲେ ସେ ଢେଙ୍କାନାଳ ମାଟିରେ । ଢେଙ୍କାନାଳ ପାଲଟିଗଲା ତାଙ୍କର କର୍ମଭୂମି । ଏ ମାଟିର ପାଣି, ପବନ, କଳା,ସଂସ୍କୃତି, ସାହିତ୍ୟ ଓ ଜୀବନଧାରା ସହିତ ସେ ଓତଃପ୍ରୋତ ଭାବରେଜଡ଼ିତ ହୋଇପଡ଼ିଲେ । ଶ୍ରୀଯୁକ୍ତ ମିଶ୍ର ଏକାଧାରରେ ଜଣେ ପ୍ରବୀଣ ଅଧ୍ୟାପକ, ବିମୁଗ୍ଧ କବି, ବିଜ୍ଞ ଗବେଷକ, ପ୍ରାଜ୍ଞ ସମାଲୋଚକ, ଲବ୍ଧପ୍ରତିଷ୍ଠ ସଂପାଦକ ଓ ବଳିଷ୍ଠ ଜୀବନୀକାର । ଇତିହାସର କବରତଳୁ ଅଜ୍ଞାତ, ଅନାବିଷ୍କୃତ ତଥ୍ୟ ଓ ସତ୍ୟର ସନ୍ଧାନକରି ସାହିତ୍ୟର ସ୍ୱର୍ଣ୍ଣାଭ ପୃଷ୍ଠାରେ ତାକୁ ସେ ଜୀବନ୍ନ୍ୟାସ ଦେଇଛନ୍ତି । ଆତ୍ମ ଜିଜ୍ଞାସୁ ଓ ଆତ୍ମ ଅନ୍ୱେଷୀ ସ୍ରଷ୍ଟାପ୍ରାଣ ନୂତନ ତଥ୍ୟ ଓ ଅଭିନବ ରହସ୍ୟ ଉଦ୍‌ଘାଟନ ରେ ସତତ ଉଦ୍ୟମଶୀଳ । ଶ୍ରୀଯୁକ୍ତ ମିଶ୍ରଙ୍କର ସାରସ୍ୱତ କୃତି ଗୁଡ଼ିକ ହେଲା- ପ୍ରଜାମଣ୍ଡଳର ଗୀତ, ସେ କେଉଁ ବଂଶୀର ସ୍ୱର, ବୀର ବୈଷ୍ଣବଙ୍କ ଜୀବନ ଗାଥା, ଓଡ଼ିଶାର ଐତିହ୍ୟ: ଢେଙ୍କାନାଳର କିମ୍ବଦନ୍ତୀ, ପଣ୍ଡିତ ଗଣନାଥ ଜୀବନୀ, ଗଡ଼ଜାତ ଗାନ୍ଧୀ, ହରମୋହନଙ୍କ କବିତା କଳା (ସଂପାଦନା) । ଏହା ସହିତ 'ସବୁଜ କଲମ' ସାରସ୍ୱତ ପତ୍ରିକାର ମୁଖ୍ୟ ସଂପାଦକ ମଧ୍ୟ ସେ ଥିଲେ । ଇଂରାଜୀ ଭାଷାରେ ରଚିତ ତାଙ୍କର ଗ୍ରନ୍ଥ ହେଲା- A Short Encyclopaedia of Orissa History & Culture.

**ପ୍ରଜାମଣ୍ଡଳର ଗୀତ (୧୯୯୭):** ଏହି ସଂକଳନଟି କେତେଗୁଡ଼ିଏ ଦେଶପ୍ରେମୀ, ଜାତୀୟ ଚେତନା ଓ ସ୍ୱାଭିମାନଦୀପ୍ତ ଜ୍ୱାଳାମୟୀ ଗୀତି କବିତାର ମଞ୍ଜୁଳ ସମାହାର । ଭାରତୀୟ ସ୍ୱାଧୀନତା ସଂଗ୍ରାମ ଓ ଗଡ଼ଜାତ ପ୍ରଜା ଆନ୍ଦୋଳନର ପୃଷ୍ଠଭୂମି ଉପରେ ଏହି କବିତା ଗୁଡ଼ିକ ରଚିତ ।ଉତ୍କଳ ଭୂମିର ପ୍ରମୁଖ ସଂଗ୍ରାମୀ, ଦେଶପ୍ରେମୀ ଓ ମାନବବାଦୀ କବି ମାନଙ୍କର କେତେଗୁଡ଼ିଏ କାଳଜୟୀ, ବୈପ୍ଳବିକ ରଚନା ଏହି 'ପ୍ରଜାମଣ୍ଡଳ ର ଗୀତ' ରେ ସ୍ଥାନିତ ହୋଇଛି । ଯେଉଁ କବିତା ଗୁଡ଼ିକ ଅତ୍ୟନ୍ତ ଦୁର୍ଲଭ ଓ ଦୁଷ୍ପ୍ରାପ୍ୟ ତାକୁ କବି ସଂଗ୍ରହ କରି ଏଥିରେ ସଂଯୋଜିତ କରିଛନ୍ତି । ଏଥିରେ ସଚ୍ଚି ରାଉତରାୟ, କାଳିନ୍ଦୀଚରଣ ପାଣିଗ୍ରାହୀ, ମନମୋହନ ମିଶ୍ର, ଅନନ୍ତ ପଟ୍ଟନାୟକ, ରାଧାମୋହନ ଗଡ଼ନାୟକ, ବୀରକିଶୋର ଦାସ, କୁନ୍ତଳାକୁମାରୀ, ବାଞ୍ଛାନିଧି ମହାନ୍ତି ପ୍ରମୁଖ ଦେଶପ୍ରେମୀ, ବିପ୍ଳବୀ ସ୍ରଷ୍ଟାମାନଙ୍କର କାଳଜୟୀ, ଅଗ୍ନିବର୍ଷୀ କବିତା ସ୍ଥାନିତ ହୋଇଛି । ଏହା ସହିତ ବୈଷ୍ଣବ ପଟ୍ଟନାୟକ, ଶ୍ରୀବସ୍ ନାୟକ, ଜୟୀକୃଷ୍ଣ ବେହେରା ପ୍ରମୁଖ ପ୍ରଜାମଣ୍ଡଳ କର୍ମୀ ମାନଙ୍କର କେତେକ ବୈପ୍ଳବିକ ରଚନା ମଧ୍ୟ ଏଥିରେ ସ୍ଥାନିତ ହୋଇଛି ।

**ସେ କେଉଁ ବଂଶୀର ସ୍ୱର (୨୦୦୪):** ଏହି ରଚନାଟି କବିଙ୍କର ଏକ ମନୋଜ୍ଞ କବିତା ସଂକଳନ । ଏଥିରେ ୫୩ ଗୋଟି ଗୀତିମୟ କବିତା ସ୍ଥାନିତ ହୋଇଛି । ଏହିକବିତାର ଦେହଳୀରେ ଯେଉଁସ୍ୱର ଝଂକୃତ ହୋଇଛି, ସେହି ସ୍ୱର ହେଉଛି- ସ୍ରଷ୍ଟା ଆତ୍ମାର ସ୍ୱର । ମଣିଷର ଶୁଦ୍ଧ ଚେତନାର ଅନାହତ ଧ୍ୱନି । ଜୀବନ ଯନ୍ତ୍ରଣାରେ ଜାରିତ, ପଥଭ୍ରଷ୍ଟ ମଣିଷ ଯେତେବେଳେ ଆତ୍ମଅନ୍ୱେଷୀ ହୁଏ, ଉତ୍ତରିତ ଚେତନାରେ ନିମଜ୍ଜିତ ରହେ; ସେତେବେଳେ ସେ ଆତ୍ମାର ସ୍ୱର ଶୁଣିବାକୁ ସମର୍ଥ ହୁଏ । ଯେଉଁ ସ୍ୱର ତାକୁ ସତ୍ୟର ସନ୍ଧାନ ଦିଏ, ଆଲୋକର ପଥ ଦେଖାଏ । ସେଥିପାଇଁ କବି ମୃଗନାଭି କସ୍ତୁରୀର ଉତ୍ସମୂଳ ସନ୍ଧାନରେ ବ୍ରତୀ ହେବାପାଇଁ ମଣିଷ୍ଣ ସମାଜକୁ ଆହ୍ୱାନ କରିଛନ୍ତି । 'ପରିଚୟ' କବିତାରେ କବି ଭୋଗବିଳାସ ଓ କାମ-ବାସନାରେ ମୋହାନ୍ଧ ପାପାତ୍ମାର ପରିଚୟ ଦେଇଛନ୍ତି । 'ସ୍ୱପ୍ନଚାରୀ' କବିତାରେ କବିପ୍ରାଣ ସୃଜନ ମୁଖର । ଏହି ସୃଜନଶୀଳ କବି ପ୍ରାଣ 'ତୁମେ କିଏ ?' କବିତାରେ ଆତ୍ମଅନ୍ୱେଷୀ ଓ ଈଶ୍ୱର ସନ୍ଧାନୀ ହୋଇଉଠିଛି 'ଭକ୍ତ' କବିତାରେ ମଧ କବିପ୍ରାଣ ଈଶ୍ୱର ଉନ୍ମୁଖୀ । 'ନପାଇଲି ଦେଖା' କବିତାରେ ଆତ୍ମଅନ୍ୱେଷୀ କବିପ୍ରାଣ ଆଲୋକ ଓ ଅମୃତର ସନ୍ଧାନରେ ତଲ୍ଲୀନ । ଯେଉଁଥିପାଇଁ କବି ଲେଖିଛନ୍ତି-

"ଖୋଜୁଛି ଅଥୟହୋଇ ଅମିୟ, ଆଲୋକ ଧାରା
ଉଚ୍ଛନ୍ନ, ବ୍ୟାକୁଳପ୍ରାଣେ ମୁହିଁ ପଥହରା
ନିତ୍ୟାନନ୍ଦ, ସେଇ ଅବ୍ୟକ୍ତ, ଅନନ୍ତ, ଆଦିକନ୍ଦ ।"(୯)

'କେଉଁଠି ଅଛ ତୁମେ' କବିତାରେ କବିପ୍ରାଣ କସ୍ତୁରୀ ମୃଗସମ ସୁରଭିର ସନ୍ଧାନରେ ଦିଗ୍ ବିଦିଗ ଭ୍ରାମ୍ୟମାଣ । ହୃଦୟର ଅନ୍ତଃସ୍ଥଳରେ ଲୁଚି ରହିଥିବା ଆନନ୍ଦକନ୍ଦ ସ୍ୱରୂପ କସ୍ତୁରୀକୁ କବି ପାଇବାପାଇଁ ଉଦ୍‌ବିଗ୍ନ । ସେଇ ଆନନ୍ଦ ସ୍ୱରୂପ ଅଦୃଶ୍ୟ ବଂଶୀର ବିମୁଗ୍ଧ ମୂର୍ଚ୍ଛନାର ସ୍ୱରକୁ କବି ଖୋଜିଚାଲିଛନ୍ତି । ସେହିପରି କିପରି ଚାଲିବି, ଦେଖାଦିଅ, କିଏ ସେ ଡ଼ାକେ ମତେ ପ୍ରଭୃତି କବିତାରେ ସ୍ରଷ୍ଟାପ୍ରାଣ ଆଲୋକଉନ୍ମୁଖୀ ଓ ଅଦୃରର ଆକର୍ଷଣରେ ଆକର୍ଷିତ । ପରମାତ୍ମାଙ୍କ ସେଇ ଅଦୃର ବଂଶୀ ସ୍ୱନର ଉଚ୍ଚାଟ ଆକର୍ଷଣରେ କବିଙ୍କର ମନ-ପ୍ରାଣ ପ୍ରେମାପ୍ଲୁତ । କବିଙ୍କ ଭାଷାରେ-

"କିଏ ଡାକେ ମତେ ମଧୁରେ ମଧୁରେ
ବଇଁଶୀର ସ୍ୱର ଲହରେ
କର୍ଣ୍ଣ କୁହରରେ ଝଙ୍କାର ରଚଇ କିଏ ସେ ?
କାହା ପ୍ରେମ ଗୀତ ଗାଇରେ ।" (୧୦)

ସେହିପରି ପାଇଛି ଦେଖା, ଗାଉଛି ତୁମର ଗାନ, ପ୍ରେମ, ପୂର୍ବକର ମତେ, ଜିଜ୍ଞାସା, ସଖା, ବିଶ୍ୱପିତା, ପକ୍ଷୀ ପ୍ରଭୃତି କବିତାରେ କବିପ୍ରାଣ ଅନନ୍ତ ସନ୍ଧାନୀ, ଆଧାତ୍ମ ଉତ୍ତରିତ ଓ ଈଶ୍ୱରଙ୍କ ପବିତ୍ର ପ୍ରେମର ସାନ୍ନିଧରେ ପୁଲକିତ ହୋଇ ଉଠିଛି । କବିପ୍ରାଣ ଅନନ୍ତ ଉନ୍ମୁଖୀ ହୋଇ ପକ୍ଷୀଟିଏ ପରି ଅନନ୍ତ ସହିତ ମିଶିଯିବା ପାଇଁ ଉଡ଼ି ଯାଇଛି । ବାସ୍ତବରେ ଏହି କବିତା ସଂକଳନଟି ଏକ ଆଧାତ୍ମ-ଉତ୍ତରିତ ମହତ୍ତମ କଳାସୃଷ୍ଟି ।

**ବୀର ବୈଷ୍ଣବଙ୍କ ଜୀବନ ଗାଥା (୨୦୦୩):** ଏହା ଏକ ଜୀବନୀ ଚରିତ ଗ୍ରନ୍ଥ । ଢେଙ୍କାନାଳ ଗଡ଼ଜାତ ପ୍ରଜା ଆନ୍ଦୋଳନର ପ୍ରବାଦ ପୁରୁଷ ବୀର ବୈଷ୍ଣବ ଚରଣ ପଟ୍ଟନାୟକଙ୍କ ତ୍ୟାଗପୂତ ସଂଗ୍ରାମୀ ଜୀବନର କର୍ମ ତତ୍ପରତା, ଦେଶପ୍ରେମ ଓ ବୈପ୍ଳବିକ କାର୍ଯ୍ୟାବଳୀର ଏହା ଏକ ମନୋଜ୍ଞ ଆଲେଖ୍ୟ । ଓଡ଼ିଆ ଜୀବନୀ ସାହିତ୍ୟ ରଚନା ପରଂପରାର ଏହା ଏକ ସଫଳ ସୃଷ୍ଟି ।

**ଓଡ଼ିଶାର ଐତିହ୍ୟ : ଢେଙ୍କନାଳର କିମ୍ବଦନ୍ତୀ(୨୦୦୬):** ଏହା ଢେଙ୍କାନାଳର ଜନଶ୍ରୁତି ଓ କିମ୍ବଦନ୍ତୀ ଆଧାରିତ ଏକ ମନୋଜ୍ଞ ରଚନା । ଜନଶ୍ରୁତି ମୂଳକ କେତେକ ଲଳିତ ଗଳ୍ପ ଏଥିରେ କଥା ଛଳରେ ସ୍ଥାନିତ ହୋଇଛି । ଏଗୁଡ଼ିକରୁ ଢେଙ୍କାନାଳ ର ଅତୀତ ଇତିହାସ, ସଂସ୍କୃତି, ଧର୍ମ-ଦର୍ଶନ, ଲୋକ ରୁଚି ଓ ଲୋକ ବ୍ୟବହାରର ବାସ୍ତବ, ସତ୍ୟଶୀଳ ଚିତ୍ର ପ୍ରକଟିତ ହୁଏ ।

**ହରମୋହନଙ୍କ କବିତା କଳା (୨୦୧୪):** ଏହା ଶ୍ରୀଯୁକ୍ତ ମିଶ୍ରଙ୍କର ଏକ ସଂପାଦିତ କଳାକୃତି । ଏଥିରେ ଓଡ଼ିଶାର ସ୍ୱ-ନାମଧନ୍ୟ ଲବ୍‌ଧ ପ୍ରତିଷ୍ଠ ଆଲୋଚକଙ୍କର ୨୫ ଗୋଟି ଆଲୋଚନା-ସମାଲୋଚନା ସ୍ଥାନିତ ହୋଇଛି । ଯେଉଁଗୁଡ଼ିକ କି' ଢେଙ୍କାନାଳ ମାଟିର କାଳଜୟୀ ସ୍ରଷ୍ଟା, କବି ହରମୋହନ ଦାଶଙ୍କ କାବ୍ୟ-କବିତା କୃତି ଗୁଡ଼ିକର ମୂଲ୍ୟାଙ୍କନ ଉପରେ ପର୍ଯ୍ୟବସିତ । ଏଥିରେ ଶ୍ରୀଯୁକ୍ତ ନିତ୍ୟାନନ୍ଦ ମିଶ୍ରଙ୍କର ମାଇକେଲ୍ ମଧୁସୂଦନ, ରାଧାନାଥ ଓ ହରମୋହନ କାବ୍ୟ କୃତିର ଏକ ତୁଳନାତ୍ମକ, ତାତ୍ତ୍ୱିକ ବିଚାର ଆଲୋଚନା ମଧ୍ୟ ସ୍ଥାନିତ ହୋଉଛି ।

**ଗଡ଼ଜାତ ଗାନ୍ଧୀ (୨୦୧୪):** ଏହା ଓଡ଼ିଆ ଜୀବନୀ ଚରିତ ରଚନା କ୍ଷେତ୍ରରେ ଏକ ମାଇଲ୍ ଖୁଣ୍ଟ ସଦୃଶ । ଭାରତୀୟ ଜାତୀୟ ସଂଗ୍ରାମ ଓ ଢେଙ୍କାନାଳ ଗଡ଼ଜାତ ପ୍ରଜା ଆନ୍ଦୋଳନର ସମର୍ଥ ସାରଥି, ଓଡ଼ିଆ ସମାଜବାଦୀ ଆନ୍ଦୋଳନ ଓ କୃଷକ ଆନ୍ଦୋଳନର ଅଗ୍ରପୁରୋଧା ବିପ୍ଳବୀ ସାରଙ୍ଗଧର ଦାସଙ୍କ ଦୀର୍ଘ ସଂଗ୍ରାମଶୀଳ ଜୀବନର ଅନାଲୋକିତ, ଅନାଲୋଚିତ, ଅଜ୍ଞାତ ଅଧ୍ୟାୟକୁ ଲେଖକ ଏହି ଗ୍ରନ୍ଥରେ ଉନ୍ମୋଚିତ କରିବାର ପ୍ରୟାସ

କରିଛନ୍ତି । ଲେଖକ ଉପନ୍ୟାସ ଶିଳ୍ପ ପ୍ରକରଣ ଶୈଳୀରେ ଏହି ଜୀବନୀ ଚରିତ ଟି ରଚନା କରି ତାକୁ ଏକ 'ଚରିତ ଉପନ୍ୟାସ' ରୂପେ ଅଭିହିତ କରିଛନ୍ତି । ଏହି ରଚନାଟିର ବିଷୟ ବିନ୍ୟାସ, ବର୍ଣ୍ଣନା ବିଳାସ, କାବ୍ୟମୟତା, ସରଳ-ସାବଲୀଳଭାଷା, ରସାଳ ଅଭିବ୍ୟକ୍ତି ଏହି ଗ୍ରନ୍ଥଟିକୁ ଏକ ବର୍ଣ୍ଣାଢ୍ୟ ସୃଜନ କଳାର ବର୍ଣ୍ଣବିଭାରେ ବିଭ୍ରାଜିତ କରିପାରିଛି । ଏହି ଗ୍ରନ୍ଥଟି ୧ ୧ ଗୋଟି ପର୍ବରେ ଅନୁବନ୍ଧିତ । ଏଥିରେ ଓଡ଼ିଶାର ବିଭିନ୍ନ ଗଡ଼ଜାତ ରାଜ୍ୟ ଗୁଡ଼ିକର ଶୋଷଣ-କଷଣର ଚିତ୍ର ସହିତ ଢେଙ୍କାନାଳ ଗଡ଼ଜାତର ଅନ୍ଧାରୀ ଶାସନର ଚିତ୍ର ପ୍ରତିଫଳିତ । ଏହା ସହିତ ଭାରତୀୟ ଜାତୀୟ ସଂଗ୍ରାମ, ଉତ୍କଳ ସମ୍ମିଳନୀର ପ୍ରତିଷ୍ଠା, ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ, ଉତ୍କଳ ପ୍ରଦେଶସହ ଗଡ଼ଜାତ ରାଜ୍ୟ ଗୁଡ଼ିକର ମିଶ୍ରଣ ପ୍ରସଙ୍ଗ ମଧ୍ୟ ସ୍ଥାନିତ ହୋଇଛି । ଏହାସହିତ ଢେଙ୍କାନାଳ ମାଟିର ସୁଯୋଗ୍ୟ ସନ୍ତାନ ବିପ୍ଳବୀ ସାରଙ୍ଗଧରଙ୍କର ଜନ୍ମ, ବାଲ୍ୟଜୀବନ, ଶିକ୍ଷାଦୀକ୍ଷା, ଉଚ୍ଚଶିକ୍ଷାପାଇଁ ଜାପାନ ଓ ଆମେରିକା ଯାତ୍ରା, ବିଦେଶରୁ ଶିକ୍ଷାପ୍ରାପ୍ତ ହୋଇ ମାତୃଭୂମିକୁ ପ୍ରତ୍ୟାବର୍ତ୍ତନ, ବିଦେଶୀ ଲଳନା ଫ୍ରିଡ଼ାଙ୍କ ସହିତ ତାଙ୍କର ବିବାହ ଓ ଦାମ୍ପତ୍ୟ ଜୀବନ, ନିଜ ଜନ୍ମଭୂମିରେ ଆଖୁଚାଷ ଓ ଚିନିକଳ ପ୍ରତିଷ୍ଠା ସ୍ୱପ୍ନ, ସେଥିପାଇଁ ଢେଙ୍କାନାଳ ରାଜାଙ୍କ ସହାୟତାରେ ଜମି ଲିଜ୍ ନେଇ ଆଖୁଚାଷ ପ୍ରତିଷ୍ଠା କାର୍ଯ୍ୟ, ରାଜାଙ୍କ ରୋଷର ଶିକାରହୋଇ ଭିଟାମାଟି ଛାଡ଼ି ଓ ଅଧୁରା ଚିନିକଳର ସ୍ୱପ୍ନ ଭାଙ୍ଗି କଟକ ରେ ଆତ୍ମଗୋପନ, ପତ୍ନୀ ଫ୍ରିଡ଼ାଙ୍କ ବିଚ୍ଛେଦ, କଂଗ୍ରେସ ସଂଗଠନ, ସମାଜବାଦୀ ଆନ୍ଦୋଳନ, କୃଷକ ଆନ୍ଦୋଳନ, ଗଡ଼ଜାତ ପ୍ରଜା ଆନ୍ଦୋଳନରେ ସାମିଲ, ପ୍ରତ୍ୟକ୍ଷ ରାଜନୀତିରେ ଯୋଗଦାନ ଓ ପରିଶେଷରେ ତାଙ୍କର ସୁଦୀର୍ଘ କର୍ମମୟ ଜୀବନର ଅବସାନ ଆଦି ଘଟଣାବଳୀ ଏଥିରେ ଜୀବନ୍ତ, ବାସ୍ତବ ଭାବରେ ଚିତ୍ରିତ ହୋଇଛି । ବାସ୍ତବରେ ଏହି ଗ୍ରନ୍ଥଟି ଏକ ଅଲୌକିକ ପ୍ରତିସ୍ପର୍ଦ୍ଧୀ କଳାସୃଷ୍ଟି । ହୃଦୟର ପ୍ରଚଣ୍ଡ ଆବେଗ ଓ ଦୈବୀ କୃପା ବିନା ଏଭଳି ଏକ ଗ୍ରନ୍ଥ ରଚନା କରିବା ନିଶ୍ଚିତରୂପେ ଦୁରୂହ ବ୍ୟାପାର । ଏହା ସ୍ରଷ୍ଟାଙ୍କରସାରସ୍ୱତ ପ୍ରତିଭାର ଏକ ସର୍ବଶ୍ରେଷ୍ଠ ନିଦର୍ଶନ ।

**ଶ୍ରୀ ଯୁଧିଷ୍ଠିର ପଣ୍ଡା (୧୯୪୨- ):**

ଯୁଧିଷ୍ଠିର ପଣ୍ଡାଙ୍କ ଜନ୍ମ ଢେଙ୍କାନାଳ ଜିଲ୍ଲାର କାମାକ୍ଷାନଗର ଅନ୍ତର୍ଗତ 'ଜିରାଳ' ଗ୍ରାମରେ । ଶ୍ରୀଯୁକ୍ତ ପଣ୍ଡା ବୃତ୍ତିରେ ଜଣେ ପଶୁ ଡାକ୍ତର । ନିଜ ଜୀବନର ଦୀର୍ଘ ତିକ୍ତ-ମଧୁର ଅନୁଭୂତି, ଅନୁଭବ ଓ ଭାବନାରାଜିକୁ ସେ କବିତାର ରୂପ ଦେଇଛନ୍ତି । 'ପ୍ରେମପ୍ରଭା'(୨୦୦୭) କବିତା ସଂକଳନ ତାଙ୍କ କବି ପ୍ରତିଭାର ନିଦର୍ଶନ ।

ଏହି ସଂକଳନଟିରେ ୪୬ ଗୋଟି କ୍ଷୁଦ୍ର କ୍ଷୁଦ୍ର କବିତା ସ୍ଥାନିତ ହୋଇଛି । ଏଥିରେ ସନ୍ନିବିଷ୍ଟ କେତେକ କବିତା ତାଙ୍କ ପରଲୋକଗତା ପତ୍ନୀ ସ୍ୱର୍ଣ୍ଣପ୍ରଭାଙ୍କ ପ୍ରେମ ଓ ସ୍ମୃତି କୁ ପାଥେୟକରି ରଚିତ । ଏହା ସହିତ ଏଥିରେ କେତେଗୁଡ଼ିଏ ଭକ୍ତିଭାବାପନ୍ନ ଜଣାଣ ଓ ପ୍ରର୍ଥନା ମଧ ସନ୍ନିବିଷ୍ଟ ହୋଇଛି । ଶ୍ରୀଯୁକ୍ତ ପଣ୍ଡାଙ୍କର ଅନ୍ୟଏକ କବିତା ସଂକଳନ ହେଲା- 'ତୁମେଗଲାପରେ' । ଏହି ସଂକଳନରେ ସ୍ଥାନିତ ଅଧିକାଂଶ କବିତା ମଧ ନିଜ ପ୍ରିୟତମା ପତ୍ନୀଙ୍କ ପ୍ରେମମୟ ସ୍ମୃତିରେ ରଚିତ । ଏହା ସହିତ ଏହି କବିତା ଗୁଡ଼ିକରେ ସ୍ରଷ୍ଟାପ୍ରାଣର ଏକାକୀତ୍ୱ ବୋଧ ଓ ଯନ୍ତ୍ରଣା ବୋଧର ଚିତ୍ର ପ୍ରକଟିତ ହୋଇଛି ।

**ଶ୍ରୀ ଧ୍ରୁବଚରଣ ସ୍ୱାଇଁ ( ୧୯୪୩- ):**

ଧ୍ରୁବଚରଣ ସ୍ୱାଇଁଙ୍କର ଜନ୍ମ ୧୯୪୩ ମସିହାରେ ଢେଙ୍କାନାଳର ଜହ୍ନିତଏଳା ଠାରେ । ତାଙ୍କ ପିତାଙ୍କ ନାମ- ବାସୁଦେବ ସ୍ୱାଇଁ ଓ ମାତା- ରଙ୍ଗଲତା ସ୍ୱାଇଁ । ଧ୍ରୁବଚରଣ ଜଣେ କୃଷିଜୀବୀ ହେଲେହେଁ, କାବ୍ୟ-କବିତା ରଚନାରେ ତାଙ୍କର ରୁଚି ରହିଛି । ପୁରାଣର ବିଷୟବସ୍ତୁ ଓ ପୌରାଣିକ ଚରିତ୍ରମାନଙ୍କୁ ନେଇ ସେ ଅନେକ ଗୁଡ଼ିଏ କାବ୍ୟ ରଚନା କରିଛନ୍ତି । ସେଗୁଡ଼ିକ ହେଲା- ବାଣ ହରଣ, ଦଶରଥ ବିୟୋଗ, ଜୟଦ୍ରଥ ବଧ, ସତ୍ତ୍ୱରକ୍ଷା, ବେଣୀବନ୍ଧନ, ଶିବ ବିବାହ, ଅଗ୍ନିଶିଖା, ସଙ୍ଗୀତ ସୁଧାକର । ଏତଦ୍ ଭିନ୍ନ ତାଙ୍କର ଏକ ଐତିହ୍ୟଦୀପ୍ତ ପ୍ରକୃତିକ ସୌନ୍ଦର୍ଯ୍ୟଗର୍ଭିତ କାବ୍ୟ 'ସପ୍ତଶଯ୍ୟା' ମଧ ରହିଛି । ସପ୍ତଶଯ୍ୟାର ପ୍ରାକୃତିକ ସୌନ୍ଦର୍ଯ୍ୟ ଅନ୍ୟ କବି ମାନଙ୍କପରି ଧ୍ରୁବଚରଣଙ୍କୁ ମଧ ବିମୋହିତ କରିଛି । ସେଥିପାଇଁ ସେ 'ସପ୍ତଶଯ୍ୟା' କାବ୍ୟ ରଚନାରେ ହାତଦେଇଛନ୍ତି । ଏହି 'ସପ୍ତଶଯ୍ୟା' ଏକ ଖଣ୍ଡ କାବ୍ୟ । ଏହାର ରଚନାକାଳ ୧୯୬୨ ମସିହା । ମାତ୍ର- ଏହା ୧୯୯୭ ମସିହାରେ ପ୍ରକାଶିତ ହୋଇଛି । 'ସପ୍ତଶଯ୍ୟା' ଭ୍ରମଣ ଅବକାଶରେ କବିଙ୍କ ହୃଦୟରେ ଯେଉଁ ସୌନ୍ଦର୍ଯ୍ୟାନୁଭୂତି ଓ ଦୈବତ ଅନୁଭବ ଅନୁଭୂତ ହୋଇଛି, ତାକୁ କବି କାବ୍ୟରୂପ ଦେଇଛନ୍ତି । ଏହି କାବ୍ୟ ରଚନାରେ କବିବର ରାଧାନାଥ ରାୟଙ୍କ କାବ୍ୟିକ ଆଦର୍ଶ ଫୁଟିଉଠିଛି । କବି ଧ୍ରୁବଚରଣ ସପ୍ତଶଯ୍ୟାର ଭୌଗୋଳିକ ସ୍ଥିତି, ଏଠାରେ ଥିବା ରଘୁନାଥଙ୍କ ଆଧ୍ୟାତ୍ମିକ ପୀଠ, ଏହାର ପୌରାଣିକ କିମ୍ବଦନ୍ତୀ, ଜନଶ୍ରୁତି ଓ ଇତିହାସ ଆଧାରିତ ତଥ୍ୟାବଳୀର ଉପସ୍ଥାପନ ସହିତ ଏହି ପୀଠର ମହନୀୟ ଐତିହ୍ୟର ସୂଚନା ଦେଇଛନ୍ତି । ତ୍ରେତୟା ଯୁଗରେ ଏହି ପାର୍ବତ୍ୟ ଶଯ୍ୟାରେ ଭଗବାନ ଶ୍ରୀରାମ ଓ ଦ୍ୱାପର ଯୁଗରେ ପାଣ୍ଡବମାନେ ଅବସ୍ଥାନ କରିଥିବାର କବି ସୂଚିତ କରିଛନ୍ତି । କବି 'ସପ୍ତଶଯ୍ୟା' କାବ୍ୟରେ ଏହାର ସୂଚନାଦେଇ ଲେଖିଛନ୍ତି -

"ବନବାସ କାଳେ ରହି ସାତଦିନ
ସ୍ନିଗ୍‌ଧ ଶୀଳାସନେ ସରାଗେ ଆସୀନ ।
ଛଦ୍ମବେଶେ ଏଥୁଁ ପଣ୍ଡୁସୁତ ଗଣ
ଯାତ୍ରା କରିଥିଲେ ବିରାଟ ଭୁବନ ।" (୧୧)

ପୁରାଣ ପ୍ରସିଦ୍ଧ ଏହି ପ୍ରବୃଦ୍ଧଗିରି ସପ୍ତଶଯ୍ୟା ଅତୀତ ଉତ୍କଳର ଐତିହ୍ୟ ଓ ଗୌରବର ମୂକସାକ୍ଷୀ । ଏହି ପ୍ରସଙ୍ଗରେ କବି ଉତ୍କଳର ମହାନ୍ ଦିଗ୍‌ବିଜୟୀ ସମ୍ରାଟ ଖାରବେଳଙ୍କର ବିଜୟ ଗୌରବର ପ୍ରକଟନ ସହିତ ବୀରଭୂମି 'ବାରବାଟୀର' ସ୍ତୁତିଚାରଣା କରିଛନ୍ତି । କେବଳ ସେତିକିନୁହେଁ ଇତିହାସ ପ୍ରସିଦ୍ଧ ରାଜ-ରାଜୁଡ଼ା ନିର୍ମମ ଅତ୍ୟାଚାରର ମୂକସାକ୍ଷୀ ଢେଙ୍କାନାଳର 'ଯତନ ନଗରୀ' ସମ୍ପର୍କରେ ମଧ କବି ସୂଚନା ପ୍ରଦାନ କରିଛନ୍ତି । ଏହାସହିତ ସପ୍ତଶଯ୍ୟା ପାର୍ବତ୍ୟମାଳାର ମନୋରମ ଗିରିଶୋଭା, ଶାଶ୍ୱତ, ଶୀତଳ ଗିରିନିର୍ଝର, ଅରଣ୍ୟବାସୀ ପଶୁ-ପକ୍ଷୀ ଓ ନିକଟସ୍ଥ ଜନପଦ ଗୁଡ଼ିକର ଅପରୂପ ଶୋଭା ବର୍ଣ୍ଣନା କରିଛନ୍ତି । ଏହି ପୀଠ ଯେ ଦିନେ ଭବିଷ୍ୟତରେ ନିଜର ଆଧାତ୍ମିକ ମହିମାପାଇଁ ଶ୍ରେଷ୍ଠସ୍ଥାନ ଲାଭକରିବ ଏହି ଆଶା ଓ ପରିକଳ୍ପନା କବି ଏ କାବ୍ୟରେ କରିଛନ୍ତି । କବିଙ୍କ ଭାଷାରେ-

"ଉତ୍କଳେ ଏ ଭୂମି ହେବ ପୂତ-ଧନ୍ୟ
ପୁଷ୍ପ କୁଣ୍ଡେ ପୁଷ୍ପ-କେଶର ଯେସନ
ମଧୁପ ପରାୟେ ସାଧୁ-ସମାଗତ
ହେବେ ଏଥି କହେ ଦୂର ଭବିଷ୍ୟତ ।" (୧୨)

ବାସ୍ତବରେ ଏହି କାବ୍ୟଟି କବିଙ୍କର ଏକ ମହାନ କଳାକୃତି ।

**ଶ୍ରୀ ବସନ୍ତ କୁମାର ମହାପାତ୍ର (୧୯୪୪- ):**

ବସନ୍ତ କୁମାର ମହାପାତ୍ରଙ୍କର ଜନ୍ମ ୧୯୪୪ ମସିହା ଜୁଲାଇମାସ ୧୦ ତାରିଖରେ ଢେଙ୍କାନାଳର ଧଳପୁର ଗ୍ରାମରେ । ତାଙ୍କ ପିତାଙ୍କ ନାମ- ଯୋଗୀନାଥ ମହାପାତ୍ର ଓ ମାତା- ହୀରାମଣି ଦେବୀ । ଶ୍ରୀଯୁକ୍ତ ମହାପାତ୍ର ବୃତ୍ତିରେ ଜଣେ ଶିକ୍ଷକ । ଶିକ୍ଷକତା ସହିତ ସେ ସାରସ୍ୱତ ସର୍ଜନାରେ ମଧ ମନୋନିବେଶ କରିଥିଲେ । ତାଙ୍କ ରଚିତ କବିତା କୃତି ଗୁଡ଼ିକ ହେଲା- ଯାଚନା, ମୋକ୍ଷମେଖଳା, ଚାରୁରୁଚା ।

**ଯାଚନା (୧୯୯୧):** ଏହା କବିଙ୍କର ପ୍ରଥମ କବିତା ଅର୍ଘ୍ୟ । ଏଥିରେ ୧୨ ଗୋଟି କ୍ଷୁଦ୍ର କ୍ଷୁଦ୍ର କବିତା ସ୍ଥାନିତ ହୋଇଛି । ଏହି ସଂକଳନର ପ୍ରଥମ କବିତା 'ପ୍ରକୃତି ଚେତନା'

ଓ ଶେଷତମ କବିତା- 'ଓଷଧି ଗପ' । ଏହି କବିତା ଗୁଡ଼ିକ ସରଳ, ଚପଳ, କୋମଳମତ ବାଳକ ମାନଙ୍କୁ ଉପଲକ୍ଷ୍ୟକରି କବି ରଚନା କରିଛନ୍ତି । ବିଶ୍ୱ ପ୍ରକୃତିର ସ୍ୱଭାବ ସୁନ୍ଦର ରୂପ, ପ୍ରକୃତି ସହିତ ମଣିଷର ନିବିଡ ସଂପର୍କ, ପ୍ରକୃତିର ସୁରକ୍ଷାପ୍ରତି ମଣିଷ ହୃଦୟରେ ଚେତନାର ଜାଗରଣ ଓ ମଣିଷ ସମାଜପ୍ରତି ପ୍ରକୃତିର ଉପାଦେୟତା ସଂପର୍କରେ କବି ଏହି 'ଯାଚନା' ରେ ଆଲୋକପାତ କରିଛନ୍ତି ।

**ମୋକ୍ଷମେଖଳା (୨୦୦୮):** ଏହା କବିଙ୍କର ଦ୍ୱିତୀୟ କବିତା ସଂକଳନ । ଏଥିରେ ୨୫ ଗୋଟି କବିତା ସ୍ଥାନିତ ହୋଇଛି । ମାନବୀୟ ଆଶା, ଆକାଂକ୍ଷା ସଂପ୍ରୀତି ଓ ଦେଶପ୍ରେମ ଭାବନା ଏହି କବିତା ଗୁଡ଼ିକରେ ପ୍ରକଟିତ । ଏହି ସଂକଳନର ପ୍ରଥମ କବିତା 'ଭକତବତ୍ସଳ' ଓ ଶେଷତମ କବିତା 'ଭାରତ ବନ୍ଦନା' । ଏହି ସଂକଳନଟିରେ କବି ସମାଜ ଜୀବନ ଓ ବ୍ୟକ୍ତିଗତ ଜୀବନରେ ଭରି ରହିଥିବା କୁସଂସ୍କାର, ଅଜ୍ଞାନ-ଅନ୍ଧକାର ରୂପକ ମେଖଳାର ବିନାଶ ଘଟାଇ ଜ୍ଞାନ ଓ ଆଲୋକର ମୋକ୍ଷ-ମେଖଳା ପରିଧାନ କରାଇବାକୁ ପ୍ରଚେଷ୍ଟା କରିଛନ୍ତି । ମଣିଷ ହୃଦୟରୁ ଇର୍ଷା, ଅସୂୟା, ଲୋଭ, ସ୍ୱାର୍ଥପରତା, ହିଂସ୍ରତା ଓ ଅମାନବିକତାର ବିଲୋପ ଘଟାଇ ତା' ହୃଦୟରେ ସ୍ନେହ, ପ୍ରେମ ଓ ଉଦାର ମାନବିକତାର ପ୍ରତିଷ୍ଠା କରାଇ ତାକୁ ଆଧାତ୍ମ ଉତ୍ତରିତ, ମୋକ୍ଷକାମୀ କରାଇବାପାଇଁ କବି ଏହି କବିତା ଗୁଡ଼ିକରେ ଆହ୍ୱାନ ଦେଇଛନ୍ତି । ଏହା ସହିତ ମଣିଷ ହୃଦୟରେ ମାତୃଭୂମି ପ୍ରୀତି, ଦେଶପ୍ରେମ ପ୍ରାଣତା, ଭୌଗୋଳିକ ଏକତା ଓ ଅଖଣ୍ଡତା, ଜାତୀୟ ଐକ୍ୟ ଓ ସଂହତି ଭାବନାର କ୍ରମୋନ୍ନତିପାଇଁ କବି ତତ୍ପରତା ପ୍ରକାଶ କରିଛନ୍ତି ।

**ଚାରୁରୁଚା (୨୦୦୮):** ଏହି ସଂକଳନଟି ୨୬ ଗୋଟି ମନୋଜ୍ଞ କବିତାର ମଞ୍ଜୁଳ ସମାହାରରେ ସମୃଦ୍ଧ । ଏହାର ପ୍ରଥମ କବିତା- 'ଶକ୍ତି ସ୍ୱାଗତ' ଓ ଶେଷତମ କବିତା- 'ବସନ୍ତ ଆସୁଛି' । ଏଥିରେ ସନ୍ନିବିଷ୍ଟ କବିତା ଗୁଡ଼ିକ ଭିତରେ ସମାଜ, ସଂସ୍କୃତି, ଧର୍ମ, ଦର୍ଶନ ଓ ବିଶ୍ୱ ପ୍ରକୃତିର ବିମୁଗ୍ଧ ରୂପଚିତ୍ର ପ୍ରକଟିତ । 'ଶକ୍ତିସ୍ୱାଗତ' ରେ କବି ଶରତ ପ୍ରକୃତିର ରଜତ ଧବଳ କାଶତଣ୍ଡୀର ଅପୂର୍ବ ଶୋଭା-ସମ୍ଭାର ଭିତରେ ଧରାରେ ଅବତରିତ ମାତୃଶକ୍ତି ଦୁର୍ଗତୀ ନାଶିନୀ ଦେବୀ ଦୁର୍ଗାଙ୍କର ଆରାଧନା ଓ ତାଙ୍କୁ ଭକ୍ତିଅର୍ଘ୍ୟ ଅର୍ପଣ କରିଛନ୍ତି । ଦାନବୀୟ ହିଂସ୍ର ପ୍ରକୋପର ବିଷ ଜ୍ୱାଳାରୁ ଅମୃତମୟ ସୃଷ୍ଟିକୁ ରକ୍ଷା କରିବାପାଇଁ କବି ଦେବୀ ଦୁର୍ଗାଙ୍କୁ ସଭକ୍ତି ଆରାଧନା କରିଛନ୍ତି । ଜଗତର କଲ୍ୟାଣ ଓ ଜନସଂଘର ପ୍ରାଣରେ ଶକ୍ତିର ସଂଚାର ପାଇଁ ମଧ କବି ମାତୃଶକ୍ତିର ଆବାହନୀ କରିଛନ୍ତି ।

## ଶ୍ରୀ ଶତ୍ରୁଘ୍ନ ଭୂତିଆ (୧୯୪୪- ):

ଶତ୍ରୁଘ୍ନ ଭୂତିଆଙ୍କର ଜନ୍ମ ୧୯୪୪ ମସିହାରେ ଢେଙ୍କାନାଳ ଜିଲ୍ଲାର ନାଉପାଳ ଗ୍ରାମରେ । ତାଙ୍କ ପିତାଙ୍କ ନାମ- ଶ୍ରୀ ଋଷି ଭୂତିଆ ଓ ମାତା- ଲାବଣ୍ୟ ଦେବୀ । ଶ୍ରୀଯୁକ୍ତ ଭୂତିଆ ବିଜ୍ଞାନରେ ସ୍ନାତକ ଓ ଏମ୍.ଇଡ଼ି. ଡିଗ୍ରୀ ଲାଭ କରି ଶିକ୍ଷକତାକୁ ନିଜର ବୃତ୍ତି ରୂପେ ଆପଣେଇ ନେଇଥିଲେ । ଜଣେ କୃତି ଶିକ୍ଷକ ହିସାବରେ ନିଜର ଦକ୍ଷତାପାଇଁ ସେ ରାଜ୍ୟ ପୁରସ୍କାର ସମେତ ବିଭିନ୍ନ ପୁରସ୍କାର ଓ ସମ୍ମାନରେ ସମ୍ମାନୀତ ହୋଇଛନ୍ତି । ସେ ଜଣେ ଦକ୍ଷ ସଂଗଠକ ଓ ସଂସ୍କୃତି ପ୍ରେମୀ ବ୍ୟକ୍ତି ହିସାବରେ ବିଭିନ୍ନ ସାମାଜିକ ଓ ସାରସ୍ୱତ ଅନୁଷ୍ଠାନ ସହିତ ଜଡ଼ିତ । ଢେଙ୍କାନାଳ ଜିଲ୍ଲା ଲେଖକ ସଂସଦ ଓ ସାଂସ୍କୃତିକ ପରିଷଦସହ ସେ ବିଶେଷ ଭାବରେ ଜଡ଼ିତ । ଶ୍ରୀଯୁକ୍ତ ଭୂତିଆ ମୁଖ୍ୟତଃ ଜଣେ କବି ଓ ପ୍ରାବନ୍ଧିକ । ତାଙ୍କ ରଚିତ ସାରସ୍ୱତ କୃତି ଗୁଡ଼ିକ ହେଲା- ବିଜ୍ଞାନର ଜୟଗାନ, ଅଲୌକିକତା ପଶ୍ଚାତ୍‌ରେ ବିଜ୍ଞାନ, ଯାଦବ ଓଗାଳ ଓ ଲଉଡ଼ି ନୃତ୍ୟ-ସଂଗୀତ, ସାଂପ୍ରତିକ କବିତାବଳୀ ପ୍ରଭୃତି ।

ଶ୍ରୀଯୁକ୍ତ ଭୂତିଆ ଜଣେ ବିଜ୍ଞାନ ଶିକ୍ଷକ ରୂପରେ ଜ୍ଞାନ-ବିଜ୍ଞାନ ସମ୍ବଳିତ ଅନେକ ଉପାଦେୟ ପ୍ରବନ୍ଧ ରଚନା କରିଛନ୍ତି । ମୋଟାମୋଟି ଭାବରେ ସେ ବିଜ୍ଞାନ ଓ ବୈଜ୍ଞାନିକ ଚିନ୍ତାଧାରାର ଜୟଗାନ ହିଁ କରିଛନ୍ତି । ଲେଖକଙ୍କର 'ଯାଦବ ଓଗାଳ'(୨୦୧୦) ରଚନାଟି ଏକ ମହାର୍ଘ କଳାସୃଷ୍ଟି । ପଞ୍ଚସଖା ଯୁଗର ବରେଣ୍ୟ ସ୍ରଷ୍ଟା ମହାପୁରୁଷ କବି ଅଚ୍ୟୁତାନନ୍ଦ ଦାଶଙ୍କ 'ଗୋପାଳଙ୍କ ଓଗାଳ' ଅବଲମ୍ବନରେ ଲେଖକ ଏହି ଗ୍ରନ୍ଥଟି ରଚନା କରିଛନ୍ତି । ଏହି ରଚନାଟିରେ ଅବଶ୍ୟ ଲେଖକଙ୍କର ସ୍ୱାତନ୍ତ୍ର୍ୟ ଓ ମୌଳିକତା ଫୁଟିଉଠିଛି । ଗୋପାଳ ବା ଯାଦବ କୁଳର ଐତିହ୍ୟ ଓ ପରଂପରାକୁ ଲେଖକ ଇତିହାସର ରୂପ ଦେଇଛନ୍ତି । ଏହା ସହିତ ଏଥିରେ ଲଉଡ଼ି ନୃତ୍ୟ ଓ ସଂଗୀତର ମନୋଜ୍ଞ, ମଞ୍ଜୁଳ ସମାବେଶ ମଧ୍ୟ ଘଟିଛି ।

## ସୁରେଖା ଶତପଥୀ (୧୯୪୪- ):

ସୁରେଖା ଶତପଥୀଙ୍କ ଜନ୍ମ ୧୯୪୪ ମସିହା ଅଗଷ୍ଟମାସ ୧୦ ତାରିଖରେ ଢେଙ୍କାନାଳ ଜିଲ୍ଲାର ହିନ୍ଦୋଳ ଉପଖଣ୍ଡର-ପାଳଟକଡ଼ା ଗ୍ରାମରେ । ସେ ଢେଙ୍କାନାଳ ବ୍ରଜବିହାରୀପୁର ଶାସନ ନିବାସୀ ଶ୍ରୀ ଶଙ୍କର୍ଷଣ ଶତପଥୀଙ୍କ ସହିତ ବିବାହ ବନ୍ଧନରେ ଆବଦ୍ଧ ହୋଇଛନ୍ତି । ଶ୍ରୀଯୁକ୍ତ ଶତପଥୀ ଜଣେ ସାହିତ୍ୟପ୍ରାଣ ବ୍ୟକ୍ତି । ତାଙ୍କର 'ସବୁଜ ସତ୍ୟ' ନାମକ ଖଣ୍ଡିଏ ଉପନ୍ୟାସ ରହିଛି । ସ୍ୱାମୀଙ୍କ ସାହିତ୍ୟପ୍ରାଣ ସହିତ ପତ୍ନୀ

ସୁରେଖାଙ୍କର କବିପ୍ରାଣ କାଚ-କାଞ୍ଚନର ଅପୂର୍ବ ସଂଯୋଗ ସୃଷ୍ଟି କରିଥିଲା । ଶ୍ରୀ ମତୀ ଶତପଥୀ ଏକାଧାରରେ ଜଣେ କବି ଓ କଥାକାର । କବିତା ରଚନା ସହିତ ସେ ଗଳ୍ପ, ଉପନ୍ୟାସମାନ ମଧ୍ୟ ରଚନା କରିଛନ୍ତି । ତାଙ୍କ ରଚିତ କବିତାକୃତି ଗୁଡ଼ିକ ହେଲା- କବିତା ଗୁଚ୍ଛ, କବିତା କଳି, କବିତା ଧାରା, ଭକ୍ତି କୁସୁମ, ଅନ୍ତଃ ସଲୀଳା । ତାଙ୍କ ରଚିତ ଗଳ୍ପ ଗ୍ରନ୍ଥ ନିଃସଙ୍ଗ ବିହଙ୍ଗ ( ୨ ୦୦୫ ) ଓ ଉପନ୍ୟାସ ହେଲା- ଘାସ ଫୁଲ( ୨ ୦ ୧ ୧ ), ବଣମାଳତୀ ।

**ଭକ୍ତିକୁସୁମ ( ୨ ୦ ୦ ୦ ):** ଏହା ଏକ ମନୋଜ୍ଞ ଗୀତିଗୁଚ୍ଛ । ଏଥିରେ ୩୫ ଗୋଟି କ୍ଷୁଦ୍ର କ୍ଷୁଦ୍ର ଗୀତିମୟ କବିତା ସ୍ଥାନିତ ହୋଇଛି । ଏହି କବିତା ଗୁଡ଼ିକରେ କବି ହୃଦୟର ସରଳ, ତରଳ ଭାବାବେଗ, ପ୍ରାଣର ବୈକଲ୍ୟ ଏବଂ ଅପୂର୍ବ ଭକ୍ତିମତ୍ତା ପୁଷ୍ପର ସୌନ୍ଦର୍ଯ୍ୟ ନେଇ ଝରିଆସିଛି ।

**ଅନ୍ତଃସଲୀଳା ( ୨ ୦ ୦ ୦ ):** ଏହି କବିତା ସଂକଳନଟିରେ ୯୫ଗୋଟି କବିତା ସ୍ଥାନିତ ହୋଇଛି । ସ୍ରଷ୍ଟାପ୍ରାଣର ପ୍ରେମ-ପ୍ରୀତିମୟ ଆବେଗିକ ଉଚ୍ଛ୍ୱାସ, ଜୀବନର ନିବିଡ଼ ଅନୁଭବ, ଅନୁଭୂତି ଓ ଇଶ୍ୱର ଅନୁଚିନ୍ତାର ବିମଳ ଭାବନା ଅନ୍ତଃସଲୀଳା ଫଲ୍‌ଗୁ ପରି ଝରିଆସିଛି । ବାସ୍ତବରେ କବିଙ୍କର ବ୍ୟକ୍ତିଗତ ଜୀବନର ତିକ୍ତ-ମଧୁର, ସ୍ମୃତି-ଅନୁଭୂତିର ଏହା ଏକ କଳାତ୍ମକ ଅଭିବ୍ୟକ୍ତି ।

**ନିଃସଙ୍ଗ ବିହଙ୍ଗ ( ୨ ୦ ୦ ୫ ):** ଏହା ଏକ ମନୋଜ୍ଞ ଗଳ୍ପ ସଂକଳନ । ଏଥିରେ ୧ ୨ ଗୋଟି ଗଳ୍ପ ସ୍ଥାନିତ । ପ୍ରଥମ ଗଳ୍ପ 'ଅଭୁଲା ସ୍ମୃତି' ଓ ଶେଷତମ ଗଳ୍ପ 'ନିଃସଙ୍ଗ ବିହଙ୍ଗ' । ଏହି ଗ୍ରନ୍ଥସନ୍ନିବିଷ୍ଟ ଗଳ୍ପଗୁଡ଼ିକରେ ଆଧୁନିକ ମଣିଷ ଓ ଜୀବନର ନାନାବିଧ ସମସ୍ୟା ଓ ସଂକଟର ଜଟିଳ ରୂପାୟନ ସହିତ ମଣିଷ ଜୀବନର ନିଃସଙ୍ଗତା, ଏକାକୀତ୍ୱ ବୋଧର ଚିତ୍ର ଫୁଟିଉଠିଛି ।

**ଘାସଫୁଲ ( ୨ ୦ ୧ ୧ ):** ଏହା ଏକ ସୁଖପାଠ୍ୟ ଉପନ୍ୟାସ । ଘାସଫୁଲ ସମସ୍ତଙ୍କର ନିକଟରେ ହେୟ, ଅବହେଳିତ, ଅପାଙ୍‌କ୍ତେୟ ହେଲେବି; ତା'ର ସକୀୟ ସୌନ୍ଦର୍ଯ୍ୟରେ ସେ ଦୀପ୍ତିମାନ୍ । ମଣିଷ ସାଂସାରୀକ ଦାବ-ଦହନ, ମର୍ମ ବେଦନା ଓ ଜୀବନ ଯନ୍ତ୍ରଣାରେ ଆକ୍ରାମାନ୍ତା ହେଲେବି' ତା'ର ଅନ୍ତରର ରୂପଟି ଘାସଫୁଲର ଶୁଦ୍ଧ-ସୌନ୍ଦର୍ଯ୍ୟ ନେଇ ପ୍ରକଟିତ ହୋଇଥାଏ । ବାସ୍ତବରେ ଏହି ଉପନ୍ୟାସଟି ନିଜର ସକୀୟ ସୌନ୍ଦର୍ଯ୍ୟ ଓ ଭାବମାଧୁର୍ଯ୍ୟରେ ମହୀୟାନ ।

**ଶ୍ରୀ ଦାଶରଥି ସାହୁ (୧୯୪୫- ):**

ଦାଶରଥି ସାହୁଙ୍କର ଜନ୍ମ ୧୯୪୪ ମସିହାରେ ଢେଙ୍କାନାଳର ସିଙ୍ଗାରାଇତଳା ଗ୍ରାମରେ । ତାଙ୍କ ପିତାଙ୍କ ନାମ- ଦୈତାରୀ ସାହୁ ଓ ମାତା- ଦୁର୍ଗାବତୀ ଦେବୀ । ଶ୍ରୀଯୁକ୍ତ ସାହୁ ବାଣିଜ୍ୟରେ ସ୍ନାତକ ଡିଗ୍ରୀ ଲାଭପରେ ରାଜସ୍ୱ ବିଭାଗରେ ଚାକିରୀ ଜୀବନ ଆରମ୍ଭ କରନ୍ତି । ଶ୍ରୀଯୁକ୍ତ ସାହୁ ପ୍ରବନ୍ଧ, ଗଳ୍ପ, କବିତାମାନ ରଚନା କରି ନିଜ ସାରସ୍ୱତ ପ୍ରତିଭାର ପ୍ରଦର୍ଶନ କରିଯାଇଛନ୍ତି । ତାଙ୍କ ରଚିତ ସାରସ୍ୱତ କୃତି ଗୁଡ଼ିକହେଲା- କିଛିକଥା କିଛି ବ୍ୟଥା (ଲଘୁ ପ୍ରବନ୍ଧ), ଟିକିଏ ଶୁଣିବେକି (ପ୍ରବନ୍ଧ), ଓଡ଼ିଆ ମାଟିରୁ ନେପାଳ ଭୂଇଁ (ଭ୍ରମଣ କାହାଣୀ), ବୃଦ୍ଧ କାଳେ ଯୁବ ଲୀଳା (ଗଳ୍ପ), ମନଖୋଲା କବିତା, କଥାଟିଏ କୁ ଗପଟିଏ, ପିଲେ ଶୁଣ କବିତା, ମାର୍ଗଦର୍ଶୀବାଣୀ (ସଂଗୃହୀତ ହିତୋପଦେଶ) । 'ଓଡ଼ିଶା ମାଟିରୁ ନେପାଳ ଭୂଇଁ' ଲେଖକଙ୍କର ଏକ ସଫଳ ଭ୍ରମଣ ଗ୍ରନ୍ଥ । ନେପାଳ ଭ୍ରମଣ ଜନିତ ଅନୁଭବ, ଅନୁଭୂତିର ସ୍ନିଗ୍ଧ ପରିପ୍ରକାଶ ଏଥିରେ ଘଟିଛି । କିଛି କଥା କିଛି ବ୍ୟଥା(୨୦୦୯) ଆଲୋଚନା ଧର୍ମୀ ଲଘୁ ପ୍ରବନ୍ଧ ସଂକଳନ । ଏଥିରେ ୨୩ଗୋଟି ଲଘୁ ପ୍ରବନ୍ଧ ସ୍ଥାନିତ ହୋଇଛି । ଏହି ପ୍ରବନ୍ଧ ଗୁଡ଼ିକ ବେଶ୍ ଐତିହ୍ୟନିଷ୍ଠ, ସମାଜ ସଚେତନ ଓ ସାମାଜିକ ଅଙ୍ଗୀକାରବଦ୍ଧତାରେ ଉର୍ଜସ୍ୱଳ ।

**ବିପିନ ବିହାରୀ ଖୁଣ୍ଟିଆ (୧୯୪୫- ):**

ବିପିନ ବିହାରୀ ଖୁଣ୍ଟିଆଙ୍କ ଜନ୍ମ ୧୯୪୫ ମସିହା ଏପ୍ରିଲ ମାସ ୨୦ ତାରିଖରେ ଢେଙ୍କାନାଳ ଜିଲ୍ଲାର ବଳରାମପୁର ଠାରେ । ତାଙ୍କ ପିତାଙ୍କ ନାମ- ହୃଷୀକେଶ ଖୁଣ୍ଟିଆ ଓ ମାତା- ନିକିଷା ଖୁଣ୍ଟିଆ । ଶ୍ରୀ ଖୁଣ୍ଟିଆ ମୁଖ୍ୟତଃ ଜଣେ କାବ୍ୟକାର । ରୀତି ଯୁଗୀୟ ଆଳଂକାରିକ କାବ୍ୟ ଶୈଳୀର ଆଦର୍ଶରେ ସେ ଅନେକ ଗୁଡ଼ିଏ ଐତିହାସିକ, ପୌରାଣିକ ଓ ଅଳଂକାର କାବ୍ୟ ରଚନା କରିଛନ୍ତି । ତାଙ୍କ ରଚିତ କାବ୍ୟ କୃତି ଗୁଡ଼ିକ ହେଲା- କୃଷ୍ଣବିଳାସ, ସଂଯୁକ୍ତା ପରିଣୟ, ପଦ୍ମାବତୀ, ଅଜାମିଳ, ବିଲ୍ୱମଙ୍ଗଳ, କଚ-ଦେବଯାନୀ, ରାମାୟଣ କାବ୍ୟକୁଞ୍ଜ, ଦ୍ରୌପଦୀ ଚମ୍ପକ, ସୀତା ମାନସ ହଂସ ଚମ୍ପୂ ପ୍ରଭୃତି ।

**କୃଷ୍ଣବିଳାସ (୨୦୦୨):** ଏହା ଏକ ପୌରାଣିକ କାବ୍ୟକୃତି । ସମଗ୍ର କାବ୍ୟଟି 'କ' ଆଦ୍ୟ ଅକ୍ଷର ନିୟମ ଏବଂ ଅନୁପ୍ରାସ ଅଳଂକାରରେ ରଚିତ । ଏକଶତ ଛାନ୍ଦ ବିଶିଷ୍ଟ ଏହା ଏକ ଦୀର୍ଘ କାବ୍ୟ । ରୀତିଯୁଗୀୟ କାବ୍ୟ ଶୈଳୀରେ ବିଭିନ୍ନ ରାଗ, ରାଗିଣୀ, ଛନ୍ଦ ଏବଂ ଅଳଂକାରର ଶୋଭନ ସମାବେଶରେ ଏହି କାବ୍ୟଟି ରଚିତ ।

ମହାଭାରତୀୟ ଆର୍ଯ୍ୟ ସଭ୍ୟତା, ସଂସ୍କୃତି ଓ ସନାତନ ହିନ୍ଦୁଧର୍ମର ଆରାଧ୍ୟ ଦେବତା ପରମ ଲୀଳାମୟ ପୁରୁଷ ପରଂବ୍ରହ୍ମ ଶ୍ରୀକୃଷ୍ଣଙ୍କର ଅପୂର୍ବ ଲୀଳା ଓ ମହିମାର ପ୍ରକଟନ ସହିତ ଦେବୀ କୃଷ୍ଣା କିଭଳି କୁରୁବଂଶ ବିନାଶର କାରଣ ହୋଇଛନ୍ତି, ତାହା କବି ଏଥିରେ ପ୍ରକାଶ କରିଛନ୍ତି । କୃଷ୍ଣାଙ୍କ ପ୍ରତି ଅପମାନର ପ୍ରତିଶୋଧ ରୁ ହିଁ କୁରୁବଂଶ ବିନାଶ ହୋଇଥିବାର କବି ସୂଚିତ କରିଛନ୍ତି । କାବ୍ୟ ଶେଷରେ କବି ପାଣ୍ଡବମାନଙ୍କର ମହାପ୍ରସ୍ଥାନ ର ଦୃଶ୍ୟ ମଧ୍ୟ ବର୍ଣ୍ଣନା କରିଛନ୍ତି ।

**ଶ୍ରୀ ଶରତଚନ୍ଦ୍ର ମିଶ୍ର (୧୯୪୫- ):**

ଶରତଚନ୍ଦ୍ର ମିଶ୍ରଙ୍କର ଜନ୍ମ ୧୯୪୫ ମସିହାରେ ଢେଙ୍କାନାଳ ଜିଲ୍ଲା ଶଙ୍କରପୁର ଶାସନ, ଗଦାଶିଳା ଠାରେ । ତାଙ୍କ ପିତାଙ୍କ ନାମ- ତ୍ରିବିକ୍ରମ ମିଶ୍ର ଓ ମାତା- ଚିତ୍ରକଳା ଦେବୀ । ଶ୍ରୀଯୁକ୍ତ ମିଶ୍ରଙ୍କର ରଚନାଗୁଡ଼ିକ ଆଧାତ୍ମିକ ଭାବସମ୍ବଳିତ ଓ ଭକ୍ତିଭାବାପନ୍ନ । ତାଙ୍କ ରଚିତ ଆଧାତ୍ମିକ କୃତି ଗୁଡ଼ିକ ହେଲା- ସ୍ତୋତ୍ରରସାମୃତ, ଭଜନ ଦିବ୍ୟାମୃତ, ଭଜନ ଦିବ୍ୟାନନ୍ଦ, ଆଧାତ୍ମିକ ଚେତନା, ଆଧାତ୍ମିକ ସାଧନା, ନାମାମୃତ, ଭକ୍ତି, ଉପାସନା ପ୍ରଭୃତି ।

**ନୀରଦପ୍ରଭା ସିଂହ ସାମନ୍ତ (୧୯୪୫- ):**

ନୀରଦପ୍ରଭାଙ୍କର ଜନ୍ମ ୧୯୪୫ ମସିହାରେ ଢେଙ୍କାନାଳ ଜିଲ୍ଲାର ଭୁବନ ଠାରେ । ତାଙ୍କ ପିତାଥିଲେ- ହରେକୃଷ୍ଣ ସିଂହ ସାମନ୍ତ । ନୀରଦପ୍ରଭା ବୃତ୍ତିରେ ଥିଲେ ଜଣେ ଶିକ୍ଷୟତ୍ରୀ । ରୁଚିଥିଲା ତାଙ୍କର କବିତା ରଚନା । ତାଙ୍କ ରଚିତ କବିତା କୃତି ଗୁଡ଼ିକ ହେଲା- ମରୁପଥିକ (୧୯୯୫), ନୀର-ନିର୍ଝର (୨୦୦୧), କୁନି କୁନି କବିତା । ଏହିସବୁ କବିତା ଗୁଡ଼ିକ ଭିତରେ ନାରୀ ମନର ସ୍ନିଗ୍ଧ ଆବେଗାନୁଭୂତି ଅତି ସରଳ, ସାବଲୀଳ ଭାବରେ ଝରିଆସିଛି । ମଣିଷ ଜୀବନର ଆଶା-ନିରାଶା, ସ୍ୱପ୍ନ-ସମ୍ଭାବନା ଓ ଆବେଗିକ ଆବେଦନର ମନୋଜ୍ଞ ଚିତ୍ର ଏହି କବିତା ଗୁଡ଼ିକରେ ଫୁଟିଉଠିଛି ।

**ଶ୍ରୀ ବିପିନ ବିହାରୀ ପଟ୍ଟନାୟକ (୧୯୪୬- ):**

ବିପିନ୍ ବିହାରୀ ପଟ୍ଟନାୟକଙ୍କ ଜନ୍ମ ୧୯୪୬ ମସିହାରେ ଢେଙ୍କାନାଳର ଦେଉଳସାହି ଠାରେ । ଶ୍ରୀଯୁକ୍ତ ପଟ୍ଟନାୟକ ମୁଖ୍ୟତଃ ଜଣେ ନାଟ୍ୟକାର । ଉଭୟ ପାରଂପରିକ ଓ ଆଧୁନିକ ଚେତନାର ନାଟକ ରଚନାରେ ସେ ସିଦ୍ଧହସ୍ତ । ଢେଙ୍କାନାଳର 'ଶତରୂପା' ନାଟ୍ୟଅନୁଷ୍ଠାନ ସହିତ ଜଡ଼ିତରହି ସେ ଆଧୁନିକ ନାଟ୍ୟ ଆନ୍ଦୋଳନକୁ, ଆଗେଇ ନେବାରେ ସହାୟତା କରିଥିଲେ । ତାଙ୍କ ରଚିତ ନାଟକ ଗୁଡ଼ିକ ହେଲା- ପ୍ରଳୟ

ତିମିରେ, ହେ ସାରଥୀ ରଥ ରଖ, ପିଙ୍ଗଳାର ରାତ୍ରୀ, ଦେଉଳବେଢ଼ା, ବିନ୍ଦୁବଳୟ, ଚନ୍ଦ୍ରର ଅଭିଶାପ, ବାଦ୍‌ଶାହା ବେଗମ୍, ଶତରୂପା, ନିନ୍ଦିତ ଯୌବନ, କବରର କାବ୍ୟ, ମାୟା ସମୁଦ୍ର, ଅଶାନ୍ତ ସମୁଦ୍ର କାମନାର କାଚକାନ୍ଥ, ଉତ୍ତର ନାହିଁ, ନିଶିଥିନୀ ଶେଷେ, ସେ ରାତ୍ର ଅନ୍ଧକାର ପ୍ରଭୃତି । ଏହିସବୁ ନାଟକ ଗୁଡ଼ିକ ରଙ୍ଗମଞ୍ଚରେ ଅଭିନୀତ ହୋଇଥିଲେ ମଧ ସେଥିମଧରୁ ଅନେକ ପ୍ରକାଶିତ ହୋଇପାରିନାହିଁ । ଅଧିକାଂଶ ନାଟକ ଭିତରେନାଟ୍ୟକାର ପୌରାଣିକ ଚେତନ: ଓ ମିଥ୍ ଚେତନା ସହ ଆଧୁନିକ ଜୀବନକୁ ଯୋଡ଼ିବାର ପ୍ରୟାସ କରିଛନ୍ତି । ଏହାସହିତ ତାଙ୍କ ନାଟକରେ ଆଧୁନିକ ମଣିଷ ଓ ସମାଜ ଜୀବନର ଆଶା-ଆକାଙ୍‌କ୍ଷା, ମାନସିକ ଚିତ୍ତ ସଙ୍ଘର୍ଷ ଓ ମାନବୀୟ ଭାବାବେଗର ସଫଳ ପରିପ୍ରକାଶ ଘଟିଛି ।

**ଶ୍ରୀ ସଚ୍ଚିଦାନନ୍ଦ ପତି (୧୯୪୬- ):**

ସଚ୍ଚିଦାନନ୍ଦ ପତିଙ୍କର ଜନ୍ମ ୧୯୪୬ ମସିହା ମେ' ମାସ ୧ ତାରିଖରେ ଢେଙ୍କାନାଳ ଜିଲ୍ଲାର ଯୋରନ୍ଦା ନିକଟସ୍ଥ ଐତିହ୍ୟଦୀପ୍ତ, ଗଡ଼ଜାତ ପ୍ରଜା ଆନ୍ଦୋଳନର ପ୍ରମୁଖ ଏକ୍ରୁଡ଼ିଶାଳ ବାଇଁଶିଆ ଗ୍ରାମରେ । ତାଙ୍କ ପିତାଙ୍କ ନାମ- ଶ୍ରୀ ଅନନ୍ତ ଚରଣ ପତି ଓ ମାତା- ଦୁଃଖୀ ଦେବୀ । ସଚ୍ଚିଦାନନ୍ଦ ଏକାଧାରରେ ଜଣେ ଆଦର୍ଶ ଶିକ୍ଷକ, ଲବ୍ଧ ପ୍ରତିଷ୍ଠ ପାଲା ଗାୟକ ଏବଂ କାବ୍ୟକାର । ୧୯୬୪ ମସିହାରେ ହାଇସ୍କୁଲ୍ ପରୀକ୍ଷାରେ କୃତିତ୍ୱ ର ସହ ପାଶ୍ କରିବାପରେ ସେ କଟକ ରେଭେନ୍‌ସା କଲେଜରେ ନାମ ଲେଖାଇଥିଲେ । କଲେଜ ଶିକ୍ଷା ସମାପ୍ତି ପରେ ସେ ବାଇଁଶିଆ ଉଚ୍ଚବିଦ୍ୟାଳୟରେ କଳା-ଶିକ୍ଷକ ରୂପରେ ଯୋଗଦାନ କରିଥିଲେ । ଶିକ୍ଷକତା ସହିତ ଲୋକ କଳା, ଲୋକ ସାହିତ୍ୟ ଓ ଲୋକ ସଂସ୍କୃତି କ୍ଷେତ୍ରରେ ତାଙ୍କର ଗଭୀର ପ୍ରବେଶ ରହିଛି । ହିନ୍ଦୀ, ଇଁରାଜୀ ଓ ସଂସ୍କୃତ ସାହିତ୍ୟରେ ତାଙ୍କର ଗଭୀର ପାରଦର୍ଶିତା ରହିଛି । ବେଦ, ବେଦାନ୍ତ, ଉପନିଷଦ, ସଂହିତା, ଗୀତା, ଭାଗବତ, ପୁରାଣ ଆଦି ଶାସ୍ତ୍ର ଗ୍ରନ୍ଥ ମାନଙ୍କରେ ତାଙ୍କର ପାଣ୍ଡିତ୍ୟ ଓ ବ୍ୟୁତ୍ପତ୍ତି ରହିଛି । ଜଣେ ଆଗ ଧାଡ଼ିର ପାଲା ଗାୟକ ରୂପେ ପାଲା ସାହିତ୍ୟ ଓ ସଂସ୍କୃତି ପ୍ରତି ତାଙ୍କର ଅବଦାନ ଅନନ୍ୟ । ୧୯୭୬ ମସିହାରେ ଢେଙ୍କାନାଳ ଜିଲ୍ଲା ପାଲା ଗାୟକ ସମ୍ମିଳନୀ ପ୍ରତିଷ୍ଠାର ସେ ଥିଲେ କର୍ଣ୍ଣଧାର । ପାଲା ସାହିତ୍ୟ କ୍ଷେତ୍ରକୁ ତାଙ୍କର ଅବଦାନ ପାଇଁ ସେ 'ପାଲା ଗାୟକ ଜ୍ଞାନଭୂଷଣ' ଉପାଧିରେ ମଧ ବିଭୂଷିତ । ଢେଙ୍କାନାଳ ଜିଲ୍ଲାର କଳା, ସଂସ୍କୃତି ଓ ସାହିତ୍ୟର ବିକାଶରେ ତାଙ୍କର ଅବଦାନ ପ୍ରଣିଧାନ ଯୋଗ୍ୟ । ସେ ଅନେକ ଗୁଡ଼ିଏ ପୌରାଣିକ କାବ୍ୟ, କବିତା, ଚୌପଦୀ, ଜଣାଣ ଆଦି ରଚନାକରି

ଢେଙ୍କାନାଳ ସାହିତ୍ୟକୁ ସମୃଦ୍ଧ ଋଦ୍ଧିମନ୍ତ, ଉଜ୍ଜ୍ୱଳ ଓ ଉର୍ଜସ୍ୱଳ କରିପାରିଛନ୍ତି । ତାଙ୍କ ରଚିତ ସାରସ୍ୱତ କୃତି ଗୁଡ଼ିକ ହେଲା- କୈକେୟୀ, ଭକ୍ତ ଦଶାନନ, ବିଷକନ୍ୟା, ଉର୍ମିଳା, ଶକ୍ତିମୟୀ ସୀତା, ହରିଶ୍ଚନ୍ଦ୍ର, ପାହାନ୍ତି କୋକିଳ ପ୍ରଭୃତି । ଏହି ରଚନା ଗୁଡ଼ିକରୁ ସ୍ରଷ୍ଟାଙ୍କର ଅପୂର୍ବ କବିତ୍ୱ, ପାଣ୍ଡିତ୍ୟ, ବହୁ ଶାସ୍ତ୍ରଦର୍ଶିତା ବିଦ୍‌ବତ୍ତା ଫୁଟିଉଠିଛି ।

**କୈକେୟୀ (୧୯୭୦):** ଏହା ଏକ ପୌରାଣିକ କାବ୍ୟକୃତି । ଏହି କାବ୍ୟଟିରେ କବିଙ୍କର ଅଭିନବ କାବ୍ୟ କୌଶଳ ସହ ତଥ୍ୟ ଉପସ୍ଥାପନାରେ ନୂତନତା ଫୁଟିଉଠିଛି । କୈକେୟୀ ଚରିତ୍ରର ମହନୀୟ ଦିଗଟିକୁ କବି ଏଥିରେ କାବ୍ୟରୂପ ଦେଇଛନ୍ତି । ଏଥିରେ କବି କୈକେୟୀଙ୍କୁ ଜଣେ ଉଚ୍ଚ ଆଦର୍ଶନିଷ୍ଠା ମହାନ ପତିବ୍ରତା ନାରୀରୂପେ ଚିତ୍ରଣ କରିଛନ୍ତି । ଏହି କାବ୍ୟରେ କବି ବିଭୀଷଣଙ୍କୁ ଦଶରଥଙ୍କର ଅନ୍ୟତମ ପୁତ୍ରରୂପେ ସୂଚିତ କରିଛନ୍ତି । ରାଜା ଦଶରଥ ଯେତେବେଳେ ପର୍ଶୁରାମଙ୍କ ଭୟରେ ଦଣ୍ଡକାରଣ୍ୟରେ ଆତ୍ମଗୋପନ କରିଥିଲେ, ସେତେବେଳେ ବିଶ୍ରବାଙ୍କ ପତ୍ନୀ ନିକଷାଙ୍କ ସହିତ ତାଙ୍କ ସାକ୍ଷାତ ହୋଇଥିଲା । ସେତେବେଳେ ଦଶରଥ ନାରୀ ବେଶରେ ତିନିପତ୍ନୀ କୌଶଲ୍ୟା, କୈକେୟୀ ଓ ସୁମିତ୍ରାଙ୍କ ସହ ରହିଥିଲେ । ନିକଷା ଦଶରଥଙ୍କୁ ନାରୀରୂପେ ଭାବି ରାତ୍ରିରେ ଦଶରଥଙ୍କ ସହ ପର୍ଣ୍ଣ କୁଟୀରରେ ରାତ୍ରିଯାପନ କରିଥିଲେ । ସେହି ରାତ୍ରିରେ ନାରୀରୂପୀ ଦଶରଥଙ୍କ ସହ ନିକଷାଙ୍କର ମିଳନ ହୋଇଥିଲା । ଯାହାର ପ୍ରତ୍ୟକ୍ଷ ଦର୍ଶୀଥିଲେ ସ୍ୱୟଂ କୈକେୟୀ । ନିକଷା ଯେତେବେଳେ ଜାଣିଛନ୍ତି ରାଜା ଦଶରଥ ଛଦ୍ମତାର ଆଶ୍ରୟନେଇ ତାଙ୍କ ସତୀତ୍ୱ ଅପହରଣ କରିଛନ୍ତି ; ସେତେବେଳେ ସେ ଦଶରଥଙ୍କୁ ପୁଂସହାନିର ଅଭିଶାପ ଦେବା ସହିତ ତାଙ୍କ ଗର୍ଭରୁ ଜନ୍ମିତ ଏହି ସନ୍ତାନ ଯଦି ରାଜା ନ' ହେବ ତା'ହେଲେ ଦାଶରଥଙ୍କର ମୃତ୍ୟୁ ସୁନିଶ୍ଚିତ ବୋଲି କହିଛନ୍ତି । କୈକେୟୀ ଏହି ସତ୍ୟ ଜାଣିବାରୁ ସେ ରାମଚନ୍ଦ୍ରଙ୍କୁ ବନବାସ ପଠାଇଛନ୍ତି । ରାମଚନ୍ଦ୍ରଙ୍କଦ୍ୱାରା ବିଭିଷଣହିଁ ରାଜ୍ୟ ଓ ରାଜ ମୁକୁଟ ପାଇଛନ୍ତି । ଏହି ପ୍ରସଙ୍ଗରୁ ଜଣାଯାଏ- କୈକେୟୀ କେବେ ସ୍ୱାର୍ଥପରାୟଣା ନଥିଲେ । ସେ ନିଜର ପାତିବ୍ରତ୍ୟ, ସ୍ୱାମିନିଷ୍ଠା ଓ ଉଚ୍ଚ ଆଦର୍ଶର ପରାକାଷ୍ଠା ପ୍ରଦର୍ଶନ କରିଯାଇଛନ୍ତି ।

**ଭକ୍ତ ଦଶାନନ (୧୯୭୨):** ଏହି କାବ୍ୟଟି ରାମାୟଣର କଥାବସ୍ତୁ ଆଧାରିତ । ଏ କାବ୍ୟରେ କବି ଦଶାନନ ରାବଣକୁ ରାମଚନ୍ଦ୍ରଙ୍କର ଜଣେ ଶ୍ରେଷ୍ଠ ଭକ୍ତ ରୂପେ ଚିତ୍ରିତ କରିଛନ୍ତି । ସୀତାଙ୍କୁ ହରଣ କରିବାର ପାପରେ ରାବଣ ପଶ୍ଚାତାପ କରିଛି । ରାବଣ ନିଜ ହୃଦୟର ଅବ୍ୟକ୍ତ ବେଦନା ଓ ଅକୁହା କଥା ପତ୍ନୀ ମନ୍ଦୋଦରୀଙ୍କ ନିକଟରେ ପ୍ରକାଶ କରିଛି । ମନ୍ଦୋଦରୀ ସ୍ୱାମୀଙ୍କୁ ପରାମର୍ଶ ଦେଇଛନ୍ତି- ସୀତାଙ୍କୁ ରାମଚନ୍ଦ୍ର ପାଖରେ ନେଇ

ସମର୍ପିତ କରିବାକୁ । ଯେଉଁଥିପାଇଁ କବି ଲେଖିଛନ୍ତି-

"ସୁନାଗୋରୀ ଭବନର ସୁନା
ସୁନାଶୀର ଏ ଗୀର ଭାଷୁନା
ସୁନାରେ ପଶୁମତିରେ କେଉଁ କାର୍ଯ୍ୟ
ସୀତା, ରାମେ ସମର୍ପି ଆସୁନା ହେ ଭୋ ଦେବ ।"

ରାବଣ କିନ୍ତୁ ପତ୍ନୀଙ୍କୁ ବୁଝାଇ କହିଛନ୍ତି ପ୍ରଭୁ ଶ୍ରୀରାମ ଏଠାକୁ ଆସି ହିଁ ମୋତେ ପାପନର୍କରୁ ଉଦ୍ଧାର କରିବେ । କବିଙ୍କ ଭାଷାରେ-

"କରକ ରଦନା ହେତୁକର
କର ବୁଗନିଧିଜା ଚକର
କରଜାତ ସୀତା ଶ୍ରୀରାମ ରୂପରେ
ଉଦ୍ଧରିବେ ମୋତେ ନରକର ରେ ସୁନ୍ଦରୀ ।"

କବି ଏହି କାବ୍ୟଟିକୁ ଅପୂର୍ବ ବର୍ଣ୍ଣନାବିଳାସ ଓ ବିଭିନ୍ନ ଅଳଂକାରର ବର୍ଣ୍ଣବିଭାରେ ମହିମା ମଣ୍ଡିତ କରିଛନ୍ତି । କେବଳ ସେତିକି ନୁହେଁ; ତାଙ୍କର ଅନ୍ୟାନ୍ୟ କାବ୍ୟକୃତି ଗୁଡ଼ିକରୁ ମଧ କବିଙ୍କର ଅପୂର୍ବ କାବ୍ୟ କଳା, କଳ୍ପନା ବିଳାସ ଓ କଳାକୁଶଳତାର ପରିଚୟ ମିଳେ ।

**ଶ୍ରୀ ଉଦ୍ଧବ ଚରଣ ନାୟକ (୧୯୪୬- ):**

ଉଦ୍ଧବ ଚରଣ ନାୟକଙ୍କ ଜନ୍ମ ୧୯୪୬ ମସିହାରେ ଢେଙ୍କାନାଳ ଜିଲ୍ଲାର ମହିମାଗାଦି ଠାରେ । ସେ ମହିମା ଧର୍ମ-ଦର୍ଶନ ଓ ମହିମା ସାହିତ୍ୟର ଜଣେ ପ୍ରମୁଖ ସ୍ରଷ୍ଟା । ମହିମା ଧର୍ମ-ଦର୍ଶନକୁ ନେଇ ସେ ଅନେକ ଗୁଡ଼ିଏ ଆଲୋଚନା ଓ ତତ୍ତ୍ୱଗ୍ରନ୍ଥମାନ ରଚନା କରିଛନ୍ତି । ତାଙ୍କ ରଚିତ ପୁସ୍ତକ ଗୁଡ଼ିକ ହେଲା- ମହିମା ଧର୍ମର ବିଶ୍ୱ ଇତିହାସ, ମହିମା ଧର୍ମ ଓ ବିଶ୍ୱକବି ଭୀମଭୋଇ, ଧର୍ମ-ସଂସ୍କୃତି ଓ ସାହିତ୍ୟ, ମହିମାଧର୍ମ ଓ ସନ୍ୟାସୀ ମହୀନ୍ଦ୍ର ବାବା, କବି ବ୍ରଜନାଥ ବଡ଼ଜେନା ଜୀବନୀ ପ୍ରଭୃତି । ଏହା ସହିତ ସେ ଅନେକ ଶିଶୁ ଓ କିଶୋର ଉପଯୋଗୀ ରଚନା ମଧ କରିଛନ୍ତି । ଢେଙ୍କାନାଳ ସାହିତ୍ୟକୁ ତାଙ୍କର ଅବଦାନ ଅତୁଳନୀୟ ।

**ଶ୍ରୀ କୈଳାସ ଚନ୍ଦ୍ର ମିଶ୍ର (୧୯୪୭- ):**

କୈଳାସ ଚନ୍ଦ୍ର ମିଶ୍ରଙ୍କର ଜନ୍ମ ୧୯୪୭ ମସିହା ଏପ୍ରିଲ ମାସ ୨୬ ତାରିଖରେ ଢେଙ୍କାନାଳ ଜିଲ୍ଲାର ମାର୍ଥାପୁର, ଗୋବିନ୍ଦବିଦ୍ୟାଧରପୁର ଶାସନରେ । ତାଙ୍କ ପିତା କବି ଯୁଧିଷ୍ଠିର ମିଶ୍ର ଓ ମାତା- ରମାମଣି ଦେବୀ । କବି ଯୁଧିଷ୍ଠିରଙ୍କ ସାରସତ ପ୍ରତିଭାର ପ୍ରଭା

ପୁତ୍ର କୈଳାସଙ୍କ ଉପରେ ପଡ଼ିଥିଲା । କୈଳାସ ଚନ୍ଦ୍ର କବିତା ରଚନା ସହିତ ନାଟକ ରଚନା କ୍ଷେତ୍ରରେ ନିଜର ଦକ୍ଷତା ପ୍ରତିପାଦନ କରିପାରିଛନ୍ତି । ତାଙ୍କ ରଚିତ କବିତା ଏବଂ କାବ୍ୟ କୃତି ଗୁଡ଼ିକହେଲା- ଅପନ୍ତରା, ଭକ୍ତିପୁଷ୍ପ, ମହାମିଳନ, ପିତୃତର୍ପଣ, ଭକ୍ତ ସାଲବେଗ, ମାୟାମନ୍ଦିର, ପୁନର୍ମିଳନ, ଦେବଦାସୀ ପିଙ୍ଗଳା, ଅଗ୍ନିପରୀକ୍ଷା, ଅନାର୍‌କଲି, ଧୂର୍ଜଟୀ ମାଧବ, ମହାତୀର୍ଥ ପ୍ରଭୃତି ।

**ପିତୃତର୍ପଣ (୧୯୯୯):** ଏହା ଏକ ଜୀବନଧର୍ମୀ ଖଣ୍ଡ କାବ୍ୟ । ନିଜ ପିତା କବି ଯୁଧିଷ୍ଠିର ମିଶ୍ରଙ୍କର ଜୀବନୀ, ସାରସ୍ୱତ କୃତି ଓ ପ୍ରତିଭାକୁ କବି କାବ୍ୟରୂପ ଦେଇଛନ୍ତି । ଏହି କାବ୍ୟିକ ରଚନାଟି କବିଙ୍କର ପିତୃଭକ୍ତିର ଏକ ଅମଳିନ ନିଦର୍ଶନ ।

**ଧୂର୍ଜଟୀ ମାଧବ (୨୦୦୮):** ଏହା ଏକ ପୌରାଣିକ କାବ୍ୟକୃତି । ଶୈବଧର୍ମ - ଦର୍ଶନର ଆରାଧ୍ୟ ଦେବତା ମହାଦେବ ଶିବ ଓ ମାତା ପାର୍ବତୀଙ୍କର ମହାରାସଲୀଳା କୁ କବି ରସମୟ ରୂପରେ କାବ୍ୟରୂପ ଦେଇଛନ୍ତି । ଏହି କାବ୍ୟଟି ପଞ୍ଚଦଶ ଛାନ୍ଦ ବିଶିଷ୍ଟ । ବିଭିନ୍ନ ରାଗ, ରାଗିଣୀ, ଛନ୍ଦ ଓ ଅଳଂକାରର ମନୋଜ୍ଞ ସମାବେଶ କବି ଏ କାବ୍ୟରେ କରିଛନ୍ତି ।

କୈଳାସ ଚନ୍ଦ୍ର ନାଟକ ରଚନା କ୍ଷେତ୍ରରେ ନିଜର ଦକ୍ଷତା ଓ ପାରଦର୍ଶୀତା ପ୍ରକଟିତ କରିଛନ୍ତି । ତାଙ୍କ ନାଟକ ଗୁଡ଼ିକ ମଧ୍ୟରୁ ଅଧିକାଂଶ ଅପ୍ରକାଶିତ । ତାଙ୍କ ରଚିତ ନାଟକ ଗୁଡ଼ିକ ହେଲା- କଳିଙ୍ଗ କନ୍ୟା, ପୁଣ୍ୟମାଟି, ବିଜୟୀ ପାର୍ଥ, ହିନ୍ଦୁ ସମ୍ରାଟଙ୍କ ଶେଷ ଅଶ୍ରୁ, ରକ୍ତତୀର୍ଥ, ମଳାମଣିଷ କଥା କହେ, ଯୁଗଯନ୍ତ୍ରଣା, ଜଗା ତୁ ଆଖି ବୁଜି ଦେ, ଅମର ଶହୀଦ୍ ବାଜିରାଉତ, ହିନ୍ଦୁ ରାଜତ୍ୱର ସୂର୍ଯ୍ୟାସ୍ତ, କାଳରାତ୍ରୀର ମହାକାଳ, ଲକ୍ଷ୍ମଣ ରେଖା, ଗଙ୍ଗଶିଉଳି, ମନପକ୍ଷୀର କାକଳି, ବିଂଶ ଶତାବ୍ଦୀରେ ଧର୍ଷିତା ଧରିତ୍ରୀ ପ୍ରଭୃତି । ଏହିସବୁ ନାଟକ ଗୁଡ଼ିକ ସହିତ ତାଙ୍କର କେତେକ ଗୀତିନାଟ୍ୟ ମଧ୍ୟ ରହିଛି । ସେଗୁଡ଼ିକ ହେଲା- ନୀଳମାଧବ, ଭକ୍ତ ସାଲବେଗ, ସମ୍ବରାସୁର ବଧ, ଶନି-ଲକ୍ଷ୍ମୀ କଳି, ଶିଶୁ ଭକ୍ତ, ବିଲ୍ୱମଙ୍ଗଳ, ଭକ୍ତଧ୍ରୁବ, ଧରମା ପ୍ରଭୃତି । ଏହିସବୁ ନାଟକ ଗୁଡ଼ିକ ମୁଖ୍ୟତଃ ପୌରାଣିକ, ଐତିହାସିକ ଏବଂ ସମାଜ ଚେତନାଧର୍ମୀ ନାଟକ ।

**ଶ୍ରୀ ବିଦ୍ୟାଧର ବାରିକ (୧୯୪୭- ):**

ବିଦ୍ୟାଧର ବାରିକଙ୍କ ଜନ୍ମ ୧୯୪୭ ମସିହା ଜୁଲାଇ ମାସ ୨ ତାରିଖରେ ଢେଙ୍କାନାଳ ଜିଲ୍ଲାର ତରଭା ଅନ୍ତର୍ଗତ ନୂଆ ଗାଁ ଠାରେ । ତାଙ୍କ ପିତାଙ୍କ ନାମ ଅଧିକାରୀ ବାରିକ ଓ ମାତା- ଚାନ୍ଦଲତା ଦେବୀ । ଶ୍ରୀଯୁକ୍ତ ବାରିକ ବୃତ୍ତିରେ ଜଣେ ଗ୍ରାମ୍ୟ କୃଷି

କର୍ମଚାରୀ । ତାଙ୍କ ପ୍ରତିଭାର ଅନ୍ୟଏକ ନିଦର୍ଶନ ସେ ଜଣେ 'ଦାସକାଠିଆ' ଗାୟକ । ଦାସକାଠିଆ ପରିବେଷଣ ସହିତ ସେ ଅନେକ କାବ୍ୟ, କବିତା, ଭଜନମାନ ରଚନା କରିଛନ୍ତି । ତାଙ୍କ ରଚିତ ସାରସ୍ୱତ କୃତିଗୁଡ଼ିକ ହେଲା- ଭକ୍ତ ବିଭୀଷଣ, ଘାଟକଉଡ଼ି, ଏଇତ କାହ୍ନା, ତାଳନବମୀ, ନିଳାଦ୍ରୀ ହରଣ, ଚନ୍ଦ୍ରକଳା ହରଣ, ସୁଭଦ୍ରା ପରିଣୟ, ନୀଳାଚଳେ ନୂଆ ନାଗର ଭଜନ, ଚନ୍ଦ୍ର ଶେଖର ଭଜନ, ପିଲାଙ୍କ ମଜା କବିତା, ପିଲାଙ୍କ ମଜା ଗପ, ହସ ଗଣ୍ଠୁଲି, ଗଜଲକ୍ଷ୍ମୀ ପୂଜା-ଢେଙ୍କାନାଳ ପ୍ରଭୃତି ।

**ଘାଟ କଉଡ଼ି (୨୦୦୪):** ଏହା ଏକ ପୌରାଣିକ ଖଣ୍ଡକାବ୍ୟ । ୧୫୮ ଗୋଟି ପଦର ମନୋଜ୍ଞ ସମାହାରରେ ଏହି ରଚନାଟି ସମୃଦ୍ଧ । ପାଲା ଓ ଦାସକାଠିଆ ଶୈଳୀରେ ଏହା ରଚିତ ହୋଇଛି । ବୈଷ୍ଣବ ଧର୍ମ-ଦର୍ଶନର ଆରାଧ୍ୟ ଦେବତା ପରଂବ୍ରହ୍ମ ଭଗବାନ ଶ୍ରୀକୃଷ୍ଣ ଏବଂ ଅପ୍ରାକୃତ ପ୍ରେମର ମୂର୍ତ୍ତିମତୀ ସ୍ୱରୂପା ଶ୍ରୀରାଧାଙ୍କର ଅପ୍ରାକୃତ ଦିବ୍ୟ ପ୍ରେମଲୀଳାର ବର୍ଣ୍ଣନ କବି ଏଥିରେ କରିଛନ୍ତି । ବୈଷ୍ଣବ କବି ଦୀନକୃଷ୍ଣ ଦାସଙ୍କ 'ନାବକେଳି' ର ବିଷୟବସ୍ତୁ ଅବଲମ୍ବନରେ ଏହି 'ଘାଟକଉଡ଼ି' ର କଥାବସ୍ତୁ ପରିକଳ୍ପିତ ହୋଇଛି । ଶ୍ରୀକୃଷ୍ଣ ବୁଢ଼ା ନାଉରୀ ବେଶରେ ଯମୁନା ଘାଟ ପାରିକରି ଦେବାପାଇଁ ରାଧା ଗୋପାଙ୍ଗନା ମାନଙ୍କୁ କଉଡ଼ି ମାଗିବା ପ୍ରସଙ୍ଗ ଏଥିରେ ବର୍ଣ୍ଣିତ । ଏହା ସହିତ ଗୋପୀକା ଏବଂ ବୁଢ଼ାନାଉରୀ ବେଶଧାରୀ କୃଷ୍ଣଙ୍କ ମଧ୍ୟରେ ଏହି ଉକ୍ତି-ପ୍ରତ୍ୟୁକ୍ତି ମାଧ୍ୟମରେ କବି ତତ୍କାଳୀନ ସମାଜର ଧାର୍ମିକ ବ୍ୟବସ୍ଥା, ସାମାଜିକ ଚଳଣି, ବିଧି-ବ୍ୟବସ୍ଥା ଓ ନୀତି-ନିୟମ ଆଦିର ବର୍ଣ୍ଣନା କରିଛନ୍ତି ।

**ଭକ୍ତ ବିଭୀଷଣ (୨୦୦୮):** ଏହା ମଧ୍ୟ ଏକ ପୌରାଣିକ କାବ୍ୟକୃତି । ଗୀତିମୟ ଶୈଳୀ ଦୃଷ୍ଟିରୁ ଏହାକୁ ଏକ ଗୀତିକାବ୍ୟରୂପେ ଅଭିହିତ କରାଯାଇପାରେ । ଏହି ଗୀତିକାବ୍ୟଟି ୫ ଗୋଟି ଛାନ୍ଦ ବିଶିଷ୍ଟ । ବିଭିନ୍ନ ଛାନ୍ଦରେ କବି ଭିନ୍ନ ଭିନ୍ନ ରାଗ-ରାଗିଣୀର ପ୍ରୟୋଗ କରିଛନ୍ତି । ପ୍ରଥମ ଛାନ୍ଦଟି କୌଶିକ ରାଗ, ଦ୍ୱିତୀୟଛାନ୍ଦଟି ରାମକେରୀ ରାଗ, ତୃତୀୟ ଛାନ୍ଦଟି ରାଗ ଚୋଖୀ, ଚତୁର୍ଥ ଛାନ୍ଦଟି ଶଙ୍କରାଭରଣ ଏବଂ ପଞ୍ଚମ ଛାନ୍ଦଟି ବଙ୍ଗଳାଶ୍ରୀ ରାଗରେ ରଚିତ । ରୀତି ଯୁଗୀୟ ଅଳଂକାରିକ କାବ୍ୟ ଶୈଳୀ ସହିତ ପାଲା ଓ ଦାସକାଠିଆ ଶୈଳୀର ପ୍ରୟୋଗ ଏଥିରେ କରାଯାଇଛି । ପାଲା ଓ ଦାସକାଠିଆ ଅଭିନୟ ପାଇଁ ଏହା ବେଶ୍ ଉପଯୋଗୀ ।

ବିଶ୍ରବାନନ୍ଦନ ଲଙ୍କାଧିପତି ରାବଣର ଅନୁଜ ବିଭୀଷଣଙ୍କର ସତ୍ୟ ଓ ଧର୍ମନିଷ୍ଠା, ଈଶ୍ୱର ବିଶ୍ୱାସ ଓ ଅପୂର୍ବ ରାମଭକ୍ତି କୁ କବି ଏ କାବ୍ୟରେ ପ୍ରକଟିତ କରିଛନ୍ତି ।

ଏହା ସହିତ ଏଥିରେ ପ୍ରସଙ୍ଗକ୍ରମେ ରାବଣର ଲଙ୍କାପୁରୀର ମନୋରମ ବର୍ଣ୍ଣନ, ହନୁମାନର ଲଙ୍କାଦହନ, ରାବଣ-ବିଭୀଷଣ ମନୋମାଳିନ୍ୟ, ବିଭୀଷଣଙ୍କ ପ୍ରଭୁ ରାମଚନ୍ଦ୍ରଙ୍କ ନିକଟକୁ ଗମନ, ପ୍ରଭୁ ରାମଚନ୍ଦ୍ରଙ୍କର ଦର୍ଶନ ଓ ସଖ୍ୟତା ଲାଭ, ସେତୁବନ୍ଧ ନିର୍ମାଣ ଇନ୍ଦ୍ରଜିତ ବଧ, ରାବଣ ନିଧନ ଓ ବିଭୀଷଣର ରାଜ୍ୟାଭିଷେକ ପ୍ରଭୃତିର କାବ୍ୟିକ ବର୍ଣ୍ଣନା କରାଯାଇଛି ।

**ଏଇତ କାହ୍ନା (୨୦୧୦):** ଏହା ଏକ ଆଧ୍ୟାତ୍ମିକ, ଭକ୍ତିଭାବାପନ୍ନ ଗୀତିକବିତା ସଂକଳନ । ଏଥିରେ ୭୭ ଗୋଟି କ୍ଷୁଦ୍ର କ୍ଷୁଦ୍ର ଗୀତିମୟ ସଂଗୀତ ଓ ଭଜନର ସମାହାର ଘଟିଛି । ମୁଖ୍ୟତଃ ନୀଳାଚଳ ବିହାରୀ ଶ୍ରୀ ଜଗନ୍ନାଥ ଏବଂ ବୃନ୍ଦାବନ ବିହାରୀ ଶ୍ରୀକୃଷ୍ଣଙ୍କର ମହିମାର ଭଜନ ଏଥିରେ କରାଯାଇଛି । ଏହି ଗୀତିମୟ ସଂଗୀତଧର୍ମୀ କବିତା ଗୁଡ଼ିକ ଭିତରେ କବିଙ୍କର ଅପୂର୍ବ ଭକ୍ତିମତ୍ତା, ଈଶ୍ୱରପ୍ରାଣତା ଓ ନିବିଡ଼ ଆଧ୍ୟାତ୍ମିକ ଅନୁଭବ ଫୁଟିଉଠିଛି ।

**ପିଲାଙ୍କ ମଜା ଗପ (୨୦୦୯):** ଏହି ରଚନାଟି ୧୨ ଗୋଟି ଶିଶୁ ମନସ୍ତତ୍ତ୍ୱ ଉପଯୋଗୀ ଶିଶୁ ଗଳ୍ପର ମନୋଜ୍ଞ ସମାହାର । ଶିଶୁମାନଙ୍କୁ ନୀତିନିଷ୍ଠ, ଶୃଙ୍ଖଳିତ, ଉଦାର ଭାବାପନ୍ନ ଓ ଆଦର୍ଶବାନ୍ ହେବାପାଇଁ ଏହି ଗଳ୍ପଗୁଡ଼ିକ ମାଧ୍ୟମରେ ନୀତି ଶିକ୍ଷା ପ୍ରଦାନ କରାଯାଇଛି ।

**ଗଜଲକ୍ଷ୍ମୀ ପୂଜା- ଢେଙ୍କାନାଳ(୨୦୧୨):** ଢେଙ୍କାନାଳ ମାଟିର ଆଧ୍ୟାତ୍ମିକ ଓ ସାଂସ୍କୃତିକ ଉତ୍ସବ · ଢେଙ୍କାନାଳ ଗଜଲକ୍ଷ୍ମୀ ପୂଜା ସଂପର୍କରେ ୮ ଗୋଟି ଗୀତିମୟ ରଚନା ର ଅପୂର୍ବ ସମାହାର ଏଥିରେ ଘଟିଛି । ଜଗଜ୍ଜନନୀ ମା' ଅନ୍ନପୂର୍ଣ୍ଣାଙ୍କ ବନ୍ଦନା, ତାଙ୍କ ଗୁଣ କୀର୍ତ୍ତନ, ମହିମାର ଭଜନ ଓ ବର୍ଣ୍ଣାଢ୍ୟ ପୂଜନୋତ୍ସବ ବର୍ଣ୍ଣନାରେ ଏହି ରଚନାଟି ବେଶ୍ ଆଧ୍ୟାତ୍ମିକ ଭାବ ସମ୍ବଳିତ ଓ ଭାବଗର୍ଭକ ହୋଇଛି । ବିଷ୍ଣୁପ୍ରିୟା ମାତା ଲକ୍ଷ୍ମୀଙ୍କର ମହିମା ପ୍ରକଟନ ସହିତ ଲକ୍ଷ୍ମୀ ପୂଜନର ପରଂପରା, ମହତ୍ୱ ଏବଂ ଭସାଣୀ ଉତ୍ସବର ବର୍ଣ୍ଣାଢ୍ୟ ମନୋରମ ବର୍ଣ୍ଣନା ଏଥିରେ କରାଯାଇଛି ।

## ପ୍ରଭା ପଟ୍ଟନାୟକ (୧୯୪୭- ):

ପ୍ରଭା ପଟ୍ଟନାୟକଙ୍କ ଜନ୍ମ ୧୯୪୭ ମସିହାରେ ପୁରୀଠାରେ । ତାଙ୍କ ପିତାଙ୍କ ନାମ – ପଦ୍ମଚରଣ ମହାପାତ୍ର ଓ ମାତା- କୁନ୍ତଳା କୁମାରୀ ମହାପାତ୍ର । ପ୍ରଭା ଢେଙ୍କାନାଳର ପରୀକ୍ଷା ସାହି ନିବାସୀ ସ୍ୱର୍ଗତ ନ୍ୟାୟମୂର୍ତ୍ତି ଦେବେନ୍ଦ୍ର ମୋହନ ପଟ୍ଟନାୟକଙ୍କୁ ବିବାହ କରି ଢେଙ୍କାନାଳ ମାଟିର ବୋହୂ ହୋଇଥିଲେ । ପ୍ରଭା ପଟ୍ଟନାୟକ ମୁଖ୍ୟତଃ ଜଣେ କବି ।

କବିତା ରଚନା ସହିତ ସେ ସମାଜ ସେବା ଓ ବିଭିନ୍ନ ସାଂସ୍କୃତିକ ଅନୁଷ୍ଠାନ ସହ ଜଡ଼ିତ । ତାଙ୍କ ରଚିତ କବିତା ଗ୍ରନ୍ଥ ଗୁଡ଼ିକ ହେଲା- ଅନ୍ୟମନା, ମଧୁଲୟ, ହିମକମଳ, ଅନ୍ତରା ପ୍ରଭୃତି ।

**ଅନ୍ୟମନା (୧୯୯୩):** ଏହା କବୟିତ୍ରୀଙ୍କର ଏକ ମନୋଜ୍ଞ କବିତା ସଂକଳନ । ଏଥିରେ ୨୨ ଗୋଟି କବିତା ସ୍ଥାନିତ ହୋଇଛି । ସେଗୁଡ଼ିକ ହେଲା- ନିର୍ବାକ ବନ୍ଧନ, ରାତ୍ରିର ଲିରିକ୍, ପ୍ରତୀକ୍ଷା, ଅମୃ ସଂଗୋପନ, ପ୍ରେମର ଘର, ଅନ୍ୟଦେହ ଅନ୍ୟମନ, ଋତୁମଧୁମୟ, ଶୀତ ଓ ଶୂନ୍ୟତା, ବର୍ଷା, ଭାବାବେଶ, ବୁଝାମଣା, ନୂତନ ସଂଗୀତ, ନିଃସଙ୍ଗତା, ବାସ୍ତବତା, ଆବାହନୀ, ଅଯାଚିତ, ଅପରାହ୍ନ, ଅଭୀପ୍ସା, ସନ୍ଦର୍ଶନ ପ୍ରଭୃତି । ଏହିସବୁ କବିତା ଗୁଡ଼ିକ ଭିତରେ ଆଧୁନିକ ସମାଜ ଓ ବ୍ୟକ୍ତି ଜୀବନର ଅସହାୟତା, ହତାଶାବୋଧ, ମାନସିକ ଦ୍ୱନ୍ଦ୍ୱ ଓ ସଂଘର୍ଷ ସର୍ବୋପରି ଆଧୁନିକ ମଣିଷର ସ୍ୱପ୍ନ ଓ ସ୍ୱପ୍ନଭଙ୍ଗର ଚିତ୍ର ପ୍ରକଟିତ । ଏହି କବିତା ଗୁଡ଼ିକ ବେଶ୍ ବାସ୍ତବବାଦୀ, ଜୀବନ ଧର୍ମୀ ଓ ରସୋତ୍ତୀର୍ଣ୍ଣ ହୋଇପାରିଛି ।

**ହିମକମଳ (୨୦୦୫):** ଏହି କବିତା ସଂକଳନଟି ୩୩ ଗୋଟି କବିତାର ବର୍ଣ୍ଣାଢ୍ୟ ସମାହାରରେ ସୁ-ସମୃଦ୍ଧ । ଏଥିରେ ସନ୍ନିବିଷ୍ଟ କବିତା ଗୁଡ଼ିକ ହେଲା- ହିମକମଳ, ଏକାନ୍ତ, ଅସମାହିତ, ନୂତନ ଆବେଗ, ଅପେକ୍ଷାପରେ, ଦୂରତା, ନିର୍ଜନ ପରିଭାଷା, ତୁମପାଖରେ, ହଜିଲା ସର୍ବସ୍ୱ, ବିଶ୍ୱାସର ସ୍ୱର୍ଗ, ପ୍ରତିଛବି, ସନ୍ଦିଗ୍ଧ ପଥ, ସଂପୂର୍ଣ୍ଣା, ଆକାଶର ରଙ୍ଗ, ଜୀବନ ରାଗ, କଥାଁ ନୁହଁ, ତୁମକୁ ଭାବିଲେ, ସକଳ ବର୍ତ୍ତମାନ, ବିଦାୟ ମୁହୂର୍ତ୍ତର ଦୁଃଖ ପ୍ରଭୃତି । ଏହିସବୁ କବିତା ଗୁଡ଼ିକରେ କବି ଆତ୍ମାର ଆତ୍ମିକ ଉଚ୍ଚାରଣ, ବ୍ୟକ୍ତିଗତ ଜୀବନ ଦର୍ଶନ ଓ ନିବିଡ଼ ଅନୁଭବ, ଅନୁଭୂତିର କାବ୍ୟିକ ପରିପ୍ରକାଶ ଘଟିଛି । ସ୍ରଷ୍ଟା ପ୍ରାଣର ସକଳ ଅଭୀପ୍ସା, ଅତ୍ମିକ ଅନ୍ୱେଷା ଓ ଆତ୍ମ ଜିଜ୍ଞାସା ବେଶ୍ ସରଳ, ସାବଲୀଳ, ଅକୃତ୍ରିମ ଭାବରେ ଫୁଟିଉଠିଛି ।

**ଅନ୍ତରା (୨୦୦୭):** ଏହା ଏକ ଆଧାତ୍ମିକ, ଭକ୍ତିଭାବାପନ୍ନ ଗୀତିମୟ ରଚନା । ଏଥିରେ ୨୦ ଗୋଟି ଭଜନ ଏବଂ ୪୦ ଗୋଟି ଆଧୁନିକ ଗୀତିମୟ କବିତାର ସନ୍ନିବିଷ୍ଟ ହୋଇଛି । ଏହିସବୁ ଭଜନ ଓ କବିତା ଗୁଡ଼ିକ ବେଶ୍ ସାଙ୍ଗୀତିକଆବେଦନକ୍ଷମ । ସ୍ରଷ୍ଟାପ୍ରାଣର ଆଧାତ୍ମିକ ଚେତନା, ଭକ୍ତିଭାବନା ସହିତ ପ୍ରାଣର ଆବେଗିକ ଆବେଦନ, ଅନୁଭବ, ଅନୁଭୂତି, ଅତିସରଳ, ତରଳ, କାବ୍ୟିକ ସୁଷମା ଭିତରେ ପରିପ୍ରକାଶ ଘଟିଛି । ଏହି ସବୁ କବିତା ଗୁଡ଼ିକ ବେଶ୍ ପ୍ରାଣବନ୍ତ, ଅନ୍ତରଙ୍ଗ ଓ ସମ୍ଭାବନାରେ ପରିପୂର୍ଣ୍ଣ ।

## ସଂପୂର୍ଣ୍ଣା ମିଶ୍ର (୧୯୪୭- ):

ସଂପୂର୍ଣ୍ଣା ମିଶ୍ରଙ୍କର ଜନ୍ମ ୧୯୪୭ ମସିହା ଅକ୍ଟୋବର ମାସ ୧୪ ତାରିଖରେ ହିନ୍ଦୋଳ ସବ୍‌ଡ଼ିଭିଜନ୍ ଅନ୍ତର୍ଗତ 'ନରହରିପୁର' ଶାସନରେ । ତାଙ୍କ ପିତାଙ୍କ ନାମ-ଭାଗୀରଥି ମିଶ୍ର ଓ ମାତା- ନେତ୍ରମଣି ଦେବୀ । ସେ ବିବାହ କରିଛନ୍ତି- ହିନ୍ଦୋଳ, ମର୍ଦ୍ଧରାଜପୁର ଶାସନ ନିବାସୀ ଶ୍ରୀ ମଦନମୋହନ ମିଶ୍ରଙ୍କୁ । ସଂପୂର୍ଣ୍ଣା ମିଶ୍ର ମୁଖ୍ୟତଃ ଜଣେ କବି । ସେ ଅନେକ ଗୁଡ଼ିଏ କ୍ଷୁଦ୍ର କ୍ଷୁଦ୍ର କବିତା ଓ ଭଜନମାନ ରଚନା କରିଛନ୍ତି । ସେଗୁଡ଼ିକ ହେଲା- ଭଜନବାଟିକା, ଭଜନମାଳା ଏବଂ ସ୍ତୁତି (ବ୍ରାହ୍ମଣୀ ଦେବୀ) ।

**ଭଜନବାଟିକା (୨୦୦୩):** ଏହା ଏକ ମହାର୍ଘ ଭକ୍ତି କବିତା ସଂକଳନ । ଏଥିରେ ୫୮ ଗୋଟି ଭକ୍ତିମୟ କବିତା ସ୍ଥାନିତ ହୋଇଛି । ଏହି ଗୀତିଧର୍ମୀ କବିତା ଗୁଡ଼ିକରେ ସ୍ରଷ୍ଟାପ୍ରାଣର ସକଳ ଆବେଗ, ଅନୁଭବ, ଅନୁଭୂତି ଅତି ସରଳ, ରସାଳ, ସ୍ୱଛନ୍ଦ ଭାବରେ ଝରିଆସିଛି ।

**ଭଜନମାଳା (୨୦୧୩):** ଏଥିରେ ୩୪ ଗୋଟି ଭକ୍ତିଭାବ ସମ୍ବଳିତ କ୍ଷୁଦ୍ର କ୍ଷୁଦ୍ର ଜଣାଣ ଓ ଭଜନ ସ୍ଥାନିତ ହୋଇଛି । ଗଣେଷ ବନ୍ଦନା, ସରସ୍ୱତୀ ବନ୍ଦନା, ଶ୍ରୀ ଗୁରୁ ବନ୍ଦନା ଠାରୁ ଆରମ୍ଭକରି ଗୋପୀଙ୍କର ବସ୍ତ୍ର ହରଣ, ବିରହ ମୁରଲୀ, ଗୋପପୁରର ଶଶୀ, ଅଷ୍ଟକୁଞ୍ଜ, ମୋ କାହ୍ନୁରେ, କେଳି କୁଞ୍ଜରେ ଆଦି ଭକ୍ତିଭାବାପନ୍ନ ରଚନା ଗୁଡ଼ିକ ଦେଇ କବି ପ୍ରାଣର ଅପୂର୍ବ ଭକ୍ତିମତ୍ତା, ପ୍ରେମପ୍ରବଣତା ଓ ଅପୂର୍ବ କଳାପାଟବତା ଫୁଟିଉଠିଛି । ଏହା ସହିତ ସ୍ରଷ୍ଟାପ୍ରାଣର ଦୈବତ ଅନୁଭବ ଓ ଅମୃତ ଚେତନାର ପ୍ରକଟିତ ହୋଇଛି ।

## ଶ୍ରୀ ବିଧାନ ଚନ୍ଦ୍ର ମିଶ୍ର (୧୯୪୮- ):

ବିଧାନ ଚନ୍ଦ୍ର ମିଶ୍ରଙ୍କର ଜନ୍ମ ୧୯୪୮ ମସିହା ଅକ୍ଟୋବର ମାସ ୨ ତାରିଖରେ ଢେଙ୍କାନାଳ ର ବଳଭଦ୍ରପୁର ଶାସନଠାରେ । ତାଙ୍କ ପିତାଙ୍କ ନାମ- ଶ୍ରୀ ପରମାନନ୍ଦ ମିଶ୍ର ଓ ମାତା- ଚାନ୍ଦଲତା ମିଶ୍ର । ଶ୍ରୀଯୁକ୍ତ ମିଶ୍ର ଉଭୟ ଆଇନ୍ ବ୍ୟବସାୟ ଓ ରାଜନୀତି ସହିତ ଜଡ଼ିତ ହେଲେ ମଧ; ସାହିତ୍ୟ କ୍ଷେତ୍ରରେ ତାଙ୍କର ସିଦ୍ଧି, ସାଧନା ଓ ସାଫଲ୍ୟ ଅନନ୍ୟ, ଅନୁପମ । ସେ ଓଡ଼ିଆ ଭାଷା ସାହିତ୍ୟରେ ପି.ଏଚ୍.ଡ଼ି. ଡିଗ୍ରୀ ମଧ ଲାଭ କରିଛନ୍ତି । ଜଣେ ସାହିତ୍ୟପ୍ରେମୀ ଓ ସାରସ୍ୱତ ସ୍ରଷ୍ଟା ହିସାବରେ ସେ ଅନେକ କବିତା, ଗଳ୍ପ, ଉପନ୍ୟାସ ଓ ପ୍ରବନ୍ଧମାନ ରଚନା କରିଛନ୍ତି । ତାଙ୍କ ରଚିତ ସାରସ୍ୱତ କୃତି ଗୁଡ଼ିକ୍ ହେଲା- ଅନ୍ତର୍ଗମନ (କିବତା), ଅମୃ ଦର୍ଶନ (କବିତା), ଅବସର୍ପଣ (କବିତା), ଅପମାର୍ଜନ (କବିତା), ଭଗବାନଙ୍କୁ ପ୍ରଶ୍ନ (କବିତା), କଳଙ୍କିତ ଚନ୍ଦ୍ର (ଗଳ୍ପ), ସଭ୍ୟତାର

ମାୟାଜାଲ (ଗଳ୍ପ), ସାଧନାର ତୂର୍ଯ୍ୟ (ଉପନ୍ୟାସ), ପ୍ରଥିତଯଶା କବି ବ୍ରଜନାଥ (ପ୍ରବନ୍ଧ-ସମାଲୋଚନା) ପ୍ରଭୃତି । ଏତଦ୍‌ଭିନ୍ନ ଏକାଦଶୀ ମହାତ୍ମ୍ୟ, ପଞ୍ଚଦେବ ସ୍ତୁତି, ହେ ଶିବ ମୋତେ କ୍ଷମାକର ସହିତ ଆହୁରି ଅନେକ ରଚନା ମଧ ତାଙ୍କର ରହିଛି ।

**ଅବସର୍ପଣ (୨୦୦୧):** ଏହା ଏକ ମନୋଜ୍ଞ କବିତା ସଂକଳନ । ଏଥିରେ ୩୯ ଗୋଟି କବିତା ସ୍ଥାନିତ ହୋଇଛି । ଏହି କିବତା ଗୁଡ଼ିକ ବେଶ୍ ସମାଜନିଷ୍ଠ, ସାମାଜିକ ଅଙ୍ଗୀକାରବଦ୍ଧ ଓ ବୈପ୍ଲବିକ ଚେତନାରେ ଉଦୀପ୍ତ । ସମାଜ ଜୀବନର ଅଧୋଗତି, ବ୍ୟକ୍ତି ଜୀବନର ଅଧୋପତନ, ନୈତିକ ଅବକ୍ଷୟ ଓ ଅପସୃୟମାନ ମାନବିକ ମୂଲ୍ୟବୋଧର ପୃଷ୍ଠଭୂମି ଉପରେ ଏହି କବିତା ଗୁଡ଼ିକ ରଚିତ । କବି ଚାହିଁଛନ୍ତି ସମାଜ ଓ ବ୍ୟକ୍ତି ଜୀବନର ପରିଶୁଦ୍ଧତା, ନୈତିକ ଆଦର୍ଶ ଓ ଉଚ୍ଚ ମାନବୀୟ ମୂଲ୍ୟବୋଧର ପୁନଃପ୍ରତିଷ୍ଠା । ଏହାସହିତ କବି ସାମାଜିକ କ୍ରାନ୍ତି ଓ ପରିବର୍ତ୍ତନ ପାଇଁ ବୈପ୍ଲବିକ ସଂଗ୍ରାମର ସ୍ୱର ତୋଳିଛନ୍ତି ।

'ଶୁଭୁଛି ବଜ୍ରଧ୍ୱନି' କବିତାରେ କବି ସାଧିନତା ପରବର୍ତ୍ତୀ ସାମାଜିକ ଜୀବନର ଦୁର୍ଗତି, ଦୁଃସ୍ଥିତି, ବ୍ୟକ୍ତି ଜୀବନର ସ୍ଖଳନ, ରାଜନୈତିକ ଶଠତା, ଭ୍ରଷ୍ଟାଚାର ଓ ନୈତିକ ଅଧୋପତନ ବିରୁଦ୍ଧରେ ବିପ୍ଳବର ବଜ୍ରଧ୍ୱନି ପ୍ରକଟିତ କରିଛନ୍ତି । ସମାଜରୁ ଛଳନା, ସ୍ୱାର୍ଥପରତା, ହିଂସ୍ରତା, ମଦମତ୍ତା ଓ ଅହଂକାରର ବିନାଶ ଘଟାଇ ସାମୁହିକ ଉନ୍ନତି ଓ ସମାଜର ମଙ୍ଗଳବିଧାନ ପାଇଁ ମାନବିକ ମୂଲ୍ୟବୋଧର ପ୍ରତିଷ୍ଠା ପାଇଁ କବି ବିପ୍ଳବର ବଜ୍ରଧ୍ୱନି ତୋଳିଛନ୍ତି । 'ଆଇନ୍ ଆଜି ଅନ୍ଧ' କବିତାରେ କବି ସାଂପ୍ରତିକ କଳଙ୍କିତ ଶାସନତନ୍ତ୍ର ଓ ନ୍ୟାୟପାଳିକାର ତ୍ରୁଟି-ବିଚ୍ୟୁତି ଦିଗକୁ ପ୍ରକଟିତ କରିଛନ୍ତି । 'ଅର୍ବାଚୀନର ସ୍ୱର୍ଗ ଦ୍ୱାର' କବିତାରେ ମଧ ରାଜନୀତିର କଳଙ୍କିତ ବଲ୍‌ଗା, ତ୍ରୁଟିପୂର୍ଣ୍ଣ ନିର୍ବାଚନ ପଦ୍ଧତି, ଗଣତନ୍ତ୍ରର ଅବକ୍ଷୟ, ରାଜନେତା ମାନଙ୍କର ଛଳନା, ପ୍ରତାରଣା ଓ କ୍ଷମତାଲିପ୍‌ସା କୁ କବି ଘୋର ବିରୋଧ କରିଛନ୍ତି । 'ଆସୁଛି ଅମା ରାତ୍ରି', 'ଆଜିର ଅନ୍ଧ ଶିକ୍ଷା', 'ଗରୀବ ନାଁ ରେ ଲୁଟ' ପ୍ରଭୃତି କବିତାରେ ସାଧିନତାର ସପ୍ନଭଙ୍ଗ, ଗଣତନ୍ତ୍ର ଶାସନର ବିଫଳତା, ବ୍ୟକ୍ତି ଚରିତ୍ରର ସ୍ଖଳନ ଓ ନୈତିକ ଅଧୋଗତିର ଚିତ୍ର ପ୍ରକଟିତ । 'ଚିଙ୍ଗୁଡ଼ି ର ନିଶା' ଓ 'ପରିବେଶ ର ମୃତ୍ୟୁ' କବିତାରେ କବି ବହୁଦେଶୀୟ କମ୍ପାନୀ ଓ ପୁଞ୍ଜିପତି ମାନଙ୍କର ଶୋଷଣ, ପ୍ରତାରଣାର ଚିତ୍ର ପ୍ରକଟିତ କରିଛନ୍ତି । 'ଅବସର୍ପଣ' ଶୀର୍ଷକ କିତାରେ କବି ବିଜାତୀୟ ସଂସ୍କୃତିର ଅକ୍ଟୋପସୀୟ ବାହୁବନ୍ଧନ, ପାଶ୍ଚାତ୍ୟ ସଂସ୍କୃତି ପ୍ରତି ଆମର ଅତ୍ୟଧିକ ଆସକ୍ତି ଓ ଅନୁରାଗ କିପରି ସମାଜ ଓ ମଣିଷ ଜୀବନକୁ କଳୁଷିତ୍ ଓ ବିଡ଼ମ୍ବିତ କରି

ଧ୍ୱଂସ ଓ ଅବକ୍ଷୟର ଦିଗକୁ ଟାଣି ନେଉଛି ତା'ର ଚିତ୍ର ପ୍ରକଟନ କରିବା ସହିତ ଏହିସବୁ ଦୁର୍ଗତି, ଦୁଃସ୍ଥିତି, ଅବକ୍ଷୟ ଓ ଅଧୋଗତି ଯୋଗୁଁ ଗଭୀର ଭାବରେ କ୍ଷୋଭ ପ୍ରକାଶ କରିଛନ୍ତି । ଏବେ ମୁଁ ଉଦ୍ଦାମ, ମୁକ୍ତି କାହିଁ ?, ଉଠ ଯୁବ ବନ୍ଧୁ, ଜାଗ ନାରୀ, ସତର୍କ ହୁଅ, ଆହ୍ୱାନ, କଲ୍କୀ ତୁମେ ଆସ ପ୍ରଭୃତି କବିତାର ପ୍ରାଣବାଣୀ ବେଶ୍ ବୈପ୍ଳବିକ, ଉଦ୍ଦାମ, ମାନବବାଦୀ ଓ ସମାଜନିଷ୍ଠ । ସାମାଜିକ ଶୋଷଣ-କଷଣ, ରାଜନୈତିକ ଦୁର୍ଗତି-ଦୁର୍ନୀତି, ଭ୍ରଷ୍ଟାଚାର, ବ୍ୟକ୍ତିଗତ ସ୍ୱାର୍ଥପରତା ଓ ହୀନମନ୍ୟତା ବିରୁଦ୍ଧରେ କବି ତୀବ୍ର ସ୍ୱର ତୋଳିଛନ୍ତି ।

**ଅନ୍ତର୍ଗମନ (୨୦୦୩):** ଏହି କବିତା ସଂକଳନଟି କବିଙ୍କର ଏକ ଉତ୍ତୀର୍ଣ୍ଣ କଳା ସୃଷ୍ଟି । ଏଥିରେ କବିଙ୍କର ବିଦ୍ରୋହୀ କବିସତ୍ତା ବେଶ୍ ଆତ୍ମମଗ୍ନ ଓ ଅନ୍ତର୍ମୁଖୀ ହୋଇଉଠିଛି । କବି ସମାଜ ନିଷ୍ଠ ହେବା ପରିବର୍ତ୍ତେ ଆତ୍ମନିଷ୍ଠ ଓ ଆତ୍ମ ଅନ୍ୱେଷୀ ହୋଇଉଠିଛନ୍ତି । ଏହି ସଂକଳନଟିରେ ମଧ୍ୟ ୩୯ ଗୋଟି କବିତା ସ୍ଥାନିତ ହୋଇଛ । ମଣିଷ ଜୀବନର ଅନ୍ତରୀଣ ଆବେଗ, ଆଶା-ଆକାଙ୍‌କ୍ଷା, ସ୍ୱପ୍ନ, ସମ୍ଭାବନା ସହିତ ସ୍ରଷ୍ଟାପ୍ରାଣର ଆଧାତ୍ମିକ ଚେତନା ଓ ଈଶ୍ୱର ପ୍ରାଣତା ଫୁଟିଉଠିଛି । ଆଧାତ୍ମିକ ଚେତନା ସହିତ ମାନବିକତାର ମହାଦ୍ୟୁତିରେ ଏହି କବିତା ଗୁଡ଼ିକ ଉଛୁଳି ଉଠିଛି । 'ଏଇତ ଜୀବନ' କବିତାରେ ମଣିଷ ଜୀବନର ଅସାରତା ଓ ଅଳୀକତାର ଚିତ୍ର ପ୍ରକଟିତ । କ୍ଷଣଭଙ୍ଗୁର ଜୀବନର ପ୍ରକୃତ ସତ୍ୟ ଜାଣି ନପାରି ମଣିଷ କିପରି ମୋହ, ମାୟା, ସ୍ୱାର୍ଥପରତାର କବଳିତ ହୋଇ ଅମଣିଷ, ପଶୁ ପାଲଟିଯାଏ ତା'ର ସୂଚନା କବି ଦେଇଛନ୍ତି । ବିପଥଗାମୀ ମଣିଷ ସମାକୁ କବି ସତ୍ୟ ଓ ଆଲୋକର ପଥ ଦେଖାଇବାର ପ୍ରୟାସ କରିଛନ୍ତି । 'ସତ୍ୟଚେତନା', 'ଦିବ୍ୟଶକ୍ତି', 'ସତର୍କଘଣ୍ଟି', ପ୍ରଭୃତି କବିତାରେ କବି ମଣିଷକୁ ସତ୍ୟନିଷ୍ଠ, ଆଲୋକ ଆଶାୟୀ ହେବାପାଇଁ ଆହ୍ୱାନ କରିଛନ୍ତି । ସେହିପରି 'ମଣିଷ କେଉଁଠି' କବିତାରେ କବି ମଣିଷର ଅମଣିଷ ପଣିଆର ମୁଖାଖୋଲି ତାକୁ ମଣିଷପଣିଆ ର ଆଲୋକିତ ପଥ ଦେଖାଇଛନ୍ତି । କବି ମଣିଷକୁ ଆତ୍ମଅନ୍ୱେଷୀ ଓ ଅଧ୍ୟାତ୍ମ ଉତ୍ତରିତ ଚେତନାରେ ନିମଜ୍ଜିତ ହେବାପାଇଁ 'ବିନ୍ଦୁଏ ଆତ୍ମ ଜ୍ଞାନ' କବିତାରେ ମହତ୍ତର ସତ୍ତା ଓ ସତ୍ୟ-ଜ୍ଞାନର ସନ୍ଧାନ ଦେବାପାଇଁ ପ୍ରୟାସ କରିଛନ୍ତି । 'ଧ୍ୱନିର ତରଙ୍ଗ', 'ଅବୁଝା ମଣିଷ', 'ସମୟ ଗର୍ଭେ', ପ୍ରଭୃତି କବିତାରେ କବି ବିଜ୍ଞାନ ଓ ବସ୍ତୁବାଦର ଜୟଯାତ୍ରା ସହିତ ମଣିଷ ଭାଗ୍ୟବିପର୍ଯ୍ୟୟର ଚିତ୍ର ଚିତ୍ରଣ କରିଛନ୍ତି । 'ପ୍ରଳୟ ପରାସ୍ତ' କବିତାରେ କବି ଅଦୃଷ୍ଟ ଓ ଭାଗ୍ୟ କୁ ଗୁରୁତ୍ୱ ଦେଇଥିଲେବି, 'କର୍ମ' କୁ ଶ୍ରେଷ୍ଠ ସ୍ଥାନ ଦେଇଛନ୍ତି । 'ଉଠ ଉଠ ପତିତ

ପାବନ' କବିତାରେ କବି ସାମାଜିକ ଅନୀତି, ଅନ୍ୟାୟ, ଅଧର୍ମ ଓ ଅନାଦର୍ଶର ବିନାଶ ଘଟାଇ ସତ୍ୟ, ଧର୍ମ, ନ୍ୟାୟର ପ୍ରତିଷ୍ଠା ଚାହିଁଛନ୍ତି । ଯେଉଁଥିପାଇଁ ସେ ପତିତ ପାବନ ଭଗବାନଙ୍କୁ ଜାଗ୍ରତ ହେବାପାଇଁ ଆହ୍ୱାନ କରିଛନ୍ତି ।

**ଆତ୍ମଦର୍ଶନ (୨୦୦୬):** ଏହି ସଂକଳନଟି ଏକ ଅଧାତ୍ମ ଉତ୍ତରିତ କଳାସୃଷ୍ଟି । ଏହି ସଂକଳନଟିରେ ୫୦ଗୋଟି କବିତା ସ୍ଥାନିତ ହୋଇଛି । ଅନ୍ତର୍ମୁଖୀ. ଆତ୍ମମଗ୍ନ କବି ଚିତ୍ତ ଆତ୍ମଅନ୍ୱେଷୀ ହୋଇ ପରମ ସତ୍ୟର ସନ୍ଧାନ ପଥରେ ଅଗ୍ରସର ହୋଇଛି । ସତ୍ୟାନ୍ୱେଷୀ କବିଚିତ୍ତ ମଣିଷ ମନର ନିଗୂଢ଼ତମ ପ୍ରଦେଶର ଅନ୍ତଃସ୍ତରକୁ ପସ୍ତ ପ୍ରସ୍ତ କରି ବିଶ୍ଳେଷଣ କରିଛି । 'ସମର୍ପଣ' କିତାରେ କବି ଜଗତ୍ ଜନନୀ ମା' ଦେବୀ ଦୁର୍ଗାଙ୍କ ନିକଟରେ ନିଷ୍କାମ ଚିତ୍ତରେ ପ୍ରେମପୂର୍ଣ୍ଣ ଆତ୍ମ ସମର୍ପଣ କରିଛନ୍ତି । 'ଆତ୍ମା-ପରମାତ୍ମା' କବିତାରେ ପରମତତ୍ତ୍ୱର ସନ୍ଧାନ ବା ଅନନ୍ତ ସହିତ ମିଳିତ ହେବାପାଇଁ କବି ପ୍ରାଣରେ ଅଭିଳାଷ ଜାଗିଉଠିଛି । 'ରାକ୍ଷସେନ୍ଦ୍ରୀୟ' କବିତାରେ କବି ମଣିଷକୁ ପାର୍ଥୀବ ସୁଖ-ସମ୍ଭୋଗ ଲାଳସାକୁ ତେଜି ଅତିନ୍ଦ୍ରୀୟ, ଜିତେନ୍ଦ୍ରୀୟ ଓ ଆତ୍ମଅନ୍ୱେଷୀ ହେବାପାଇଁ ଆହ୍ୱାନ କରିଛନ୍ତି । 'ଦେବତା ହେବା' କବିତାରେ କ୍ବି ମଣିଷ ଦେହରେ ଈଶ୍ୱରତ୍ୱର ସନ୍ଧାନ କରିଛନ୍ତି । ଏହା ସହିତ ରଥଯାତ୍ରା, ବାହୁଡ଼ା, ଚନ୍ଦ୍ରଶେଖର ମହିମା, ତ୍ରି-ଗୁଣ ସ୍ୱରୂପ, ଜପ ପରମବ୍ରହ୍ମ, ଦିଅପ୍ରଭୁ ଆଶୀର୍ବାଦ ପ୍ରଭୃତି କବିତାରେ ଆଧାତ୍ମିକ ଭକ୍ତିଭାବନା, ଈଶ୍ୱରପ୍ରାଣତା ଓ ମାନବବାଦୀ ଦୃଷ୍ଟିକୋଣ ଫୁଟିଉଠିଛି ।

**ସଭ୍ୟତାର ମୟାଜାଲ (୨୦୦୪):** ଏହା ଏକ ଗଳ୍ପ ସଂକଳନ । ଏଥିରେ ୧୫ ଟି ଗଳ୍ପ ସ୍ଥାନିତ ହୋଇଛି । ଏହି ଗଳ୍ପ ଗୁଡ଼ିକ ହେଲା- ଆମଘର ହଳିଆ, କାର୍‌ଗିଲ ଶହୀଦ୍, ଭିକାରୀର କରାମତି, ନବଘନ ସାହେବ, ପୋଖରୀ ତୁଠ, କନାର ଗନ୍ଧ ମଉଳିନି, ଧରମଭାଇ, ବଳିଆ ବାବା, ଗୋରା ପହିଲିମାନ୍, ଭାଗ୍ୟ ଫଳତି ସର୍ବତ୍ର, ସ୍ୱାଭିମାନର ଶେଷ ସଂକେତ, ପୁଅ ଯାଇଛି ଗୁଜୁରାଟ, ମୁକ୍ତିପଥେ, ସଭ୍ୟତାର ମାୟାଜାଲ ପ୍ରଭୃତି । ସମାଜ ଓ ବ୍ୟକ୍ତି ଜୀବନରେ ଘଟୁଥିବା ଦୈନନ୍ଦିନ ଘଟଣାବଳୀକୁ ନେଇ ଏହି ଗଳ୍ପ ଗୁଡ଼ିକ ରଚିତ । ପାଶ୍ଚାତ୍ୟ ବସ୍ତୁବାଦୀ ସଭ୍ୟତା ଓ ବିଜାତୀୟ ସଂସ୍କୃତିର ମାୟା-ମୋହ ଜାଲରେ କବଳିତ ହୋଇ ଆମର ମହାର୍ଘ ସଂସ୍କୃତି ଓ ମହନୀୟ ଜୀବନଧାରା କିପରି ପତମାନ ଓ ପର୍ଯ୍ୟୁଷିତ ହୋଇଯାଇଛି ଏବଂ ସେହି ମୟାଜାଲ ରୁ ଆମ ସଭ୍ୟତା, ସଂସ୍କୃତି ଜୀବନବୋଧ କିପରି ମୁକ୍ତ, ସ୍ୱତନ୍ତ୍ର, ସ୍ୱାଭିମାନଦୀପ୍ତ ହୋଇପାରିବ, ସେଥିପାଇଁ ଗାଳ୍ପିକ ଏହି ଗଳ୍ପ ଗୁଡ଼ିକରେ ପ୍ରେରଣା ଦେଇଛନ୍ତି । ଗଳ୍ପକଳା ଦୃଷ୍ଟିରୁ ଏହି ଗଳ୍ପ ଗୁଡ଼ିକ ଦୁର୍ବଳ

ମନେ ହେଲେହେଁ, ସାମାଜିକ ଅଙ୍ଗୀକାର ବଦ୍ଧତା, ଶିକ୍ଷଣୀୟ ବାର୍ତ୍ତା ଓ ଚେତନାର ଜାଗରଣ ପାଇଁ ଏହି ଗଳ୍ପ ଗୁଡ଼ିକ ବେଶ୍ ବଳିଷ୍ଠ ଓ ଆବେଦନକ୍ଷମ ।

**ସାଧନାର ତୂର୍ଯ୍ୟ (୨୦୦୮):** ଏହା ଏକ କଥାନକ ଶୈଳୀର ଗଦ୍ୟଗ୍ରନ୍ଥ । ଉପନ୍ୟାସ କଳାର ସାର୍ଥକତା ଏଥିରେ ପ୍ରକଟିତ ହୋଇପାରିନାହିଁ । କଥାନକ ଶୈଳୀରେ ସ୍ରଷ୍ଟା ନିଜ ଜୀବନର ନିବିଡ଼ ଅନୁଭବ, ଅନୁଭୂତି ସ୍ନିଗ୍ଧ କାହାଣୀର ଅବତାରଣା କରିଛନ୍ତି ମାତ୍ର । ସ୍ରଷ୍ଟା ନିଜର ତୀକ୍ଷ୍ଣ ଦୃଷ୍ଟି ଓ ସୂକ୍ଷ୍ମ ଅବବୋଧ ନେଇ ମଣିଷ ଓ ସମାଜ ଜୀବନର ତ୍ରୁଟି-ବିଚ୍ୟୁତି କୁ ଆଲୋଚନା- ସମାଲୋଚନା ଛଳରେ କାହାଣୀର ପୁଟ ଦେଇ ପରିପ୍ରକାଶ କରିଛନ୍ତି । ମଣିଷ ଜୀବନର ସଫଳତା ଓ ସିଦ୍ଧିପାଇଁ ସାଧନା ଯେ' ଏକାନ୍ତ ଆବଶ୍ୟକ ସେହି ବାର୍ତ୍ତା ଏଥିରେ ପ୍ରକଟିତ । ସାଧନା ହିଁ ମଣିଷକୁ ସଫଳତାର ଶୀର୍ଷରେ ପହଞ୍ଚାଏ- ଏହି ବାର୍ତ୍ତା ଏହି 'ସାଧନାର ତୂର୍ଯ୍ୟ' ଉପନ୍ୟାସରେ ପ୍ରକଟିତ ହୋଇଛି । ମୋଟାମୋଟି ଭାବରେ ଶ୍ରୀଯୁକ୍ତ ମିଶ୍ର ଜଣେ ସଫଳ ସମାଜ ସଚେତନ ଓ ମାନବବାଦୀ ସ୍ରଷ୍ଟା । ତାଙ୍କ ସୃଷ୍ଟିସମ୍ଭାର ଭିତରେ ସମାଜ ଓ ମଣିଷ ଜୀବନର ବହୁବିଧ ରୂପଚିତ୍ର ପ୍ରକଟିତ ହୋଇଛି ।

## ରୁକ୍ମିଣୀପ୍ରଭା ନନ୍ଦ (୧୯୪୮- ):

ରୁକ୍ମିଣୀପ୍ରଭା ନନ୍ଦଙ୍କର ଜନ୍ମ ୧୯୪୮ ମସିହା ଅକ୍ଟୋବର ମାସ ୨୫ ତାରିଖରେ ଆଠଗଡ଼ ଠାରେ । ତାଙ୍କ ପିତାଙ୍କ ନାମ- ଗୋପୀନାଥ ତ୍ରୀପାଠୀ ଓ ମାତା- ଶକୁନ୍ତଳା ଦେବୀ । ରୁକ୍ମିଣୀ ଢେଙ୍କାନାଳ, ନୂଆଶାସନ ନିବାସୀ ଶ୍ରୀ ଶ୍ରୀନିବାସ ନନ୍ଦଙ୍କୁ ବିବାହକରି ଢେଙ୍କାନାଳ ମାଟିର ବୋହୂ ହୋଇଛନ୍ତି । ଶ୍ରୀମତୀ ନନ୍ଦ ଜଣେଧର୍ମପରାୟଣା, ଭକ୍ତିଭାବାପନ୍ନା ମହିଳା । ଧର୍ମ ଓ ପୁରାଣର ବିଷୟବସ୍ତୁ କୁ ନେଇ ସେ ଦୁଇଖଣ୍ଡି ପୌରାଣିକ କାବ୍ୟକୃତି ରଚନା କରିଛନ୍ତି, ତାହାହେଲା- ସୀତାବିନା ଓ ପିନାକୀ ।

**ସୀତାବିନା (୨୦୧୦):** ଏହା ସର୍ଗବନ୍ଧ ବିହୀନ ଏକ ପୌରାଣିକ କାବ୍ୟ । ଅଯୋଧାର ରାଜା ରାମଚନ୍ଦ୍ର ଙ୍କ ନିର୍ଦ୍ଦେଶରେ ଅନୁଜ ଲକ୍ଷ୍ମଣ ମାତା ସୀତାଙ୍କୁ ବନରେ ବିସର୍ଜନ କରି ଆସିବାପରେ ତାଙ୍କ ବିଚ୍ଛେଦ ରେ ସ୍ୱାମୀ ରାମଚନ୍ଦ୍ରଙ୍କ ହୃଦୟରେ ଯେଉଁ ପ୍ରୀତିମୟ ଭାବନାର ସୃଷ୍ଟି ହୋଇଛି- ତା'ର କାବ୍ୟିକ ରୂପ କବି ଏଥିରେ ପ୍ରକଟିତ କରିଛନ୍ତି । ପୁରାଣର କଥାବସ୍ତୁ ସହିତ କବି କଳ୍ପନାର ରଙ୍ଗ ଦେଇ ସ୍ୱାମୀ ରାମଚନ୍ଦ୍ରଙ୍କ ହୃଦୟର ଗଭୀର ଅନ୍ତର୍ଦାହ ଓ ମନସ୍ତାପ ର ମଞ୍ଜୁଳ ଚିତ୍ର ପ୍ରଦାନ କରିଛନ୍ତି ।

**ପିନାକୀ (୨୦୧୧):** ଏହା ମଧ୍ୟ ସର୍ଗବନ୍ଧ ବିହୀନ ପୌରାଣିକ କାବ୍ୟ । ପୌରାଣିକ କଥାବସ୍ତୁ ସହ କଳ୍ପନାର ମଧୁର ମିଳନି ଏହି କାବ୍ୟଟିକୁ ମାଧୁର୍ଯ୍ୟମଣ୍ଡିତ କରିଛି । ଦେବ-ଦେବ ମହାଦେବ ପିନାକୀଙ୍କର ଚରିତ ଓ ତାଙ୍କ ମହିମାର ବର୍ଣ୍ଣାଢ୍ୟ ଆଲେଖ୍ୟ କବି ଏଥିରେ କରିଛନ୍ତି ।

## ନିରଞ୍ଜନ ମାଟିଆ ମିଶ୍ର (୧୯୪୮- ):

ନିରଞ୍ଜନ ମାଟିଆ ମିଶ୍ରଙ୍କର ଜନ୍ମ ୧୯୪୮ ମସିହାରେ ଢେଙ୍କାନାଳ ଜିଲ୍ଲାର 'ମନ୍ଦାର' ଠାରେ । ତାଙ୍କ ପିତାଙ୍କ ନାମ- ସୋମନାଥ ମାଟିଆମିଶ୍ର ଏବଂ ମାତା- ଉଷାବତୀ ଦେବୀ । ଶ୍ରୀଯୁକ୍ତ ମିଶ୍ର ବାଣିଜ୍ୟରେ ସ୍ନାତକ ପାଶ୍ ପରେ ବ୍ୟାଙ୍କ୍ ସେବାରେ ଯୋଗ ଦେଇଥିଲେ । ସେ ଜଣେ ସାହିତ୍ୟ ଓ ସଂସ୍କୃତି ସଂପନ୍ନ ବ୍ୟକ୍ତି ହିସାବରେ କାବ୍ୟ-କବିତା ରଚନାରେ ମନୋନିବେଶ କରିଥିଲେ । ତାଙ୍କର 'ଆଶାର କୋଣାର୍କ'(କବିତା) ଏବଂ 'ପିତାମହ ଭୀଷ୍ମ' (କାବ୍ୟ) ଗ୍ରନ୍ଥ ଦୁଇଟି ତାଙ୍କ ପ୍ରତିଭାର ଶ୍ରେଷ୍ଠ ନିଦର୍ଶନ ।

**ଆଶାର କୋଣରର୍କ (୨୦୦୦):** ଏହା କବିଙ୍କର ପ୍ରଥମ ପ୍ରକାଶିତ କବିତା ସଂକଳନ । ଏଥିରେ ୪୦ ଗୋଟି କବିତା ସ୍ଥାନିତ ହୋଇଛି । ଏହି ସଂକଳନର ପ୍ରଥମ କବିତା-'ଆଶାର କୋଣାର୍କ' । ଏହି ସଂକଳନର ପ୍ରତିଟି କବିତାରେ କବି ପ୍ରାଣର ଆଶା, ଆକାଙ୍‌କ୍ଷା , ସ୍ୱପ୍ନ, ସମ୍ଭାବନା, ଆବେଗ ଓ ଭାବପ୍ରବଣତା ଫୁଟିଉଠିଛି । 'ଆଶାର କୋଣାର୍କ' କବିତାରେ କବିପ୍ରାଣ ବେଶ୍ ଆଶାବାଦୀ । କବି ଗଢ଼ିଛନ୍ତି ଆଶା ଓ ସ୍ୱପ୍ନର ଉତ୍ତୁଙ୍ଗ କୋଣାର୍କ । ମାୟା-ମୋହ ଗ୍ରସ୍ତ ଅଳୀକ ସଂସାରରେ ସ୍ୱାର୍ଥପରତା, ହିଂସ୍ରତା, ଦ୍ୱେଷ ଆଉ ବିଶ୍ୱାସଘାତକତା ଭିତରେ ବି ମଣିଷ ଜୀବନ ସଂଗ୍ରାମ ଜାରି ରଖେ,ବଞ୍ଚିବାର ରାହା ଖୋଜେ । ଆଗାମୀ କାଲିପାଇଁ ସ୍ୱପ୍ନଭିଜା ଆଶାର କୋଣାର୍କ ଗଢ଼େ ।

**ପିତାମହ ଭୀଷ୍ମ (୨୦୦୩:** ଏହା ଏକ ପୌରାଣିକ କାବ୍ୟ । ପୁରାଣର କଥାବସ୍ତୁ ଓ ଚରିତ୍ର ମାନଙ୍କୁ ନେଇ ରୀତିଯୁଗୀୟ କାବ୍ୟ ପରଂପରାରେ କବି ଏହି କାବ୍ୟର ହର୍ମ୍ୟ ନିର୍ମାଣ କରିଛନ୍ତି । ଏହି କାବ୍ୟଟି ୧୨ ଗୋଟି ସର୍ଗ ବିଶିଷ୍ଟ ସାଂପ୍ରତିକ ସମାଜ ଓ ସମୟକୁ ଆଖି ଆଗରେ ରଖି ପୌରାଣିକ ଘଟଣାବଳୀ ଓ ଚରିତ୍ର ମାଧ୍ୟମରେ ମଣିଷ ସମାଜ ଓ ଜୀବନକୁ ଅଧ୍ୟାତ୍ମ ଉତ୍ତରିତ ଓ ମହତ୍ତର କରିବାପାଇଁ କବି ଏଥିରେ ଉଦ୍ୟମ କରିଛନ୍ତି । ଚନ୍ଦ୍ରବଂଶୀ ରାଜା ଶାନ୍ତନୁଙ୍କର ଗଙ୍ଗାପ୍ରାପ୍ତି ଓ ଦେବବ୍ରତଙ୍କ ଜନ୍ମ ଠାରୁ ଆରମ୍ଭକରି ଭୀଷ୍ମଙ୍କର ଶରଶଯ୍ୟା ଓ ଦେହାବସାନ ପର୍ଯ୍ୟନ୍ତ ସମସ୍ତ ଘଟଣାବଳୀକୁ କବି ଅତି କଳାତ୍ମକ ଭାବରେ ସରଳ-ସାବଲୀଳ ଭାଷାରେ ପ୍ରୟୋଗ ମାଧ୍ୟମରେ ପରିପ୍ରକାଶ କରିଛନ୍ତି । ମୋଟା ମୋଟି

ଭାବରେ ଏ କାବ୍ୟରେ କବି ପରିବର୍ତ୍ତିତ ସାମାଜିକ ମୂଲ୍ୟବୋଧ ଓ ଅଧୋପତିତ ନୈତିକ ଆଦର୍ଶର ପୁନରୁଦ୍ଧାର ଓ ପ୍ରତିଷ୍ଠା ପାଇଁ ପ୍ରୟାସ କରିଛନ୍ତି ।

**ଶ୍ରୀ ଗଗନ ବିହାରୀ ନନ୍ଦ (୧୯୪୯- ):**

ଗଗନ ବିହାରୀ ନନ୍ଦଙ୍କର ଜନ୍ମ ୧୯୪୯ ମସିହା ଜୁଲାଇ ମାସ ୧୬ ତାରିଖରେ ଢେଙ୍କାନାଳ ସହରର 'କୁଞ୍ଜକାନ୍ତ' ଠାରେ । ତାଙ୍କ ପିତାଙ୍କ ନାମ- ଲଳିତ ମୋହନ ନନ୍ଦ ଓ ମାତା - ମନୋରମା ଦେବୀ । ଶ୍ରୀଯୁକ୍ତ ନନ୍ଦ ଜଣେ ବହୁମୁଖୀ ପ୍ରତିଭାର ଅଧିକାରୀ । ସେ ଏକାଧାରରେ ଜଣେ କବି, ସଂଗୀତକାର, ନାଟ୍ୟକାର ଓ ଦକ୍ଷ ସଂଗଠକ । ଶ୍ରୀଯୁକ୍ତ ନନ୍ଦଙ୍କ ଉଦ୍ୟମରେ ଢେଙ୍କାନାଳର କୁଞ୍ଜକାନ୍ତ ଠାରେ ପ୍ରତିଷ୍ଠିତ ହୋଇପାରିଛି-ଶାସ୍ତ୍ରୀୟ ଓ ହିନ୍ଦୁସ୍ଥାନୀ ସଙ୍ଗୀତର କଳାମନ୍ଦିର- 'ଲଳିତ କଳାମନ୍ଦିର' । ଏହା ସହିତ ସଙ୍ଗୀତ ରଚନା, ସଂଙ୍ଗୀତ ନିର୍ଦ୍ଦେଶନା କ୍ଷେତ୍ରରେ ମଧ୍ଯ ସେ ନିଜର ଦକ୍ଷତା ପ୍ରତିପାଦନ କରିଛନ୍ତି । ନିଜର ବହୁମୁଖୀ ପ୍ରତିଭା ଓ ଦକ୍ଷତା ଯୋଗୁଁ ସେ ବହୁ ସାମାଜିକ ଓ ସାଂସ୍କୃତିକ ଅନୁଷ୍ଠାନ ରୁ ବହୁବାର ସମ୍ମାନୀତ ଓ ପୁରସ୍କୃତ ହୋଇଛନ୍ତି । ଶ୍ରୀଯୁକ୍ତ ନନ୍ଦ ଭଗବାନ ଶିରୀଡ଼ି ସାଈଙ୍କ ମହାତ୍ମ୍ୟ ଓ ତାଙ୍କ ଧର୍ମ- ଦର୍ଶନକୁ ନେଇ 'ଶ୍ରୀ ସାଈ ସଗୁଣୋପାସନା' ଏବଂ 'ସାଈ କଷ୍ଟ ନିବାରଣ ମନ୍ତ୍ର' ନାମକ ଦୁଇଖଣ୍ଡି କ୍ଷୁଦ୍ର କ୍ଷୁଦ୍ର ପୁସ୍ତକ ରଚନା କରିଛନ୍ତି । ଢେଙ୍କାନାଳ ମାଟିର ପ୍ରସିଦ୍ଧ ଲେଖକ ମାନଙ୍କ କେତେକ ମୂଲ୍ୟବାନ ଗ୍ରନ୍ଥକୁ ସେ ସଂପାଦନା ଓ ପ୍ରକାଶନ କରି - ଲୋକଲୋଚନକୁ ଆଣିଛନ୍ତି । ପଣ୍ଡିତ ଭକ୍ତିବିନୋଦ ରାମଚନ୍ଦ୍ର ନନ୍ଦଙ୍କ 'ଢେଙ୍କାନାଳ ଇତିହାସ'ର ୨ୟ ସଂସ୍କରଣ (୨୦୦୬) ସହ 'ଢେଙ୍କାନାଳ ଭୂଗୋଳ'ର ଦ୍ୱିତୀୟ ସଂସ୍କରଣ (୨୦୦୮) ର ସଂପାଦନା ଓ ପ୍ରକାଶନ କରିଛନ୍ତି । ଏହା ସହିତ ଶ୍ରୀ ବିନୋଦ ବିହାରୀ ନନ୍ଦଙ୍କ ରଚିତ 'ବିଳାସ ରସ ବିଳାସୀ', କିଷ୍କିନ୍ଧ୍ୟା ବିଜୟ, ନମନୀୟା ଢେଙ୍କାନାଳ ପ୍ରଭୃତି ଗ୍ରନ୍ଥର ମଧ୍ଯ ସଂପାଦନା ଓ ପ୍ରକାଶନ କରିଛନ୍ତି ।

**ଶ୍ରୀ ଚକ୍ରଧର ସାହୁ (ଆର୍ଯ୍ୟରତ୍ନ)(୧୯୪୯- ):**

ଶ୍ରୀ ଚକ୍ରଧର ସାହୁଙ୍କ ଜନ୍ମ ୧୯୪୯ ମସିହାରେ ଢେଙ୍କାନାଳ ଜିଲ୍ଲାର ହିନ୍ଦୋଳ ସବଡ଼ିଭିଜନ୍ ଅନ୍ତର୍ଗତ 'ମାଧପୁର' ଗ୍ରାମରେ । ତାଙ୍କ ପିତାଙ୍କ ନାମ- ବ୍ରଜବନ୍ଧୁ ସାହୁ । ଶ୍ରୀଯୁକ୍ତ ସାହୁ ଜଣେ ଦକ୍ଷ ସଂଗଠକ ଓ ସାହିତ୍ୟିକ । କାବ୍ୟ, କବିତା, ପ୍ରବନ୍ଧମାନ ରଚନାକରିବାରେ ସେ ସିଦ୍ଧହସ୍ତ । ତାଙ୍କ ରଚିତ କାବ୍ୟାକୃତି ଗୁଡ଼ିକ ହେଲା- ହରଶୈଳ ଏବଂ ନବାନୀ ଦେହୀ । କବିତା-ମଧୁବାତା ଏବଂ ପ୍ରବନ୍ଧ ରଚନା- ସୁରୁଚି-ସୁଲଳିତ । କବିଙ୍କର ଏହି ରଚନାଗୁଡ଼ିକ ଅଦ୍ୟାବଧି ଅପ୍ରକାଶିତ ହୋଇ ରହିଅଛି ।

## ଶ୍ରୀ ଡମ୍ବରୁଧର ବେହେରା (୧୯୪୯- ):

ଡମ୍ବରୁଧର ବେହେରାଙ୍କ ଜନ୍ମ ୧୯୪୯ ମସିହା ଏପ୍ରିଲ୍ ମାସ ୧୩ ତାରିଖରେ ଢେଙ୍କାନାଳ ଜିଲ୍ଲାର ଭୁବନ ଗ୍ରାମରେ । ତାଙ୍କ ପିତାଙ୍କ ନାମ- ନଟବର ବେହେରା ଓ ମାତା- ରାଜରାଣୀ ବେହେରା । ଶ୍ରୀଯୁକ୍ତ ବେହେରା ଇଂରାଜୀ ଭାଷା-ସାହିତ୍ୟରେ ସ୍ନାତକୋତ୍ତର ଡିଗ୍ରୀ ଲାଭପରେ ଅଧ୍ୟାପନା ବୃତ୍ତିରେ ଯୋଗଦେଇଥିଲେ । ଇଂରାଜୀ ଭାଷା-ସାହିତ୍ୟର ସେ ଜଣେ ପରମ ବିଦ୍ୱାନ୍ ଓ ପ୍ରବୀଣ ଅଧ୍ୟାପକ । ଅଧ୍ୟାପନା ସହିତ ସେ ଉଭୟ ଇଂରାଜୀ ଓ ଓଡ଼ିଆ ଭାଷାରେ କବିତା ଓ ପ୍ରବନ୍ଧମାନ ରଚନା କରିଛନ୍ତି । ଏହି ସବୁ ରଚନା ଗୁଡ଼ିକ ଓଡ଼ିଶାର ବିଭିନ୍ନ ପତ୍ର-ପତ୍ରିକାରେ ପ୍ରକାଶିତ ହୋଇ ଜନାଦୃତ ହୋଇପାରିଛି । ତାଙ୍କ ପ୍ରକାଶିତ ଏକ କବିତା ସଙ୍କଳନ ହେଲା- ସନେଟ ଶତକ । ଏଥିରେ କାବ୍ୟିକ ଉଚ୍ଛ୍ୱାସମୟ ଶହେଗୋଟି ଗୀତିମୟ କବିତାର ମଞ୍ଜୁଳ ସମାବେଶ ଘଟିଛି । କବି ହୃଦୟର ସକଳ ଭାବାବେଗ, ଅନୁଭବ-ଅନୁଭୂତି, ସ୍ୱପ୍ନ ଓ ସମ୍ଭାବନା ଓ ଆତ୍ମିକ ଅନୁଭବ ଅତି ସରଳ, ସାବଲୀଳ, ସ୍ୱଚ୍ଛନ୍ଦ ଓ ରସମୟ ଭାବରେ ଏହି କବିତା ଗୁଡ଼ିକରେ ଝରିଆସିଛି । ଏହା ସହିତ ସ୍ରଷ୍ଟାଙ୍କର ପ୍ରାୟ-୬୦ ଗୋଟି ଲଘୁ ପ୍ରବନ୍ଧ ବିଭିନ୍ନ ପତ୍ର-ପତ୍ରିକାରେ ପ୍ରକାଶିତ ହୋଇଛି । ଏଗୁଡ଼ିକ ଭିତରେ ଭାରତୀୟ ସଭ୍ୟତା, ସଂସ୍କୃତି ଓ ମହନୀୟ ଜୀବନବୋଧର ଚିତ୍ର ସହିତ ସ୍ରଷ୍ଟାଙ୍କ ସୂକ୍ଷ୍ମ ମନନଶୀଳତା, ଦାର୍ଶନିକ ଅନୁଚିନ୍ତା ଓ ବିଦ୍‌ବତ୍ତାର ପରିପ୍ରକାଶ ଘଟିଅଛି ।

## ଶ୍ରୀ ପ୍ରମୋଦ କୁମାର ମିଶ୍ର (୧୯୫୦- ):

ପ୍ରମୋଦ କୁମାର ମିଶ୍ରଙ୍କର ଜନ୍ମ ୧୯୫୦ ମସିହାରେ ଢେଙ୍କାନାଳ ଜିଲ୍ଲାର ଭୁବନ ଗ୍ରାମରେ । ଶ୍ରୀଯୁକ୍ତ ମିଶ୍ର ଜଣେ ପଣ୍ଡିତ କବି । ବୈଦିକ ସଂସ୍କୃତ ସାହିତ୍ୟ ଉପରେ ତାଙ୍କର ଗଭୀର ବ୍ୟୁତ୍ପତ୍ତି ରହିଛି । ବିଭିନ୍ନ କାବ୍ୟ-କବିତା ରଚନା ସହିତ ସେ ପ୍ରବନ୍ଧ ରଚନା ଓ ଇତିହାସ ଗ୍ରନ୍ଥ ମଧ୍ୟ ରଚନା କରିଛନ୍ତି । ତାଙ୍କ ରଚିତ କାବ୍ୟକୃତି ଗୁଡ଼ିକ ହେଲା- ସତୀ ଅନସୂୟା, ପ୍ରଣୟ ମଞ୍ଜରୀ, ଶୁଣ ସୁଜନେ ପ୍ରଭୃତି । ତାଙ୍କ ରଚିତ କବିତା କୃତି ଗୁଡ଼ିକ ହେଲା- ଅମର ଶହୀଦ୍ ବାଜିରାଉତ, କବିତା ଏକଶତ, ବସନ୍ତ ଦୂତ । ଏହା ସହିତ ସେ ଇଶୋପନିଷଦଭାଷ୍ୟ, କର୍ମଯୋଗୀ ଗୋପବନ୍ଧୁ, ବିପରୀତ ଭାଗବତ, ବେଦରେ ଧ୍ୱନି ତତ୍ତ୍ୱ, ସଂସ୍କୃତିର ଆଦିସ୍ରୋତ ବେଦ, ସଂସ୍କୃତ ଓ ବୈଦିକ ସାହିତ୍ୟର ଇତିହାସ; ଆଧୁନିକ ଢେଙ୍କାନାଳ ଇତିହାସ ଆଦି ବହୁ ଐତିହାସିକ ତଥ୍ୟ ଓ ତତ୍ତ୍ୱପୂର୍ଣ୍ଣ ଗ୍ରନ୍ଥମାନ ରଚନା କରିଛନ୍ତି ।

**ତୁଳସୀ ବେହେରା (୧୯୫୦- ):** ତୁଳସୀ ବେହେରା ଙ୍କ ଜନ୍ମ ୧୯୫୦ ମସିହାରେ ଢେଙ୍କାନାଳ ଜିଲ୍ଲାର ଭୁବନ ଗ୍ରାମରେ । ତାଙ୍କ ପିତାଙ୍କ ନାମ-ବୁଦ୍ଧିମନ୍ତ ବେହେରା ଓ ମାତା- ଫୁଲରାଣୀ ଦେବୀ । ତାଙ୍କ ସ୍ୱାମୀ ହେଲେ- ଈଶ୍ୱରଚନ୍ଦ୍ର ବେହେରା । ଶ୍ରୀମତୀ ବେହେରା ଏକାଧାରରେ ଜଣେ କବି ଓ ଗାଳ୍ପିକା । ପଲ୍ଲୀ ଜୀବନବୋଧ ଓ ମାନବୀୟ ଆଦର୍ଶକୁ ନେଇ ସେ ଗଳ୍ପ , କବିତାମାନ ରଚନା କରିଛନ୍ତି । ଏହା ସହିତ ସେ ଅନେକ ପଲ୍ଲୀଗୀତ ଓ ଭକ୍ତିଭାବାପନ୍ନ, ଆଧ୍ୟାତ୍ମିକ ଭଜନମାନ ମଧ୍ୟ ରଚନା କରିଛନ୍ତି । ତାଙ୍କର ଦୁଇଖଣ୍ଡି ପ୍ରକାଶିତ କବିତା ଗ୍ରନ୍ଥ ହେଲା- 'ଶୁଭ ସକାଳ' ଏବଂ 'ସୁନାବୋହୂ' । ଏହି କବିତା ଗ୍ରନ୍ଥ ଦୁଇଟିରେ କବୟିତ୍ରୀଙ୍କର ସ୍ରଷ୍ଟାପ୍ରାଣର ଆତ୍ମିକ ଅନୁଭବ ସହିତ ସମାଜ ଜୀବନର ବହୁବିଧ ରୂପ-ବିଭବ ଫୁଟିଉଠିଛି ।

**ଗୀତା ମିଶ୍ର (୧୯୫୧- ) :**

ଗୀତା ମିଶ୍ର ଢେଙ୍କାନାଳ ମାଟିର ବୋହୂ । ସେ ଢେଙ୍କାନାଳ ମହେନ୍ଦ୍ରପୁର ଶାସନ ନିବାସୀ ଶ୍ରୀଯୁକ୍ତ ବିଧୁଭୂଷଣ ମିଶ୍ର ଙ୍କୁ ବିବାହ କରିଥିଲେ । ତାଙ୍କ ପିତାଙ୍କ ନାମ- ବାମନ ଚରଣ ମିଶ୍ର ଓ ମାତା- ବିମଳା ଦେବୀ । ଗୀତା ମିଶ୍ର ଜଣେ ପ୍ରଚଣ୍ଡ ପ୍ରତିଭାଧର ସ୍ରଷ୍ଟା । କବିତା ଓ ଗଳ୍ପରଚନା ସହିତ ସେ ଅନୁବାଦ କ୍ଷେତ୍ରରେ ମଧ୍ୟ ନିଜର ଦକ୍ଷତା ପ୍ରତିପାଦନ କରିପାରିଛନ୍ତି । ତାଙ୍କ ରଚିତ ଗଳ୍ପ ସଂକଳନ ଗୁଡ଼ିକ ହେଲା-କାହାଣୀ ନୁହେଁ (୨୦୦୧), ତୃଷ୍ଣା (୨୦୦୪), ମନୀଷା । ତାଙ୍କ କବିତା ସଂକଳନ ଗୁଡ଼ିକ ହେଲା- ଜୀବନ(୧୯୯୮), କୁହୁ(୨୦୦୩), ମନ୍ଥନ(୨୦୦୪), ତୁମେ କୁହ ସେଇ କଥା (୨୦୦୮), ସମୟ ଯେଉଁ କଥା କହେ (୨୦୧୪), ସମୟ, ସାଗର; ଆକାଶ ପ୍ରଭୃତି । ଏହା ସହିତ ତାଙ୍କର ଦୁଇଖଣ୍ଡ ଶିଶୁ କବିତା ସଂକଳନ ମଧ୍ୟ ରହିଛି । ସେଗୁଡ଼ିକ ହେଲା-ଯାହାକୁ ସୁନ୍ଦର ଯିଏ, କିଏ ସେହି କାରିଗର ? ତାଙ୍କର ଅନୂଦିତ ରଚନା ଗୁଡ଼ିକ ହେଲା-ଖଲିଲ୍ ଜିବ୍ରାନ୍ ଙ୍କ 'ମହାପୁରୁଷ', ଆଶାପୂର୍ଣ୍ଣା ଦେବୀଙ୍କ 'ମନ ମର୍ମର', 'ଜନତାର ମୁଖ' । ଏହିସବୁ ସୃଷ୍ଟି ସମ୍ଭାର ଗୁଡ଼ିକ ଗୀତା ଦେବୀଙ୍କର ସାରସ୍ୱତ ପ୍ରତିଭାର ସାକ୍ଷର ବହନ କରେ ।

**ଜୀବନ (୧୯୯୮):** ଏହା କବୟିତ୍ରୀ ଗୀତା ମିଶ୍ରଙ୍କର ପ୍ରଥମ ପ୍ରକାଶିତ କବିତା ସଂକଳନ । ଏହି ସଂକଳନଟିରେ ୨୩ ଗୋଟି କବତା ସ୍ଥାନିତ ହୋଇଛି । ସେଗୁଡ଼ିକ ହେଲା- ତାଜମହଲ, ବୋଉ, ଭିକାରୀ, ହା-ହା କା'ର, ଝରାଫୁଲ, ସ୍ମୃତିର ପାହାଚ, ଜୀବନ, ଝୋପଡ଼ପଟି, ବର୍ଷା, ତୁମପାଇଁ, ଆତ୍ମଜା, ଭାଇ, ମାଁ ର ମମତା, ସ୍ୱପ୍ନ, ନବବର୍ଷ, କୋଣାର୍କ, ଝିଅ ପ୍ରଭୃତି । ଏହିସବୁ କବିତା ଗୁଡ଼ିକ ଭିତରେ କବିପ୍ରାଣର ଆତ୍ମିକ ଭାବାବେଗ, ସ୍ନିଗ୍ଧ

ରସାଳ ଅନୁଭବ, ଅନୁଭୂତି ଅତି ଭାବମୟ, କାବ୍ୟିକ ରୂପରେ ଝରିଆସିଛି । ଏହା ସହିତ ସମାଜ ଓ ବ୍ୟକ୍ତି ଜୀବନର ବିଭିନ୍ନ ଦୁଃଖ, ଦହନ, ଜୀବନ ଯନ୍ତ୍ରଣା, ବ୍ୟର୍ଥତା ଓ ଅସହାୟତାର ବାସ୍ତବ ଚିତ୍ର ଏହି କବିତା ଗୁଡ଼ିକରେ ଫୁଟିଉଠିଛି ।

**କୁହୁ (୨୦୦୩):** ଏହା କବୟିତ୍ରୀଙ୍କର ଏକ ମନୋଜ୍ଞ, ଗୀତିକବିତା ସଂକଳନ । ଏଥିରେ ୭୧ ଗୋଟି ଗୀତିମୟ କବିତା ସ୍ଥାନିତ ହୋଇଛି । କୋକିଳର କୁହୁ ତାନ ପରି କବି ହୃଦୟର ସକଳ ଆବେଗ, ଆଶା, ଆକାଂକ୍ଷା, ସ୍ୱପ୍ନ, ସମ୍ଭାବନା ଓ ଭାବପ୍ରବଣତା ଅତି ରସମୟ, କମନୀୟ ଭାବରେ ଏଥିରେ ଝରିଆସିଛି । ଅତୀତ ଜୀବନର ମନୋରମ ସ୍ମୃତିର ରୋମନ୍ଥନ ମାଧ୍ୟମରେ କବି ମଣିଷ ଜୀବନକୁ ପ୍ରେମପୂର୍ଣ୍ଣ ଓ ଶୋଭାମୟ କରିବାକୁ ଚାହିଁଛନ୍ତି । କବୟିତ୍ରୀ ହୃଦୟର ଦିପାଳୀରେ ପ୍ରେମ-ପ୍ରୀତିର ଆଲୋକ ଜାଳିବାର ଅଭିଳାଷ ପ୍ରତିପୋଷଣ କରିଛନ୍ତି । ଯେଉଁଥିପାଇଁ କବୟତ୍ରୀ ଲେଖିଛନ୍ତି-

"ଜୀବନର ପଦଚିହ୍ନ କେବେ ଯଦି
ସ୍ମୃତି ରୂପ ନିଏ
ତୁମର ପ୍ରେମର ଦୀପ ଏ ଜୀବନେ
ସଦା ଜଳୁଥାଏ ।" (୧୩)

କବୟତ୍ରୀ ଏହି କବିତା ସଂକଳନଟିରେ ଚିରନ୍ତନୀ, ଶାଶ୍ୱତ, ତ୍ୟାଗଦୀପ୍ତ ପ୍ରେମର ନିରାଜନା କରିଛନ୍ତି । କବିଙ୍କ ଭାଷାରେ-

"ପ୍ରେମ ଏକ ଶେଷହୀନ
ସୁଖ-ଆରାଧନା
ପ୍ରେମ ସେତ ସୁରଭିତ
ତ୍ୟାଗ-ନିରାଜନା ।" (୧୪)

**ମନ୍ଥନ (୨୦୦୪):** ଏହି କବିତା ସଂକଳନଟିରେ ୫୧ ଗୋଟି କବିତା ସ୍ଥାନିତ ହୋଇଛି । ସେଗୁଡ଼ିକ ହେଲା- ପ୍ରତୀକ୍ଷା, ସମୟକୁ, ଶ୍ରୀମତୀ, ଅନ୍ତରଙ୍ଗ, ରୂପାନ୍ତର, ଆଦିମ, ଅବ୍ୟକ୍ତ, ଆକାଶ, ଅଭିମାନ, ଆବେଗ, ସେ ଦିନର ବର୍ଷା, ବର୍ଷାସ୍ମୃତି, ଅନ୍ୱେଷା, ବିଶ୍ୱାସ, ଅବତରଣ, ଆଷାଢ଼ର ପ୍ରଥମ ଦିବସେ, ଯଶୋଧାରା, ଶ୍ରାବଣୀ ମେଘ, ତୁମେ ଆଉ ମୁଁ, ଅଭିମାନୀ, ଶୁଚିସ୍ମିତା, ପୋଇଲି, ପକ୍ଷୀ, ବିରହୀ ବର୍ଷା, ନାରୀ, ଭୋକ, ସାଗର, ଯନ୍ତ୍ରଣା, କୁହେଳୀ, ମନ୍ଥନ ପ୍ରଭୃତି । ଏହି ସଂକଳନଟିରେ କବି ବେଶ୍ ବାସ୍ତବବାଦୀ ଓ ଜୀବନବାଦୀ ହୋଇ ଉଠିଛନ୍ତି । ସାଂସାରୀକ ଜୀବନର ମହାସମୁଦ୍ରକୁ ମନ୍ଥନ କରି କବି ମଣିଷ ଜୀବନର ଅନ୍ତର୍ନିହିତ ଅସଲ ସ୍ୱରୂପ ଓ ରହସ୍ୟକୁ ଉଦ୍‌ଘାଟନ କରିବାର ପ୍ରୟାସ

କରିଛନ୍ତି । ମଣିଷ ସ୍ୱରୂପର ଉଦ୍‌ଘାଟନ କରିବାସହିତ ତା'ର ଅସ୍ମିକ ଅନ୍ୱେଷା ଓ ଆତ୍ମଜିଜ୍ଞାସାର ସ୍ୱର ମଧ୍ୟ କବି ପ୍ରକଟିତ କରିଛନ୍ତି ।

**ତୁମେ କୁହ ସେଇ କଥା (୨୦୦୮):** ଏହା କବୟତ୍ରୀଙ୍କର ଏକ ସାର୍ଥକ ଗୀତିକବିତା ସଂକଳନ । ଏଥିରେ ଶହେ ଗୋଟି ଗୀତିମୟ କବିତା ସ୍ଥାନିତ ହୋଇଛି । ସେଥିମଧ୍ୟରୁ ପ୍ରମୁଖ ଗୀତିକବିତା ଗୁଡ଼ିକ ହେଲା- ତୁମେ କୁହ ସେଇ କଥା, ମନ ଭିଜିଗଲା, ଫୁଲ ଝରିଗଲା, ଶେଷ ଅଭିଳାଷ, ହୃଦୟ ମାନେନା, ପ୍ରିୟାର ଗାଁ, ଶେଷ ସ୍ୱପ୍ନ, ଭଙ୍ଗା ଆଇନା, ମନମୁକୁର, ଅବୁଝା ମନ, ବିଭାବରୀ ଗୋ, ପ୍ରତୀକ୍ଷା, ପ୍ରିୟା, ତୁମପାଇଁ, ବିରହୀସୁର, ପ୍ରୀତିର ମହକ, କୁଆଁରୀମନ, ଚନ୍ଦ୍ରଲେଖା, ଆଷାଢ଼ ଆସିଲେ, ଅଭିସାରିକା, ଦୀପଶିଖା, ବିରହେ, ଫଗୁଣର କୁହୁବାଣୀ, ଫଗୁଣ ଗୀତି, କାବ୍ୟନାୟିକା, ଅନୁରାଗ, ଜହ୍ନରାତି, ତୁମର ତୁଳନା ନାହିଁ, ତୃଷ୍ଣା ପ୍ରଭୃତି । ଏହିସବୁ ଗୀତିମୟ କବିତା ଗୁଡ଼ିକ ମଧ୍ୟରେ କବି ପ୍ରାଣର ପ୍ରୀତିମୟ ଭାବନା, ଆବେଗିକ ଅନୁଭବ ଓ ଅନୁଭୂତିର ସ୍ନିଗ୍ଧ ପରିପ୍ରକାଶ ଘଟିଅଛି । ଅଧିକାଂଶ କବିତାରେ କବିସତ୍ତା ପ୍ରକୃତି ସହିତ ଏକତ୍ୱ ବା ଏକାକାର ହୋଇଯାଇଛି । ଜୀବନ, ଯୌବନ ଓ ପ୍ରେମ ସହ କବି ପ୍ରକୃତିର ନିରାଜନା ଓ ଜୟଗାନ କରିଛନ୍ତି ।

**ସମୟ ଯେଉଁ କଥା କହେ (୨୦୧୪):** ଏହି କବିତା ସଂକଳନଟିରେ ୪୯ ଗୋଟି କବିତା ସ୍ଥାନିତ ହୋଇଛି । ସେଗୁଡ଼ିକ ହେଲା- ଜୀବନର ପରିଭାଷା, ରହସ୍ୟ, ନଷ୍ଟ ଚନ୍ଦ୍ର, ସମୟ ଯେଉଁ କଥା କହେ, ଜୀବନର ଡାକ, ରୂପାନ୍ତର, ଭିନ୍ନଅନ୍ୱେଷା, ଚିରନ୍ତନ, ଫେରିବାର ବେଳ, ଅନୁଭବ, ସ୍ମୃତି, ଶେଷ ସ୍ୱପ୍ନ, ଶେଷର ଅପେକ୍ଷାରେ, ସଂଗ୍ରାମ, ସ୍ୱପ୍ନର ସହର, ରାତ୍ରି ଶେଷର କବିତା, ଫେରିଯିବାକୁ ଚାହେଁ, ଶେଷ ପାହାଚ, ପୁନଶ୍ଚ ଫଗୁଣ ପ୍ରଭୃତି । ଏହି କବିତା ସଂକଳନଟିରେ କବି ବେଶ୍ ଜୀବନବାଦୀ । ଜୀବନର ପ୍ରକୃତ ପରିଭାଷା ଓ ଅସଲ ରହସ୍ୟର ସ୍ୱରୂପ ଉନ୍ମୋଚନ କରିବାକୁ କବିପ୍ରାଣ ତତ୍ପର ହୋଇ ଉଠିଛି । ପାର୍ଥିବତାର ସୀମା-ସରହଦ ଡେ଼ଇଁ କବିପ୍ରାଣ ଅପାର୍ଥିବ, ଅତିନ୍ଦ୍ରୀୟ ଜଗତ ଉନ୍ମୁଖୀ ହୋଇଉଠିଛି । କବିଆତ୍ମା ସତ୍ୟ ଓ ଆଲୋକ ସନ୍ଧାନୀ ହୋଇଉଠିଛି । ସେଥିପାଇଁ କବି ଲେଖିଛନ୍ତି-

> " ସେ ବ୍ରହ୍ମଶକ୍ତି ରୂପକ ପରମ ସତ୍ୟରେ
> ଅକସ୍ମାତ ସୂର୍ଯ୍ୟ ଉଏଁ, ପଦ୍ମ ଫୁଟିଯାଏ
> ରିକ୍ତ ହୃଦୟ ଭରିଯାଏ
> ନିକଷ ଅନ୍ଧକାରରେ ପହଁରିଯାଏ
> ଆଲୋକର ଧାରା ।"(୧୫)

**କାହାଣୀ ନୁହେଁ (୨୦୦୧):** ଏହା ଏକ ଗଳ୍ପ ସଂକଳନ । ଏଥିରେ ୨୧ ଗୋଟି ଗଳ୍ପର ମନୋଜ୍ଞ ସମାବେଶ ଘଟିଅଛି । ଏଥିରେ ସନ୍ନିବିଷ୍ଟ ଗଳ୍ପ ଗୁଡ଼ିକ ହେଲା- କାହାଣୀ ନୁହେଁ, ବାତ୍ୟା, ଆହାତ ପ୍ରେମର କାହାଣୀ, ଯୌତୁକ, ସନ୍ଦେହ, ସ୍ୱପ୍ନ ଓ ସତ୍ୟ, ଅସମାପ୍ତ କାହାଣୀ, ପ୍ରତାରଣା, ଭୋର୍‌ର ସ୍ୱପ୍ନ, ମୋହ, ସାବିତ୍ରୀ ଅମାବାସ୍ୟା, ସୁନା ବୋଉ, ଶାପମୁକ୍ତି, ଜଣଙ୍କ ସ୍ମୃତିରେ ପ୍ରଭୃତି । ଏହିସବୁ ଗଳ୍ପ ଗୁଡ଼ିକ ଭିତରେ ସାମାଜିକ ଓ ପାରିବାରିକ ଜୀବନର ଦୈନନ୍ଦିନ ଘଟଣାବଳୀ, ମାନସିକ ଚିତ୍ତ ସଂଘର୍ଷ ଓ ସ୍ରଷ୍ଟାଜୀବନର ନିବିଡ଼, ଆତ୍ମିକ ଅନୁଭବ, ଅନୁଭୂତି ହିଁ ଗଳ୍ପକଳାର ରୂପ ଦେଇଛି । ଗଳ୍ପ କଳାର ପ୍ରକରଣ-ବିଧି ଦୃଷ୍ଟିରୁ ଏହି ଗଳ୍ପଗୁଡ଼ିକ ସଫଳ ହୋଇନପାରିଥିଲେବି ଏଗୁଡ଼ିକ ବେଶ୍ ଜୀବନ ବାଦୀ ଓ ମାନବବାଦୀ ହୋଇଉଠିଛି ।

**ତୃଷ୍ଣା (୨୦୦୪):** ଏହା ଏକ ସଫଳ ଗଳ୍ପ କୃତି । ଏଥିରେ ୨୦ ଟି ଗଳ୍ପ ସନ୍ନିବିଷ୍ଟ ହୋଇଛି । ଏହି ଗଳ୍ପ ଗୁଡ଼ିକ ହେଲା- ତୃଷ୍ଣା, ମା, ଅକୁହା କଥା ଓ ସ୍ମୃତି ସବୁ, ଏକ ଆତ୍ମହତ୍ୟାର କାହାଣୀ, ରୂପାନ୍ତର, ସୁନନ୍ଦା ମୋ ପ୍ରିୟା, ସହାବସ୍ଥାନ, ବିଶ୍ୱାସ, ଶେଷ ଅପେକ୍ଷା, ଅଳ୍ପସୁଖ, ହେନା, ଅବ୍ୟକ୍ତ, ଦୃଶ୍ୟପଟ, ସଂପର୍କ, ମାୟା, କଳାକାର ପ୍ରଭୃତି । ଏହି ଗଳ୍ପଗୁଡ଼ିକ ସମାଜ ଜୀବନ ଓ ବ୍ୟକ୍ତିଗତ ଜୀବନର ହର୍ଷ-ବିଷାଦ, ଆଶା-ଆକାଂକ୍ଷା, ସ୍ୱପ୍ନସମ୍ଭାବନା ଓ ମାନସିକଚିତ୍ତ-ସଂଘର୍ଷକୁ ନେଇ ଗତିଶୀଳ । ଗାଳ୍ପିକାଙ୍କ ଦୃଷ୍ଟିରେ 'ତୃଷ୍ଣା' ହେଉଛି ଜୀବନକୁ ବଞ୍ଚେଇବାର ଏକ ମାଧ୍ୟମ । ମଣିଷର ଆଶା, ଆକାଂକ୍ଷା, ସ୍ୱପ୍ନ, ସମ୍ଭାବନା ଓ ତୃଷ୍ଣା ନଥିଲେ, ସେ ଜୀବନର ଚଲାପଥରେ ଥକି ପଡ଼ିବାର ବହୁ ସମ୍ଭାବନା ରହିଛି । କିଛି ପାଇବାର ଆଶା ଓ ବଞ୍ଚିବାର ତୃଷ୍ଣାନେଇ ମଣିଷ ଜୀବନ ସଂଗ୍ରାମରେ ଅବତୀର୍ଣ୍ଣ ହୁଏ । ଏହି ଚେତନା ଓ ବାର୍ତ୍ତା ହିଁ ଏହି ଗଳ୍ପ ଗୁଡ଼ିକରେ ପ୍ରକଟିତ ।

**ଶ୍ରୀ ଭବାନୀ ଶଙ୍କର ମିଶ୍ର (୧୯୫୧- ):**

ଭବାନୀ ଶଙ୍କର ମିଶ୍ରଙ୍କର ଜନ୍ମ ୧୯୫୧ ମସିହାରେ ଢେଙ୍କାନାଳ ଜିଲ୍ଲାର ନୀଳାମ୍ବରପୁର ଠାରେ । ଶ୍ରୀଯୁକ୍ତ ମିଶ୍ର ଆହ୍ଲାବାଦ ବିଶ୍ୱବିଦ୍ୟାଳୟରୁ ଇତିହାସ ରେ ଏମ୍.ଏ. ପାଶ୍ ପରେ ଅଧ୍ୟାପନା ବୃତ୍ତିରେ ଯୋଗ ଦିଅନ୍ତି । ଅଧ୍ୟାପନା ସହିତ କବିତା, ଗଳ୍ପ, ପ୍ରବନ୍ଧ ଆଦି ରଚନାରେ ତାଙ୍କର ରୁଚି ରହିଛି । ତାଙ୍କ ରଚିତ କବିତା ପୁସ୍ତକ ଗୁଡ଼ିକ ହେଲା-ଚିତ୍ରିତ ପୁଲକ (୨୦୦୦), ଆସକ୍ତ ଆକାଶ(୨୦୦୬), ନିକ୍ଷିପ୍ତନିମିଷ(୨୦୦୮) । ଏହାସହିତ ଶ୍ରୀଯୁକ୍ତ ମିଶ୍ରଙ୍କର 'ଚିହ୍ନା ଚିହ୍ନା ଓ ସେମାନେ' ଶୀର୍ଷକ ଗଳ୍ପ ସଂକଳନ ଓ 'ଅଦୃଶ୍ୟଧାରା' ଶୀର୍ଷକ ପ୍ରବନ୍ଧ ଗ୍ରନ୍ଥ ମଧ୍ୟ ରହିଛି ।

**ଚିତ୍ରିତ ପୁଲକ (୨୦୦୦):** ଏହା ଏକ ମନୋଜ୍ଞ କବିତା ସଂକଳନ। ଏଥିରେ ସନ୍ନିବିଷ୍ଟ କବିତା ଗୁଡ଼ିକ ବେଶ୍ ସରଳ, ତରଳ ଓ ପ୍ରୀତିମୁଗ୍ଧ। ସ୍ରଷ୍ଟା ହୃଦୟର ଆବେଗିକ ଆବେଦନ, ପ୍ରେମପ୍ରାଣତା ଓ ଆତ୍ମାନୁଭବ ଏହି କବିତା ଗୁଡ଼ିକରେ ପ୍ରକଟିତ।

**ନିକ୍ଷିପ୍ତ ନିମିଷ (୨୦୦୮):** ଏହା ଏକ ଗୀତିକବିତା ସଂକଳନ। କାଳିଦାସଙ୍କ ମେଘଦୂତ କାବ୍ୟର କାବ୍ୟିକ ଆବେଦନର ପ୍ରଭାବ ଏହି କବିତା ଗୁଡ଼ିକରେ ପଡ଼ିଅଛି। ସରଳ, ତରଳ, ଆବେଗିକ ଆବେଦନ ସହିତ ସ୍ରଷ୍ଟା ହୃଦୟର ଭଗବତ୍ ସାନ୍ନିଧ କାମନା ଓ ଅଧ୍ୟାତ୍ମ ଭାବନା ଏହି କବିତା ଗୁଡ଼ିକରେ ଫୁଟିଉଠିଛି।

**ଚିହ୍ନା ଚିହ୍ନା ଓ ସେମାନେ :**ଏହା ଏକ ମନୋଜ୍ଞ ଗଳ୍ପ ସଂକଳନ। ଏଥିରେ ୨୦ ଗୋଟି ଗଳ୍ପ ସ୍ଥାନିତ ହୋଇଛି। ସେଗୁଡ଼ିକ ହେଲା- ଓହଳାମେଘ, କାଳ ପୁରୁଷ, ଅଦୃଶଭାରା, ଚକ୍ଷୁବନ୍ଧନ, ବାଣିଜ୍ୟେ ବସତି ଲକ୍ଷ୍ମୀ, ଚିହ୍ନା ଚିହ୍ନା, ଅଭିନୟ, ନିଉ ଭାରତ ସର୍କସ, ଗ୍ରେ ଟ୍ ଇଣ୍ଡିଆନ୍ ସର୍କସ, ପାଖଲୋକ, ଦୋଷୀ, ଦିବ୍ୟଭାରତ, ପତ୍ରଝଡ଼ା ସମୟ, ସେତୁ ଇତ୍ୟାଦି। ଏହିସବୁ ଗଳ୍ପ ଗୁଡ଼ିକ ଭିତରେ ସମାଜ ଜୀବନ ଓ ବ୍ୟକ୍ତି ଜୀବନର ବହୁବିଧ ରୂପବିଭବ ଫୁଟିଉଠିଛି।

## ଶ୍ରୀ ଜୟରାମ ସାହୁ (୧୯୫୧- ):

ଜୟରାମ ସାହୁଙ୍କର ଜନ୍ମ ୧୯୫୧ ମସିହାରେ ଢେଙ୍କାନାଳ ଜିଲ୍ଲାର ଗୋପାଳପୁର କାଳ୍‌ଣୀଗୋଡ଼ା ଠାରେ। ତାଙ୍କ ପିତାଙ୍କ ନାମ ଶ୍ରୀ ହରିହର ସାହୁ ଓ ମାତା- ଭଲି ସାହୁ। ଶ୍ରୀଯୁକ୍ତ ସାହୁ ବୃତ୍ତିରେ ଜଣେ ଶିକ୍ଷକ ହେଲେହେଁ ନିଶା ତାଙ୍କର ପୌରାଣିକ କାବ୍ୟ କବିତା ରଚନା ଓ ପାଲା ପରିବେଷଣ। ତାଙ୍କର ବାବ୍ୟକୃତି ଗୁଡ଼ିକ ମୁଖ୍ୟତଃ ପାଲାପାଇଁ ଅଭିପ୍ରେତ। ତାଙ୍କ ପ୍ରକାଶିତ ରଚନା ଗୁଡ଼ିକ ହେଲା- ପାଷାଣ ଲକ୍ଷ୍ମଣ, ମହର୍ଷି ଚ୍ୟବନ, ଅଭୀଷ୍ଟ ଚିନ୍ତାମଣି, ଅବ୍‌ଜା-କାଦମ୍ବିନୀ। ତାଙ୍କର ଅପ୍ରକାଶିତ ରଚନା ଗୁଡ଼ିକ ହେଲା- ରଘୁ ଅରକ୍ଷିତ, ଭକ୍ତ ଗୟାସୁର, ପ୍ରଚଣ୍ଡ ପାଣ୍ଡବ, ମଧ୍ୟମ ପାଣ୍ଡବ, ପାଷାଣ ଅର୍ଜୁନ, ହୟଗ୍ରୀବ, ଯୁଧିଷ୍ଠିର ହରଣ, ଭକ୍ତବୀର ତାମ୍ରଧ୍ୱଜ, ପାଶୁପତ, ରଘୁକୀର୍ତ୍ତି, ରାମାଭିଷେକ, ସତୀ ସୁରେଖା, ସତୀ ଉର୍ମିଳା ପ୍ରଭୃତି।

## ଶ୍ରୀ ଶରଚନ୍ଦ୍ର ପରିଡ଼ା (୧୯୫୧- ):

ଶରତଚନ୍ଦ୍ର ପରିଡ଼ାଙ୍କ ଜନ୍ମ ୧୯୫୧ ମସିହାରେ ଢେଙ୍କାନାଳ ଜିଲ୍ଲାର 'ବାଗୁଆଁ' ଠାରେ। ତାଙ୍କ ପିତାଙ୍କ ନାମ- ଗୋପାଳଚନ୍ଦ୍ର ପରିଡ଼ା। ଶ୍ରୀଯୁକ୍ତ ପରଡ଼ା ଶିକ୍ଷକତା ସହିତ କବିତା ରଚନାରେ ମନୋନିବେଶ କରି ଅନେକ କବିତା ରଚନା କରିଛନ୍ତି। ତାଙ୍କ

ପ୍ରକାଶିତ ଦୁଇଖଣ୍ଡ କବିତା ଗ୍ରନ୍ଥ ହେଲା- ଜନନୀ ଓ ଜନ୍ମଭୂମି (୧୯୯୫), ଚେତନା (୧୯୯୬) ।

**ଶ୍ରୀ କୃପାସାଗର ସାହୁ (୧୯୫୨- ):**

କୃପାସାଗର ସାହୁଙ୍କ ଜନ୍ମ ୧୯୫୨ ମସିହା ରେ ଢେଙ୍କାନାଳ ଜିଲ୍ଲାର 'ଜିରାଳ' ଗ୍ରାମରେ । ଶ୍ରୀଯୁକ୍ତ ସାହୁ ଭାରତୀୟ ରେଳ ବିଭାଗରେ ଜଣେ ଉଚ୍ଚ ପଦସ୍ଥ ଅଧିକାରୀ । ଚାକିରୀ ଜୀବନର ଅଧିକାଂଶ ସମୟ ତାଙ୍କର କଲିକତା ସହରରେ କଟିଛି । କଲିକତା ଅବସ୍ଥାନ କାଳରେ ଏକଦା ସେ ବଙ୍ଗଳାରୁ ପ୍ରକାଶିତ 'ପ୍ରତିବେଶୀ' ପତ୍ରିକାର ସଂପାଦକ ଥିଲେ । ସେ ଏକାଧାରରେ ଜଣେ କବି ଓ ଗାଳ୍ପିକ । ତାଙ୍କର ପ୍ରକାଶିତ କବିତା ସଂକଳନ ହେଲା- ଉପରେ ଫର୍ଗା ଆକାଶତଳେ ବସୁମାତା । ଏହାସହିତ 'Lilyland' ଶୀର୍ଷକ ଏକ ଇଂରାଜୀ କବିତା ମଧ ରହିଛି । ତାଙ୍କ ରଚିତ ଗଳ୍ପ ସଂକଳନ ହେଲା- ଜ୍ୟୋତି ଓ ତମସା, କାହାଣୀ-୧୯୯୮ । 'ଜ୍ୟୋତି ଓ ତମସା' ଏକ ସଫଳ ଗଳ୍ପ କୃତି । ଏଥିରେ ସନ୍ନିବିଷ୍ଟ ଗଳ୍ପ ଗୁଡ଼ିକ ବେଶ୍ ଜୀବନଧର୍ମୀ ଓ ବାସ୍ତବବାଦୀ । ସମାଜ ଓ ମଣିଷ ଜୀବନର ବିଭିନ୍ନ ସମସ୍ୟା, ସଂଘର୍ଷ ଓ ସଂଘାତର ଚିତ୍ର ଏହି ଗଳ୍ପ ଗୁଡ଼ିକ ଭିତରେ ପ୍ରକଟିତ । 'କାହାଣୀ-୧୯୯୮' ମଧ ଏକ ମନୋଜ୍ଞ ଗଳ୍ପ ଗ୍ରନ୍ଥ । ଏଥିରେ ୧୫ ଗୋଟି ଗଳ୍ପ ସ୍ଥାନିତ ହୋଇଛି । ସେଗୁଡ଼ିକ ହେଲା- କମଳା, ଅନ୍ୟ ଏକ ଦ୍ରୌପଦୀ, ଧନ୍ୟବାଦ ଭାରତ, ଭଅଁର, ଚଢ଼େଇ, ରୂପଜୀବୀ, ନିର୍ବାକ ପର୍ବତ, ଗଡ଼ଜୟ, ସାବ୍‌ଜା ଶୀଙ୍ଖୁ ବଣ, ଝଡ଼ ଓ ଝାଉଁବଣ, ସୁଡ଼ଙ୍ଗ, ଭୂଜଙ୍ଗ ଇତ୍ୟାଦି । ଏହି ସବୁ ଗଳ୍ପ ଗୁଡ଼ିକ ଜୀବନର ସତ୍ୟଶୀଳ ଅନୁଭବ, ଅନୁଭୂତି ରେ ଜାରିତ ଓ ରସାଣିତ । ଏହାସହିତ ଅବହେଳିତ ମାନବ ସମାଜ ପ୍ରତି ସଂପ୍ରୀତି ଓ ହେୟ, ଅବହେଳିତ ମଣିଷ ଜୀବନର ଜୟଗାନ କରାଯାଇଛି । ଶ୍ରୀଯୁକ୍ତ ସାହୁଙ୍କର 'ହଅ ଟିଇ ଟିଇ' ଏବଂ 'ନାଆଁ ମୋ ରେଳ ଗାଡ଼ି' ଶୀର୍ଷକ ଦୁଇଖଣ୍ଡ ଶିଶୁ ଉପଯୋଗୀ ରଚନା ମଧ ରହିଛି ।

**ଶ୍ରୀ ସୁଗ୍ରୀବର ସାହୁ (୧୯୫୨- ):**

ସୁଗ୍ରୀବର ସାହୁଙ୍କର ଜନ୍ମ ୧୯୫୨ ମସିହା ଏପ୍ରିଲ୍ ମାସ ୧ ତାରିଖରେ ଢେଙ୍କାନାଳ ଜିଲ୍ଲା ହିନ୍ଦୋଳ ସବ୍‌ଡ଼ିଭିଜନ ଅନ୍ତର୍ଗତ 'ମାଧପୁର' ଗ୍ରାମରେ । ତାଙ୍କ ପିତାଙ୍କ ନାମ- ଗଦାଧର ସାହୁ ଓ ମାତା- ଜାତକ ସାହୁ । ଶ୍ରୀଯୁକ୍ତ ସାହୁ ବୃତ୍ତିରେ ଜଣେ ଶିକ୍ଷକ ଥିଲେହେଁ, ଶିକ୍ଷକତା ସହିତ କାବ୍ୟ-କବିତା ରଚନାରେ ମନୋନିବେଶ କରିଥିଲେ । ଶ୍ରୀଯୁକ୍ତ ସାହୁ ଓଡ଼ିଆ କାବ୍ୟ-କବିତା ରଚନାର ପରଂପରା ଓ ପୂର୍ବସୂରୀଙ୍କ ଅନୁକରଣରେ

ନିଜ କାବ୍ୟ-କବିତାର ହର୍ମ୍ୟ ନିର୍ମାଣ କରିଛନ୍ତି । ଏହି ଅନୁକରଣ ଭିତରେହିଁ ତାଙ୍କ କବିତ୍ୱ ପ୍ରତିଭା ଶିଖର ଆରୋହଣର ପ୍ରୟାସ ଜାରିରଖିଛି । କବି ଉଭୟ ପରଂପରା ଓ ପୁରୋଦୃଷ୍ଟି ନେଇ ଅତୀତର ମହନୀୟ ଜୀବନଧାରା ସହିତ ସାଂପ୍ରତିକତାକୁ ସଂଯୋଗ କରିବାର କାବ୍ୟିକ ପ୍ରଚେଷ୍ଟା କରିଛନ୍ତି ।

କବିଙ୍କର ପ୍ରଥମ ପ୍ରକାଶିତ କବିତା ସଙ୍କଳନ ହେଲା- ଶିଳାଶୈବାଳ (୨୦୦୫) । ସ୍ରଷ୍ଟାର ମନଗହନର ଅବ୍ୟକ୍ତ ବେଦନା, ଭାବାନୁସଙ୍ଗ ଓ କାବ୍ୟାନୁଚିନ୍ତାର ସହଜ, ସରଳ, ସୁନ୍ଦର ପରିପ୍ରକାଶ ଏଥିରେ ଘଟିଛି । ଶୁଷ୍କ, ପ୍ରାଣହୀନ ଶିଳାଖଣ୍ଡର ଦେହରେ ସବୁଜ ଶୈବାଳର ଜୀବନ ସଂଚାର ପରି କବି ଆଧୁନିକ ସ୍ୱାର୍ଥ-ସର୍ବସ୍ୱ, ପରାଙ୍ଗପୁଷ୍ଟ, ତରଙ୍ଗ-ତଡ଼ିତ୍ ବିହୀନ ଅଥର୍ବ ଜୀବନରେ ଶୈବାଳର ସବୁଜ ସ୍ୱାକ୍ଷର ଆଙ୍କିବାକୁ ପ୍ରୟାସ କରିଛନ୍ତି । ଏହି କବିତା ସଙ୍କଳନଟିରେ ୪୧ ଗୋଟି କବିତା ସ୍ଥାନିତ ହୋଇଛି । ଏହି କବିତା ଗୁଡ଼ିକ ଭିତରେ ଆଧୁନିକ ସମାଜ ଓ ମଣିଷର ବସ୍ତୁବାଦୀ ନିଶା, ସ୍ୱାର୍ଥପରତା, ହୀନମନ୍ୟତା, ମାନବିକତାର ଅବକ୍ଷୟ, ନାରୀ ସମାଜ ଓ ନାରୀତ୍ୱର ଅଧୋଗତିର ଚିତ୍ରଣ ସହିତ ମଣିଷ ଜୀବନକୁ ଏହିସବୁ ଅବକ୍ଷୟ ଓ ଅଧୋଗତିରୁ ରକ୍ଷାକରିବାପାଇଁ କବି ପ୍ରୟାସ କରିଛନ୍ତି । କବି ଚାହିଁଛନ୍ତି- ଶାନ୍ତ, କାନ୍ତ, କମନୀୟ, ଶୈବାଳର ସବୁଜିମାଭରା ସୁନ୍ଦର ଭରପୂର ଉତ୍ତାଳ ଜୀବନଧାରା । ଶିଳାର ଶୈବାଳ ଅପାଙ୍‌କ୍ତେୟ, ଅଲୋଡ଼ା, ନଗଣ୍ୟ, ହେଲେହେଁ; ତା' ଭିତରେ ଯେଉଁ ମହତ୍ତର ଜୀବନୀ ସତ୍ତାର ସନ୍ଦେଶ ଭରିରହିଛି, ତାହା ମଣିଷ ସମାଜକୁ ଉଦ୍‌ବୁଦ୍ଧକରି ସଚେତିତ, ଜାଗ୍ରତ କରିବାପାଇଁ କବି ଆଶା ପୋଷଣ କରିଛନ୍ତି । ଯେଉଁଥିପାଇଁ କବିସତ୍ତା ପାଲଟି ଯାଇଛି- ସବୁଜ ଶୈବାଳରେ । କବି ଲେଖିଛନ୍ତି-

"ଶିଳାଦେହେ ଶୈବାଳ ମୁଁ  
ନାହିଁ ମୂଳ, ନାହିଁ ଡାଳ  
କ୍ଷୁଦ୍ରାଦପି କ୍ଷୁଦ୍ର ମୁହିଁ  
ଅପାଂକ୍ତେୟ ନଗଣ୍ୟ ଉଦ୍ଭିଦ  
ପ୍ରକୃତିର ପ୍ରତୀକୂଳ ପ୍ରବାହରେ  
ସଂଜୀବିତ ସତ୍ତା ମୋର । "(୧୬)

ଶୈବାଳର ସମୃଦ୍ଧ ଜୀବନୀସତ୍ତା ଓ ସବୁଜିମା ଦେଇ କବି ମଣିଷ ଜୀବନକୁ ମହତ୍ତର, ମହତ୍ତମ କରି ଗଢ଼ିତୋଳିବାର ସ୍ୱପ୍ନ ଦେଖିଛନ୍ତି । 'ତୃଷ୍ଣା ତଟିନୀ' (୨୦୦୭) କବିଙ୍କର

ଏକ କମନୀୟ କାବ୍ୟକୃତି । ଏହା ଏକ ପୌରାଣିକ ରଚନା । ତିନିଗୋଟି ନାରୀ ଚରିତ୍ରକୁ ନେଇ କବି ଏହି କାବ୍ୟର ହର୍ମ୍ୟ ନିର୍ମାଣ କରିଛନ୍ତି । ଭାରତୀୟ ସଭ୍ୟତା ଓ ସଂସ୍କୃତିର ମୂଳମନ୍ତ୍ର- ସେବା, ତ୍ୟାଗ ଓ ତପସ୍ୟା । ଏହାରି ମାଧ୍ୟମରେ ମଣିଷ ଆତ୍ମସାକ୍ଷାତକାର, ଈଶ୍ୱରଙ୍କ ସାନ୍ନିଧ୍ୟ ଲାଭ, ମୁକ୍ତି ବା ମୋକ୍ଷର ସନ୍ଧାନ କରିଥାଏ । କବି ପିଙ୍ଗଳା, ଉର୍ବଶୀ ଓ ତପତୀ- ଏହି ତିନିଗୋଟି ନାରୀ ଚରିତ୍ର ମାଧ୍ୟମରେ ଭାରତୀୟ ଉଚ୍ଚାଙ୍ଗ ଜୀବନଧାରା, ମହନୀୟ ତ୍ୟାଗ ଓ ଉଚ୍ଚଆଦର୍ଶର ପ୍ରକଟନ କରିଛନ୍ତି । ରକ୍ତ-ମାଂସରେ ଗଢ଼ା ମଣିଷର ଅନିତ୍ୟ ଶରୀର, ତା' ଦେହର ଆକର୍ଷଣ, କାମ-ବାସନାର ପ୍ରମତ୍ତତା ଯେ' ଅଳୀକ, କ୍ଷଣିକ ଅସାର- ଏହି ମହାସତ୍ୟ କବି ପିଙ୍ଗଳା ଏବଂ ଉର୍ବଶୀ ଚରିତ୍ର ମାଧ୍ୟମରେ ପ୍ରକଟିତ କରିଛନ୍ତି । ଏହି ଚରିତ୍ରମାନେ ସୌନ୍ଦର୍ଯ୍ୟ, କାମ-ବାସନା ଓ ଦେହଭୋଗର ତୃଷ୍ଣା ଭିତରେ ନର୍କର ଜୀବନ ବିତାଇଛନ୍ତି । ମାତ୍ର-ଏହି ଚରିତ୍ର ମାନେ ଯେତେବେଳେ ଅନୁଭବ କରିଛନ୍ତି- ଦେହଭୋଗର ଏହି ଦୁର୍ବାର ଆକର୍ଷଣ ତାଙ୍କୁ ଆତ୍ମତୃପ୍ତି ଓ ଆନନ୍ଦ ଦେଇପାରିନାହିଁ, ସେତେବେଳେ ସେମାନେ ସତ୍ୟ ଓ ଆନନ୍ଦର ସନ୍ଧାନ ପଥରେ ଗତି କରିଛନ୍ତି । ସେମାନେ ଖୋଜିଛନ୍ତି ନିଜର ଆତ୍ମସତ୍ତାକୁ, ଜୀବନର ମହାସତ୍ୟକୁ । ଆତ୍ମଶୁଦ୍ଧି ଓ ଆଧ୍ୟାତ୍ମ ଉତ୍ତରିତ ଜୀବନବୋଧର ଆକର୍ଷଣରେ ପିଙ୍ଗଳା ଓ ଉର୍ବଶୀ ପାର୍ଥିବତାର ମୋହ ତୁଟାଇଛନ୍ତି । ସେହିପରି ଭାନୁକନ୍ୟା 'ତପତୀ' ରାଜା ସମ୍ବରଣଙ୍କୁ ନିଜ ଆତ୍ମବଡ଼ିମା ଓ ଅହଂକାରର ଆବରଣ ଭିତରୁ ମୁକ୍ତ କରି ତାଙ୍କୁ ସେବା, ତ୍ୟାଗ, ତପସ୍ୟା ଓ ମାନବିକ ଆଦର୍ଶର ପଥ ଦେଖାଇଛନ୍ତି । ଏହି ଚରିତ୍ରମାନେ ସ୍ୱର୍ଗୀୟ ସୁଖ-ସମ୍ପଦ, ଦେହଭୋଗ ଓ ଐଶ୍ୱର୍ଯ୍ୟ ଲାଳସାକୁ ତୁଚ୍ଛ, ଅଳୀକ ବିବେଚନା କରି ଅମୃତ-ଆଲୋକ ଓ ମହତ୍ତର ସତ୍ୟର ସନ୍ଧାନ କରିଛନ୍ତି । ହୃଦୟରେ ଜାଗିଉଠିଛି-ଅନନ୍ତ ସହିତ ମିଳିତ ହେବାର ଆକାଂକ୍ଷା, ଚେତନାରେ ଜାଇଁ ଉଠିଛି ଉତ୍ତରିତ ଆଧ୍ୟାତ୍ମ ଅନୁଭବର ଉଦଗ୍ର ତୃଷ୍ଣା । ଯେଉଁଥିପାଇଁ କବି 'ପିଙ୍ଗଳା' ମୁହଁରେ ଶୁଣାଇଛନ୍ତି-

"ବିଷକନ୍ୟା ମୁଁ ବିଷମ ଗରଳ
　　　　ଦହନ ପାରେନା ସହି
ଅନ୍ତରରେ ଧାମୁଁ ଆସ ପ୍ରିୟତମ
　　　　ଆଶୀଷ କଣିକା ନେଇ ।" (୧୭)

କବି ପୌରାଣିକ ଚରିତ୍ର 'ଉର୍ବଶୀ'କୁ କାମବାସନା, ସୌନ୍ଦର୍ଯ୍ୟ ଓ ଦେହଭୋଗର ପ୍ରତୀକରୂପେ ଅଭିହିତ କରିଛନ୍ତି । 'ଉର୍ବଶୀ' ଥିଲେ ଇନ୍ଦ୍ରଙ୍କ ଦେବସଭାର ରାଜନର୍ତ୍ତକୀ ।

ମଣିଷର ପ୍ରେମ ପାଇଁ ସେ ସ୍ୱର୍ଗୀୟ ସୁଖ-ସଂପଦ. ଐଶ୍ୱର୍ଯ୍ୟକୁ ତୁଚ୍ଛ ମନେକରି ରାଜା ପୁରୁରବାଙ୍କୁ ବିବାହ କରିଥିଲେ । ପାଣ୍ଡବ ବୀର ପାର୍ଥ ଯେତେବେଳେ ଇନ୍ଦ୍ରଭବନରେ ଆତିଥ୍ୟଗ୍ରହଣ କରିଥିଲେ, ସେତେବେଳେ ଉର୍ବଶୀ ପାର୍ଥଙ୍କର ପ୍ରଣୟ ପ୍ରାର୍ଥୀନୀ ହୋଇ ନିରାଶ ହୋଇଥିଲେ । ପାର୍ଥ ଉର୍ବଶୀଙ୍କର ପ୍ରେମନିବେଦନକୁ ପ୍ରତ୍ୟାଖାନ କରିଥିଲେ । ସେହିପରି ଇନ୍ଦ୍ରସଭାରେ ପର୍ବତମୁନିଙ୍କ ହୃଦୟରେ କାମ-ବାସନା ବହ୍ନି ପ୍ରଜ୍ୱଳିତ କରିବାକୁ ଉଦ୍ୟମ କରି ଉର୍ବଶୀ ବିଫଳ ହୋଇଥିଲେ । ଉର୍ବଶୀଙ୍କର ସୌନ୍ଦର୍ଯ୍ୟ ମଦମତ୍ତତା ର ଅହଂକାର ବିନଷ୍ଟ ହୋଇଥିଲା । ସେ ମହତ୍ତମ ସତ୍ୟର ସନ୍ଧାନରେ ବ୍ରତୀ ହୋଇଥିଲେ ।

ବାସ୍ତବରେ 'ତୃଷ୍ଣାତଟିନୀ' କବିଙ୍କର ଏକ ମହାର୍ଘ କଳାସୃଷ୍ଟି । ଭୋଗ ଅପେକ୍ଷା ତ୍ୟାଗ, ଦେହ ଅପେକ୍ଷା ବିଦେହ, ପାପ ଅପେକ୍ଷା ପୂଣ୍ୟ ର ମହତ୍ତ୍ୱ ଏଥିରେ ପ୍ରକଟିତ ହୋଇଛି । ଦେହଭୋଗର ତୃଷ୍ଣା ରୂପାନ୍ତରିତ ହୋଇଛି ଆତ୍ମ ଭୋଗର ତୃଷ୍ଣାରେ । 'ତଟିନୀ'ର ମହାସାଗର ସହିତ ମିଳିତ ହେବାର ଯେଉଁ ତୃଷ୍ଣା, ଯେଉଁ ଉତ୍କଣ୍ଠା ତା' ଭିତରେ ଦେଇ କବି ମଣିଷ ଜୀବନର ଅନନ୍ତପ୍ରତି ଦୁର୍ବାର ଆକର୍ଷଣ ଏବଂ ଉତ୍ତରିତ ମହନୀୟ ଜୀବନ ବୋଧର ଉଦାତ୍ତଚିତ୍ର ପ୍ରକଟନର ପ୍ରୟାସ କରିଛନ୍ତି ।

**ନନ୍ଦିକେଶ୍ୱରୀ ନାଥ (୧୯୫୩- ):**

ନନ୍ଦିକେଶ୍ୱରୀ ନାଥଙ୍କର ଜନ୍ମ ୧୯୫୩ ମସିହା ଫେବୃୟାରୀ ମାସ ୧୭ ତାରିଖରେ । ନନ୍ଦିକେଶ୍ୱରୀ ଢେଙ୍କାନାଳ ଚନ୍ଦନ ବଜାରସ୍ଥ ଶ୍ରୀ ତପନ କୁମାର ନାଥଙ୍କୁ ବିବାହ କରିଛନ୍ତି । ଶ୍ରୀମତୀ ନାଥ ଜଣେ କବୟିତ୍ରୀ ରୂପରେ ନିଜର ସିଦ୍ଧି ଓ ସଫଳତା ଅର୍ଜନ କରିପାରିଛନ୍ତି । ତାଙ୍କର ଦୁଇଖଣ୍ଡ କବିତା ସଂକଳନ ଓ ଖଣ୍ଡିଏ ରାମାୟଣ ଗ୍ରନ୍ଥ ପ୍ରକାଶିତ ହୋଇଛି । ସେଗୁଡ଼ିକ ହେଲା- ପ୍ରତ୍ୟାଶା(୨୦୦୬, ପ୍ରତୀତି (୨୦୧୦) ଏବଂ ଲଘୁ ରାମାୟଣ (୨୦୧୨) ।

**ପ୍ରତ୍ୟାଶା (୨୦୦୬):** ଏହି କବିତା ସଂକଳନଟିରେ ୫୦ ଗୋଟି କ୍ଷୁଦ୍ର କ୍ଷୁଦ୍ର କବିତା ସ୍ଥାନିତ ହୋଇଛି । ଏଥିରେ ସନ୍ନିବିଷ୍ଟ କବିତା ଗୁଡ଼ିକରେ ସ୍ରଷ୍ଟାପ୍ରାଣର ଆତ୍ମିକ ଅଭୀପ୍ସା, ପ୍ରାଣର ଆକୁଳତା, ହୃଦୟର ସକଳ ଭାବାବେଗ ବେଶ୍ ସରଳ, ସାବଲୀଳ ଭାବରେ ଫୁଟିଉଠିଛି । ଏହା ସହିତ ଈଶ୍ୱରପ୍ରାଣତା, ନିଷ୍କପଟ ଭକ୍ତିଭାବନା, ଆତ୍ମନିବେଦନ ଓ ଆତ୍ମ ସମର୍ପଣର ବିମଳ ପ୍ରତ୍ୟାଶା ଫୁଟିଉଠିଛି ।

**ପ୍ରତୀତି (୨୦୧୦):** ଏହି ସଂକଳନଟିରେ ୯୧ ଗୋଟି କବିତା ସ୍ଥାନିତ ହୋଇଛି । ଏହି କବିତା ଗୁଡ଼ିକ ଭିତରୁ କେତେକ ଆଧ୍ୟାତ୍ମିକ ଭାବଚେତନା ଓ ଈଶ୍ୱରପ୍ରାଣତାରେ

ତଲ୍ଲୀନ ତ' ଆଉକେତେକ କବିତା ଶିଶୁ ମନର ସରଳ-ନିଷ୍କପଟ ଭାବନା ଓ ଶିଶୁ ମାନସିକତାକୁ ନେଇ ରସୋଚ୍ଛଳ । ଏହା ସହିତ ମଣିଷର ସକଳ ଭାବାବେଗ, ଆଶା-ଆକାଙ୍‌କ୍ଷା ଓ ପ୍ରାଣବାଣୀ ଏହି କବିତା ଗୁଡ଼ିକରେ ଫୁଟିଉଠିଛି ।

**ଲଘୁରାମାୟଣ (୨୦୧୨):** ଏହା ଏକ ରାମାୟଣ ଗ୍ରନ୍ଥ । ବାଲ୍ମୀକି ରାମାୟଣର ଆଦର୍ଶରେ ଏହି ଗ୍ରନ୍ଥଟି ରଚିତ । ମୂଳ ରାମାୟଣର ବିଷୟବସ୍ତୁ, ଚରିତ୍ର ଓ ଘଟଣାବଳୀକୁ କବି ଏଥିରେ ସଂକ୍ଷିପ୍ତ ରୂପରେ କାବ୍ୟରୂପ ଦେଇଛନ୍ତି । ଏଥିରେ ଆଦ୍ୟକାଣ୍ଡ, ଅଯୋଧାକାଣ୍ଡ, ଆରଣ୍ୟକ କାଣ୍ଡ, କିଷ୍କିନ୍ଧ୍ୟା କାଣ୍ଡ, ସୁନ୍ଦରକାଣ୍ଡ, ଲଙ୍କାକାଣ୍ଡ, ଉତ୍ତରାକାଣ୍ଡ ର ବିଷୟବସ୍ତୁର ବର୍ଣ୍ଣନା ସହିତ ରାମାୟଣର ମହିମା, ଆଧାତ୍ମିକ ଚେତନା ଓ ଭକ୍ତିଭାବନା ପ୍ରକଟିତ ହୋଇଛି ।

## କାମିନୀ ରଥ (୧୯୫୩- ):

କାମିନୀ ରଥଙ୍କର ଜନ୍ମ ୧୯୫୩ ମସିହାରେ ଢେଙ୍କାନାଳର ମୁକ୍ତାଦେଇପୁର ଶାସନରେ । ସେ ଢେଙ୍କାନାଳ, ଷ୍ଟେସନ୍ ରୋଡ଼ ନିବାସୀ ଶ୍ରୀଯୁକ୍ତ ରମାକାନ୍ତ ରଥଙ୍କୁ ବିବାହ କରିଛନ୍ତି । କାମିନୀ ରଥଙ୍କର ବୃତ୍ତି ଶିକ୍ଷକତା ହେଲେହେଁ କବିତା ରଚନାପ୍ରତି ତାଙ୍କର ରୁଚି ଓ ଅନୁରାଗ ରହିଛି । ତାଙ୍କ ରଚିତ ସାରସ୍ୱତ କୃତି ଗୁଡିକ ହେଲା- ସ୍ୱପ୍ନଭିଜା ରାତ୍ରିର ପ୍ରୀତି, ଭିନ୍ନ ସ୍ରୋତ, ଲାଲ୍ ପରୀ-ନୀଳଛତା, ପ୍ରତ୍ୟୁଷର ପ୍ରତ୍ୟୟ । ଏହିସବୁ ସୃଷ୍ଟିସମ୍ଭାର ଭିତରେ ସ୍ରଷ୍ଟା ହୃଦୟର ସ୍ୱପ୍ନ ଓ ପ୍ରେମପ୍ରବଣତା, ପ୍ରାଣର ଆବେଗିକ ଅଃଶା, ଆକାଙ୍‌କ୍ଷା ବେଶ୍ ରସୋଚ୍ଛଳ ଭାବରେ ଝରିଆସିଛି । ଶ୍ରୀମତୀ ରଥଙ୍କର ଏକ ମନୋଜ୍ଞ କବିତା ସଂକଳନ ହେଲା- 'ସ୍ୱପ୍ନଭିଜା ରାତ୍ରିର ପ୍ରୀତି' । ଏହି କବିତା ସଂକଳନ ଟି ରୋମାଣ୍ଟିକ୍ ଚେତନାଧର୍ମୀ । ଏଥିରେ ସ୍ରଷ୍ଟାଜୀବନର ରୋମାଣ୍ଟିକ୍ ଆବେଗାନୁଭୂତି ସହିତ ସ୍ୱପ୍ନ ଓ ବାସ୍ତବତାର ମଧୁର ମିଳନ ଘଟିଛି । ଏହି ସଂକଳନଟିରେ ୪ ଗୋଟି ଉପଶୀର୍ଷକ ରହିଛି । ସେଗୁଡ଼ିକ ହେଲା- ରାତ୍ରି ଓ ଜହ୍ନ, ସ୍ମୃତି ଓ ସ୍ୱପ୍ନ, ଋତୁ ଓ ସମ୍ପର୍କ, ରେଖା ଓ ବହ୍ନି । ଏହି ପ୍ରତିଟି ଶୀର୍ଷକରେ କେତେଗୁଡ଼ିଏ କବିତା ସନ୍ନିବିଷ୍ଟ ହୋଇଛି । ରାତ୍ରି ଓ ଜହ୍ନ ଶୀର୍ଷକରେ ସନ୍ନିବିଷ୍ଟ କବିତା ଗୁଡ଼ିକରେ ସ୍ରଷ୍ଟାହୃଦୟର ରୋମାଣ୍ଟିକ୍ ଭାବନା, ପ୍ରେମାନୁଭବ ଓ ପ୍ରୀତିର ମାଦକତା ଅତି ରସମୟ ଭାବରେ ପ୍ରକଟିତ ହୋଇଛି । ସ୍ମୃତି ଓ ସ୍ୱପ୍ନ ଶୀର୍ଷକରେ ଅତୀତ ପ୍ରେମିଳ ସ୍ମୃତିର ମାଦକତା, ହୃଦୟର ପ୍ରୀତିମୟ ଆକର୍ଷଣ, ସ୍ୱପ୍ନିଳ କାମନା ଓ ସ୍ୱପ୍ନଭିଜା ରାତ୍ରିର ମାଦକତା ଫୁଟିଉଠିଛି । ଋତୁ ଓ ସମ୍ପର୍କ ଶୀର୍ଷକରେ ଆଷାଢ଼ର ବର୍ଷାଭିଜା ପ୍ରୀତିର ମାଦକତା, ବର୍ଷାର ପ୍ରୀତିମୟ ସଂଗୀତ, ଫଗୁଣର ମତୁଆଲାସଞ୍ଜ, ବସନ୍ତର ଅପୂର୍ବ

ମାଦକତା, ବୈଶାଖୀର ବିରହ ଜ୍ୱାଳା ପ୍ରକଟିତ ହୋଇଛି । ସେହିପରି 'ରେଖା ଓ ବହ୍ନି' ଶୀର୍ଷକରେ କବିପ୍ରାଣ ବେଶ୍ ଜୀବନଧର୍ମୀ ଓ ବାସ୍ତବବାଦୀ ହୋଇଉଠିଛି । ଏହାସହିତ କବି ସମୟ ଓ ମୃତ୍ୟୁପ୍ରତି ମଧ ସଚେତନଶୀଳ ହୋଇଉଠିଛନ୍ତି । ମହାକାଳର ଅଲଘଂ୍ୟ ମୃତ୍ୟୁ ଫାଶରୁ ମଣିଷ ସମାଜକୁ ରକ୍ଷାକରିବାପାଇଁ ଅନ୍ତରରେ ଅନନ୍ତର ପ୍ରେରଣା, ଆଧାତ୍ମିକ ଅନ୍ୱେଷା ଓ ଈଶ୍ୱର ସାନ୍ନିଧ ଉପରେ ଗୁରୁତ୍ୱ ଦେଇଛନ୍ତି । ବାସ୍ତବରେ ଏହି କବିତା ସଂକଳନଟି ଏକ ଅଧାତ୍ମ ଉତ୍ତରିତ କଳାସୃଷ୍ଟି ।

**ଶ୍ରୀ ପ୍ରେମାନନ୍ଦ ରାଉତ (୧୯୫୩- ):**

ପ୍ରେମାନନ୍ଦ ରାଉତଙ୍କ ଜନ୍ମ ୧୯୫୩ ମସିହାରେ ଢେଙ୍କାନାଳ ଜିଲ୍ଲାର 'ତିଳପଦା' ଠାରେ । ତାଙ୍କ ପିତାଙ୍କ ନାମ-ସଦାନନ୍ଦ ରାଉତ ଓ ମାତା-ବାସନ୍ତୀ ଦେବୀ । ଶ୍ରୀଯୁକ୍ତ ରାଉତ ବୃତ୍ତିରେ ଜଣେ ଶିକ୍ଷକ । ଶିକ୍ଷକତା ସହିତ ସେ ସାହିତ୍ୟ ରଚନାରେ ସିଦ୍ଧହସ୍ତ । ତାଙ୍କ ରଚନା ଗୁଡ଼ିକ ମୁଖ୍ୟତଃ ଶିକ୍ଷଣୀୟ, ଶିଶୁ ଉପଯୋଗୀ ଏବଂ ମନୋରଞ୍ଜନଧର୍ମୀ । ତାଙ୍କ ରଚନା ଗୁଡ଼ିକ ହେଲା- ପହିଲି ଅର୍ଘ୍ୟ, ସାକ୍ଷର ସଂଗୀତ, ପିଲାଙ୍କ ବାରମାସୀ, ସରଗ ସୁନ୍ଦରୀ, ସତୀ ବୃନ୍ଦାବତୀ, ସତୀ ଶ୍ରୀରାଧା, ସାକ୍ଷର ହେଉ ଆମରି ଗାଁ, ଭଜନମାଳା ପ୍ରଭୃତି ।

**ସରଗ ସୁନ୍ଦରୀ (୧୯୯୦):** ଏହା ଏକ କିମ୍ବଦନ୍ତୀ ଆଧାରିତ କାବ୍ୟ । ଢେଙ୍କାନାଳ ଜିଲ୍ଲା ର ଲୋକ କଥିତ 'ବରକନ୍ୟା ପାହାଡ଼' ର କିମ୍ବଦନ୍ତୀ ଓ ଐତିହାସିକ ତଥ୍ୟ କୁ ଆଧାର କରି କବି ଏହି କାବ୍ୟଟି ରଚନା କରିଛନ୍ତି । ଏହି କାବ୍ୟଟି ଛଅଗୋଟି ଚକ୍ର ବା ଛାନ୍ଦ ବିଷିଷ୍ଟ । ରୀତିଯୁଗୀୟ କାବ୍ୟଶୈଳୀରେ 'ଶ', 'ସ', ଆଦ୍ୟଅକ୍ଷର ନିୟମ ଓ ଅନୁପ୍ରାସ ଅଳଂକାରରେ ଏହି କାବ୍ୟଟି ରଚିତ । ଏହି କାବ୍ୟର ମୁଖ୍ୟ ନାୟକ ଲଳିତ ଓ ନାୟିକା - ଲଳିତା । ଏ ଦୁଇ ଚରିତ୍ର ସ୍ୱର୍ଗପୁରରୁ ଶାପଗ୍ରସ୍ତ ହୋଇ ମର୍ତ୍ତ୍ୟରେ ଜନ୍ମ ଗ୍ରହଣ କରିଥିଲେ । ନାୟକ-ନାୟିକା ବିବାହ ପରେ ଯେତେବେଳେ ମଧୁଶଯ୍ୟା ରେ ମିଳିତ ହୋଇଛନ୍ତି, ସେତେବେଳେ ସେମାନେ ଶାପଗ୍ରସ୍ତ କାରଣରୁ ଅନ୍ତର୍ଦ୍ଧ୍ୟାନ ହୋଇଯାଇଛନ୍ତି । ବର-କନ୍ୟାଙ୍କର ଏହି ଅଲୌକିକ ଅନ୍ତର୍ଦ୍ଧ୍ୟାନ ଘଟଣାବଳୀକୁ କବି ଏଥିରେ କାବ୍ୟରୂପ ଦେଇଛନ୍ତି ।

**ଶ୍ରୀ ପରେଶ ଚନ୍ଦ୍ର ପଟ୍ଟନାୟକ (୧୯୫୪- ):**

ପରେଶ ଚନ୍ଦ୍ର ପଟ୍ଟନାୟକଙ୍କର ଜନ୍ମ ୧୯୫୪ ମସିହା ଏପ୍ରିଲ୍ ମାସ ୧୦ ତାରିଖରେ ଢେଙ୍କାନାଳ ସହରସ୍ଥିତ 'ଦେଉଳସାହି' ଠାରେ । ତାଙ୍କ ପିତାଙ୍କ ନାମ- ଶ୍ରୀ ରାଜକିଶୋର ପଟ୍ଟନାୟକ ଓ ମାତା- ରଙ୍ଗବତୀ ପଟ୍ଟନାୟକ । ପିତା ରାଜକିଶୋର

ପଟ୍ଟନାୟକଙ୍କର ମହାନ୍ ସାରସ୍ୱତ ପ୍ରତିଭାର ବର୍ଣ୍ଣବିଭା ପରେଶ ଚନ୍ଦ୍ର ଙ୍କ ଜୀବନକୁ ପ୍ରଭାବନ୍ତ କରିଥିଲା । ଯା' ଫଳରେ ସେ ସାହିତ୍ୟ ସାଧନା କ୍ଷେତ୍ରରେ ନିଜର ଅସ୍ତିତ୍ୱ ଓ ଦକ୍ଷତା ପ୍ରତିପାଦନ କରିପାରିଥିଲେ । ସେ ଏକାଧାରରେ ଜଣେ କବି, କଳାକାର, ସୁଦକ୍ଷ ଶିଳ୍ପୀ ଓ ଦକ୍ଷ କଳା ଶିକ୍ଷକ । ଜଣେ କବି ରୂପରେ ସେ ଅନେକ କବିତା ଲେଖିଛନ୍ତି, ଜଣେ କଳାକାର ହିସାବରେ ସେ ନାଟକ ଅଭିନୟ ସହିତ ନିଜର କଳାନୈପୁଣ୍ୟର ପ୍ରଦର୍ଶନ କରିଛନ୍ତି; ଏହା ସହିତ ସେ ଚଳଚିତ୍ର କ୍ଷେତ୍ରରେ ମଧ ନିଜର ପାରଦର୍ଶୀତା ପ୍ରକଟନ କରିପାରିଛନ୍ତି । ନାଟକ ରଚନା, ଗଳ୍ପ ରଚନା, ପ୍ରବନ୍ଧ ରଚନା ଓ ବିଭିନ୍ନ ଗ୍ରନ୍ଥ ର ସଂପାଦନା କରି ସେ ନିଜ ସାରସ୍ୱତ ପ୍ରତିଭାର ଚରମ ନିଦର୍ଶନ ଦେଖାଇପାରିଛନ୍ତି । ପରେଶଚନ୍ଦ୍ର ପଟ୍ଟନାୟକଙ୍କ ରଚିତ ସାରସ୍ୱତ କୃତି ଗୁଡ଼ିକ ହେଲା- କବିତା-୨୦୦୦, ଲୁହୁପିଙ୍କ ମଜା-କବିତା, ଭକ୍ତ ଦଶାନନ(ନାଟକ), ପାନ୍ଥଶାଳାର ଶେଷଅଶ୍ରୁ (ନାଟକ), ଅଦାଲତ, ବାଘ, ଧୂଆଁ, ସାଗରସୁତ, କିଛି ଗଳ୍ପ କିଛି ସ୍ମୃତି, ଅଭୁଲା ସ୍ମୃତି (ପ୍ରବନ୍ଧ), ଜୀବନୀ ପ୍ରବାହ (ଜୀବନୀ), ଝଡ଼ (ଉପନ୍ୟାସ), ରଙ୍ଗବତୀ (ଉପନ୍ୟାସ) ପ୍ରଭୃତି ।

**କବିତା-୨୦୦୦(୨୦୦୦):** ଏହା ଏକ ମନୋଜ୍ଞ କବିତା ସଂକଳନ । ଏଥିରେ ୫୮ ଗୋଟି କ୍ଷୁଦ୍ର କ୍ଷୁଦ୍ର କବିତା ସ୍ଥାନିତ ହୋଇଛି । ଏହି କବିତା ଗୁଡ଼ିକ ବହୁ ଭାବ, ରସ ଓ ରଙ୍ଗରେ ଶବଳିତ । ଏହି କବିତା ଗୁଡ଼ିକରେ ସ୍ରଷ୍ଟା ଜୀବନର ନିଛକ ଜୀବନାନୁଭୂତି ସହିତ କବି ହୃଦୟର ସକଳ ଭାବାବେଗ ଓ ଭକ୍ତିଭାବନା ଅତି ଶୁଭ୍ର, ସରସ, ସୁନ୍ଦର ଭାବରେ ଝରିଆସିଛି ।

**ଲୁହୁପିଙ୍କ ମଜା କବିତା(୨୦୧୦):** ଏହା ଏକ ଯୁଗ୍ମ କବିତା ସଂକଳନ । କବି ପରେଶ ପଟ୍ଟନାୟକ ଓ ସୁମିତା ରାୟ ପଟ୍ଟନାୟକଙ୍କର ଏହା ଏକ ମିଳିତ ସୃଷ୍ଟି । ଏଥିରେ ସନ୍ନିବିଷ୍ଟ କବିତା ଗୁଡ଼ିକ ବେଶ୍ ଶିକ୍ଷଣୀୟ ଓ ଶିଶୁ ମନୋପଯୋଗୀ । ପ୍ରକୃତି, ପରିବେଶ ଓ ଜୀବନ ସଂପର୍କୀତ ବହୁ ଶିକ୍ଷଣୀୟ, ଜ୍ଞାନଗର୍ଭକ ତଥ୍ୟ ଓ ଉପାଦାନ ଏହି କବିତା ଗୁଡ଼ିକରେ ସ୍ଥାନିତ ହୋଇଛି ।

**ଭକ୍ତ ଦଶାନନ (୧୯୯୬):** ଏହା ଏକ ପୌରାଣିକ ନାଟକ । ଦୁଇଗୋଟି ଅଙ୍କ ସମ୍ବଳିତ ଏହି ଛୋଟ ନାଟକଟି ଗୀତିନାଟ୍ୟ ଶୈଳୀରେ ରଚିତ ହୋଇଛି ।

**ପାନ୍ଥଶାଳାର ଶେଷ ଅଶ୍ରୁ (୧୯୯୬):** ଏହା ଏକ ସାମାଜିକ ନାଟକ । ସାତଗୋଟି ଦୃଶ୍ୟ ସମ୍ବଳିତ ଏହି ନାଟକରେ ୧୦ ଗୋଟି ଚରିତ୍ର ରହିଛନ୍ତି । ମଣିଷ ଓ ସମାଜ ଜୀବନର ବିଭିନ୍ନ ଅଭାବବୋଧ, ଅସହାୟତା ଓ ବେଦନାବୋଧର ଚିତ୍ର ଏହି ନାଟକଟିରେ ପ୍ରକଟିତ ।

**ଅଦାଲତ (୨୦୦୭):** ଏହା ଏକ ସମାଜ ସଚେତନମୂଳକ ସଫଳ ବ୍ୟଙ୍ଗ ଧର୍ମୀ ନାଟକ । ଛ'ଅ ଗୋଟି ଦୃଶ୍ୟ ସମ୍ବଳିତ ଏହି ନାଟକର ଚରିତ୍ର ଚିତ୍ରଶାଳାରେ ନ'ଅ ଗୋଟି ଚରିତ୍ର ଆତଯାତ ହୋଇଛନ୍ତି । ଆଧୁନିକ, ବସ୍ତୁବାଦୀ, ସ୍ୱାର୍ଥକୈନ୍ଦ୍ରିକ ମଣିଷ କିପରି ନିଜର ଧୂର୍ତ୍ତ ବୁଦ୍ଧି, ଶଠବିଦ୍ୟା ଓ ଚତୁରତାବଳରେ ଅସତ୍, ଅନ୍ୟାୟ ଉପାୟରେ ସବୁକିଛି ହାସଲ କରିପାରୁଛି; ସେହି କଥା ନାଟ୍ୟକାର ଏଥିରେ ଦର୍ଶାଇଛନ୍ତି । ମର୍ତ୍ତ୍ୟର ମଣିଷ ନିଜର ଚତୁରତା ଓ ଧୂର୍ତ୍ତବୁଦ୍ଧି ବଳରେ କିପରି ମୃତ୍ୟୁଲୋକରେ ନର୍କ ଯନ୍ତ୍ରଣା ଭୋଗ କରିବା ପରିବର୍ତ୍ତେ, ସ୍ୱର୍ଗ-ସୁଖ ଲାଭ କରୁଛି, ତା'ର ବ୍ୟଙ୍ଗାତ୍ମକ ଚିତ୍ର ନାଟ୍ୟକାର ଦେଇଛନ୍ତି । ମୋଟାମୋଟି ଭାବରେ କଳଙ୍କିତ ରାଜନୀତି ଓ ଭ୍ରଷ୍ଟ ରାଜନେତାଙ୍କର ବାସ୍ତବ ଜୀବନ ଚିତ୍ର ଏହି ନାଟକରେ ଫୁଟିଉଠିଛି ।

**ବାଘ (୨୦୦୭):** ଏହା ଗୋଟିଏ ସେଟ୍‌ରେ ଅଭିନୀତ ଏକ ଛୋଟ ନାଟକ । ଏହା ଏକ ପ୍ରତୀକ ଧର୍ମୀ ନାଟକ । ଏହି ନାଟକର ଚରିତ୍ର ଗ୍ୟାଲେରୀ ରେ ୧୦ ଗୋଟି ଚରିତ୍ର ନିଜର ଅଭିନୟ ପ୍ରଦର୍ଶିତ କରିଛନ୍ତି । ମଣିଷର ବୃଥା ଆସ୍ଫାଳନ, ଆତ୍ମବଡ଼ିମା ଓ ଅହଂକାର କିପରି ତାକୁ ବିନାଶ ଆଡ଼କୁ ଟାଣିନିଏ, ସେହି କଥା ନାଟ୍ୟକାର ଏଥିରେ ସୂଚାଇଛନ୍ତି । ହିଂସ୍ର ବ୍ୟାଘ୍ର ଉପରେ ସବାର ହେବାର ଯେଉଁ ଅଦ୍ଭୁତ ଖିଆଲ ଓ ଅହମିକାପୂର୍ଣ୍ଣ ଅଭିଳାଷ ତାହା ମଣିଷକୁ ମୃତ୍ୟୁ ଆଡ଼କୁ ଟାଣିନିଏ । ଏହି କଥା ନାଟ୍ୟକାର ଏହି ନାଟକରେ ସୂଚିତ କରିଛନ୍ତି ।

**ଧୂଆଁ (୨୦୦୭):** ଏହା ମଧ ଏକ ସାମାଜିକ ନାଟକ । ଦୃଶ୍ୟ ବିଭାଜନ ବିହୀନ ଏହା ଏକ ଛୋଟ ନାଟକ । ଏଥିରେ ୧୨ ଗୋଟି ଚରିତ୍ର ରହିଛନ୍ତି । ପାରିବାରିକ ଜୀବନର ଦ୍ୱନ୍ଦ୍ୱ, କଳହ ଓ ସନ୍ଦେହ କିପରି ମଣିଷର ପାରିବାରିକ ଜୀବନକୁ ଦୁର୍ବହ, ଦୁର୍ବିସହ ଓ ଯନ୍ତ୍ରଣାଦଗ୍ଧ କରେ, ତାହା ଏହି ନାଟକଟିରେ ସୂଚିତ ।

**ସାଗର ସୁତ :** ଏହା ଏକ ପୌରାଣିକ ନାଟକ । ପୁରାଣର କଥାବସ୍ତୁ ଓ ଚରିତ୍ରକୁ ନେଇ ଏହି ନାଟକ ଟି ଗୀତିନାଟ୍ୟ ଶୈଳୀରେ ରଚିତ । ଏହି ନାଟକଟିରେ ୧୦ ଗୋଟି ଦୃଶ୍ୟ ଏବଂ ୧୩ ଗୋଟି ଚରିତ୍ର ରହିଛନ୍ତି । ପୁରାଣ ବର୍ଣ୍ଣିତ ଜଳନ୍ଧର ବଧ ପ୍ରସଙ୍ଗ ହିଁ ଏହି ନାଟକର ମୁଖ୍ୟ ବିଷୟବସ୍ତୁ ।

**କିଛି ଗଳ୍ପ କିଛି ସ୍ମୃତି (୨୦୦୩):** ଏହି ଗ୍ରନ୍ଥଟିରେ ୨୧ ଗୋଟି ଗପର ସମାହାର ଘଟିଛି । ସ୍ରଷ୍ଟା ନିଜ ଜୀବନର ନିଛକ ଅନୁଭବ, ଅନୁଭୂତି ଓ ଆବେଗିକ ଆଲୋଡ଼ନକୁ ଗପଛଳରେ ପରିପ୍ରକାଶ କରିଛନ୍ତି । ଏହି ଗପ ଗୁଡ଼ିକ ବେଶ୍ ଜୀବନୀ ଧର୍ମୀ ଓ ଆବେଗିକ ହୋଇଛି ।

**ଅଭୁଲା ସ୍ମୃତି (୨୦୧୧):** ଏହି ଗ୍ରନ୍ଥଟି ୧୬ ଗୋଟି ଲଘୁ ପ୍ରବନ୍ଧର ଏକ ମନୋଜ୍ଞ ସମାହାର । ଏଥିରେ ଢେଙ୍କାନାଳର ଅତୀତର ଐତିହ୍ୟ, ପରଂପରା, ମହନୀୟ ଜୀବନବୋଧର ପ୍ରକଟନ ସହିତ ଏ ମାଟିର କେତେକ ମହନୀୟ ଚରିତ୍ରମାନଙ୍କର ସ୍ମୃତିଚାରଣା କରାଯାଇଛି ।

**ଜୀବନୀପ୍ରବାହ (୨୦୧୩):** ଏହା ମଧ୍ୟ ଏକ ଲଘୁ ପ୍ରବନ୍ଧ ସଂକଳନ । ଏଥିରେ ଢେଙ୍କାନାଳ ମାଟିର କେତେକ ମହୀୟାନ୍ ଚରିତ୍ର ମାନଙ୍କ ସହିତ ଓଡ଼ିଶାର କତିପୟ ମହାନ୍ କବି, ସାଧକ ଓ ମହାପୁରୁଷଙ୍କ ଜୀବନୀ କାହାଣୀ ପ୍ରବନ୍ଧରୂପରେ ସ୍ଥାନିତ ହୋଇଛି ।

**ସନ୍ଧ୍ୟା ମହାନ୍ତି (୧୯୫୪- ):**

ସନ୍ଧ୍ୟା ମହାନ୍ତିଙ୍କର ଜନ୍ମ ୧୯୫୪ ମସିହା ଏପ୍ରିଲ୍ ମାସ ୧୧ ତାରିଖରେ । ତାଙ୍କ ପିତାଙ୍କ ନାମ-ପ୍ୟାରୀମୋହନ ମହାନ୍ତି ଓ ମାତା-ନିରନ୍ ମହାନ୍ତି । ଢେଙ୍କନାଳ ଦୋଳମଣ୍ଡପ ସାହିର କୃତ୍ତିବାସ ପଟ୍ଟନାୟକଙ୍କୁ ସେ ବିବାହ କରିଛନ୍ତି । ଶ୍ରୀମତୀ ମହାନ୍ତି ବୃତ୍ତିରେ ଜଣେ ଶିକ୍ଷୟିତ୍ରୀ । ଶିକ୍ଷକତା ସହିତ ସେ ସାହିତ୍ୟ ସାଧନାରେ ମଧ୍ୟ ବ୍ରତୀ ରହିଛନ୍ତି । ସେ ଜଣେ ବହୁମୁଖୀ ପ୍ରତିଭାର ଅଧିକାରିଣୀ । କବିତା ଗଳ୍ପ, ଉପନ୍ୟାସ, ନାଟକମାନ ରଚନାକରି ସେ ନିଜର ସାରସ୍ୱତ ପ୍ରତିଭାର ପ୍ରକଟନ କରିପାରିଛନ୍ତି । ତାଙ୍କରଚିତ କବିତା କୃତି ଗୁଡ଼ିକ ହେଲା- ପିପାସା, ନିର୍ଝର, ପ୍ରକୃତିର ସନ୍ଧ୍ୟା, ବସନ୍ତ, ଜୀବନ ଦର୍ଶନ, ଶିଶୁଗୀତି ପ୍ରଭୃତି । ତାଙ୍କ ରଚିତ ନାଟ୍ୟ କୃତି ଗୁଡ଼ିକ ହେଲା- ପୁନରାବୃତ୍ତି, ଶକ୍ତି, ପାଷାଣ ଆଖିର ଲୁହ, ଧର୍ମ-ଅଧର୍ମ ପ୍ରଭୃତି । ଏହା ସହିତ ଗଳ୍ପ ସଂକଳନ- କଥାକୁହା ନଈ ଏବଂ ଦୁଇଖଣ୍ଡି ଉପନ୍ୟାସ- ଭିନ୍ନ ସ୍ୱର, ଫୁଲର ବିଳାପ ମଧ୍ୟ ସେ ରଚନା କରିଛନ୍ତି । ଏହିସବୁ ସାରସ୍ୱତ କୃତି ଗୁଡ଼ିକ ଭିତରେ ସ୍ରଷ୍ଟା ବ୍ୟକ୍ତି ଓ ସମାଜ ଜୀବନର ବିଭିନ୍ନ ସମସ୍ୟା ଓ ସଂକଟର ରୂପାୟନ ସହିତ ମାନବିକ ଆଶା, ଆକାଙ୍‌କ୍ଷା, ସ୍ୱପ୍ନ ଓ ଭାବପ୍ରବଣତାର ମନୋଜ୍ଞ ରୂପଚିତ୍ର ପ୍ରକଟନ କରିଛନ୍ତି । ତାଙ୍କର କବିତା ମୁଖ୍ୟତଃ ପ୍ରକୃତିଗର୍ଭିତ ଏବଂ ଆଧାତ୍ମିକ ଭକ୍ତିଭାବ ସମ୍ୱଳିତ । ତାଙ୍କର ପିପାସା(୨୦୦୩) ଏକ ଆଧାତ୍ମିକ, ଭକ୍ତିଭାବାପନ୍ନ କବିତା ଗ୍ରନ୍ଥ । ଏଥିରେ କବୟିତ୍ରୀ ଦେବୀ ସରସ୍ୱତୀ, ମା ଦୁର୍ଗା, ମା ସାରଳା, ମା ସାରଦା, କାଳୀକା, ମାହେଶ୍ୱରୀ, ମାତା ଲକ୍ଷ୍ମୀ ପ୍ରଭୃତିଙ୍କର ବନ୍ଦନା ଓ ମହିମାର ପ୍ରକଟନ ସହିତ ନିଜ ଅନ୍ତରର ଆଧାତ୍ମିକ ପପାସାର ପ୍ରକଟନ କରିଛନ୍ତି । ସ୍ରଷ୍ଟାପ୍ରାଣର ପ୍ରଗାଢ଼ ଈଶ୍ୱର ନିଷ୍ଠା, ଆଧାତ୍ମିକ ଭକ୍ତିଭାବନା ଓ ନିଷ୍କପଟପ୍ରେମ-ପ୍ରୀତିର ଧାରା ଅତି କମନୀୟ ଭାବରେ ଝରିଆସିଛି ।

## ଶ୍ରୀ ଭିକାରୀ ଚରଣ ରାଉତ (୧୯୫୪- ):

ଭିକାରୀ ଚରଣଙ୍କର ଜନ୍ମ ୧୯୫୪ ମସିହାରେ ଢେଙ୍କାନାଳ ଜିଲ୍ଲାର ତାଳସିଂହା ମାର୍ଥାପୁର ଗ୍ରାମରେ । ତାଙ୍କ ପିତାଙ୍କ ନାମ-କୁଞ୍ଜ ରାଉତ ଓ ମାତା- ଚୂନ ଦେଈ । ଶ୍ରୀଯୁକ୍ତ ରାଉତ ଆଇନ୍ ରେ ସ୍ନାତକ ଡିଗ୍ରୀ ଲାଭ ପରେ ଓକିଲାତି ବ୍ୟବସାୟ କରନ୍ତି । ପରବର୍ତ୍ତୀ ସମୟରେ ସେ ଓଡ଼ିଶା ବିଚାର ବିଭାଗର ଜଣେ କର୍ମଚାରୀ ରୂପରେ ମଧ୍ୟ ଯୋଗଦେଇଥିଲେ । ଆଇନ ବ୍ୟବସାୟ ଏବଂ ବିଚାର ବିଭାଗରେ କାର୍ଯ୍ୟ କରିବା ସହିତ ସେ ସାହିତ୍ୟ ସାଧନାରେ ମଧ୍ୟ ମନୋନିବେଶ କରିଥିଲେ । ସେ ଅନେକ ଗୁଡ଼ିଏ କବିତା, ଗଳ୍ପ ଏବଂ ପ୍ରବନ୍ଧମାନ ରଚନା କରିଛନ୍ତି । ତାଙ୍କର କବିତା ସଂକଳନ ହେଲା- ସବୁଜବଳୟ ଏବଂ ଆଶାର ଆକାଶ । କବିତା ରଚନା ସହିତ ସେ ଧର୍ମ-ଦର୍ଶନ ଏବଂ ପୋଲିସ, ଆଇନ କାନୁନ ସଂପର୍କୀତ ଅନେକ ପ୍ରବନ୍ଧ ରଚନା କରିଛନ୍ତି । ତାଙ୍କ ରଚିତ ପ୍ରବନ୍ଧ ଗୁଡ଼ିକ ହେଲା- ଅବତାରୀ ପୁରୁଷ ମହିମାସ୍ୱାମୀ, ମାନବିକ ଅଧିକାର ଆଇନ, ଅଧୁନିକ ଭାରତରେ ପୋଲିସ୍ ର ଭୂମିକା ପ୍ରଭୃତି । ତାଙ୍କ ରଚିତ ଗଳ୍ପ ଗୁଡ଼ିକ ହେଲା-ଭିନ୍ନ ଦିଗନ୍ତ ଓ ଅନ୍ୟାନ୍ୟ ଗଳ୍ପ, ସମାଧି ମନ୍ଦିରରେ ଜୀବାତ୍ମା । ତାଙ୍କର ଗଳ୍ପ ଗୁଡ଼ିକ ବେଶ୍ ବାସ୍ତବ, ସମାଜନିଷ୍ଠ ଓ ସତ୍ୟ ଆଧାରିତ । ବ୍ୟକ୍ତି ଓ ସମାଜ ଜୀବନର ବାସ୍ତବ ସ୍ୱରୂପର ପ୍ରକଟନ ସହିତ ସେ ମାନବିକ ଆଶା, ଆକାଙ୍କ୍ଷା, ସ୍ୱପ୍ନ, ସମ୍ଭାବନା ର ଚିତ୍ର ମଧ୍ୟ ପ୍ରକଟିତ କରିଛନ୍ତି ।

## ଶ୍ରୀ ମନୋରଞ୍ଜନ ନନ୍ଦ (୧୯୫୫- ):

ମନୋରଞ୍ଜନ ନନ୍ଦଙ୍କର ଜନ୍ମ ୧୯୫୫ ମସିହା ନଭେମ୍ବର ମାସ ୨୨ ତାରିଖରେ ଢେଙ୍କାନାଳ ଜିଲ୍ଲାରେ । ଶ୍ରୀଯୁକ୍ତ ନନ୍ଦ ଏକାଧାରରେ ଜଣେ କବି, ପ୍ରାବନ୍ଧିକ, ସହିତ୍ୟ ସଙ୍ଗଠକ, ପତ୍ରିକା ସଂପାଦକ ଏବଂ ଆଇନଜୀବୀ । ବିଭିନ୍ନ ସାରସ୍ୱତ ଓ ସାଂସ୍କୃତିକ ଅନୁଷ୍ଠାନ ସହ ଜଡ଼ିତ ରହି ସେ ସାହିତ୍ୟ ସରସ୍ୱତୀଙ୍କର ସେବା ରେ ନିମଗ୍ନ ରହିଛନ୍ତି । ଶ୍ରୀଯୁକ୍ତ ନନ୍ଦ 'ବିଭାବନା' 'ସାହିତ୍ୟ ପତ୍ରିକାର' ମୁଖ୍ୟ ସଂପାଦକ । ଏହି ପତ୍ରିକା ମାଧ୍ୟମରେ ସେ ପତ୍ର-ପତ୍ରିକା ଆନ୍ଦୋଳନ କୁ କେଇପାଦ ଆଗେଇ ନେବାରେ ସହାୟତା କରିଛନ୍ତି । ତାଙ୍କର ଦୁଇଖଣ୍ଡି ମହାର୍ଘ କବିତା ପୁସ୍ତକ ହେଲା- ଅନ୍ତଃସ୍ୱର ଏବଂ ବରପୂର୍ବା । ଏହାସହିତ ସେ ବାଳକୃଷ୍ଣ କର, ସାରସ୍ୱତ ସାଧନା, ଅନନ୍ୟ, ସୃଷ୍ଟି ଓ ସ୍ରଷ୍ଟା (୨୦୧୫) ପ୍ରଭୃତି ପ୍ରବନ୍ଧମାନ ମଧ୍ୟ ରଚନା କରିଛନ୍ତି । ଢେଙ୍କାନାଳ ସାହିତ୍ୟ ଶୀର୍ଷକରେ ସେ ଢେଙ୍କାନାଳ ମାଟିର ଓ ଜିଲ୍ଲା ବାହାରର କେତେକ ଲେଖକ ଓ ସେମାନଙ୍କ ସୃଷ୍ଟି ସଂପର୍କରେ ସଂକ୍ଷିପ୍ତ

ପରିଚୟ ମଧ ପ୍ରଦାନ କରିଛନ୍ତି । ନିଜର ସାଙ୍ଗଠନିକ ଦକ୍ଷତା ଓ ସାହିତ୍ୟସାଧନା ପାଇଁ ସେ ଛୋଟବଡ଼ ବହୁ ଅନୁଷ୍ଠାନରୁ ପୁରସ୍କୃତ ଓ ସମ୍ମାନୀତ ମଧ ହୋଇଛନ୍ତି ।

**ଶ୍ରୀ ଦୁର୍ଗାମାଧବ ପୃଷ୍ଟି (୧୯୫୬- ):**

ଦୁର୍ଗାମାଧବ ପୃଷ୍ଟିଙ୍କର ଜନ୍ମ ଢେଙ୍କାନାଳ ମାଟିର ପ୍ରସିଦ୍ଧ ଶୈବପୀଠ ଏକଘରିକିଆ ଗ୍ରାମରେ । ଯେଉଁ ମାଟିରେ ପୁଣ୍ୟପୁରୁଷ ଭକ୍ତ କବି ଦୀନକୃଷ୍ଣ ଦାସ ଅବସ୍ଥାନ କରିଥିଲେ । ଶ୍ରୀଯୁକ୍ତ ପୃଷ୍ଟି ଓଡ଼ିଆ ଭାଷା ସାହିତ୍ୟର ଜଣେ ବରିଷ୍ଠ ଅଧାପକ । ଅଧାପନା ସହିତ ପାଲା ସାହିତ୍ୟ ଓ ସଂସ୍କୃତି ପ୍ରତି ତାଙ୍କର ନିଷ୍ଠା ଓ ଅବଦାନ ପ୍ରଣିଧାନ ଯୋଗ୍ୟ । ତାଙ୍କ ପ୍ରତିଭାର ଅନ୍ୟଏକ ନିଦର୍ଶନ ହେଲା- ସେ ଜଣେ ବିଶିଷ୍ଟ ପାଲା ଗାୟକ । ଏହା ସହିତ ଧର୍ମ-ଦର୍ଶନ ଓ ସାହିତ୍ୟ ସଂପର୍କୀତ ସେ ବିଭିନ୍ନ ଗବେଷଣାତ୍ମକ ରଚନାମାନ ମଧ କରିଛନ୍ତି । ତାଙ୍କ ରଚିତ ସାରସ୍ୱତ କୃତି ଗୁଡ଼ିକ ହେଲା- ସାହିତ୍ୟ-ସଂସ୍କୃତି ଓ ସିଦ୍ଧାନ୍ତ, ଓଡ଼ିଆ ବୈଷ୍ଣବ ସାହିତ୍ୟ, କବି ଦୀନକୃଷ୍ଣ ଓ ରସ ବିନୋଦ, ମହିମାଧର୍ମ ତତ୍ତ୍ୱ, ମହିମା ଶତକ ପ୍ରଭୃତି । ଏହା ସହିତ ଜନନୀ, ପୁଣ୍ୟପରାଗ ଗ୍ରନ୍ଥର ମଧ ସେ ରଚୟିତା । ଢେଙ୍କାନାଳ ମାଟିର ସେ ଜଣେ ସୁଯୋଗ୍ୟ ସାରସ୍ୱତ ସାଧକ । ତାଙ୍କର ଲେଖନୀ ଏବେବି ଗତି ମୁଖର ।

ଏହି ସମସ୍ତ ଲେଖକ ମାନଙ୍କ ସହ ଆହୁରି ଅନେକ ସ୍ରଷ୍ଟା ମଧ ନିଜର ସାରସ୍ୱତ କୃତି ଦ୍ୱାରା ଆଧୁନିକ ଢେଙ୍କନାଳ ସାହିତ୍ୟର ଦିଗ୍‌ବଳୟକୁ ସମୃଦ୍ଧ, ଋଦ୍ଧିମନ୍ତ ଓ ପ୍ରାଣବନ୍ତ କରିଛନ୍ତି । ଢେଙ୍କାନାଳ ଜିଲ୍ଲା ହିନ୍ଦୋଳ, ବୁହାଳପାଳର ଶ୍ରୀ ଦୈତାରୀ ବିଶ୍ୱାଳଙ୍କର ରଚିତ କାବ୍ୟକୃତି-ନବଛଇଳା, ପ୍ରେମ, ଭଗ୍ନକୋଣାର୍କ, ଯମୁନାତୀରେ, ଗୋପପୁରେ ଶ୍ରୀକୃଷ୍ଣ, ଲଳିତା, ଭକ୍ତର ନିବେଦନ, ଢେଙ୍କାନାଳ କାମାକ୍ଷାନଗର ନିବାସୀ ବିପିନ ବିହାରୀ ମହାପାତ୍ରଙ୍କର ତମସା, ପ୍ରଶାନ୍ତି ପଥେ, କଥାଟି ଗୋପନ ରଖିବେ, ମୁଁ ସଇତାନ କହୁଛି, ମୁଁ କବରତଳୁ କହୁଛି, ଢେଙ୍କନାଳ ମାର୍ଥାପୁର ନିବାସୀ ଶ୍ରୀ ଚକ୍ରଧର ଦାଶଙ୍କର-ଚକ୍ରଧର ପଦ୍ୟାବଳୀ, ହରିଲୀଳାମୃତ, ଶ୍ୟାମଲୀଳାମୃତ ଚମ୍ପୂ, ମାଳତୀ ଜନ୍ମ, ସୁଭଦ୍ରା ହରଣ, ଚନ୍ଦ୍ରବତୀ ହରଣ, ଆତ୍ମବୋଧ ଗୀତା, ବ୍ରହ୍ମ-ବୈବର୍ତ୍ତ ପୁରାଣ, ଜ୍ଞାନୋଦୟ ଚଉତିଶା, ମୁକ୍ତିସୋପାନ ଗୀତା, ଢେଙ୍କନାଳ ଭୁବନ ନିବାସୀ କୃଷ୍ଣପ୍ରସାଦ ମିଶ୍ରଙ୍କର ନାଟକ- ବାଲିରାଜା, କୁହୁକମଣି, ଭକ୍ତ ସାଲବେଗ, ଢେଙ୍କାନାଳ ହିନ୍ଦୋଳ ର ପଣ୍ଡିତ ଶ୍ରୀ ଚକ୍ରଧର ଆଚାର୍ଯ୍ୟଙ୍କର- ଅକ୍ଷତ, ଛାନ୍ଦମାଳା, ଶ୍ରୀବତ୍ସ କାବ୍ୟ, ଢେଙ୍କନାଳ, ମାଣ୍ଡପାସାହି ନିବାସୀ- ପ୍ରଫୁଲ୍ଲ କୁମାର ସାହୁଙ୍କର ନାଟକ- ମହୀୟସୀ, ଦ୍ୱିତୀୟ ଶହୀଦ, କୋଣାର୍କ,

ଆପଣ କୁହନ୍ତୁ, ନାଟକ ସରିବାପରେ, ସେ ଏକ ଅଭୁଲା ସ୍ମୃତି, ମୁଁ ଯତନ ନଗର କହୁଛି, ଢେଙ୍କାନାଳ, ଇନ୍ଦିପୁର, ବିଦାବନ୍ଧ ନିବାସୀ ପ୍ରସନ୍ନ କୁମାର ପ୍ରଧାନଙ୍କର 'ଚଉତିଶା ଚକ୍ର', ଢେଙ୍କାନାଳ ଦେଉଳସାହି ନିବାସୀ ସରୋଜିନୀ ପଟ୍ଟନାୟକଙ୍କ କବିତା ଗ୍ରନ୍ଥ- 'ଜ୍ୟୋତିରେଖା', ଢେଙ୍କନାଳ, ଲେଖକାର ଶାନ୍ତିଲତା ଶତପଥୀଙ୍କର ଭକ୍ତିଶତଦଳ, ସପ୍ନଛାଇ, ଢେଙ୍କାନାଳ ସହରର ଶୈଳବାଳା ବେହେରାଙ୍କ କବିତା ଗ୍ରନ୍ଥ- 'ରଙ୍ଗହୀନ ଫଗୁଣ', ପ୍ରିୟମ୍ବଦା ପଟ୍ଟନାୟକଙ୍କର- 'ସୂର୍ଯ୍ୟକନ୍ୟା', ଶୈଳବାଳା ମିଶ୍ରଙ୍କର- 'ଅଶ୍ରୁଅର୍ଘ୍ୟ', ମାନସୀ ମିଶ୍ରଙ୍କର- 'ନିଶବ୍ଦ ନଈ', ଢେଙ୍କନାଳ କୋଟ ପଡ଼ାର ପୁଷ୍ପା ମହାନ୍ତିଙ୍କର କବିତା- ଶାଳବନର ପରୀ, ନିଃସଙ୍ଗର ଚିତ୍ର, ଜାହ୍ନବୀ, ହିନ୍ଦୋଳ କାରନ୍ଦାର ଶ୍ରୀ ରତ୍ନାକର ମିଶ୍ରଙ୍କର ଧରିତ୍ରୀର ମାୟା, ମହତ ପଥ, ଢେଙ୍କାନାଳ ସହରର ପ୍ରମୋଦ କୁମାର ନନ୍ଦଙ୍କର ନାଟକ- ଖୋଜା ଚାଲିଛି, ପ୍ରଶାନ୍ତ ମହାସାଗରରେ ଉର୍ମିର କ୍ରନ୍ଦନ, କାମାକ୍ଷାନଗର ଆଳତୁମାର ମଧୁସୁଦନ ସେଣ୍ଙ୍କର ନାଟକ- ବିପ୍ଳବୀ ମୁକ୍ତାମଲ୍ଲିକ, ଅତୃପ୍ତ ଆତ୍ମାର ଇତିକଥା, ଏଥିଅନ୍ତେ ଶୁଣ-ସୁଜନେ, ତଥାସ୍ତୁ, ପାପ ସିନ୍ଦୂର, ଈଶ୍ୱରଙ୍କ ଶବ ମିଳିଛି, ସେମାନେ ବିଶ୍ୱାମିତ୍ର, ଶକୁନ୍ତଳା, ନିନ୍ଦିତ ଗଜପତି, ମଧୁମାଳତି, ଭବାନୀକାନ୍ତ ନନ୍ଦଙ୍କର 'ଗଧ ଜନ୍ମରୁ ଉଦ୍ଧାର କର, ଶ୍ରୀ ଜଟାଧାରୀ ମିଶ୍ରଙ୍କର କବିତା - 'ସନ୍ତର୍ପଣ', ଗଙ୍ଗାଧର ମିଶ୍ରଙ୍କର- ସମର କାହାଣୀ, ଦେଶ ମା' ର ଡ଼ାକରା, ଆମ ଘରର ଇତିହାସ, ରାଜର୍ଷି ସୁରପ୍ରତାପ, ଜୟକୃଷ୍ଣ ମିଶ୍ରଙ୍କର- ବ୍ରାହ୍ମଣୀ, କପିଳାସ ମହାତ୍ମ୍ୟ, ରୁକ୍ମିଣୀ ପରିଣୟ, ଜୟଦ୍ରଥ ବଧ ପ୍ରଭୃତି କାବ୍ୟ , ଶ୍ରୀ ଜ୍ୟୋତି ନନ୍ଦଙ୍କର ଗଳ୍ପକୃତି ସମୂହ ଏଇମାଟି, ସାହିତ୍ୟ ଓ ସଂସ୍କୃତିର ଏକ ଏକ ମହନୀୟ କୀର୍ତ୍ତିସ୍ତମ୍ଭ ।

-ପାଦଟୀକା-

| | | |
|---|---|---|
| ୧. | ଯୁଧିଷ୍ଠିର ମିଶ୍ର | - ପୁଣ୍ୟପରୀକ୍ଷା, ବିଂଶଛାନ୍ଦ, ଯୁଧିଷ୍ଠିର ଗ୍ରନ୍ଥାବଳୀ, ପୃ-୪୨ |
| ୨. | ଯୁଧିଷ୍ଠିର ମିଶ୍ର | - ବୃନ୍ଦାବତୀ, ତତ୍ରୈବ- ପୃ-୮୨ |
| ୩. | ବ୍ରଜକିଶୋର ଧଳ | - ଲିଭିବୁ ନାହିଁ, ପ୍ରଥମ ସଂସ୍କରଣର ଭୂମିକା । |
| ୪. | ପଣ୍ଡିତ ପ୍ରମୋଦ କୁମାର ମିଶ୍ର | - ଆଧୁନିକ ଢେଙ୍କାନାଳ ଇତିହାସ, ପୃ-୨୩୩ |
| ୫. | ବସନ୍ତ କୁମାର ନନ୍ଦ | - ଶିଳ୍ପୀର ସ୍ମୃତି, କାବ୍ୟମାନସୀ - ପୃ - ୧୬ |
| ୬. | ତତ୍ରୈବ | - ପୃ-୨୩ |
| ୭. | ସତ୍ୟବ୍ରତ ମହାନ୍ତି | - ହେ ଇଶ୍ୱର କିଛିହେଲେ କର ପ୍ରତିକାର, ବିଭକ୍ତ ବିଭାବରୀ, ପୃ-୧୦ |
| ୮. | ଈଶ୍ୱର ଚନ୍ଦ୍ର ମହାପାତ୍ର | - ଉଚ୍ଛ୍ୱାସ, ଦଶମସର୍ଗ, ପୃ-୮୧ |
| ୯. | ନିତ୍ୟାନନ୍ଦ ମିଶ୍ର | - 'ନ ପାଇଲି ଦେଖା', ସେ କେଉଁ ବଂଶୀର ସ୍ୱର, - ପୃ-୧୨ |
| ୧୦. | ନିତ୍ୟାନନ୍ଦ ମିଶ୍ର | - 'କିଏ ସେ ଡାକେ ମୋତେ', ସେ କେଉଁ ବଂଶୀର ସ୍ୱର, ପୃ-୩୩ |
| ୧୧. | ଧ୍ରୁବଚରଣ ସାଇଁ | - ସପ୍ତଶଯ୍ୟା- ପୃ-୧ |
| ୧୨. | ତତ୍ରୈବ | - ପୃ-୨୩ |
| ୧୩. | ଗୀତା ମିଶ୍ର | - କୁହୁ, ପୃ-୮ |
| ୧୪. | ତତ୍ରୈବ | - ପୃ-୧୪୦ |
| ୧୫. | ଗୀତା ମିଶ୍ର | - କିଛି ଶବ୍ଦ ଓ ଦ୍ୱିତୀୟ ଈଶ୍ୱର, ସମୟ ଯେଉଁ କଥାକହେ, ପୃ-୨୧ |
| ୧୬. | ସୁଗ୍ରୀବର ସାହୁ | - 'ଶିଳାଶୈବାଳ' ଶିଳା ଶୈବାଳ- ପୃ-୮୦ |
| ୧୭. | ସୁଗ୍ରୀବର ସାହୁ | - 'ପିଙ୍ଗଳା'- ତୃଷ୍ଣାତଟିନୀ - ପୃ-୧୭ |



# ଷଷ୍ଠ ଅଧ୍ୟାୟ

## (ଆଧୁନିକୋତ୍ତର ସାହିତ୍ୟ / ଉତ୍ତର-ଆଧୁନିକ ସାହିତ୍ୟ)

ଆଧୁନିକୋତ୍ତର ବା ଉତ୍ତର-ଆଧୁନିକ ସାହିତ୍ୟକୁ ଆଧୁନିକତାର ଏକ ପରିବର୍ତ୍ତିତ, ପ୍ରସାରିତ, ଅଭିନବ ରୂପ ରୂପେ ଗ୍ରହଣ କରାଯାଇପାରେ । ସ୍ୱାଧିନତା ପ୍ରାପ୍ତିର ପ୍ରଥମ ଦଶନ୍ଧି ପରବର୍ତ୍ତୀ ସମୟରୁ ମୁଖ୍ୟତଃ ବିଂଶଶତାବ୍ଦୀର ଷଷ୍ଠ-ସପ୍ତମ ଦଶକ(ଖ୍ରୀ:ଅ:୧୯୬୦-୭୯ ବେଳକୁ ଆଧୁନିକ ଓଡ଼ିଆ ସାହିତ୍ୟର ସ୍ରୋତରେ ପୁଣି ପଟ୍ଟପରିବର୍ତ୍ତନ ଘଟିଥିଲା । ପ୍ରଚଳିତ ସମାଜ ଜୀବନ ଓ ସାହିତ୍ୟର ଧାରା ପ୍ରତି ସ୍ରଷ୍ଟା ବିମୁଖ ହୋଇ ନୂତନ ଜୀବନବୋଧ ଓ ସାହିତ୍ୟର ଅଭିନବ ଦିଗ ଓ ଦିଗନ୍ତର ସନ୍ଧାନ କଲା । ନୂତନତା ସହିତ ସାଂପ୍ରତିକତାକୁ ସଙ୍ଗରେ ନେଇ ସ୍ରଷ୍ଟା ଅଭିନବ ଚେତନାର ନୂତନ ପଥ, ନୂତନ ଅଭିରୁଚି, ନୂଆଶୈଳୀ ଓ ନୂତନ ଦିଗନ୍ତର ଉନ୍ମୋଚନ କଲା । ସାହିତ୍ୟର ବିଷୟବସ୍ତୁ, ଚରିତ୍ର ସଂଗ୍ରହ, ରସ ପରିବେଷଣ, ଶୈଳୀ ଓ କଳାଗତ ରୂପାୟନ କ୍ଷେତ୍ରରେ ଅଭିନବ ପରୀକ୍ଷା-ନିରୀକ୍ଷା ଓ ପ୍ରୟୋଗ କରାଗଲା । ଏହିସବୁ ଅଭିନବ ପରିବର୍ତ୍ତନ ର ମୂଳରେ ରହିଥିଲା- ବିଶ୍ୱ ଚିନ୍ତାଧାରାର ପରିବର୍ତ୍ତନ । ଦ୍ୱିତୀୟ ବିଶ୍ୱଯୁଦ୍ଧ, ଭାରତ-ଚୀନ ଯୁଦ୍ଧ, ଭାରତ-ପାକିସ୍ତାନ ଯୁଦ୍ଧ, ବିଭିନ୍ନ ସାଂପ୍ରଦାୟିକ ଦଙ୍ଗା ଓ ରକ୍ତକ୍ଷୟୀ ସଂଘର୍ଷ ର ଭୟାବହ ପରିଣତି ମଣିଷ ଜୀବନକୁ ସଂକଟଗ୍ରସ୍ତ, ଯନ୍ତ୍ରଣା ଜର୍ଜର ଓ ନୈରାଶ୍ୟକାତର କରିପକାଇଥିଲା । ସିଗ୍‌ମଣ୍ଡ ଫ୍ରୟେଡ୍‌ଙ୍କରମନସ୍ତାତ୍ତ୍ୱିକ ଦର୍ଶନ, ମାର୍କସ୍ ଏଙ୍ଗେଲସ୍ ଙ୍କର ସାମ୍ୟବାଦୀ ଚିନ୍ତାଧାରା, ଫ୍ରେଡ୍ରେରିକ୍ ନିତ୍ ସେ, କିଏର୍କଗାର୍ଡ଼ଙ୍କର ଅସ୍ତିତ୍ୱବାଦୀ ଚେତନା ଓ ଧର୍ମ, ଭଗବାନବିରୋଧୀ ସ୍ୱର, ଜାକ୍ ଡ଼େରିଡ଼ାଙ୍କର ସଂରଚନାବାଦ, ଲୋର୍କା, ଫୁକୋ ପ୍ରଭୃତିଙ୍କର ଉତ୍ତର ସଂରଚନାବାଦୀ ମୁକ୍ତ ସାଧୀନ ଚିନ୍ତାଧାରା ସହ ନବ-ନବ ବୈଜ୍ଞାନିକ ଆବିଷ୍କ୍ରିୟା ଓ ବିଜ୍ଞାନ ପ୍ରଯୁକ୍ତିବିଦ୍ୟାର କ୍ରମପ୍ରସାର ସମୟକ୍ରମେ ସମୟ, ଜୀବନ ଓ ସାହିତ୍ୟକୁ ବହୁଧା ପ୍ରଭାବିତ କରିଥିଲା । ଏହାସହିତ ପରିବର୍ତ୍ତିତ ସାମାଜିକ ଜୀବନଧାରା, ସ୍ୱାଧିନତାର ସପ୍ନଭଙ୍ଗ, ମାନବିକ ସଂପର୍କ ଓ ବିଶ୍ୱାସରେ ଫାଟ, ଗଣତାନ୍ତ୍ରିକ ମୂଲ୍ୟବୋଧ ର ଅବକ୍ଷୟ, ରାଜନୈତିକ ଦୁର୍ନୀତି ଓ ଭ୍ରଷ୍ଟାଚାର, ବସ୍ତୁବାଦୀ ଚିନ୍ତାଧାରା, ଅର୍ଥ ଓ ସମ୍ଭୋଗ ଲାଳସା ଆଦି ଭୋଗବାଦୀ

ଚିନ୍ତାଧାରାର କ୍ରମ-କାୟା ବିସ୍ତାର ସମାଜ ଓ ମଣିଷ ଜୀବନକୁ ବିଡ଼ମ୍ବିତ, କଳୁଷିତ, ପର୍ଯ୍ୟୁଷିତ କରିପକାଇଲା । ଏଇ ପଚମାନ, ରୁଗ୍ଣ, ଅବକ୍ଷୟୀ ଚିନ୍ତାଧାରା ଓ ଜୀବନର ଚିତ୍ର କ୍ରମେ ସାହିତ୍ୟର ବିଭିନ୍ନ ବିଭାବ ମାଧ୍ୟମରେ ପ୍ରକଟିତ ହେଲା । କବିତା, ନାଟକ, ଗଳ୍ପ, ଉପନ୍ୟାସ, ପ୍ରବନ୍ଧ ଭିତରେ ଏହି ସବୁ ଚିତ୍ର ଓ ଚରିତ୍ରମାନେ ସ୍ୱଷ୍ଟରୂପେ ପ୍ରତିଭାତ ହେଲେ । ବିଂଶ ଶତାବ୍ଦୀର ଶେଷ ଦଶକ (ଖ୍ରୀ:ଅ:୧୯୯୦) ବେଳକୁ ଜଗତୀକରଣ ବା ବିଶ୍ୱୀକରଣର ପ୍ରଭାବ ମଧ୍ୟ ସାହିତ୍ୟରେ ପଡ଼ିଲା । ବିଶ୍ୱୀକରଣର ଉଦ୍‌ଗ୍ରାସରେ ଯେଉଁ ସବୁ ସାମାଜିକ, ସାଂସ୍କୃତିକ ଓ ବୌଦ୍ଧିକ ସଂକଟମାନ ସୃଷ୍ଟିହେଲା, ତା'ର ସ୍ୱଷ୍ଟ, ବାସ୍ତବ ଚିତ୍ର ମଧ୍ୟ ସାହିତ୍ୟରେ ସର୍ବାଭ ପୃଷ୍ଠାରେ ଉତ୍କୀର୍ଣ୍ଣ ହୋଇଉଠିଲା । ମଣିଷର ବିଭିନ୍ନ ସମସ୍ୟା, ଜଟିଳ ମାନସିକ ଚିତ୍ତ ସଂଘର୍ଷ, ଅନ୍ତଃମାନବୀୟ ସଂପର୍କ ଓ ମାନସିକ ସଂକ୍ଷୋଭ ସହିତ ଦ୍ୱନ୍ଦ୍ୱାତ୍ମକ ଚିନ୍ତାଧାରା, ଦ୍ୱୈତ ବ୍ୟକ୍ତିସତ୍ତା, ବହୁଧା ବିଭକ୍ତ ଚରିତ୍ର, ଅପମାନବୀକୃତ ଚେତନା, ଅଭିବ୍ୟକ୍ତିବାଦ, ରୂପାନ୍ତରୀକରଣ ତତ୍ତ୍ୱ, କ୍ରୀଡ଼ା ତତ୍ତ୍ୱ, କୁହୁକବାଦ, କୁହୁକ-ବାସ୍ତବବାଦ, ସମଲିଙ୍ଗୀ-ଚିନ୍ତାଦର୍ଶ, ଶିଳ୍ପ ଓ ବିସ୍ଥାପନ ସମସ୍ୟା କ୍ରମେ ସାହିତ୍ୟ ଭିତରେ ପ୍ରକଟିତ ହେଲା । ଏହି ପରିବର୍ତ୍ତିତ ଚିନ୍ତା, ଚେତନା, ଆଦର୍ଶ ଓ ସାହିତ୍ୟର ଧାରାରେ ଅନୁପ୍ରାଣିତ ହୋଇ ଢେଙ୍କାନାଳମାଟିର ସ୍ରଷ୍ଟାମାନେ ସେମାନଙ୍କର ସୃଜନକ୍ରିୟା ଜାରି ରଖିଛନ୍ତି । କବିତା, ଗଳ୍ପ, ଉପନ୍ୟାସ, ନାଟକ, ପ୍ରବନ୍ଧ ଆଦି ରଚନା ମାଧ୍ୟମରେ ଏହି ଅଭିନବ ଚିନ୍ତା-ଚେତନା ଓ ସାହିତ୍ୟାଦର୍ଶର ପ୍ରକଟନ ସହିତ ଏହାର ଆତ୍ମିକ ଓ ଆଙ୍ଗିକ ବିଭବ ରେ ବିଭିନ୍ନ ପରୀକ୍ଷା-ନିରୀକ୍ଷା ଓ ତା'ର ସଫଳ ପ୍ରୟୋଗ କରିଚାଲିଛନ୍ତି ।

## ନୂତନ ଚେତନାର ପ୍ରୟୋଗଧର୍ମୀ ସ୍ରଷ୍ଟା ଓ ସୃଷ୍ଟି:

### ଶ୍ରୀ ଶ୍ରୀବତ୍ସ ନାୟକ (୧୯୨୪- ):

ଶ୍ରୀବତ୍ସ ନାୟକଙ୍କର ଜନ୍ମ ୧୯୨୪ ମସିହାରେ ଢେଙ୍କାନାଳ ଜିଲ୍ଲାର ଗଁଦିଆ ଅନ୍ତର୍ଗତ ବିଦ୍ୟାଧରପୁର ଗ୍ରାମରେ । ତାଙ୍କ ପିତାଙ୍କ ନାମ-ସତ୍ୟବାଦୀ ନାୟକ ଓ ମାତା-ଜେମାମଣୀ ଦେବୀ । ଶ୍ରୀବତ୍ସ ନାୟକ ବୃତ୍ତିରେ ଥିଲେ ଜଣେ କୃତି ଶିକ୍ଷକ। ୧୯୪୬ ମସିହାରେ କଟକ ରେଭେନ୍‌ସା କଲେଜରୁ ବି.ଏ. ପାଶ୍ ପରେ ୧୯୪୮ ମସିହା ବେଳକୁ ଢେଙ୍କାନାଳସ୍ଥିତ ବ୍ରଜନାଥ ବଡ଼ଜେନା ଉଚ୍ଚବିଦ୍ୟାଳୟରେ ଶିକ୍ଷକ ଜୀବନ ଆରମ୍ଭ କରିଥିଲେ । "ପରେ ସେ କପିଳାସ ସ୍ଥିତ ଆଶ୍ରମ ସ୍କୁଲ ଏବଂ ଗୋବରଘାଟି ଆଶ୍ରମ ସ୍କୁଲରେ ପ୍ରଧାନ ଶିକ୍ଷକ ରୂପରେ କାର୍ଯ୍ୟ କରିଥିଲେ । (୧)" ପରବର୍ତ୍ତୀ ସମୟରେ ୧୯୫୫ ମସିହା ବେଳକୁ ସେ ଶିକ୍ଷକତା ଛାଡ଼ି ଜାତୀୟ ଆନ୍ଦୋଳନରେ ଭାଗନେଇଥିଲେ । ନବକୃଷ୍ଣ

ଚୌଧୁରୀ ଓ ମାଳତୀ ଚୌଧୁରୀଙ୍କ ଆଦର୍ଶରେ ସେ ସର୍ବୋଦୟ ଆନ୍ଦୋଳନରେ ଯୋଗଦେଇ ଦେଶ ଓ ସମାଜ ସେବାରେ ନିଜକୁ ନିୟୋଜିତ କରିଥିଲେ । ପରବର୍ତ୍ତୀ ସମୟରେ ସେ ପ୍ରତ୍ୟକ୍ଷ ରାଜନୀତି ରେ ଯୋଗଦେଇ ୧୯୭୪ ମସିହା ବେଳକୁ ଢେଙ୍କାନାଳ, ଗଁଦିଆ ନିର୍ବାଚନ ମଣ୍ଡଳୀରୁ ବିଧାୟକ ରୂପେ ନିର୍ବାଚିତ ହୋଇଥିଲେ । ସେ ଉଭୟ ଗାନ୍ଧୀ ଓ ଜୟପ୍ରକାଶଙ୍କ ଅନୁଗାମୀ ଥିଲେ । ଏହାସହିତ ଲେନିନ୍ ଓ କାର୍ଲମାର୍କସ୍‌ଙ୍କର ବୈପ୍ଳବିକ, ସାମ୍ୟବାଦୀ ଚିନ୍ତାଧାରା ମଧ୍ୟ ତାଙ୍କୁ ଆକୃଷ୍ଟ କରିଥିଲା । ରାଜନୀତିର ପଙ୍କିଳତା ଭିତରେ ତାଙ୍କର କବିତ୍ୱ ସତ୍ତାଟି ଅମଳିନ ଭାବରେ କ୍ରମେ ଉକୁଟି ଉଠିଥିଲା ।

ଜଣେ ଦରଦୀ, ମାନବବାଦୀ କବି ହିସାବରେ ସେ ଆର୍ଥନୀତିକ ଶ୍ରେଣୀ ବୈଷମ୍ୟ, ବୁର୍ଜୁୟା, ପୁଞ୍ଜିପତି ମାନଙ୍କର ଶୋଷଣ, କଷଣ, ସାଧୀନତାର ସନ୍ତ୍ରାସ, ରାଜନୈତିକ ଶଠତା, ପ୍ରବଞ୍ଚନା ଓ ପ୍ରତାରଣା ବିରୁଦ୍ଧରେ ବିଦ୍ରୋହର ସ୍ୱର ଟୋଳିଥିଲେ । ଜାତୀୟ ଚେତନା, ମାତୃଭୂମି ପ୍ରୀତି, ମୁକ୍ତି ଚେତନା ସହିତ ସେ ସାମାଜିକ କ୍ରାନ୍ତି, ଜାତୀୟ ଏକତା ଓ ସଂହତି ପାଇଁ ମଧ୍ୟ ବାର୍ତ୍ତା ପ୍ରଚାର କରିଥିଲେ । ଶ୍ରୀଯୁକ୍ତ ନାୟକ ମୁଖ୍ୟତଃ ଜଣେ ଜାତୀୟବାଦୀ, ମାନବବାଦୀ ଓ ବିପ୍ଳବୀ କବି । ନିରୋଳା କବିତ୍ୱ ସହିତ ତାଙ୍କ ସାରସ୍ୱତ ପ୍ରତିଭାର ଅନ୍ୟଏକ ନିଦର୍ଶନ ହେଲା- ସେ ଜଣେ ସଫଳ ଅନୁବାଦକ । ତାଙ୍କ ରଚିତ କବିତା କୃତି ଗୁଡ଼ିକ ହେଲା- ଜାଳ ମଶାଲ, ନିଶାନ୍ତ, ନୂଆଯୁଗର ପିଲା, ଜଳମର୍ମର, ମଳୟ ଓ ମର୍ମର , ବୁଦ୍ଧବାଣୀ, ଝୁରି ହଜିଗଲା, ସଂଗ୍ରାମ କବିତା, ଅନୁରାଧାର ଅଭିସାର, ମେଘ ମହ୍ଲାର, ମହ୍ଲରର ଶେଷରାଗ, ମନୁସଂହିତା, ଭୂ-ଦାନ ଚଉତିଶା ପ୍ରଭୃତି । ତାଙ୍କ ଅନୁଦିତ ରଚନା ଗୁଡ଼ିକ ହେଲା- ମହାତ୍ମା-ରୋମା ରୌଁଲା, ବଙ୍ଗୀୟ ଲେଖକ ଶରତଚନ୍ଦ୍ରଙ୍କର 'ଦତ୍ତା' ଏବଂ 'ବ୍ରାହ୍ମଣକନ୍ୟା' ଉପନ୍ୟାସର ଓଡ଼ିଆ ଅନୁବାଦ, ରବୀନ୍ଦ୍ରନାଥ ଟାଗୋରଙ୍କର ଅନେକ କବିତାର ଓଡ଼ିଆ ଅନୁବାଦ, ସଂସ୍କୃତ ଶ୍ରୀମଦ୍ ଭଗବତ୍ ଗୀତାର ଉଭୟ ଗଦ୍ୟ ଓ ପଦ୍ୟାନୁବାଦ କରିଛନ୍ତି । ଏହା ସହିତ ସେ 'ମୃଗନାଭି' ଶୀର୍ଷକ ଗଳ୍ପ ଓ କଂଗ୍ରେସର ସଂକ୍ଷିପ୍ତ ଇତିହାସ ଗ୍ରନ୍ଥ ମଧ୍ୟ ରଚନା କରିଛନ୍ତି । ଶ୍ରୀଯୁକ୍ତ ନାୟକ ତାଙ୍କର ଏହି ସାରସ୍ୱତ ସାଧନାର ସଫଳତା ପାଇଁ ୧୯୯୦ ମସିହାରେ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଦ୍ୱାରା ସମ୍ବର୍ଦ୍ଧିତ ଓ ସମ୍ମାନୀତ ହୋଇଛନ୍ତି ।

**ସାରସ୍ୱତ କୃତି :**

**ଜାଳ ମଶାଲ (୧୯୪୬):** ଏହା ଏକ ବୈପ୍ଳବିକ ଚେତନାଧର୍ମୀ ପ୍ରଗତିବାଦୀ କବିତା । ପ୍ରଚଣ୍ଡ ଦେଶପ୍ରେମ, ଉଗ୍ର ଜାତୀୟ ମମତା ଓ ସାଧିନତା ପ୍ରାପ୍ତିର ଦୁର୍ବାର ଆକାଙ୍କ୍ଷା

ନେଇ କବି ଏହି କବିତାରେ ବିଦ୍ରୋହ ଓ ବିପ୍ଳବର ମଶାଲ ଜାଳିଛନ୍ତି । ପରାଧୀନତାରୂପକ ଅନ୍ଧକାରର ବିନାଶ ସହିତ ସମାଜରୁ ଉଚ୍ଚ-ନୀଚ ଭେଦଭାବ ଜାତି ଓ ଶ୍ରେଣୀ ବୈଷମ୍ୟ, ଶୋଷଣ-କଷଣ ଓ ନିର୍ଯାତନାରୁ ମୁକ୍ତି ପାଇଁ କବି ବିଦ୍ରୋହର ମଶାଲ ଜାଳିବା ପାଇଁ ଭରତୀୟ ଜନଗଣଙ୍କୁ ବୈପ୍ଳବିକ ଆହ୍ୱାନ କରିଛନ୍ତି ।

**ଜଳମର୍ମର (୧୯୬୪):** ଏହା ଏକ ରୋମାଣ୍ଟିକ୍ ଭାବଚେତନାର କଳାସୃଷ୍ଟି । ଏଥିରେ ୨୫ ଗୋଟି କବିତା ସ୍ଥାନିତ ହୋଇଛି । ସେଗୁଡ଼ିକ ହେଲା- କଥନିକା, ମୁହୂର୍ତ୍ତ, ମେଘମଙ୍ଗଳ, ନବବଧୂ, ସ୍ୱୀକାରୋକ୍ତି, ବର୍ଷାବାସକ, ବର୍ଷା ବ୍ୟଥା, ଯୌବନ ସ୍ୱର୍ଶ, ବସନ୍ତରାସ, ରୂପ ସୌରଭ, ଫାଲ୍‌ଗୁନୀ, ପ୍ରଭୃତି । ଏହିସବୁ କବିତା ଗୁଡ଼ିକ କବିଙ୍କର ଯୌବନ କାଳୀନ ରଚନା । ଯୌବନର ସ୍ୱପ, ଆବେଗ ପ୍ରବଣତା ଓ ପ୍ରେମବିଳାସ ହିଁ ଏହି କବିତା ଗୁଡ଼ିକର ମୁଖ୍ୟ ସ୍ୱର । ସବୁଜ ରୋମାଣ୍ଟିକ୍ କାବ୍ୟ ଚେତନାର ପ୍ରଭାବ ଏହି କବିତା ଗୁଡ଼ିକରେ ପରିଦୃଷ୍ଟ । କବିଙ୍କର ରୂପପ୍ରାଣତା ଓ ରୋମାଣ୍ଟିକ୍ କାବ୍ୟମାନସର ପ୍ରତିଫଳନ ତାଙ୍କ 'ମୁହୂର୍ତ୍ତ' କବିତାରେ ପ୍ରକଟିତ । କବିଙ୍କ ଭାଷାରେ-

"ଯଉବନ ଆଜି ଭାଙ୍ଗେ ଲହଡ଼ି
ଊର୍ମି ଉଠଇ ଉଛଳ
ବନ୍ୟା ଆସଇ ତନୁମନ ଛାଇ
କଳକଳ ଖାଲି ଛଳ ଛଳ ।"(୨)

ରୋମାଣ୍ଟିକ୍ କବିପ୍ରାଣ ପ୍ରୀତିରୂପକ କୁସୁମରୁ ମଧୁପାନ କରିବାପାଇଁ ଉନ୍‌ମନା ହୋଇଉଠିଛି । ଯେଉଁଥିପାଇଁ କବି ଲେଖିଛନ୍ତି-

"ପୀରତି କୁସୁମୁଁ ମଧୁକର ସମ
ଯେତେପାର ମଧୁ ଶୋଷିନିଅ
ଘୋର ଘର୍ଘର ଘୂରେ କାଳଚକ୍ର
ରସଦିଅ ........ ଖାଲି ରସପିଅ ।"(୩)

କବିଙ୍କର ମେଘମଙ୍ଗଳ, ବର୍ଷାବ୍ୟଥା, ମାନରଖ ପ୍ରଭୃତି କବିତାରେ ବିରହ-ବିଦଗ୍ଧ କବିପ୍ରାଣର ମର୍ମ ବେଦନା ପ୍ରକଟିତ । ଯୌବନ ସ୍ୱର୍ଶ, ବସନ୍ତରାସ, ବର୍ଷାବାସକ, ଫାଲ୍‌ଗୁନୀ ପ୍ରଭୃତି କବିତାରେ ରୋମାଣ୍ଟିକ୍ ପ୍ରେମବିଳାସ ଓ ରସପ୍ରାଣତା ଫୁଟିଉଠିଛି ।

**ନୂଆଯୁଗର ପିଲା (୧୯୯୭):** ଏହି କବିତା କୃତି ଟି ଦୁଇଗୋଟି ଭାଗରେ ବିଭକ୍ତ । ପ୍ରଥମ ଭାଗଟିରେ ଚାରିଗୋଟି ଦୀର୍ଘ କବିତା ଏବଂ ଦ୍ୱିତୀୟ ଭାଗଟିରେ ପାଞ୍ଚଗୋଟି କବିତା ସ୍ଥାନିତ ହୋଇଛି । ପ୍ରଥମ ଭାଗରେ ସନ୍ନିବିଷ୍ଟକବିତା ଗୁଡ଼ିକ ହେଲା- ନୂଆଯୁଗର ପିଲା,

ସେବା ହିଁ ମୋର କାମ, ଫୁଲ ଓ ଫଳ, ଶରତ ଋତୁ, ଦ୍ୱିତୀୟ ଭାଗରେ ସ୍ଥାନିତ କବିତା ଗୁଡ଼ିକ ହେଲା- ଯବନ ନୁହେଁ ସେ ଯବନ ନୁହେଁ, ବାପୁ ବନ୍ଦନା, ଆମେ ଗୋଟିଏ ମା'ର କୋଟିଏ ସନ୍ତାନ, ବାରବରଷର ବାଜି ରାଉତ, ଉଡ଼ାଜାହାଜ ଯାତ୍ରା ।

'ନୂଆଯୁଗରପିଲା' କବିତାଟି ବେଶ୍ ସମାଜନିଷ୍ଠ ଓ ବୈପ୍ଳବିକ ଚେତନାଧର୍ମୀ । ଏଥିରେ ସ୍ୱାଧୀନତା ପରବର୍ତ୍ତୀ ସମୟର ସାମାଜିକ, ସାଂସ୍କୃତିକ ଓ ରାଜନୈତିକ ସଙ୍କଟ ଓ ଅବକ୍ଷୟର ଚିତ୍ର ପ୍ରକଟିତ । 'ସେବା ହିଁ ମୋର କାମ' କବିତାରେ କବି ସେବା ଓ ତ୍ୟାଗଦୀପ୍ତ ଜୀବନର ମହାନତା ପ୍ରକଟିତ କରିଛନ୍ତି । 'ବାପୁବନ୍ଦନା', 'ଆମେ ଗୋଟିଏ ମା'ର କୋଟିଏ ସନ୍ତାନ', 'ବାର ବରଷର ବାଜିରାଉତ' ପ୍ରଭୃତି କବିତାରେ ଜାତୀୟ ଏକତା, ଶାନ୍ତି ଓ ସଂହତିର ବାର୍ତ୍ତା ସହିତ ତ୍ୟାଗଦୀପ୍ତ ଜୀବନର ଚିତ୍ର ମଧ୍ୟ ପ୍ରକଟିତ ।

**ନିଶାନ୍ତ (୨୦୦୪):** ଏହା ଏକ ଜାତୀୟ ଚେତନା ମୂଳକ ବୈପ୍ଳବିକ କଳାକୃତି । ଭାରତୀୟ ସ୍ୱାଧୀନତା ସଂଗ୍ରାମ ଓ ଜାତୀୟ ମୁକ୍ତି ଆନ୍ଦୋଳନ ର ପୃଷ୍ଠଭୂମି ଉପରେ ଏହାର ଅଧିକାଂଶ କବିତା ରଚିତ । ଏହା ସହିତ ଗାନ୍ଧୀ-ବିନୋବାଙ୍କ ଦର୍ଶନ, ମାର୍କସୀୟ ସାମ୍ୟବାଦୀ ଦର୍ଶନ ଓ ଶ୍ରେଣୀ ସଂଘର୍ଷର ଚିତ୍ର ଏହି କବିତା ଗୁଡ଼ିକରେ ପ୍ରତିଫଳିତ । ଏହି କବିତା ସଙ୍କଳନଟିରେ ୪୨ ଗୋଟି କବିତା ସ୍ଥାନିତ ହୋଇଛି । ସେଗୁଡ଼ିକ ହେଲା- ଖୋଲାଦ୍ୱାର, କାଳବୈଶାଖୀ, ସାରଥୀ ମୁକ୍ତି ରଥର, ସୈନିକର ସ୍ୱପ୍ନ, ବୀର ବୈଷ୍ଣବ, ଆଗାମୀ କାଲିର ବାର୍ତ୍ତା, ହିସାବ ନିକାଶ, ନରହତ୍ୟା, ମରଣତାଣ୍ଡବ, ଝଡ଼ର ହୁଂକାର, ଷ୍ଟାଲିନ୍ ର ମମି, ଛାର ଗୁଳିମାଡ଼, କପୋତର ଜୟଯାତ୍ରା, ତୂର୍ଯ୍ୟନାଦ, ମାଓସେତୁଙ୍ଗ୍ ର ଦୁଷ୍ଟିନ୍ତା, ଅଭିଯାନ, ଅଶ୍ରୁତର୍ପଣ, ହିରଣ୍ମୟେନ ପାତ୍ରେଣ ପ୍ରଭୃତି । ଏହି ସବୁ କବିତା ଗୁଡ଼ିକରେ କବି ସଚ୍ଚିଦାନନ୍ଦ ରାଉତରାୟଙ୍କର ବିପ୍ଳବୀ କାବ୍ୟ ଆଭିମୁଖ୍ୟର ପ୍ରଭାବ ପରିସ୍ଫୁଟ ।

'କାଳବୈଶାଖୀ' କବିତାରେ କବି ଏକ ବିରାଟ ସାମାଜିକ ବିପ୍ଳବ ଓ ପରିବର୍ତ୍ତନ ର ସ୍ୱର ତୋଳିଛନ୍ତି । ଶାସକର ଗୁଳି-ଗୋଳା, ସଙ୍ଗୀନ ଆଘାତ ଓ ମୃତ୍ୟୁଭୟକୁ ଭ୍ରୁକ୍ଷେପ ନ' କରି ଏମାଟି ର ବୀରସନ୍ତାନ ମାନେ କାଳବୈଶାଖୀ ପରି ବିଦ୍ରୋହ ଓ ବିପ୍ଳବର ରଣତାଣ୍ଡବ ରଚିଛନ୍ତି । କବିଙ୍କ ଭାଷାରେ-

"ଏ ଜାତି ଛାତିର ବେଦନା ନିବାରେ ଯିଏ
ଛାର ଗୁଳି ମାଡ଼େ ମୃତ୍ୟୁ ତାହାର କାହିଁ ?

* * * * *

ଗର୍ଜିଉଠିବ ରୁକ୍ଷ ହାତୁଡ଼ି, ଉର୍ଦ୍ଧ୍ୱେ ଉଠିବ ଦା'ଆ
କ୍ରୁଦ୍ଧ ନୟନୁ ଛୁଟିବ କ୍ଷିପ୍ରେ, ପ୍ରଳୟଙ୍କରୀ ନିଆଁ
ନର୍ତ୍ତକ ମହାକାଳ
ନାଚିବ କ୍ଷିପ୍ର ସଂଚାରି ଭୀମଭୈରବ ଦାବାନଳ ।" (୪)

କବି ସାମାଜିକ ଶୋଷଣ, କଷଣ, ଅନ୍ୟାୟ, ଭ୍ରଷ୍ଟାଚାର ବିରୁଦ୍ଧରେ ବିପ୍ଳବର ପାଞ୍ଚଜନ୍ୟ ବଜାଇ ଦଳିତ-ନିଷ୍ପେଷିତ ଜନଗଣଙ୍କୁ ସଚେତିତ ଓ ଜାଗ୍ରତ କରାଇବାକୁ ଚାହିଁଛନ୍ତି । ଯେଉଁଥିପାଇଁ କବି ଲେଖିଛନ୍ତି -

"ଜାଗ କଙ୍କାଳ ଜାଗରେ ଦଳିତ
ଜାଗ ଯୁଗ ଯୁଗ ନିଃସ୍ୱ ପୀଡ଼ିତ ।
ଜାଗ ଧରଣୀର ଚିରନିଦ୍ରିତ, ମୁକତି ଶାନ୍ତି ରଙ୍କ
ଏଇ ଶୁଣ ! ଘନ ତନ୍ଦ୍ରା ତୁଟାଇ ବାଜିଉଠେ କା'ର ଶଙ୍ଖ ।"(୫)

'ବୀରବୈଷ୍ଣବ', 'ସୈନିକର ସ୍ୱପ୍ନ' କବିତାରେ କବି ଶୋଷକ, ଦୁରାଚାରୀ, ସ୍ୱେଚ୍ଛାଚାରୀ ରାଜଶକ୍ତି ବିରୁଦ୍ଧରେ ବିଦ୍ରୋହ ଓ ବିପ୍ଳବର ସ୍ୱର ତୋଳିଛନ୍ତି । 'ଆଗାମୀ କାଲିର ବାର୍ତ୍ତା' କବିତାରେ କବି ଏକ ଶ୍ରେଣୀହୀନ, ଶୋଷଣମୁକ୍ତ ନୂତନ ସମାଜ ଗଠନ ଓ ନୂଆଯୁଗର ସ୍ୱପ୍ନ ଦେଖିଛନ୍ତି । କବି ମାର୍କସୀୟ ବୈପ୍ଳବିକ ସାମ୍ୟବାଦୀ ଚେତନାର ସ୍ୱର ଶୁଣାଇ ଏକ ନୂତନ ସକାଳ ଓ ନୂଆ ଯୁଗର ସଂକେତ ଦେଇଛନ୍ତି । କବିଙ୍କ ଭାଷାରେ-

"ଶୁଭ ସକାଳର ସଂକେତ ସମ ଜଳଇ ଶୁକ୍ରତାରା
ରକ୍ତ ତାହାରି ଆଲୋକ ଢାଳୁଛି ମୁକ୍ତିର ଚାରୁ ଧାରା
ପୂର୍ବ ଗଗନ ଭାଲ
ସିମନ୍ତିନୀର ସିନ୍ଦୁର ସମ ପାଲଟି ଆସୁଛି ଲାଲ ।"(୬)

କବି ତାଙ୍କର 'ତୂର୍ଯ୍ୟନାଦ' କବିତାରେ ମଧ୍ୟ ବିପ୍ଳବର ସ୍ୱରତୋଳି ନୂଆଯୁଗର ଆବାହନୀ କରିଛନ୍ତି । ଏଥିରେ କବି କୃଷକ, ଶ୍ରମିକ, ମଜ୍‌ଦୁର ଓ ଭାରତୀୟ ବୀର ସୈନିକ ମାନଙ୍କୁ ଶତ୍ରୁ ସହିତ ସମର କରିବାକୁ ଜ୍ୱାଳାମୟୀବାଣୀ ଶୁଣାଇଛନ୍ତି । କବିଙ୍କ ଭାଷାରେ-

"କୃଷକରେ ତୋର ଲଙ୍ଗଳ ଚଳା
ପିଟରେ ଶ୍ରମିକ ଆହୁରି ହାତୁଡ଼ି ପିଟ
ଉଠରେ ଜବାନ ବାହିନୀ ଗର୍ଜି
ଶତ୍ରୁଘେରିଚି ଆମରି ପୁଣ୍ୟପୀଠ ।" (୭)

୧୯୬୨ ମସିହାର ଭାରତ- ଚୀନ ଯୁଦ୍ଧ, ୧୯୬୫ର ଭାରତ-ପାକିସ୍ତାନ ଯୁଦ୍ଧ ସମୟରେ କବି ଭାରତମାଟିର ଐକ୍ୟ, ସାଧୀନତା ରକ୍ଷା, ସୀମାରକ୍ଷା ଓ ସୁରକ୍ଷା ପାଇଁ ଭାରତର କୋଟି କୋଟି ଜନତା ଓ ବୀର ଯବାନ୍ ମାନଙ୍କୁ ଯୁଦ୍ଧଂଦେହୀ ଡାକରା ଦେଇଛନ୍ତି। 'ଛାର ଗୁଳିମାଡ଼' କବିତାରେ ୧୯୫୬ ମସିହାର ଓଡ଼ିଶାର ସୀମା ନିର୍ଦ୍ଧାରଣ ନିଷ୍ପତ୍ତି ଓ ତଦ୍ ଜନିତ ସୀମାଆନ୍ଦୋଳନ ଓ ଗଣବିଦ୍ରୋହର ଚିତ୍ର ଫୁଟିଉଠିଛି। 'କପୋତର ଜୟଯାତ୍ରା' କବିତାରେ କବି ଶାନ୍ତି, ମୈତ୍ରୀ ଓ ମୁକ୍ତିର ବାର୍ତ୍ତା ପ୍ରଚାର କରିଛନ୍ତି।

**ମଳୟ ଓ ମର୍ମର :** ଏହା ଏକ ରୋମାଣ୍ଟିକ୍ ଆବେଗଧର୍ମୀ କବିତା କୃତି। ଏଥିରେ ୧୧ ଗୋଟି କବିତା ସ୍ଥାନିତ ହୋଇଛି। ସେଗୁଡ଼ିକ ହେଲା- ମଳୟ ଓ ମର୍ମର, ମୃଗତୃଷ୍ଣା, ଯୋଜନଗନ୍ଧାର ଡାକ, ବନର କୁଙ୍କୁମ, ସପ୍ନାବତୀ, ପଡ଼େ ମନେ ପଡ଼େ, ଯାହାଗଲା ଚାଲି, ସୃଜନ ଓ ପ୍ରଳୟ, ବସଂତିକା, ମନତୀରେ ଓ ବନତୀରେ ପ୍ରଭୃତି। ଏହି କବିତା ଗୁଡ଼ିକରେ ଅତୀତ ସ୍ମୃତିର ରୋମନ୍ଥନ ସହିତ କବି ପ୍ରାଣର ରୋମାଣ୍ଟିକ୍ ପ୍ରେମ ବିଳାସ, ଆବେଗ ଓ ଭାବମୟତା ଅତି କମନୀୟ ଭାବରେ ଫୁଟିଉଠିଛି। ବାସନ୍ତୀ ପୂର୍ଣ୍ଣିମାର ଜ୍ୟୋସ୍ନାବିଧୌତ ରୂପେଲୀ ରଜନୀରେ ପ୍ରଣୟପିଆସୀ କବି ପ୍ରାଣରେ ଜାଗିଉଠିଥିବା ମିଳନ ଅଭିସାର ପିପାସାକୁ କବି ଜାଗରିତ କରିଛନ୍ତି। ଯେଉଁଥିପାଇଁ କବି ଲେଖିଛନ୍ତି-

"ଗାଇ ଉଠେ ଏ ମୋର ଯୌବନ
ଚନ୍ଦ୍ରାଲୋକେ, ମାୟାକୁଞ୍ଜେ
ଅଭିସାର ରଚିବାରେ ମନ।"(୮)

'ଉଡ଼ିଯାନ୍ତି' କବିତାରେ ମଧ କବିପ୍ରାଣ ପ୍ରଣୟ ଉନ୍ମୁଖ। କବିପ୍ରାଣ ପକ୍ଷୀଟିଏ ହୋଇ ନାୟିକା ପାଖକୁ ଉଡ଼ିଯିବାକୁ ଉଦ୍‌ଗ୍ରୀବ। ଏହି କବିତାରେ ଅତୀତର ଗୋପନତମ, ନିଭୃତ, ଅତୃପ୍ତ କାମ-ବାସନା ଉଜ୍ଜୀବିତ ହୋଇଉଠିଛି। 'ସପ୍ନାବତୀ' କବିତାରେ ମଧ କବିପ୍ରାଣ ଅତୀତର ପ୍ରଣୟଭାବନା ଓ ପ୍ରୀତିମୟ ସ୍ୱପ୍ନବିଳାସରେ ଘୋଟିତ। ବାସ୍ତବରେ କବି ପ୍ରାଣର ଅତୀତର ପ୍ରେମମୟ ସ୍ମୃତି ର କରୁଣସିକ୍ତ ଆବେଗରେ ଏହି କବିତା ଗୁଡ଼ିକ ରସସିକ୍ତ ଓ ଆର୍ଦ୍ର।

**ମହ୍ଲାରର ଶେଷରାଗ :** ଏହି କବିତା ସଙ୍କଳନଟିରେ ୨୨ଗୋଟି କବିତା ସ୍ଥାନିତ ହୋଇଛି। ସେଗୁଡ଼ିକ ହେଲା-ମହ୍ଲାରର ଶେଷରାଗ, ରୂପରାଣୀ, ନବୋଢ଼ା, ମୁଁ ଏଇ ମାଟିର ଜୀବ, ଚନ୍ଦ୍ରାବତୀର ପ୍ରେମ, ଅସ୍ତଚନ୍ଦ୍ରର ବିଳାପ, ବସନ୍ତ ଆସିଛି, ଯୌବନର ଜୟଗାନ, ରାଜପୁତ୍ରର ଅନୁଚିନ୍ତା, ମୁଁ ଆଜି ଆସିଛି, ଅଜ୍ଞେୟ ପୃଥିବୀ, ମଣୀଷ ପ୍ରଭୃତି।

ଏହି ସଙ୍କଳନଟିର ଅଧିକାଂଶ କବିତା ବେଶ୍ ରୋମାଣ୍ଟିକ୍ ଆବେଗପ୍ରବଣ, ରୂପପ୍ରାଣ ଏବଂ ପ୍ରଣୟ ଭାବନାରେ ଅଭିଷିକ୍ତ ।

**ଅନୁରାଧାର ଅଭିସାର :** ଏଥିରେ ୩୫ ଗୋଟି କବିତା ସ୍ଥାନିତ ହୋଇଛି । ଏହି କବିତା ଗୁଡ଼ିକରେ କବିଙ୍କର ବ୍ୟକ୍ତିଗତ ଜୀବନର ପ୍ରେମ, ପ୍ରଣୟଭାବନା, ଆଶା-ଆକାଙ୍କ୍ଷା, ସ୍ୱପ୍ନ ଓ ଭାବପ୍ରବଣତା, ବ୍ୟର୍ଥତା ଓ ବିରହ-ବେଦନାର ଚିତ୍ର ପ୍ରକଟିତ । ଏହି ସଙ୍କଳନଟିରେ କବିଙ୍କର ଆଧାତ୍ମିକ ଅନ୍ୱେଷା ଓ ଅଧାତ୍ମ ଉତ୍ତରିତ ଚେତନାର ପ୍ରତିଫଳନ ଘଟିଅଛି । କବି ତାଙ୍କ 'ଦିନାନ୍ତର ଧ୍ୱନି' କବିତାରେ ଏକ ଅନାହତ ଧ୍ୱନିର ଶ୍ରବଣ କରିଛନ୍ତି । କବିଙ୍କ ଭାଷାରେ-

"ମୁଁ ଶୁଣୁଛି ଅନାହତ ଧ୍ୱନି
କେଉଁ ଗୋଲକ ଧାମର । "

ପୁନଶ୍ଚ କବି 'ଅଧ୍ୟୟନ ଅବୋଧ ଶାସ୍ତ୍ର ର' କବିତାରେ ମଧ ପରଂବ୍ରହ୍ମଙ୍କର ଅନାହତ ଧ୍ୱନିର ମନ୍ଦ୍ରନିନାଦ ସ୍ୱର ଶୁଣିଛନ୍ତି । ଯେଉଁଥିପାଇଁ କବି ଲେଖିଛନ୍ତି-

"ମୁଁ ଖାଲି ଶୁଣିଲି, ନିତି ଶୁଣିଲି
ନାଦ ବ୍ରହ୍ମ ଝଣର ଝଣର ।"

ଶ୍ରୀବତ୍ସ ନାୟକଙ୍କର ଏହି ସବୁ କବିତା କୃତି ବାସ୍ତବରେ ଅନନ୍ୟ । ଢେଙ୍କାନାଳ ମାଟିର ସେ ଜଣେ ସୁଯୋଗ୍ୟ ସନ୍ତାନ । ଢେଙ୍କାନାଳ ସାହିତ୍ୟର ଇତିହାସରେ ତାଙ୍କର ନାମ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ ।

**ଅଖିଳ ମୋହନ ପଟ୍ଟନାୟକ (୧୯୨୭-୧୯୮୨):**

ଅଖିଳମୋହନ ଆଧୁନିକ ଓଡ଼ିଆ କଥା ସାହିତ୍ୟର ଜଣେ ପ୍ରବାଦ ପୁରୁଷ । ସେ ଢେଙ୍କାନାଳ ପାଞ୍ଜିଆସାହି ନିବାସୀ କଥାକାର ଶ୍ରୀ ବାଙ୍କନିଧି ପଟ୍ଟନାୟକଙ୍କର ସୁଯୋଗ୍ୟ ସନ୍ତାନ । ତାଙ୍କ ପିତାଥିଲେ ଜଣେ ଆଦର୍ଶ ଶିକ୍ଷକ । ପିତାଙ୍କର ଗମ୍ଭୀର ପ୍ରତିଭାର ପ୍ରଭାବ ପୁତ୍ର ଅଖିଳ ମୋହନଙ୍କ ଉପରେ ପଡ଼ିଥିଲା । ଯା' ଫଳରେ ଅଖିଳ ମୋହନ ଜଣେ ଆନ୍ତର୍ଜାତିକ ଖ୍ୟାତିସଂପନ୍ନ କଥାକାର ରୂପେ ନିଜର ସିଦ୍ଧି ଓ ସଫଳତା ଅର୍ଜନ କରିପାରିଥିଲେ । ଏପରିକି ସେ ଗଳ୍ପ ସଙ୍କଳନ 'ଓ ଅନ୍ଧଗଳି' ପାଇଁ ୧୯୮୧ ମସିହାରେ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ଲାଭ କରିଥିଲେ । ପିତା ବାଙ୍କନିଧି ପଟ୍ଟନାୟକ ଖୋର୍ଦ୍ଧା ହାଇସ୍କୁଲରେ ପ୍ରଧାନ ଶିକ୍ଷକ ଥିବା ସମୟରେ ୧୯୨୭ ମସିହା ଡିସେମ୍ବର ମାସ ୧୮ ତାରିଖରେ ସେଠାରେ ଅଖିଳ ମୋହନ ଜନ୍ମଲାଭ କରିଥିଲେ । ଅଖିଳମୋହନ

ଖୋର୍ଦ୍ଧାଠାରେ ଜନ୍ମଗ୍ରହଣ କରିଥିବାରୁ କେହି କେହି ଭ୍ରମରେ ତାଙ୍କୁ ପୁରୀଜିଲ୍ଲାର ଲୋକରୂପେ ଅଭିହିତ କରିଥାନ୍ତି । ମାତ୍ର- ପ୍ରକୃତରେ ଅଖିଳ ମୋହନ ଢେଙ୍କାନାଳ ମାଟିର ହିଁ ସୁଯୋଗ୍ୟ ସନ୍ତାନ । ଅଖିଳ ମୋହନ ଆଇନଶିକ୍ଷା ସମାପ୍ତିପରେ ଜଣେ ଆଇନଜୀବୀ ରୂପରେ ନିଜର ବୃତ୍ତି ବାଛି ନେଇଥିଲେ । ଏହି ଓକିଲାତି ବୃତ୍ତି ମଧ ତାଙ୍କ ପିତୃଗୁଣପ୍ରଦତ୍ତ ମନେହୁଏ । କାରଣ- ପିତା ବାଙ୍କନିଧି ଏକଦା କିଛିକାଳ ଆଇନଜୀବୀ ରୂପରେ କାର୍ଯ୍ୟ କରିଥିଲେ । ଆଇନ ବୃତ୍ତିରେ ଦକ୍ଷତା ଲାଭ ସହିତ ଅଖିଳ ମୋହନ ଓଡ଼ିଆ ଗଳ୍ପରଚନାରେ ହାତ ଦେଇ ଜଣେ ଲବ୍ଧ ପ୍ରତିଷ୍ଠ ଗାଳ୍ପିକ ହୋଇପାରିଥିଲେ । ଅଖିଳ ମୋହନଙ୍କ ମହନୀୟ ଗଳ୍ପ ଗ୍ରନ୍ଥ ଗୁଡ଼ିକ ହେଲା- ନଦୀର ନାମ ଗଣତନ୍ତ୍ର, ଝଡ଼ର ଇଗଲ୍ ଓ ଧରଣୀର କୃଷ୍ଣସାର, ଓ ଅନ୍ଧଗଳି, ବାଲିଘର, ବାଘରାଣୀ ଖଇରୀ, ଅନାଗତ ଫାଲ୍‌ଗୁନ, ପ୍ରଥମ ଓ ଶେଷ । ତାଙ୍କ ରଚିତ ଏକ ସଫଳ ଭ୍ରମଣ ଗ୍ରନ୍ଥ ହେଲା- ଅନ୍ୟଦେଶ । ଏଇ ପ୍ରଚଣ୍ଡ ପ୍ରତିଭାଧର ସ୍ରଷ୍ଟାଙ୍କର ଅକାଳମୃତ୍ୟୁ ଆଧୁନିକ ଓଡ଼ିଆ କଥାସାହିତ୍ୟ ର ଅପୂରଣୀୟ କ୍ଷତି ଘଟାଇଥିଲା । ୧୯୮୨ ମସିହା ନଭେମ୍ବର ମାସ ୨୯ ତାରିଖରେ ମାତ୍ର ୫୫ ବର୍ଷ ବୟସରେ ଅଖିଳମୋହନ ଇହଲୀଳା ସମ୍ବରଣ କରିଥିଲେ ।

**ଓ ଅନ୍ଧଗଳି (୧୯୭୯):** ଏହି ଗଳ୍ପ ସଂକଳନଟି ଏକ କାଳଜୟୀ କଳାକୃତି । ଏହି ପୁସ୍ତକପାଇଁ ସ୍ରଷ୍ଟା ୧୯୮୧ ମସିହାରେ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ରେ ସମ୍ମାନିତ ହୋଇଥିଲେ । ଏହି ଗଳ୍ପ ସଂକଳନଟିରେ ୧୬ ଗୋଟି ମହାର୍ଘ ଗଳ୍ପ ସ୍ଥାନିତ ହୋଇଛି । ସେଗୁଡ଼ିକ ହେଲା- ଡିମିରି ଫୁଲ, ଗୋଟିଏ ଲଟେରୀ ଟିକେଟ୍, ହଂସ ସଂଗୀତ, ଅକାଳବୋଧନ, ପ୍ଲାନ୍‌ଚେଟ୍ ଓ ପରଲୋକ, ଜଉଘର, ସେଇ ଲୋକଟା, ଚନ୍ଦ୍ରର ଅଭିଶାପ, ଶେଷ ଆବିଷ୍କାର, ଜନ ଓ ଜନତା, ରକ୍ତକଇଁ, ଋତୁଚକ୍ର, କାପାଳିକ, ଅନ୍ଧଗଳି ପ୍ରଭୃତି । ଏହିସବୁ ଗଳ୍ପ ଗୁଡ଼ିକରେ ଆଧୁନିକ ଯୁଗଯନ୍ତ୍ରଣା, ଆଧୁନିକ-ସ୍ୱାର୍ଥ ସର୍ବସ୍ୱ, ବସ୍ତୁବାଦୀ ମଣିଷର ଅର୍ଥ ଓ କ୍ଷମତା ଲିପ୍‌ସା, ଅହଂକାର ସହିତ ଜୀବନର ବ୍ୟର୍ଥତା, ଅସହାୟତା ଓ ବେଦନାବୋଧର ଚିତ୍ର ପ୍ରକଟିତ ।

**ନଦୀର ନାମ ଗଣତନ୍ତ୍ର (୧୯୮୪):** ଏହି ଗଳ୍ପ ସଙ୍କଳନଟିରେ ୧୪ ଗୋଟି ମନୋଜ୍ଞ ଗଳ୍ପ ସ୍ଥାନିତ ହୋଇଛି । ସେଗୁଡ଼ିକ ହେଲା- ଚକେ ଗଲେ ବାର ହାତ, ଗୋଟିଏ କୁକୁରର କଥା, କନିଅପା, ଗୋଟିଏ ଉଡାଜାହାଜ ସଂପର୍କରେ, କିଂଶୁକର ଅଭିସାର, ମାଂସପେଶୀର ହୃଦୟ, ଅକ୍ଟୋପସ୍ ର କ୍ଷୁଧା, ମତ୍ସ୍ୟଗନ୍ଧା, ବହୁରୂପୀ, ରାଣୀବାଈ, କାବୁଲିବାଲା, ପୁତ୍ର, ତାମ୍ରବଳୟ, ନଦୀର ନାମ ଗଣତନ୍ତ୍ର । ଏହି ଗଳ୍ପ ସଂକଳନଟିରେ ସାଂପ୍ରତିକ ଗୁଗ୍‌ଣ,

ଅବକ୍ଷୟଗ୍ରସ୍ତ ସମାଜ ଜୀବନ ଓ ତ୍ରୁଟିପୂର୍ଣ୍ଣ ଗଣତାନ୍ତ୍ରିକ ଶାସନ ବ୍ୟବସ୍ଥା ର ବାସ୍ତବ ଚିତ୍ର ପ୍ରକଟିତ । ଏହା ସହିତ ବ୍ୟକ୍ତିଜୀବନର ଅସହାୟତା, ବ୍ୟର୍ଥତା ଓ ଯନ୍ତ୍ରଣାବୋଧ ସହିତ ମାନବିକ ଭାବଚେତନାର ମହାଦ୍ୟୁତି ଏଥିରେ ପ୍ରକଟିତ ହୋଇଛି ।

**ଝଡ଼ର ଈଗଲ୍ ଓ ଧରଣୀର କୃଷ୍ଣସାର :** ଏହା ମଧ୍ୟ ଏକ ପ୍ରତିନିଧି ସ୍ଥାନୀୟ ଗଳ୍ପ ଗ୍ରନ୍ଥ । ଏଥିରେ ସନ୍ନିବିଷ୍ଟ ଗଳ୍ପ ଗୁଡ଼ିକ ହେଲା- ଚନ୍ଦ୍ରର ଅଭିଶାପ, ପକ୍ଷାଘାତ, ପୌଷର ଗୋଟିଏ ରାତ୍ରୀ, ସୁକାନ୍ତ ମହାନ୍ତି, ରୂପନାରାୟଣ ସାହା, ଗ୍ରୀନ୍‌ରୁମ୍, ରୁବିର ରୁବାଇୟାତ୍, ଆଷାଢ଼ସ୍ୟ ପ୍ରଥମ ଦିବସେ, ସିଦ୍ଧାର୍ଥର ଉପକଥା, ମନ୍ଦିର କ୍ରନ୍ଦନ, କେତୋଟି ମୁହୂର୍ତ୍ତ, ଅହଲ୍ୟାର ଇତି ବୃତ୍ତି, ଶେଷ ଚୈତ୍ରର ସମ୍ବାଦ, ଲ୍ୟାମ୍ପ୍ ପୋଷ୍ଟର ଇତିକଥା, ପୁଷ୍ପଧନୁ, ଝଡ଼ର ଇଗଲ ଓ ଧରଣୀର କୃଷ୍ଣସାର । ଏହି ସବୁ ଗଳ୍ପ ଗୁଡ଼ିକରେ ଆଧୁନିକ ସମାଜ ଓ ମଣିଷ ଜୀବନର ବହୁବିଧ ରୂପବିଭବ ସାଙ୍ଗକୁ ମଣିଷର ହିଂସ୍ରତା, ପାଶବିକତା ଓ ନୈତିକ ଅଧୋଗତିର ଚିତ୍ର ପ୍ରକଟିତ । ଏହାରି ଭିତରେ କବି ପ୍ରେମ, ପ୍ରୀତି, ମାନବିକ ସମ୍ବେଦନ ଓ ମୁଗ୍ଧ ମାନବିକତାର ଚିତ୍ର ପ୍ରକଟନ କରିଛନ୍ତି । ଝଡ଼ର ଇଗଲ ଓ ଧରଣୀର କୃଷ୍ଣସାର ଶୀର୍ଷକ ଗଳ୍ପରେ ଗାଳ୍ପିକ ଆକାଶର ମାଂସଭୁକ୍ ଇଗଲ ଓ ମାଟିର ତୃଣାଭୁକ୍ କୃଷ୍ଣସାର ମୃଗର ପ୍ରତୀକାତ୍ମକ ଚିତ୍ର ମାଧ୍ୟମରେ ମଣିଷର ହିଂସ୍ର ପାଶବିକତା ଓ ରକ୍ତଲୋଲୁପତାର ଚିତ୍ର ପ୍ରକଟନ ସହିତ ତା' ହୃଦରେ ଶାନ୍ତି, ମୈତ୍ରୀ, ପ୍ରୀତି ଓ ଅହିଂସା ଭାବନାର ପ୍ରତିଷ୍ଠା ପାଇଁ ଉଦ୍ୟମ କରିଛନ୍ତି । ମାଟିର ଆକର୍ଷଣରେ କୃଷ୍ଣସାରର ବନ୍ଧୁହୋଇ ତୃଣଭୋଜନ କରି ମାଂସାସୀ ଇଗଲ୍ ତୃପ୍ତି ପାଇପାରିନାହିଁ । ବେଳେ ବେଳେ ତା' ହୃଦୟ ରେ ଶିକାର ପ୍ରକୃତି ଜାଗିଉଠିଛି, ନିଜ ବନ୍ଧୁ କୃଷ୍ଣସାରକୁ ଶିକାର କରି ତା'ର ଉଷ୍ଣରକ୍ତ ପାନ ଓ କୋମଳ ମାଂସ ଭକ୍ଷଣ କରିବାର ତୃଷ୍ଣା ଜାଗିଉଠିଛି । ମାତ୍ର-ତା' ବିବେକ ତାଙ୍କୁ ଦଂଶନ କରିଛି । ତେଣୁ ସେ ବନ୍ଧୁତ୍ୱ କୁ ଆଡ଼େଇ ଦେଇ ପୁଣି ଉଡିଯାଇଛି ଆକାଶ ବକ୍ଷକୁ ଶିକାର ସନ୍ଧାନରେ । ମାତ୍ର-ଯେତେବେଳେ ତା'ର ହୃଦୟ ପରିବର୍ତ୍ତନ ଘଟିଛି, ସେ ନିଜର ଭୁଲ୍ ବୁଝିପାରିଛି, ସେତେବେଳେ ସେ ପୁଣି ବନ୍ଧୁତ୍ୱ ଓ ଧରଣୀର ସବୁଜିମାରେ ଆକୃଷ୍ଟ ହୋଇ ଧରଣୀକୁ ଓହ୍ଲାଇଛି । ମାତ୍ର- ସେତେବେଳକୁ ବନ୍ଧୁ କୃଷ୍ଣସାର ତାକୁ ଝୁରି ଝୁରି ମରିଯାଇଛି । ତା' ହୃଦୟରେ ସୃଷ୍ଟିହୋଇଛି- ଆତ୍ମଗ୍ଲାନି । ପଶ୍ଚାତାପରେ ତା'ର ପ୍ରାଣ ମ୍ୟଥିତ ହୋଇଛି । ଶେଷଥରପାଇଁ ସେ ଧରଣୀରେ ଅନୁଭବ କରିଛି ବନ୍ଧୁ କୃଷ୍ଣସାରର ନିବିଡ଼ ଆଶ୍ଳେଷ । ବାସ୍ତବରେ ଏହି ଗଳ୍ପଟି ଏକ ନିଗୂଢ଼ ମନସ୍ତାତ୍ତ୍ୱିକ ଓ ମାନବବାଦୀ ଗଳ୍ପ ।

**ପ୍ରଥମ ଓ ଶେଷ (୧୯୯୦):** ଏହି ଗଳ୍ପ ଗ୍ରନ୍ଥଟି ସ୍ରଷ୍ଟାଙ୍କର ଶେଷତମ ରଚନା। ତାଙ୍କ ମୃତ୍ୟୁର ଆଠବର୍ଷପରେ ଏହା ପ୍ରକାଶିତ ହୋଇଛି। ଏଥିରେ ସନ୍ନିବିଷ୍ଟ ଗଳ୍ପ ଗୁଡ଼ିକ ହେଲା- ଅଭିଶପ୍ତ ଜରାୟୁ, ଗୋଟିଏ ହୋଟେଲ୍ ର ନକ୍ସା, ସୁବର୍ଣ୍ଣମୟୀ ଉପାଖ୍ୟାନ, ମଧ୍ୟରାତ୍ରୀର ଅତିଥି, ଲୁଚକାଳି, ଗୋଟିଏ କବିତାର ମୃତ୍ୟୁ, ଦିବ୍ୟଦୃଷ୍ଟି, ଅଶ୍ୱାବଲୋକନ, ସ୍ୱାର୍ଟୀକସ୍, ବନ୍ୟ ଶୂକର, ଗଜ ଉଦ୍ଧାରଣ, ଗୋଟିଏ ଉଡ଼ାଜାହାଜ ସଂପର୍କରେ, ସପନ ପ୍ରଭୃତି। ଏହିସବୁ ଗଳ୍ପ ଗୁଡ଼ିକ ବେଶ୍ ସମାଜନିଷ୍ଠ, ଜୀବନବାଦୀ ଓ ମୃତ୍ୟୁ ସଚେତନ। ଦୁର୍ଲ୍ଲଂଘନୀୟ ନିଷ୍ଠୁର ମୃତ୍ୟୁ ର ବୀଭତ୍ସ ଓ କରୁଣ ଚିତ୍ର ଅଧିକାଂଶ ଗଳ୍ପରେ ପ୍ରକଟିତ ହୋଇଛି।

ଅଖିଳ ମୋହନ ଢେଙ୍କାନାଳ ମାଟିର ଜଣେ ସାର୍ଥକ ସ୍ରଷ୍ଟା ତାଙ୍କର କାଳଜୟୀ ଗଳ୍ପକୃତି ଗୁଡ଼ିକପାଇଁ ଢେଙ୍କାନାଳ ମାଟି ଗର୍ବିତ ଓ ଗୌରବାନ୍ୱିତ।

**ଶ୍ରୀ ନୃସିଂହ ଚରଣ ପଣ୍ଡା (୧୯୨୯- ):**

ନୃସିଂହ ଚରଣ ପଣ୍ଡାଙ୍କର ଜନ୍ମ ୧୯୨୯ ମସିହା ଏପ୍ରିଲ୍ମାସ ୨୦ ତାରିଖରେ ଢେଙ୍କାନାଳ ଜିଲ୍ଲା କାମାକ୍ଷାନଗର ଅନ୍ତର୍ଗତ 'ପରଜଙ୍ଗ' ଠାରେ। ତାଙ୍କ ପିତାଙ୍କ ନାମ- ପଣ୍ଡିତ ଅନ୍ତର୍ଯ୍ୟାମୀ ପଣ୍ଡା ଓ ମାତା- କମଳା ଦେବୀ। ଶ୍ରୀଯୁକ୍ତ ପଣ୍ଡା ଜଣେ ମେଧାବୀ ଛାତ୍ରଥିଲେ। ସେ ୧୯୪୯ ମସିହାରେ ଢେଙ୍କାନାଳ ବ୍ରଜନାଥ ବଡ଼ଜେନା ହାଇସ୍କୁଲ୍ ରୁ ହାଇସ୍କୁଲ୍ ସାର୍ଟିଫିକେଟ୍ ପରୀକ୍ଷାରେ ଓଡ଼ିଶାରେ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇ ଉତ୍ତୀର୍ଣ୍ଣ ହୋଇଥିଲେ। ଏହାପରେ ସେ କଟକର ରେଭେନ୍ସା କଲେଜରେ ଆଇ.ଏସ୍ ସି. ରେ ନାମ ଲେଖାଇ ୧୯୫୧ ମସିହାରେ ପ୍ରଥମ ଶ୍ରେଣୀରେ ପାଶ୍ କରି ଆଗ୍ରା ବିଶ୍ୱବିଦ୍ୟାଳୟ ଅଧୀନସ୍ଥ ୟୁ.ପି. କଲେଜ୍ ଅଫ୍ ଭେଟେନାରୀ ସାଇନ୍ସ୍ ଆଣ୍ଡ ଏନିମଲ ହଜ୍‌ବ୍ୟାଣ୍ଡ୍ରି , ମଥୁରାରେ ବି.ଭି. ଏସ୍ ସି. ରେ ନାମ ଲେଖାଇଥିଲେ। ୧୯୫୫ ମସିହାରେ ସେ ଏହିପରୀକ୍ଷାରେ ମଧ୍ୟ ପ୍ରଥମଶ୍ରେଣୀରେ ପ୍ରଥମହୋଇ ଉତ୍ତୀର୍ଣ୍ଣ ହୋଇଥିଲେ। ଶ୍ରୀଯୁକ୍ତ ପଣ୍ଡା ୧୯୫୮ ମସିହାରେ ପ୍ରଥମେ ଓଡ଼ିଶା ଇଉନିଭରସିଟି ଅଫ୍ ଏଗ୍ରିକଲଚର ଏଣ୍ଡ ଟେକ୍ନୋଲୋଜି (OUAT) ରେ ଜଣେ ସହାୟକ ପ୍ରଫେସର ଭାବରେ ନିଜର ଚାକିରୀ ଜୀବନ ଆରମ୍ଭ କରିଥିଲେ। ୧୯୬୨ ମସିହା ବେଳକୁ ସେ ଆମେରିକାର କଲମ୍ବିଆ ସ୍ଥିତ 'ମିସୌରୀ' ବିଶ୍ୱବିଦ୍ୟାଳୟରୁ ଏମ୍. ଏସ୍ ସି ଡିଗ୍ରୀ ଲାଭକରିଥିଲେ। ସେଠାରେ ସେ ବିଜ୍ଞାନରେ ଉଚ୍ଚତର ଗବେଷଣାକରି ୧୯୬୯ ମସିହାରେ ପି ଏଚ୍.ଡି. ଡିଗ୍ରୀ ମଧ୍ୟ ଲାଭକରିଥିଲେ। ଶ୍ରୀଯୁକ୍ତ ପଣ୍ଡା ଏକାଧାରରେ ଥିଲେ ଜଣେ ଆନ୍ତର୍ଜାତିକ ଖ୍ୟାତି ସଂପନ୍ନ ବୈଜ୍ଞାନିକ , ବିଶିଷ୍ଟ ଗବେଷକ, ପ୍ରବୀଣ ଶିକ୍ଷାବିତ୍ ଓ

ପ୍ରଥିତଯଶା ସାରସ୍ୱତ ସ୍ରଷ୍ଟା । ସେ ନିଜ ଜୀବନର ଅଧିକାଂଶ ସମୟ ଅଧ୍ୟାପନା ସହିତ ଗବେଷଣା ଓ ସାରସ୍ୱତ ସୃଷ୍ଟି କର୍ମରେ ବିତାଇଦେଇଛନ୍ତି । ଓଡ଼ିଆ ସାହିତ୍ୟର ଜଣେ ପ୍ରଥିତଯଶା ସ୍ରଷ୍ଟା ଭାବରେ ସେ ୮ ଖଣ୍ଡ ବଳିଷ୍ଠ ଉପନ୍ୟାସ, ୪ ଗୋଟି ପ୍ରବନ୍ଧ ସଂକଳନ, ୪ ଗୋଟି କବିତା ସଂକଳନ, ଦୁଇଖଣ୍ଡି ଗଳ୍ପ ସଂକଳନ, ନିଜର ଆତ୍ମଜୀବନୀ ଓ ଅନେକ ଗୁଡ଼ିଏ ଶିଶୁ ସାହିତ୍ୟ ରଚନା କରିଛନ୍ତି । ଏହା ସହିତ ତାଙ୍କର ୧୦ ଗୋଟି ଇଂରାଜୀ ଗ୍ରନ୍ଥ ଏବଂ ବହୁ ଗବେଷଣାତ୍ମକ ପ୍ରବନ୍ଧମାନ ରହିଛି । ଶ୍ରୀଯୁକ୍ତ ପଣ୍ଡା ତାଙ୍କର ସାରସ୍ୱତ ସାଧନା ଓ ସିଦ୍ଧିପାଇଁ ଅନେକ ପୁରସ୍କାର ଓ ସମ୍ମାନରେ ବିଭୂଷିତ ହୋଇଛନ୍ତି । ସପ୍ତସିନ୍ଧୁ ଉପନ୍ୟାସ ପାଇଁ ସେ ୧୯୮୪ ମସିହାରେ ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର ଲାଭକରିଛନ୍ତି । ତାଙ୍କର 'ଖାରବେଳ' ଉପନ୍ୟାସ ମଧ୍ୟ ୧୯୯୩ ମସିହାରେ 'ସାରଳା ପୁରସ୍କାର' ରେ ତାଙ୍କୁ ସମ୍ମାନୀତ କରିଛି । ଏହାସହିତ ସେ ଅନେକ ସାରସ୍ୱତ ଓ ସାଂସ୍କୃତିକ ଅନୁଷ୍ଠାନରୁ ବହୁବାର ପୁରସ୍କୃତ ଓ ସମ୍ମାନୀତ ହୋଇଛନ୍ତି । ଶ୍ରୀଯୁକ୍ତ ପଣ୍ଡାଙ୍କ ରଚିତ ଉପନ୍ୟାସ କୃତି ଗୁଡ଼ିକ ହେଲା- ମେଷ ପାଳକ (୧୯୭୭), ଦଗ୍ଧ ଗୋଲାପର ଚିର ବସନ୍ତ (୧୯୮୧), ସପ୍ତସିନ୍ଧୁ(୧୯୮୨), ଚଣ୍ଡାଶୋକ (୧୯୮୩), ଧର୍ମାଶୋକ (୧୯୮୫), ଖାରବେଳ (୧୯୮୯), ଅଶାନ୍ତ ଅନଳ (୧୯୯୦), ବିଶ୍ୱାମିତ୍ର ଉବାଚ (୧୯୯୩) । ଏତଦ୍‌ଭିନ୍ନ ତାଙ୍କ ରଚିତ ଦୁଇଖଣ୍ଡି ମହାର୍ଘ ଗଳ୍ପ ସଙ୍କଳନ ହେଲା- ସଙ୍ଗମ (୧୯୮୯), ଅଷ୍ଟମ ସ୍ୱର (୧୯୯୭) । ତାଙ୍କ ରଚିତ ପ୍ରବନ୍ଧ ଗ୍ରନ୍ଥ ଗୁଡ଼ିକ ହେଲା- ବିଜ୍ଞାନ ଓ ପ୍ରକୃତି (୧୯୭୭), ବିଜ୍ଞାନ ଓ ଭଗବାନ (୧୯୮୪), ବିଜ୍ଞାନ ଓ ପ୍ରବିଧିକୀ (୨୦୦୧), ପାଷାଣ ଭେଦୀ ଗୁଳ୍ମର କାହାଣୀ- ଆତ୍ମଜୀବନୀ(୨୦୧୩) । ତାଙ୍କ ରଚିତ କବିତା ସଂକଳନ ଗୁଡ଼ିକ ହେଲା- ଋତ ଅନୃତ (୨୦୦୦), ଆଦି କାବ୍ୟ (୨୦୦୨), ଫେଣ ଓ ତରଙ୍ଗ (୨୦୦୬), ନାଦବ୍ରହ୍ମ (୨୦୦୯) । ଏହା ସହିତ ତାଙ୍କର ଶିଶୁ ଉପଯୋଗୀ ରଚନା ଗୁଡ଼ିକ ହେଲା- ଅଦୃଶ୍ୟ ଜୀବ, ମାଙ୍କଡ଼ରୁ ମଣିଷ, ଭଲ ମଣିଷ, ଜୀବନ, ଗଛରୁ ପଡ଼ିଲା ଆତ ପ୍ରଭୃତି ।

ଶ୍ରୀଯୁକ୍ତ ପଣ୍ଡାଙ୍କର ଏହିସବୁ କଥାଗ୍ରନ୍ଥ ପ୍ରବନ୍ଧ ସଙ୍କଳନ, କବିତାକୃତି ଓ ଶିଶୁ ସାହିତ୍ୟ ଗୁଡ଼ିକଭିତରେ ସ୍ରଷ୍ଟାପ୍ରାଣର ଆତ୍ମିକ ଅନ୍ୱେଷା, ଆତ୍ମଜିଜ୍ଞାସା, ନୂତନ ଅନୁସନ୍ଧିତ୍ସା, ଇତିହାସ ଉନ୍ମୁଖତା, ପୌରାଣିକ ଚେତନା, ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ, ମାନବବାଦୀ ଚିନ୍ତାଧାରା ଓ ସମାଜ ସଚେତନତା ବେଶ୍ ବଳିଷ୍ଠ ଓ ଶାଣିତ ଭାବରେ ଫୁଟିଉଠିଛି । ଏବେବି ପରିଣତ ବୟସରେ ତାଙ୍କ ଲେଖନୀ ଚଳଚଞ୍ଚଳ । ଶ୍ରୀଯୁକ୍ତ ପଣ୍ଡା ଢେଙ୍କାନାଳ ମାଟିର ଜଣେ ଯୋଗ୍ୟତମ ସନ୍ତାନ, ଜଣେ କାଳଜୟୀ ସାରସ୍ୱତ ସ୍ରଷ୍ଟା ।

## ନୃସିଂହ କୁମାର ରଥ (୧୯୩୯- ):

ଉତ୍ତର-ଆଧୁନିକ ପ୍ରୟୋଗବାଦୀ କବିତା ରଚନା ପରମ୍ପରାର ଜଣେ ସଫଳ ସ୍ରଷ୍ଟା- କବି ନୃସିଂହ କୁମାର ରଥ । ନୃସିଂହ ରଥ ୧୯୩୯ ମସିହା ରେ ଢେଙ୍କାନାଳ ଜିଲ୍ଲାର ମନ୍ଦାର ଶାସନ ଠାରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତା- ସ୍ୱର୍ଗତ ଚିନ୍ତାମଣି ରଥ ଓ ମାତା- ନାମୀ ଦେବୀ। ୧୯୬୧ ମସିହାରେ ରେଭେନ୍‌ସା କଲେଜରୁ ଇଂରାଜୀ ସାହିତ୍ୟରେ ଏମ୍. ଏ. ପାଶ୍ ପରେ ଶ୍ରୀଯୁକ୍ତ ରଥ ଅଧାପନା ବୃତ୍ତିରେ ଯୋଗ ଦେଇଥିଲେ । ସେ ଇଂରାଜୀ ଭାଷାସାହିତ୍ୟରେ ଅଧ୍ୟୟନ ସହିତ ଓଡ଼ିଆ ଭାଷାରେ କବିତା ରଚନାରେ ମନୋନିବେଶ କରିଥିଲେ । ଆଧୁନିକ ମଣିଷର ସ୍ୱପ୍ନ, ସମ୍ଭାବନା, ଜୀବନ ଜିଜ୍ଞାସା ସହିତ ତା'ର ଦୁଃଖ-ଦହନ, ନୈରାଶ୍ୟ, ଅସହାୟତା ଓ ଏକାକୀତ୍ୱବୋଧର ଚିତ୍ର ତାଙ୍କ କବିତା ଭିତରେ ପ୍ରତିଫଳିତ । ତାଙ୍କ ରଚିତ କବିତା ସଙ୍କଳନ ଗୁଡ଼ିକ ହେଲା- ମରୁଦୂର୍ବା (୧୯୬୦), ଦୃଷ୍ଟି ଓ ଦର୍ଶନ (୧୯୬୩), ଛବି ଓ ଛାୟା (୧୯୬୪), ଶୂନ୍ୟତାମ୍ (୧୯୬୫), ଉତ୍କଣ୍ଠାର ମୃତ୍ୟୁ (୧୯୭୫), ପୂର୍ବାଶାର ଗୀତ (୧୯୯୫), ପ୍ରତିଧ୍ୱନି ଜଗତରୁ, ନିର୍ବାସିତର ସ୍ୱର୍ଗ, ସମୟ-ସମୟାନ୍ତର, ସମୟର ଧୂସର ବାଲିରେ (୨୦୦୧) । ଏହି ସବୁ କବିତା ଗ୍ରନ୍ଥ ଗୁଡ଼ିକ ଓଡ଼ିଆ ସାହିତ୍ୟର ଏକ ଏକ ଅମୂଲ୍ୟ ସଂପଦ । ଶ୍ରୀଯୁକ୍ତ ରଥ ନିଜର କବିତା ରଚନାର ସିଦ୍ଧି ଓ ସଫଳତା ପାଇଁ ଅନେକ ପୁରସ୍କାରରେ ସମ୍ମାନୀତ ହୋଇଛନ୍ତି । ତାଙ୍କର 'ସମୟର ଧୂସର ବାଲିରେ' କବିତା ସଂକଳନ ପାଇଁ କବି ୨୦୦୪ ମସିହାରେ ଓଡଶା ସାହିତ୍ୟ ଏକାଡେମୀ ଦ୍ୱାରା ପୁରସ୍କୃତ ହୋଇଛନ୍ତି । ତାଙ୍କର କବିତ୍ୱ ପ୍ରତିଭାର ବର୍ଣ୍ଣବିଭା ଢେଙ୍କାନାଳ ସାହିତ୍ୟର ଦିଗ୍‌ବଳୟକୁ ବର୍ଣ୍ଣିଳ ଓ ସୁଷମାନ୍ୱିତ କରିଛି ।

## ନୃସିଂହ ପ୍ରସାଦ ତ୍ରିପାଠୀ (୧୯୪୫- ):

ଓଡ଼ିଆ ପ୍ରୟୋଗବାଦୀ କବିତା ରଚନା ପରମ୍ପରାର ଜଣେ ପ୍ରଥିତଯଶା ସ୍ରଷ୍ଟା, ଢେଙ୍କାନାଳ ମାଟିର କବି ଶ୍ରୀ ନୃସିଂହ ପ୍ରସାଦ ତ୍ରିପାଠୀ । କବିଙ୍କର ଜନ୍ମ ୧୯୪୫ ମସିହାରେ ଢେଙ୍କାନାଳ ସହରର 'ଗୁଡ଼ିଆନାଳୀ' ଠାରେ । ତାଙ୍କ ପିତାଙ୍କ ନାମ- ଶ୍ରୀ ଦୈତାରୀ ପ୍ରସାଦ ତ୍ରିପାଠୀ ଓ ମାତା-ଉଷାରାଣୀ ଦେବୀ । ଶ୍ରୀଯୁକ୍ତ ତ୍ରିପାଠୀ ଅର୍ଥନୀତିରେ ଏମ୍.ଏ. ପାଶ୍ ପରେ ପ୍ରଥମେ କିଛିକାଳ ଅଧାପନା ବୃତ୍ତିରେ ଯୋଗଦେଇଥିଲେ । ମାତ୍ର- ପରବର୍ତ୍ତୀ ସମୟରେ ସେ ଅଧାପକ ଚାକିରୀ ଛାଡ଼ି ଭାରତୀୟ ରାଜସ୍ୱ ସେବାରେ ଜଣେ ପଦସ୍ଥ କର୍ମଚାରୀ ରୂପେ ଯୋଗଦେଇଥିଲେ ମାତ୍ର ଆୟକର ବିଭାଗର ମହାନିର୍ଦ୍ଦେଶକ

ଭାବରେ ସେ ୨୦୦୫ ମସିହାରେ ଚାକିରୀ ଜୀବନରୁ ଅବସର ଗ୍ରହଣ କରିଛନ୍ତି । ନୃସିଂହ ତ୍ରିପାଠୀ ଏକାଧାରରେ ଜଣେ ସଫଳ କବି, ଗାଳ୍ପିକ ଏବଂ ଅନୁବାଦକ । ଅନୁବାଦ କ୍ଷେତ୍ରରେ ନିଜର ସିଦ୍ଧି ଓ ସଫଳତା ପାଇଁ ସେ ସାହିତ୍ୟ ଏକାଡ଼େମୀ ପୁରସ୍କାରରେ ମଧ ସମ୍ମାନୀତ ହୋଇଛନ୍ତି । ତାଙ୍କ ରଚିତ କବିତାକୃତି ଗୁଡ଼ିକ ହେଲା- ପୂର୍ବଦିଗ(୧୯୮୦), ବୁଝାମଣା(୧୯୮୩), ହେ ଈଶ୍ୱର ଉଠ(୧୯୮୩), ନିଦ୍ରିତ ସନ୍ୟାସ(୧୯୮୯), ପର୍ବ(୧୯୯୨), ଶୂନ୍ୟରମଣ । ତାଙ୍କର ଦୁଇଖଣ୍ଡି ମନୋଜ୍ଞ ଗଳ୍ପ ଗ୍ରନ୍ଥ ମଧ ରହିଛି । ଯଥା- ମନୋନିବେଶ ଏବଂ ଲାବଣ୍ୟବତୀ । କବିଙ୍କ କାବ୍ୟିକ ପ୍ରତିଭାର ପ୍ରଥମ ପ୍ରକାଶ ଘଟିଥିଲା- 'ରାତିର ଖରା' ସଂକଳନରେ । ଏହି ସଂକଳନଟି ଏକ ମିଳିତ କାବ୍ୟସୃଷ୍ଟି । ଦୁଇ ଯୁବକବି ବନ୍ଧୁଙ୍କ ସହିତ ମିଶି କବି ଏହି ସଂକଳନଟି ରଚନା କରିଛନ୍ତି । ଏଥିରେ ସ୍ଥାନିତ କବିଙ୍କର କବିତା ଗୁଡ଼ିକ ବେଶ୍ ଉଷ୍ମ ଓ ଆବେଗିକ ଉଚ୍ଛ୍ୱାସରେ ପରିପୂର୍ଣ୍ଣ । ଏହାପରେ କବିଙ୍କର ପ୍ରଥମ କବିତା ସଂକଳନ 'ପୂର୍ବଦିଗ' ପ୍ରକାଶପାଏ ୧୯୮୦ ମସିହାରେ । ଏହି 'ପୂର୍ବଦିଗ' କବିଙ୍କର କାବ୍ୟଯାତ୍ରାର ଏକ ସଫଳ ପାହାଚ । ଏହି ସଂକଳନଟିରେ କବିଙ୍କର ବ୍ୟକ୍ତିଗତ ଜୀବନର ଆଶା, ଆକାଂକ୍ଷା, ସ୍ୱପ୍ନ, ସମ୍ଭାବନା ସହିତ ଜୀବନର ଅପ୍ରାପ୍ତି, ଅସଫଳତା ଜନିତ ଅତୃପ୍ତି ଓ ଅସନ୍ତୋଷ ର ଭାବ ଫୁଟିଉଠିଛି । ଜୀବନ ସଂଗ୍ରାମରେ ଅବତୀର୍ଣ୍ଣ କାବ୍ୟ ପୁରୁଷ ପରାଜୟର ଗ୍ଲାନିରେ ମର୍ମାହତ ହେଲେବି, ଆଶାଶୂନ୍ୟ ହୋଇ ଭାଙ୍ଗିପଡ଼ି ନାହାନ୍ତି ; ପୂର୍ବଦିଗର ଶୁଭ, ମଙ୍ଗଳମୟ, ଆଲୋକିତ ପ୍ରତ୍ୟୁଷର କାମନାକରି ତା'ର ପ୍ରତୀକ୍ଷା କରିଛନ୍ତି । ଏହି ସଙ୍କଳନଟିରେ କବି ମୃତ୍ୟୁ ଚେତନା ପ୍ରତି ବେଶ୍ ସଚେତନଶୀଳ ହୋଇଉଠିଛନ୍ତି । ତାଙ୍କ ଦୃଷ୍ଟିରେ ଜୀବନରେ ମୃତ୍ୟୁ ଏବଂ ମୃତ୍ୟୁ ଭିତରେବି ଜୀବନୀସତ୍ତାର ନିହିତ ଥାଏ । ଯେଉଁଥିପାଇଁ କବି ଲେଖିଛନ୍ତି- "ସୃଷ୍ଟିରେ ମୁଁ ଏବଂ ମୋ ଭିତରେ ସୃଷ୍ଟିର ତାଣ୍ଡବ
ଜୀବନରେ ମୃତ୍ୟୁପରି ମୃତ୍ୟୁରେ ଲୀଳା କରେ ଅସଂଖ୍ୟ ଜୀବନର ରଙ୍ଗ" (ପୂର୍ବଦିଗ) । ମଣିଷ ଜୀବନର ଅପ୍ରାପ୍ତି, ଅସଫଳତା ଜନିତ ଦୁଃଖ-ଦହନ ଓ କାମ-ବାସନା ଜନିତ ପୀଡ଼ା ମୃତ୍ୟୁକଷ୍ଟଠାରୁ ବଳିଯାଏବୋଲି କବି ସୂଚିତ କରିଛନ୍ତି । କବି ଲେଖିଛନ୍ତି-
"ମୋ ଦେହରେ ବିଷ ମିଶେ, ବସ୍ତ୍ରବାର ବିଷ
ମୃତ୍ୟୁ ତେଣୁ ମରିଯାଏ, ମୃତ୍ୟୁ ହୁଏ ସାତ ନୀଳ ରଙ୍ଗ "(ସହରର ମୃତ୍ୟୁ ସଂଖ୍ୟା) ।

କବିଙ୍କର 'ବୁଝାମଣା'(୧୯୮୩) କବିତା ସଂକଳନଟିରେ ମଧ ମଣିଷ ଜୀବନର ବ୍ୟର୍ଥତା, ଅସହାୟତା ଓ ଯନ୍ତ୍ରଣାବୋଧର ଚିତ୍ର ପ୍ରକଟିତ । କବିଙ୍କର ବ୍ୟକ୍ତିଗତ

ଜୀବନର ସମସ୍ୟା, ସଂଘର୍ଷ ଓ ସଂଘାତର ଚିତ୍ର ମଧ୍ୟ ଏଥିରେ ଅଭିବ୍ୟଞ୍ଜିତ । ଜୀବନ ଓ ସଂସାରର ତାତ୍ତ୍ୱିକ ବିଶ୍ଳେଷଣ ଓ ଅନୁଶୀଳନ ମଧ୍ୟ ଏହାର କବିତା ଗୁଡ଼ିକରେ କରାଯାଇଛି । କାବ୍ୟ ପୁରୁଷଙ୍କ ଦୃଷ୍ଟିରେ ଜୀବନ ହେଉଛି- ଏକ ବିଶ୍ୱାସଭରା ମଧୁର ବୁଝାମଣା । 'ହେ ଈଶ୍ୱର ଉଠ (୧୯୮୩)' କବିତାଟି କବିଙ୍କର ଏକ ଶୀର୍ଷକୋଟୀର କବିତା ଗ୍ରନ୍ଥ । ଏହି ସଂକଳନଟିରେ ପ୍ରୟୋଗବାଦୀ କାବ୍ୟଚେତନାର ପରିପ୍ରକାଶ ଘଟିଅଛି । ଏଥିରେ ସାମାଜିକ ଅଙ୍ଗୀକାରବଦ୍ଧତାର ସ୍ୱର ତୀବ୍ର ରୂପ ନେଇଛି । କାବ୍ୟ ପୁରୁଷ ଅତିମାତ୍ରାରେ ସମାଜ ଓ ରାଜନୈତିକ ସଚେତନ ହୋଇଉଠିଛନ୍ତି । ସମାଜ ଓ ରାଜନୈତିକ ଆଭିମୁଖ୍ୟ ଏହି କବିତା ଗୁଡ଼ିକରେ ସ୍ୱଷ୍ଟରୂପେ ବାରିହୋଇ ପଡ଼ିଛି । ବିଭିନ୍ନ ସାମାଜିକ ସମସ୍ୟା, ସଙ୍କଟ, ଶୋଷଣ, କଷଣ ଓ ଭ୍ରଷ୍ଟାଚାର ବିରୁଦ୍ଧରେ ସ୍ରଷ୍ଟା ତୀବ୍ର କଟାକ୍ଷପାତ ସହିତ ବିଦ୍ରୋହର ସ୍ୱର ତୋଳିଛନ୍ତି । ସେ ଚାହିଁଛନ୍ତି - ମଣିଷ ଜୀବନ, ସମାଜ ଓ ରାଜନୀତିରେ ପରିଶୁଦ୍ଧତା, ସ୍ୱଚ୍ଛତା ଓ ପରିବର୍ତ୍ତନ । ମଣିଷ ଭିତରେ ସୁପ୍ତଭାବରେଥିବା ଆତ୍ମଶକ୍ତି ବା ଈଶ୍ୱରଶକ୍ତି କୁ ଅଭିମନ୍ତ୍ରିତ ଓ ଜାଗରିତ କରାଇବାପାଇଁ କବି ଆହ୍ୱାନ ଦେଇଛନ୍ତି । ପରବର୍ତ୍ତୀ କାବ୍ୟ ସଂକଳନ ଗୁଡ଼ିକରେ ମଧ୍ୟ ବିଦ୍ରୋହୀ କାବ୍ୟ ପୁରୁଷ ସାମାଜିକ ତ୍ରୁଟିପୂର୍ଣ୍ଣ ବିଧି ବ୍ୟବସ୍ଥା, ରାଜନୈତିକ ଶଠତା, ଭ୍ରଷ୍ଟାଚାର ଓ ନୈତିକ ଅଧୋଗତି ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଛନ୍ତି । ଏହା ସହିତ ବ୍ୟକ୍ତି ଜୀବନର ଅଧୋଗତି, ଅବକ୍ଷୟ ସହିତ ନାନାବିଧ ତ୍ରୁଟି-ବିଚ୍ୟୁତି ବିରୁଦ୍ଧରେ କବି ବୌଦ୍ଧିକ ଭାବରେ ଶାଣିତ ବ୍ୟଙ୍ଗ କରିଛନ୍ତି । ମଣିଷର ସ୍ନେହ, ସଂପ୍ରୀତି, ତ୍ୟାଗଦୀପ୍ତ ଭାବନା, ଉଦାରତା ଓ ମାନବିକ ଭାବଚେତନାର ମହାଦ୍ୟୁତିରେ ତାଙ୍କ କବିତାଗୁଡ଼ିକ ମହିମୋଜ୍ଜ୍ୱଳ ହୋଇଉଠିଛି ।

**ଆନନ୍ଦ ଚନ୍ଦ୍ର ପହି (୧୯୪୬- ):**

ଆନନ୍ଦଚନ୍ଦ୍ର ପହିଙ୍କର ଜନ୍ମ ୧୯୪୬ ମସିହା ଏପ୍ରିଲ୍ ମାସ ୧୧ ତାରଖରେ, ଢେଙ୍କାନାଳ ଜିଲ୍ଲାର ନିହଲପ୍ରସାଦ ଗ୍ରାମରେ । ଶ୍ରୀଯୁକ୍ତ ପହି ଏକାଧାରରେ ଜଣେ ଗାଳ୍ପିକ ଓ ନାଟ୍ୟକାର  ସାରସ୍ୱତ ସୃଷ୍ଟିକର୍ମର ପ୍ରାରମ୍ଭିକ ପର୍ଯ୍ୟାୟରେ ପହି ମୁଖ୍ୟତଃ ଗଳ୍ପ ରଚନାରେ ମନୋନିବେଶ କରିଥିଲେ । ପରବର୍ତ୍ତୀ ସମୟରେ ସେ ତାଙ୍କର ଅଧିକାଂଶ ଗଳ୍ପକୁ ନାଟ୍ୟରୂପ ଦେବା ସହିତ ବେତାର ଓ ଦୂରଦର୍ଶନରେ ପ୍ରସାରଣ ଉପଯୋଗୀ ଛୋଟ ନାଟକ ବା ଏକାଙ୍କିକାମାନ ରଚନା କରିଥିଲେ ।  ଏହା ସହିତ ଶ୍ରୀଯୁକ୍ତ ପହି ମଞ୍ଚନାଟକମାନ ମଧ୍ୟ ରଚନା କରିଚାଲିଛନ୍ତି । ନାଟକ ରଚନା କ୍ଷେତ୍ରରେ ସିଦ୍ଧି ଓ

ସଫଳତା ପାଇଁ ଶ୍ରୀଯୁକ୍ତ ପହି ଅନେକ ପୁରସ୍କାର ଓ ସମ୍ମାନରେ ବିଭୂଷିତ । ୧୯୯୮ ମସିହାରେ ସେ ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା ପୁରସ୍କୃତ ହୋଇଛନ୍ତି । ମଣିଷ ସମାଜ ଓ ବ୍ୟକ୍ତି ଜୀବନକୁ ନେଇ ସେ ଗଳ୍ପ ଓ ନାଟକମାନ ରଚନା କରିଛନ୍ତି । ତାଙ୍କ ରଚିତ ଗଳ୍ପ ଏବଂ ନାଟକ ଗୁଡ଼ିକ ବେଶ୍ ସମାଜନିଷ୍ଠ ଓ ସାମାଜିକ ଅଙ୍ଗୀକାରବଦ୍ଧ । ଉଭୟ ଗ୍ରାମୀଣ ଓ ସହରୀ ଜୀବନର ବାସ୍ତବ ଚିତ୍ର ତାଙ୍କ ଗଳ୍ପ, ନାଟକରେ ଚିତ୍ରିତ । ସରଳ, ନିଷ୍କପଟ ପଲ୍ଲୀଜୀବନର ଚିତ୍ର ପ୍ରକଟନ ସହିତ ସହରୀ ଜୀବନର ବସ୍ତୁଗତମୋହ, ସ୍ୱାର୍ଥପରତା ଓ ମାନବିକ ଅବକ୍ଷୟର ଦିଗ ତାଙ୍କ ଗଳ୍ପ ନାଟକରେ ପ୍ରକଟିତ । ଗଭୀର ମାନବିକ ସମ୍ବେଦନା, ସମାଜ ସଚେତନତା ଓ ସାମାଜିକ ଅଙ୍ଗୀକାରବଦ୍ଧତା ତାଙ୍କ ଗଳ୍ପ-ନାଟକ ଗୁଡ଼ିକୁ ବେଶ୍ ଜୀବନ୍ତ, ପ୍ରାଣବନ୍ତ କରିଅଛି ।

**ନାଟ୍ୟକୃତି :** ଶ୍ରୀଯୁକ୍ତ ପହି ବେତାର ନାଟକ, ଦୂରଦର୍ଶନ ନାଟକ ରଚନା ସହିତ ମଞ୍ଚ ନାଟକମାନ ମଧ ରଚନା କରିଛନ୍ତି । ତାଙ୍କ ନାଟକ ଗୁଡ଼ିକରେ ପରଂପରା ଓ ପୁରୋଦୃଷ୍ଟିର ପ୍ରଭାବ ବିଶେଷଭାବରେ ପରିଲକ୍ଷିତ । ତାଙ୍କ ରଚିତ ଏବଂ ପ୍ରକାଶିତ ନାଟ୍ୟକୃତି ଗୁଡ଼ିକ ହେଲା- ସୂର୍ଯ୍ୟୋଦୟ, ଅନେକ ମୁହଁ, ଅଚିହ୍ନା ଅପରାଧ, ଭାଙ୍ଗିପଡୁଥିବା ଭୂମି, ପ୍ରତୀକ୍ଷାରେ ପରୀକ୍ଷିତ, ଯନ୍ତା, ହଜିଯାଇଥିବା ମଣିଷ, ଦୁଇଦିଗନ୍ତ, ଆକାଶର ରଙ୍ଗ, ଡର, ରେଖାଚିତ୍ର, ଖାଲିହାତର ଛବି, ଅନ୍ୟ ଅରଣ୍ୟ, କାଲି ଆଜିକାଲି, ଫୁଲ୍ ଟେନ୍‌ସନ, ମୁହଁସଂଜ, ଅନ୍ୟଏକ ସିଦ୍ଧାର୍ଥ, ଅମୁହାଁ ଦେଉଳ, ଅନ୍ତର୍ଦାହ, ସଂପର୍କର ତିନିଗାର ଇତ୍ୟାଦି ।

**ଅନେକ ମୁହଁ (୧୯୮୨-):** ଏହା ଏକ ବେତାରଧର୍ମୀ ନାଟକ । ଏହି ନାଟକଟି ସାତଗୋଟି ଦୃଶ୍ୟ ମଧରେ ସୀମାବଦ୍ଧ । ଅଭିନୟ ପାଇଁ ଏଥିରେ ଦୁଇ ଗୋଟି ସେଟ୍ ର ପରିକଳ୍ପନା କରାଯାଇଛି । ଉଭୟ ଗ୍ରାମୀଣ ଓ ସହରୀ ଜୀବନର ଚିତ୍ର ଏଥିରେ ପ୍ରକଟିତ । ସହରର ମଧବିତ୍ତ ଶ୍ରେଣୀର ଆର୍ଥିକ ଦୁରାବସ୍ଥା ଓ ମାନସିକ ଚିତ୍ତ ସଙ୍ଘର୍ଷର ଚିତ୍ର ଏହି ନାଟକଟିରେ ରୂପାୟିତ । ନାଟ୍ୟକାର ଏହି ନାଟକ ମାଧମରେ ମଣିଷ ମନରୁ ଆତ୍ମକୈନ୍ଦ୍ରିକତା ଓ ଆତ୍ମସ୍ୱାର୍ଥର ବିନାଶ ଘଟାଇ 'ବସୁଧୈବ କୁଟୁମ୍ବକମ୍' ବା ଏକାର୍ଣ୍ଣବର୍ତ୍ତୀ ପରିବାର ଭାବନାର ପରିପ୍ରକାଶ କରିଛନ୍ତି । ଏହା ଏକ ଆଦର୍ଶବାଦୀ ନାଟକ ।

**ସୂର୍ଯ୍ୟୋଦୟ (୧୯୮୩):** ଏହା ଏକ ଏକାଙ୍କିକା ବା ଛୋଟ ନାଟକ ପର୍ଯ୍ୟାୟବାଚୀ । ଏହା ଗୋଟିଏ ସେଟ୍ ରେ ଅଭିନୀତ । ମଣିଷର ଚିରନ୍ତନୀ କ୍ଷୁଧା, ଦାରିଦ୍ର୍ୟ ଓ ଜୀବନ ସଂଗ୍ରାମର ଚିତ୍ର ଏହି ନାଟକରେ ପ୍ରକଟିତ । ଉକ୍ତ ଦାରିଦ୍ର୍ୟ ଓ କ୍ଷୁଧା ର ତାଡ଼ନାଭିତରେ

ନାଟ୍ୟକାର ଏକ ରୋମାଣ୍ଟିକ୍ ପ୍ରେମ କାହାଣୀର ଅବତାରଣା କରି କ୍ଷୁଧା ଓ ଦାରିଦ୍ର୍ୟ ବିରୁଦ୍ଧରେ ସଂଗ୍ରାମ ଜାରି ରଖିଛନ୍ତି ।

**ଅଚିହ୍ନା ଅପରାଧ (୧୯୯୧):** ଏହା ଗୋଟିଏ ସେଟ୍‌ରେ ଅଭିନୀତ ଏକ ଛୋଟନାଟକ ବା ଏକାଙ୍କିକା । ମିଥ୍ ଓ କଳ୍ପନାର ମନୋଜ୍ଞ ସମନ୍ୱୟ ଏହି ନାଟକଟିରେ ପରିଲକ୍ଷିତ । ସମାଜରେ ଘଟିଯାଉଥିବା ଅନ୍ୟାୟ, ଅତ୍ୟାଚାରର ପ୍ରତିବାଦନ କରି ତାକୁ ମଥାପାତି ନୀରବରେ ସହିଯାଉଥିବା ମଣିଷ ମାନଙ୍କୁ ନାଟ୍ୟକାର ଗଭୀର ଭାବରେ ବ୍ୟଙ୍ଗ କରିଛନ୍ତି । ମର୍ତ୍ତ୍ୟ ଲୋକରେ ନୀରବରେ ସବୁକିଛି ସହିଯାଉଥିବା ମଣିଷମାନେ ଭଲଲୋକି ବୋଲାଇ ପୁରସ୍କୃତ ହୋଇପାରନ୍ତି; ମାତ୍ର- ଯମଲୋକରେ ଏମାନଙ୍କୁ ଘୋର ପାପୀ, ଅପରାଧୀରୂପେ ବିବେଚନା କରାଯାଏ ବୋଲି ନାଟ୍ୟକାର ସୂଚିତ କରିଛନ୍ତି ।

**ରେଖାଚିତ୍ର (୧୯୯୧):** ଏହା ଏକ ବେତାର ନାଟକ । ଏହା ଗୋଟିଏ ସେଟ୍ ରେ ରଚିତ । ସରଳ, ନିଷ୍କପଟ ଗ୍ରମୀଣ ମଣିଷମାନେ କିପରି ଶୋଷଣ, କଷଣର ଶିକାର ହୁଅନ୍ତି, ତାହା ନାଟ୍ୟକାର ଏହି ନାଟକଟିରେ ଦର୍ଶାଇଛନ୍ତି । ସମାଜର କିଛି ଧୂର୍ତ୍ତ ଶ୍ରେଣୀୟ ବ୍ୟକ୍ତି ବା ଅନୁଷ୍ଠାନ ଡକ୍ୟୁମେଣ୍ଟାରୀ ଚଳଚିତ୍ର ନାଁ ରେ କିପରି ମଣିଷର ଦାରିଦ୍ର୍ୟ, କ୍ଷୁଧା ଓ ଅସହାୟତାର ଚିତ୍ର ପ୍ରଦର୍ଶନକରି, ପ୍ରଚୁର ମୁନାଫା ପାଉଛନ୍ତି, ତାହା ନାଟ୍ୟକାର ଏହି ନାଟକଟିରେ ଦର୍ଶାଇଛନ୍ତି । ଦାରିଦ୍ର୍ୟ ଓ କ୍ଷୁଧା ପ୍ରତି ଏହା ଚରମ ଉପହାସ ବୋଲି ନାଟ୍ୟକାର ସୂଚିତ କରିଛନ୍ତି ।

**ଭାଙ୍ଗିପଡୁଥିବା ଭୂମି (୧୯୯୨):** ଏହା ଉଭୟ ବେତାର ଏବଂ ମଞ୍ଚସଫଳ ନାଟକ । ଏହି ନାଟକଟି ସାତଗୋଟି ଦୃଶ୍ୟରେ ସୀମାବଦ୍ଧ । ଏହି ନାଟକଟିରେ ସାମାଜିକ ସଙ୍କଟ, ସାଂସ୍କୃତିକ ବିପର୍ଯ୍ୟୟ ଓ ମାନବିକତାର ଅବକ୍ଷୟ ଦିଗକୁ ନାଟ୍ୟକାର ସୂଚିତ କରିଛନ୍ତି । ସାଂପ୍ରତିକ ସମାଜରେ କିପରି ସାମାଜିକ ଓ ପାରଂପରିକ ସଂପର୍କର ସେତୁ ଭାଙ୍ଗି ଭାଙ୍ଗି ପଡୁଛି; ପାରଂପରିକ ମୂଲ୍ୟବୋଧର ଅବକ୍ଷୟ ଘଟୁଛି, କଳା-ସଂସ୍କୃତି ବିକଳାଙ୍ଗ ହୋଇ ପଡୁଛି, ତାହା ନାଟ୍ୟକାର ଦର୍ଶାଇଛନ୍ତି । ମୋଟାମୋଟି ଭାବରେ ଆଧୁନିକ ବସ୍ତୁବାଦୀ ସଭ୍ୟତା କିପରି ଆମର ମହାନ୍ ପାରଂପରିକ ମୂଲ୍ୟବୋଧ, ମହାର୍ଘ ସଂସ୍କୃତି ଓ ମହାନ୍ ସଭ୍ୟତାର ଭୂମିକୁ ରୁଗ୍‌ଣ, ଘୂଣଖିଆ, ଅବକ୍ଷୟଗ୍ରସ୍ତ କରିଚାଲିଛି, ତାହା ନାଟ୍ୟକାର ସୂଚିତ କରିଛନ୍ତି ।

**ପ୍ରତୀକ୍ଷାରେ ପରୀକ୍ଷିତ (୧୯୯୪):** ଏହା ଏକ ସଫଳ ମଞ୍ଚ ନାଟକ । ଏକ ଧମକ୍‌ପୂର୍ଣ୍ଣ ଚିଠିର ଭୟରେ ଚାକିରୀଜୀବୀ ମଧ୍ୟବିତ୍ତ ଶ୍ରେଣୀର ଚରିତ୍ର ପରୀକ୍ଷିତ କିପରି ଭୀତିପୂର୍ଣ୍ଣ,

ଜୀବନବିତାଇଛି, ତା'ର ବାସ୍ତବ ଚିତ୍ର ନାଟ୍ୟକାର ଏଥିରେ ପ୍ରକଟିତ କରିଛନ୍ତି । ହତ୍ୟା-ଧମକ ଓ ମୃତ୍ୟୁ ଭୟରୁ ରକ୍ଷା ପାଇବାପାଇଁ ପରୀକ୍ଷିତ ଓ ତାଙ୍କ ପରିବାର କିପରି ନାନାଦି ହାସ୍ୟାତ୍ମକ ଆତ୍ମରକ୍ଷା କୌଶଳର ଉଦ୍ୟମ କରିଛନ୍ତି, ତା'ର ବ୍ୟଙ୍ଗାତ୍ମକ ଚିତ୍ର ନାଟ୍ୟକାର ଦେଇଛନ୍ତି । ଏହି ନାଟକପାଇଁ ନାଟ୍ୟକାର ୧୯୯୮ ମସିହାର ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର ଲାଭ କରିଛନ୍ତି ।

**ଯନ୍ତା (୧୯୯୪):** ଏହା ଏକ ବେତାର ଧର୍ମୀ ନାଟକ । ପହିଙ୍କ କ୍ଷୁଦ୍ର ଗଳ୍ପ 'ଯନ୍ତା'ର ଏହା ନାଟ୍ୟ ରୂପାନ୍ତର ମାତ୍ର । ଏହି ନାଟକ ଟି ନଅ' ଗୋଟି ଦୃଶ୍ୟ ମଧ୍ୟରେ ସୀମାବଦ୍ଧ । ମୂଷା ବା ଚୁଚୁନ୍ଦ୍ରା କାମୁଡ଼ାକୁ ସାପ କାମୁଡ଼ା ସନ୍ଦେହ କରି ମଣିଷ କିପରି ଗୁଣିଆ ଡାକି ଝଡା-ଫୁଙ୍କା କରନ୍ତି, ସେହି ପ୍ରସଙ୍ଗ ଏହି ନାଟକରେ ଚିତ୍ରିତ । 'ମୂଷା କାମୁଡା' ରୁ ରକ୍ଷା ପାଇବାପାଇଁ ଏହି ନାଟକର ମୁଖ୍ୟ ଚରିତ୍ର ମନୋଜ 'ଯନ୍ତା' ବସାଇଛନ୍ତି । ମାତ୍ର-ଯନ୍ତାରେ ପଡ଼ି ଛଟପଟ ହେଉଥିବା ମୂଷାକୁ ଦୟା ଓ କରୁଣା ବଶତ ମନୋଜ ବାହାରେ ଛାଡ଼ି ଦେଇଛନ୍ତି । ଏହି ସମୟରେ କାଉଟିଏ ଉଡ଼ିଆସି କ୍ଷତାକ୍ତ ମୂଷାଟିକୁ ଜୀଅନ୍ତା ଭକ୍ଷଣ କରିଛି । ଯାହାକୁ ଦେଖି ମନୋଜଙ୍କ ପ୍ରାଣରେ ଦୟା, ପ୍ରେମ ଓ କରୁଣାର ଭାବାନ୍ତର ସୃଷ୍ଟି ହୋଇଛି । ମୋଟାମୋଟି ଭାବରେ ମନୋଜ ଚରିତ୍ରର ମାନସିକ ଚିତ୍ତ-ସଂଘର୍ଷ ହିଁ ଏହି ନାଟକଟିରେ ପ୍ରକଟିତ ହୋଇଛି ।

**ହଜି ଯାଇଥିବା ମଣିଷ (୧୯୯୫):** ଏହା ଗୋଟିଏ ସେଟ୍ ରେ ରଚିତ ଏକ ଛୋଟ ନାଟକ । ମଣିଷର ବାସ୍ତୁବାଦୀ ମୋହ, ସ୍ୱାର୍ଥପରତା, ଅର୍ଥ ଓ ସମ୍ପଦ ଲାଳସା- ଏହି ନାଟକଟିରେ ପ୍ରକଟିତ । ମୃତ ଘୋଷିତ ଅବନୀ ବାବୁ, ଦୈବାତ୍ ଦିନେ ଘରକୁ ଫେରିଆସିବା ଫଳରେ ପରିବାର ସଦସ୍ୟଙ୍କ ମଧ୍ୟରେ ଖୁସି-ଆନନ୍ଦ ପରିବର୍ତ୍ତେ ଭୟ ଓ ଆତଙ୍କର ବାତାବରଣ ଖେଳିଯାଇଛି । ପରିବାରବର୍ଗ ଆତଙ୍କିତ ହୋଇପଡିଛନ୍ତି । କାଳେ ବାପାଙ୍କ ବଞ୍ଚିବାର ଖବର ପ୍ରଘଟହେଲେ ବାପାଙ୍କ ମୃତ୍ୟୁ ଅନ୍ତେ ଚାକିରୀ ପାଇଥିବା ପୁଅର ଚାକିରୀ ଚାଲିଯିବ, ମିଳିଥିବା ଚାକିରୀ ଅର୍ଥ ପୁଣି ଫେରସ୍ତ କରିବାକୁ ପଡ଼ିବ, ଅବା-ମିଥ୍ୟା ଜାଲିଆତି କେଶ୍ ରେ ପରିବାର ଲୋକେ ମଧ୍ୟ ଜେଲ୍ ଯାଇପାରନ୍ତି । ନିନ୍ଦା-ଅପବାଦ ଯୋଗୁଁ ଝିଅ ବିଭାଘର ମଧ୍ୟ ଭାଙ୍ଗିଯାଇପାରେ । ଏହିସବୁ ଶଙ୍କା ଓ ସମ୍ଭାବନା ଯୋଗୁଁ ପରିବାର ଲୋକେ ଗୃହକର୍ତ୍ତା ଅବନୀବାବୁଙ୍କୁ ପରିବାର ଛାଡ଼ି ଗୁପ୍ତରେ ଚାଲିଯିବାକୁ କହିଛନ୍ତି । ଫଳସ୍ୱରୂପ ଅବନୀବାବୁ ପଳାତକ, ଅଜ୍ଞାତବାସର ଜୀବନ ବିତାଇଛନ୍ତି । ଅର୍ଥ-ସମ୍ପଦ ଓ ସ୍ୱାର୍ଥର ମୋହ- ମଣିଷକୁ କିପରି ଅମଣିଷ, ଅନ୍ଧ କରିଦେଇଛି, ତାହା ନାଟ୍ୟକାର ଏହି ନାଟକ ମାଧ୍ୟମରେ ସୂଚିତ କରିଛନ୍ତି ।

**କାଲି ଆଜି କାଲି (୧୯୯୫):** ଏହା ଏକ ଦୂରଦର୍ଶନ ଧର୍ମୀ ନାଟକ। ଏହି ନାଟକ ଟି ଦୁଇଗୋଟି ସେଟ୍ ରେ ଅଭିନୀତ । ଏଥିରେ ଏଗାରଗୋଟି ଦୃଶ୍ୟର ଅବତାରଣା କରାଯାଇଛି । ଅବାରିତ ଜଙ୍ଗଲକଟା ହେବାଯୋଗୁଁ କାଠ-ବାଉଁଶର ଘୋର ଅଭାବ କିପରି ଶବଦାହ ପାଇଁ ସମସ୍ୟା ସୃଷ୍ଟି କରୁଛି ତାହା ନାଟ୍ୟକାର ଏହି ନାଟକରେ ସୂଚିତ କରିଛନ୍ତି। ଯେଉଁ ଗାଁର ପରିବେଶ ବଣ-ଜଙ୍ଗଲ ପରିବେଷ୍ଟିତ ଓ ସବୁଜିମାଘେରା ଥିଲା, ତାହା ଆଜି ଧୂସର, ପାଣ୍ଡୁର, ବିବର୍ଣ୍ଣ ଓ ବୃକ୍ଷହୀନ ହୋଇପଡ଼ିଛି । ଜଙ୍ଗଲ ସଂରକ୍ଷଣ, ବୃକ୍ଷରୋପଣ ଓ ବୃକ୍ଷପ୍ରତି ସଚେତନ କରାଇବା ଅଭିପ୍ରାୟରେ ନାଟ୍ୟକାର ଏହି ନାଟକ ଟି ରଚନା କରିଛନ୍ତି ।

**ଖାଲିହାତର ଛବି (୧୯୯୫):** ଏହି ନାଟକଟି ପ୍ରଥମେ ୧୯୯୫ ମସିହାରେ 'ଖାନ୍‌ତଲାସ' ନାମରେ ମଞ୍ଚସ୍ଥ ହୋଇଥିଲା । ମାତ୍ର- ପରବର୍ତ୍ତୀ ସମୟରେ ନାଟ୍ୟକାର ଏହି ନାଟକଟିକୁ 'ଖାଲିହାତର ଛବି' ନାମରେ ପ୍ରକାଶିତ କରିଥିଲେ । ପ୍ରକୃତ ଦୋଷୀ ବା ଅପରାଧୀକୁ ଛାଡ଼ି ନିରପରାଧୀ, ନିରୀହ ମଣିଷକୁ ପୋଲିସମାନେ କିପରି ଖାନ୍‌ତଲାସ ନାଁରେ ହଇରାଣ, ହରକତ କରନ୍ତି, ତାହା ଏହି ନାଟକ ମାଧ୍ୟମରେ ସୂଚିତ । ଟିକସ ଫାଙ୍କିଥିବା ଅଭିଯୋଗରେ ଆୟକର ବିଭାଗ ପୋଲିସବାହିନୀକୁ ଧରି କିପରି ଗରୀବ-ଦିନ ମଜୁରିଆ, ଖଟିଖିଆ ମାନଙ୍କର ଘର ଚଢାଉକରେ, ତା'ର ବ୍ୟଙ୍ଗାତ୍ମକ ଚିତ୍ର ନାଟ୍ୟକାର ଏଥିରେ ସୂଚିତ କରିଛନ୍ତି ।

**ମୁହଁସଂଜ (୧୯୯୭):** ଏହା ଏକ ସାମାଜିକ ନାଟକ । ଏଥିରେ ୧୩ ଗୋଟି ଦୃଶ୍ୟର ସଂଯୋଜନା କରାଯାଇଛି । ଗାଁ ମାଟିର ମହକ, ମୋହ, ସରଳତା ଓ ନିଷ୍କପଟତାର ଚିତ୍ର ଏଥିରେ ପ୍ରକଟିତ । ଏହା ସହିତ ସହରୀ ଜୀବନର ହୀନମନ୍ୟତା, ସ୍ୱାର୍ଥପରତା ଓ ଅମାନବିକତାର ଚିତ୍ର ମଧ୍ୟ ଏଥିରେ ପ୍ରକଟିତ ।

**ଡର (୧୯୯୮):** ଏହା ଏକ ଦୂରଦର୍ଶନ ନାଟକ । ଦୂରଦର୍ଶନ ପ୍ରସାରଣରେ ଏହି ନାଟକଟିର ନାମ ରଖାଯାଇଥିଲା- 'ଭୟ' । ମାତ୍ର ପରବର୍ତ୍ତୀ ସମୟରେ ନାଟ୍ୟକାର ଏହି ନାଟକଟିର କଳେବର ବୃଦ୍ଧିକରି ଏହାର ନାମକରଣ 'ଡର' ରଖିଥିଲେ । ଏହି ନାଟକ ଟି ଗୋଟିଏ ସେଟ୍ ରେ ଅଭିନୀତ । ଏଥିରେ ପାଞ୍ଚଗୋଟି ଦୃଶ୍ୟର ସଂଯୋଜନା କରାଯାଇଛି । 'ଭୟ' କିପରି ମଣିଷର ବୁଦ୍ଧି ଓ ବିବେକକୁ ଭ୍ରଷ୍ଟ କରିଦିଏ, ତାକୁ ଅମାନବିକ, ସ୍ୱାର୍ଥପର କରିଦିଏ ତାହା ନାଟ୍ୟକାର ସୂଚିତ କରିଛନ୍ତି । ଏହି ନାଟକର ଚରିତ୍ର ଭାନୁଶଙ୍କର ନିଜଘର ପଛପଟ ରାସ୍ତାରେ ଅଚେତ ହୋଇ ପଡ଼ିଥିବା ନିଜ ଶ୍ୱଶୁରଙ୍କୁ

କାହାର ଶବ ପଡ଼ିଥିବାର ଭାବି, କବାଟ କିଳି ଘରେ ଗୁହନ୍ତି । ଦୟା, ଆନ୍ତରିକତା, ସାହାଯ୍ୟ, ସହାନୁଭୂତି ଓ ମାନବିକତାର ହାତ ନ' ବଢାଇ ଭାନୁଶଙ୍କର ଶବଟି କାହାର ବୋଲି ଦେଖିବାକୁ ଯାଇନାହାଁନ୍ତି । ଯା'ର ଫଳସ୍ୱରୁପ ରାସ୍ତାରେ ଅଚେତହୋଇ ପଡ଼ିଥିବା ତାଙ୍କ ଶ୍ୱଶୁର ପରିଶେଷରେ ପ୍ରାଣ ହରାଇଛନ୍ତି । ଭାନୁଶଙ୍କର ଯଦି ଦୟା, ଆନ୍ତରିକତା, ସାହାଯ୍ୟ. ସହାନୁଭୂତି ଓ ମାନବିକତା ଦୃଷ୍ଟିକୋଣରୁ ଶବଟି କାହାର ବୋଲି ଦେଖିବାକୁ ଯାଇଥାଆନ୍ତେ, ତେବେ ହୁଏତ ତାଙ୍କ ଶ୍ୱଶୁର ମୃତ୍ୟୁ ମୁଖରୁ ବଞ୍ଚିଯାଇଥାନ୍ତେ । ମାତ୍ର- ମଣିଷର ଭୟ, ସ୍ୱାର୍ଥପରତା ଓ ଅମାନବିକତା ହିଁ ଜଣେ ଅସହାୟ ବୃଦ୍ଧଙ୍କୁ ମୃତ୍ୟୁମୁଖକୁ ଠେଲି ଦେଇପାରଛି । ଏହାହିଁ ନାଟ୍ୟକାର ଏ ନାଟକରେ ସୂଚିତ କରିଛନ୍ତି ।

**ଅନ୍ୟ ଅରଣ୍ୟ (୧୯୯୯):** ଏହା ଗୋଟିଏ ସେଟ୍ ରେ ଅଭିନୀତ ଏକ ମନସ୍ତାତ୍ତ୍ୱିକ ଛୋଟ ନାଟକ । ଏହି ନାଟକଟି ସାତଗୋଟି ଦୃଶ୍ୟରେ ସୀମାବଦ୍ଧ । ଦୁରାରୋଗ୍ୟ କ୍ୟାନ୍ସରବ୍ୟାଧି କିପରି ବିଶିଷ୍ଟ ଶିଳ୍ପପତି ରାଜେନ୍ଦ୍ରଙ୍କର ମନସ୍ଥିତିକୁ ଅତ୍ୟନ୍ତ ଦୁର୍ବଳ ଓ ଯନ୍ତ୍ରଣାକାତର କରିଦଇଛି, ତା'ର ଚିତ୍ର ନାଟ୍ୟକାର ଦେଇଛନ୍ତି । ମଣିଷର ଗର୍ବ, ଦମ୍ଭ, ଅର୍ଥ-କ୍ଷମତା-ପ୍ରତିପତ୍ତି ମୃତ୍ୟୁ ପାଖରେ କିପରି ତୁଚ୍ଛ, ମୂଲ୍ୟହୀନ ତାହା ନାଟ୍ୟକାର ସୂଚିତ କରିଛନ୍ତି ।

**ଫୁଲ୍ ଟେନସନ୍ (୨୦୦୬):** ଏହି ନାଟକଟିରେ ଆଧୁନିକ ମଣିଷର ବ୍ୟସ୍ତ, ବିବ୍ରତ, ଯନ୍ତ୍ରଣାକାତର ଜୀବନର ଚିତ୍ର ପ୍ରକଟିତ । ମଣିଷ-ମଣିଷ ମଧ୍ୟରେ ପାରସ୍ପରିକ ଈର୍ଷା, ଅସୂୟା, ସ୍ୱାର୍ଥପର ମନୋଭାବ, ଅର୍ଥ-ସଂପଦ ଲାଳସା- କିପରି ମଣିଷ ଜୀବନକୁ ପ୍ରତି ମୁହୂର୍ତ୍ତରେ ବ୍ୟସ୍ତ-ବିବ୍ରତ, ଯନ୍ତ୍ରଣାକାତର ଅବସ୍ଥାଦଗ୍ରସ୍ତ କରି ରଖୁଛି ତାହା ନାଟ୍ୟକାର ଏହି ନାଟକ ମାଧ୍ୟମରେ ସୂଚିତ କରିଛନ୍ତି ।

**ଗଳ୍ପକୃତି :** ଅନନ୍ଦ ଚନ୍ଦ୍ର ପହିଙ୍କର ସାରସ୍ୱତ ପ୍ରତିଭାର ଆଦ୍ୟ ନିଦର୍ଶନ ଗଳ୍ପ ରଚନା ଭିତରେ ହିଁ ଫୁଟି ଉଠିଥିଲା । ମାତ୍ର- ଗଳ୍ପରଚନା ଅପେକ୍ଷା ନାଟକ ରଚନା କ୍ଷେତ୍ରରେ ସେ ଅଧିକ ସିଦ୍ଧି ଓ ସାଫଲ୍ୟ ଅର୍ଜନ କରି ପାରିଛନ୍ତି । ତାଙ୍କ ରଚିତ ଗଳ୍ପଗୁଡ଼ିକ ଗଳ୍ପର ଶିଳ୍ପପ୍ରକରଣ ବା ଅଙ୍ଗ ସୌଷ୍ଠବ ଏବଂ ଭାବ ପ୍ରକରଣ ବା ଆତ୍ମିକ ବିଭବ ଦୃଷ୍ଟିରୁ ସେପରି ବଳିଷ୍ଠ ମନେହୁଏ ନାହିଁ । ତାଙ୍କ ଗଳ୍ପଗୁଡ଼ିକରେ ଆକସ୍ମିକତା, ଗମ୍ଭୀର ଉତ୍କଣ୍ଠାର ଅଭାବ ପରିଦୃଷ୍ଟ ହୁଏ । ଏହାସତ୍ତ୍ୱେ ଗାଳ୍ପିକ ତାଙ୍କ ଗଳ୍ପଗୁଡ଼ିକରେ ବ୍ୟକ୍ତି ଓ ସମାଜ ଜୀବନର ବହୁବିଧ ରୂପ-ବିଭବକୁ ବାନ୍ଧିରଖିବାର ଚେଷ୍ଟାକରିଛନ୍ତି । ତାଙ୍କ ରଚିତ ଗଳ୍ପ ଗୁଡ଼ିକ ହେଲା- ଧୂଳିଝଡ଼, ଅନେକ ମୁହଁ, ଷ୍ଟାଚ୍ୟୁ, ମୁହଁସଂଜ, ଅନ୍ୟଅରଣ୍ୟ, ଚରିତ୍ରର ଚିତ୍କାର.

ସିଂହାସନ, ମୁଦ୍ରିତା ଲୋପାମୁଦ୍ରା, ଈଶ୍ୱରଙ୍କୁ ଇ-ମେଲ ପ୍ରଭୃତି । ଏହିସବୁ ଗଳ୍ପଗୁଚ୍ଛ ଗୁଡ଼ିକ ଭିତରେ ଗାଳ୍ପିକ ସମାଜ ଓ ମଣିଷ ଜୀବନର ନାନାବିଧ ସମସ୍ୟା, ସଙ୍କଟର ରୂପାୟନ ସହିତ ମାନବିକ ସଂପର୍କ ଓ ମାନବିକତାର ଜୟଗାନ କରିଛନ୍ତି ।

**ଷ୍ଟାଚ୍ୟୁ (୧୯୮୫):** ଏହି ଗଳ୍ପ ସଂକଳନଟିରେ ଆଠଗୋଟି ଗଳ୍ପ ସନ୍ନିବିଷ୍ଟ ହୋଇଛି । ସେଗୁଡ଼ିକ ହେଲା- ବେଲୁନ୍, ଅପରାହ୍ନର ସୂର୍ଯ୍ୟ, ଷ୍ଟାଚ୍ୟୁ, ଇଚ୍ଛାମୃତ୍ୟୁ, ଅମୁହାଁ ଦେଉଳ, ଉତ୍ତରାଧିକାର, ମଲାକଇଁ ଓ ସୂର୍ଯ୍ୟପରାଗ । ଏହିସବୁ ଗଳ୍ପ ଗୁଡ଼ିକରେ ସମାଜ ଓ ବ୍ୟକ୍ତି ଜୀବନର ବିଭିନ୍ନ ସ୍ୱପ୍ନ, ସମ୍ଭାବନା, ସମସ୍ୟା ଓ ସଙ୍କଟର ରୂପାୟନ ସହିତ ମଣିଷର ଅବିଶ୍ୱାସ, ସନ୍ଦେହ, ସଂପର୍କହୀନତା ଓ ସ୍ୱାର୍ଥପରତାର ଚିତ୍ର ପ୍ରକଟିତ ହୋଇଛି । ମାନବିକ ସଂପର୍କ ଓ ମାନବିକତାର ଅବକ୍ଷୟ ଦିଗକୁ ଗାଳ୍ପିକ ଅତି ସଚେତନ ମାନସରେ ପ୍ରକଟିତ କରିଛନ୍ତି ।

**ଈଶ୍ୱରଙ୍କୁ ଇ-ମେଲ୍ (୨୦୦୭):** ଏହି ଗଳ୍ପ ସଂକଳନଟିରେ ୨୦ ଗୋଟି ଗଳ୍ପ ସ୍ଥାନିତ ହୋଇଛି । ଏହି ଗଳ୍ପ ଗୁଡ଼ିକ ହେଲା- ସନ୍ତ୍ରାସବାଦୀ, ସହାବସ୍ଥାନ, କ୍ଷୋଭ, ଆକାଶଛତା, ମାରୁତିକାର୍, ପୁନଶ୍ଚ ମହାଭାରତ, ନିଜ ନିଜ ପରିଧି, ସିଦ୍ଧାର୍ଥର ସିଦ୍ଧି, ସ୍ୱର୍ଦ୍ଧିତ ସ୍ୱାଭିମାନ, ଦୁର୍ଘଟଣା, ନିଖୋଜ ନିର୍ମଳା, ଦୁଇଟି ଚଢେଇଙ୍କ କଥା, ଜଣେ ବୟସ୍କା ସ୍ୱାମୀର ଦୁଃଖ, କଥାକୁହା ଶବ, ବେବିସିଟର, ଯୁଦ୍ଧଅନିବାର୍ଯ୍ୟ, ଲାଫିଙ୍ଗ୍ କ୍ଲବ୍, ଈଶ୍ୱରଙ୍କୁ ଇ-ମେଲ୍ ପ୍ରଭୃତି । ଏହି ଗଳ୍ପଗୁଡ଼ିକ ଭିତରୁ ଅଧିକାଂଶ ଗଳ୍ପ ଗଳ୍ପକଳା ଦୃଷ୍ଟିରୁ ସାର୍ଥକ ସୃଷ୍ଟି ହୋଇ ପାରିନାହାନ୍ତି । ଅଧିକାଂଶ ଗଳ୍ପର ଭାବଗତ ଏବଂ ଶିଳ୍ପଗତ ସାମ୍ୟ ରକ୍ଷା ହୋଇ ନପାରିବା ଭଳି ମନେହୁଏ । ଗଳ୍ପ ଗୁଡ଼ିକରେ କଳ୍ପନା ପ୍ରବଣତାର ଆଧିକ୍ୟ ଏବଂ ବର୍ଣ୍ଣନାର ଛଟା ଉପନ୍ୟାସର ଭ୍ରମ ସୃଷ୍ଟି କରୁଛି । ଗଳ୍ପୀୟ ଉତ୍କଣ୍ଠାର ମଧ୍ୟ ଅଭାବ ପରିଲକ୍ଷିତ । ଦୁର୍ବଳ ଗଳ୍ପକଳା ସତ୍ତ୍ୱେ ଗାଳ୍ପିକ ଏହି ଗଳ୍ପଗୁଡ଼ିକରେ ଜୀବନକୁ ଜୀଇଁବାପାଇଁ ଦୁର୍ବାର ଆହ୍ୱାନ ଦେଇଛନ୍ତି । ଧୂଳିଧୂସରିତ ଧରଣୀକୁ ସ୍ୱର୍ଗୀୟ ସୁଷମା ଓ ଆନନ୍ଦରେ ପରିପୂର୍ଣ୍ଣ କରି ସ୍ୱର୍ଗରେ ରୂପାନ୍ତରୀତ କରିବାର ଅଭିଳାଷ ନାଟ୍ୟକାର ପ୍ରତିପୋଷଣ କରିଛନ୍ତି । ଗାଳ୍ପିକ ପାର୍ଥୀବ ଜଗତ ଭିତରେ ଈଶ୍ୱରଙ୍କର ସାନ୍ନିଧ କାମନା କରିଛନ୍ତି । ଯେଉଁଥିପାଇଁ ସେ ଏଇ ଧରାପୃଷ୍ଠରେ ଅବତରଣ କରିବାପାଇଁ ଈଶ୍ୱରଙ୍କୁ ଆହ୍ୱାନ କରିଛନ୍ତି । ଏହି ଅଭିପ୍ରାୟରେ ଗାଳ୍ପିକ ଈଶ୍ୱରଙ୍କ ନିକଟକୁ ଇ-ମେଲ୍ ପଠାଇଛନ୍ତି । ଉଭୟ ସ୍ରଷ୍ଟା ଏବଂଈଶ୍ୱରଙ୍କ ମାନସ ରାଜ୍ୟରେ ଜୀବନ ଓ ଜଗତପ୍ରତି ଯେଉଁ ଜିଜ୍ଞାସା ଓ ଅବବୋଧ ତାକୁ ଗାଳ୍ପିକ ଇ-ମେଲ୍ ର ପ୍ରଶ୍ନ-ଉତ୍ତର ମାଧମରେ ଅଭିବ୍ୟକ୍ତ କରିଛନ୍ତି ।

## ଶ୍ରୀ ଦିଲ୍ଲୀଶ୍ୱର ମହାରଣା (୧୯୪୭- ):

ନାଟ୍ୟକାର ଦିଲ୍ଲୀଶ୍ୱର ମହାରଣାଙ୍କ ଜନ୍ମ ୧୯୪୭ ମସିହା ନଭେମ୍ବର ମାସ ୫ ତାରିଖରେ ଢେଙ୍କାନାଳ ଜିଲ୍ଲାର 'ଗୋଡ଼ିଡିହ' ଗ୍ରାମରେ । ତାଙ୍କ ପିତାଙ୍କ ନାମ- ଶ୍ରୀ ଟଙ୍କଧର ମହାରଣା ଓ ମାତା- ଇନ୍ଦୁମତୀ ଦେବୀ । ଦିଲ୍ଲୀଶ୍ୱର ବିଜ୍ଞାନରେ ସ୍ନାତକ ଡିଗ୍ରୀ ଲାଭପରେ ଓଡ଼ିଶା ସରକାରଙ୍କର ସମବାୟ ବିଭାଗରେ ଚାକିରୀ ଜୀବନ ଆରମ୍ଭ କରିଥିଲେ । ସରକାରୀ ଚାକିରୀର କର୍ମମୟ ଜୀବନ ଭିତରେ ରହି ସେ ନାଟକ ରଚନା, ଅଭିନୟ, ନିର୍ଦ୍ଦେଶନା, ଗଳ୍ପ-କବିତା ରଚନା, ତୈଳଚିତ୍ର, ବ୍ୟଙ୍ଗଚିତ୍ର ଅଙ୍କନ, ସଙ୍ଗୀତ ସାଧନା ଆଦି କ୍ଷେତ୍ରରେ ନିଜକୁ ଉତ୍ସର୍ଗ କରିଥିଲେ । ନାଟକ ରଚନାପ୍ରତି ତାଙ୍କ ହୃଦୟରେ ଥିଲା- ଗଭୀର ଅନୁରାଗ । ଯେଉଁଥିପାଇଁ ସେ ନିଜର ଜୀବନକୁ ନାଟକପାଇଁ ଉତ୍ସର୍ଗୀକୃତ କରିଦେଇଛନ୍ତି । ଶ୍ରୀଯୁକ୍ତ ମହାରଣା ଓଡ଼ିଆ ନବନାଟ୍ୟ ଆନ୍ଦୋଳନ ଓ ପ୍ରୟୋଗବାଦୀ ନାଟ୍ୟଧାରାର ଜଣେ ଅଗ୍ରପୁରୋଧା । ପରୀକ୍ଷାମୂଳକ ନାଟକ ରଚନା କରିବାସହିତ ଅଭିନୟ, ନିର୍ଦ୍ଦେଶନା ଓ ରଙ୍ଗମଞ୍ଚ କ୍ଷେତ୍ରରେ ଅଭିନବ ପରୀକ୍ଷା-ନିରୀକ୍ଷା ଓ ସଫଳ ପ୍ରୟୋଗକରି ଓଡ଼ିଶାର ନାଟ୍ୟଆନ୍ଦୋଳନକୁ ସଫଳତାର ଶୀର୍ଷରେ ପହଞ୍ଚାଇ ପାରିଛନ୍ତି । ତାଙ୍କ ଦ୍ୱାରା ପ୍ରତିଷ୍ଠିତ 'ଢେଙ୍କାନାଳ କଳାପରିଷଦ' (୧୯୮୦) ଓଡ଼ିଶାର ନାଟ୍ୟଆନ୍ଦୋଳନ ଓ ମଞ୍ଚକଳା କ୍ଷେତ୍ରରେ ଯଥେଷ୍ଟ ଅଗ୍ରଣୀ ଭୂମିକା ନିର୍ବାହ କରିଅଛି । ଏହି ନାଟ୍ୟକଳା ପରିଷଦ ମାଧ୍ୟମରେ ଅନେକ ନାଟକ ଦେଶ-ବିଦେଶରେ ଅଭିନୀତ ହୋଇ ଯଥେଷ୍ଟ ଗର୍ବ-ଗୌରବ ଆଣିଦେବା ସହିତ ଓଡ଼ିଆ ନାଟକ ଜଗତରେ ଅଭୂତପୂର୍ବ ପରିବର୍ତ୍ତନ କ୍ରାନ୍ତି ଆଣିପାରିଛି । ନାଟ୍ୟକାର ଏବେବି ଉତ୍ତୀର୍ଣ୍ଣ ବୟସରେ ଯୁବସୁଲଭ ଠାଣି ଓ ଉଦ୍ଦୀପନାରେ ନାଟକ ରଚନା, ନାଟ୍ୟମଞ୍ଚନ ନିର୍ଦ୍ଦେଶନା, ନାଟକ ଉତ୍ସବ, ସମାରୋହ ଆଦିର ଆୟୋଜନପରି ସାଧୁ ଉଦ୍ୟମ ଏବଂ ଗୁରୁ ଦାୟିତ୍ୱ ବହନ କରିଚାଲିଛନ୍ତି । ଶ୍ରୀଯୁକ୍ତ ମହାରଣା ନାଟକ ରଚନା, ଅଭିନୟ, ନିର୍ଦ୍ଦେଶନା ଏବଂ ଉତ୍ସର୍ଗୀକୃତ ନାଟ୍ୟପ୍ରାଣପାଇଁ ବହୁ ସାମାଜିକ, ସାଂସ୍କୃତିକ ଓ ସାରସ୍ୱତ ଅନୁଷ୍ଠାନ ମାନଙ୍କରୁ ବହୁବାର ପୁରସ୍କୃତ ଓ ସମ୍ମାନୀତ ହୋଇଛନ୍ତି । ଏପରିକି ସେ ନାଟ୍ୟ ନିର୍ଦ୍ଦେଶନା କ୍ଷେତ୍ରରେ ଆଜୀବନ ଅବଦାନ ପାଇଁ ୨୦୦୨ ମସିହାରେ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ପୁରସ୍କାର ଏବଂ ନାଟକ 'ବାର୍ତ୍ତା' ପାଇଁ ୨୦୦୪ ମସିହାରେ ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର ଲାଭ କରିଛନ୍ତି । ଓଡ଼ିଆ ନାଟ୍ୟ ଜଗତର ସେ ଜଣେ ଅପ୍ରତିଦ୍ୱନ୍ଦ୍ୱୀ, କାଳଜୟୀ ସ୍ରଷ୍ଟା, ଜଣେ ମୁକୁଟ ବିହୀନ ଏକଛତ୍ରପତି ସମ୍ରାଟ ।

**ନାଟ୍ୟକୃତି :** ଶ୍ରୀଯୁକ୍ତ ମହାରଣାଙ୍କର ଅଦ୍ୟାବଧି ରଚିତ ଓ ପ୍ରକାଶିତ ନାଟକ ଗୁଡ଼ିକ ହେଲା- ସୁଅ, ଭଲପାଇବାର ରଙ୍ଗ, ବାଉଁଶ ଠେଙ୍ଗାରେ ସ୍ୱାଧୀନତା, ଉତ୍ତର ପୁରୁଷ, ଆସନ୍ନ ପ୍ରଳୟ,.ସୂର୍ଯ୍ୟପରାଗ, ନ୍ୟାୟ, ଦ୍ୱିତୀୟ ଈଶ୍ୱର, ବାର୍ତ୍ତା, ସିଦ୍ଧାନ୍ତ, ରାଜାଘର ଖେଳ, ଆପଣ ସାକ୍ଷୀରହିଲେ ହଜୁର, ଭୋଳାନାଥ ଦାସ ହାଜର ହେ, ସେଦିନ ଆସୁଛି, ଏ ମଙ୍ଗଳ ମହୁରୀର ତାନ, ଚକେ ଗଲେ ବାର ହାତ, କୁମାର କୁଳଚନ୍ଦ୍ରମା, ଅସମାପ୍ତ, ଭାଇ ଭାଇ, ଭଡାଘର, ତତ୍‌କାଳ ସମାଧାନ, ସେଦିନ ଆସୁଛି, ବନ୍ୟା, ସୂର୍ଯ୍ୟ ଉଇଁବାର ବେଳ, ଶେଷ ଠିକଣା । ଏହାସହିତ ଶ୍ରୀଯୁକ୍ତ ମହାରଣାଙ୍କ ରଚିତ ଅନ୍ୟ କେତେକ ନାଟକ ହେଲା- ବୁମେରାଂ, ବାରମଜା, ଗୁରୁ ଦକ୍ଷିଣା, ମନ୍ତ୍ର, ସୋହିନୀ ଅର୍ପିତା, ସକାଳ ଅପେକ୍ଷାରେ, ଆମ୍ରପଲ୍ଲୀ, ବେଲୁନ୍, ବୁଢ଼ାବାପାର ଶେଷ ଠିକଣା, (ଯାହାକି 'ଶେଷ ଠିକଣା' ଶୀର୍ଷକରେ ପ୍ରକାଶିତ)। ଏହା ବ୍ୟତୀତ ତାଙ୍କ ଅନୁଦିତ ନାଟକ ଗୁଡ଼ିକ ହେଲା- ସିଂହାସନ, ଶ୍ରୀମାନ୍-ଶ୍ରୀମତୀ, ଆପଣ ଯାହା ଚାହୁଁଥିଲେ, ଦି'ଇଣ୍ଟରଭ୍ୟୁ, ନୀଳନକ୍ଷତ୍ର, ଜୀବନ ଜ୍ୟୋସ୍ନା, ଶ୍ରୀମାନ୍ ନା' ବାଳକ ।

**ସୁଅ (୧୯୮୪):** ଏହା ନାଟ୍ୟକାରଙ୍କର ପ୍ରାରମ୍ଭିକ ନାଟ୍ୟକୃତି । ଏହି ନାଟକଟି ୭ ଗୋଟି ଚରିତ୍ର ଓ ୧୩ ଗୋଟି ଅଙ୍କ ବିଶିଷ୍ଟ । ଏହି ନାଟକଟିରେ ନାଟ୍ୟକାର ସାମାଜିକ ଦୁର୍ନୀତି, ଅନ୍ୟାୟ, ଅତ୍ୟାଚାର ଓ ଭ୍ରଷ୍ଟାଚାରର ବହମାନ ସୁଅ ବିରୁଦ୍ଧରେ ପ୍ରତିରୋଧ ଓ ପ୍ରତିବାଦର ସ୍ୱର ତୋଳିଛନ୍ତି । ସାମାଜିକ ଦୁର୍ନୀତି, ରାଜନୈତିକ ଭ୍ରଷ୍ଟାଚାର, ପ୍ରିୟା-ପ୍ରୀତିତୋଷଣ, ଜ୍ଞାନଦକ୍ଷତା ଓ ପ୍ରତିଭାର ଉପେକ୍ଷାର ଶିକାର ହୋଇଛନ୍ତି - ସମାଜର ଉଚ୍ଚଶିକ୍ଷିତ, ପ୍ରତିଭାବାନ୍ ବ୍ୟକ୍ତି । ଯା' ଫଳରେ ସେମାନେ ଦୁର୍ବହ ଓ ଦୁର୍ବିସହ ଜୀବନ ବିତାଉଛନ୍ତି । ତଥାପି ସେମାନେ ଅସତ୍ୟ, ଅନ୍ୟାୟ, ଅନାଦର୍ଶ ଓ ଦୁର୍ନୀତିର ସୁଅରେ ଭାସି ନଯାଇ, ସେଇ ସୁଅର ପ୍ରତିକୂଳରେ ଯାଇ ସାମାଜିକ ଭ୍ରଷ୍ଟାଚାର, ଦୁର୍ନୀତି, ଅନ୍ୟାୟ ବିରୁଦ୍ଧରେ ପ୍ରତିବାଦର ଦୃଢ଼ ସ୍ୱର ତୋଳିଛନ୍ତି । ଏହି ନାଟକର ମୁଖ୍ୟ ନାୟକ- 'ଗୋପୀନାଥ' ଚରିତ୍ର ମାଧମରେ ନାଟ୍ୟକାର ବିଦ୍ରୋହର ସ୍ୱର ତୋଳି କ୍ରାନ୍ତିର ପଥ ଦେଖାଇଛନ୍ତି । ବାସ୍ତବରେ ଏହି ନାଟକଟି ଏକ ସମାଜ ସଚେତନଧର୍ମୀ, କ୍ରାନ୍ତିକାରୀ ସୃଷ୍ଟି ।

**ଭଲପାଇବାର ରଙ୍ଗ (୧୯୮୭):** ଏହା ଏକ ପ୍ରଣୟ ଚେତନାଧର୍ମୀ ଲଘୁ ନାଟକ । ଏହି ନାଟକଟି ଗୋଟିଏ ସେଟ୍ ରେ ଅଭିନୀତ । ସହରରେ ଉଚ୍ଚଶିକ୍ଷିତ ଯୁବକମାନେ ଘରଭଡ଼ା ପାଇବାପାଇଁ କିପରି ବିଭିନ୍ନ ସମସ୍ୟାର ସମ୍ମୁଖୀନ ହୁଅନ୍ତି ଏବଂ ଘରଟିଏ

ପାଇବାପାଇଁ ନିଜକୁ ବିବାହିତ ରୂପରେ ପରିଚୟ ଦେବାକୁ ଜିପରି ପଛାନ୍ତି ନାହିଁ, ତା'ର ବାସ୍ତବଚିତ୍ର ନାଟ୍ୟକାର ଏଥିରେ ଦେଇଛନ୍ତି । ମୁଖ୍ୟତଃ ସହରୀ ଜୀବନରେ ଘରଭଡ଼ାର ସମସ୍ୟା ହିଁ ଏ ନାଟକର ମୁଖ୍ୟ ବିଷୟବସ୍ତୁ । ଘଟଣା କ୍ରମେ ଶୁଭେନ୍ଦୁ ଏବଂ ବନ୍ୟାର ପ୍ରଣୟ ଚିତ୍ର ମଧ୍ୟ ଏହି ନାଟକଟିକୁ ବିଶୁଦ୍ଧ ମନୋରଞ୍ଜନଧର୍ମୀ କରିପାରିଛି ।

**ବାଉଁଶ ଠେଙ୍ଗାରେ ସ୍ୱାଧୀନତା (୧୯୮୯) :** ଏହି ନାଟକଟି ନବନାଟକ ଆନ୍ଦୋଳନ ପରିପ୍ରେକ୍ଷାରେ ରଚିତ ଏକ ସଫଳ ପରୀକ୍ଷାମୂଳକ, ପ୍ରୟୋଗବାଦୀ ନାଟକ । ଜାତୀୟ ଚେତନା, ସ୍ୱାଧୀନତା ସଂଗ୍ରାମ ଓ ଗଡ଼ଜାତ ପ୍ରଜାଆନ୍ଦୋଳନର ପୃଷ୍ଠଭୂମି ଉପରେ ଏହି ନାଟକ ଟି ପର୍ଯ୍ୟବସିତ । ତତ୍କାଳୀନ ଗଡ଼ଜାତ ରାଜାମାନଙ୍କର ଅନ୍ଧାରୀ ଶାସନ, ନିର୍ମମ-ନିଷ୍ଠୁର ଶୋଷଣ-କଷଣ, ଅକଥନୀୟ ଅତ୍ୟାଚାର ଓ ତା ବିରୁଦ୍ଧରେ ପ୍ରଜାମାନଙ୍କର ରକ୍ତାକ୍ତ ବିଦ୍ରୋହ ଓ ଭୟଙ୍କର ପ୍ରତିବାଦ ଏ ନାଟକର ପ୍ରାଣବାଣୀ । ବିଦ୍ରୋହୀ ପ୍ରଜାଙ୍କର ରୋଷର ଶିକାର ହୋଇଛନ୍ତି- ପ୍ରବଳ ପ୍ରତାପୀ ବ୍ରିଟିଶ୍ ସରକାରଙ୍କର ପଲ୍‌ଟିକାଲ୍ ଏଜେଣ୍ଟ ବେଜେଲ୍‌ଗେଟ୍ ସାହେବ । ରଣପୁର ମାଟିର ବିଦ୍ରୋହୀ ପ୍ରଜାକୁଳ ବାଉଁଶ ଠେଙ୍ଗାରେ ନିର୍ମମ ଭାବରେ ପିଟି ପିଟି ବେଜେଲ୍‌ଗେଟ୍ ସାହେବଙ୍କୁ ହତ୍ୟାକରିବାର ଘଟଣା - ଏ ନାଟକର ପ୍ରାଣବାଣୀ ହେଲେହେଁ; ଢେଙ୍କାନାଳ ଗଡ଼ଜାତର ନିର୍ମମ ଅତ୍ୟାଚାର ଓ ଶୋଷଣ-କଷଣର କାହାଣୀ ଏହାର ପ୍ରଚ୍ଛଦପଟରେ ରହିଛି । ରଣପୁର ମାଟିର ବିଦ୍ରୋହୀ ପ୍ରଜାକୁଳଙ୍କର ନେତୃତ୍ୱ ନେଇଥିବା ଅଭିଯୋଗରେ ଦୋଷୀ ରୂପରେ ସାବ୍ୟସ୍ତ ହୋଇ ରଘୁନାଥ ମହାନ୍ତି ଓ ଦିବାକର ପରିଡ଼ା ଫାଶୀ ଦଣ୍ଡରେ ଦଣ୍ଡିତ ହୋଇଛନ୍ତି । ଏହି କଥାବସ୍ତୁକୁ ନାଟ୍ୟକାର ଅଭିନବ ଶୈଳୀରେ ନାଟ୍ୟରୂପ ଦେବାସହିତ ମଞ୍ଚରେ ଉପସ୍ଥାପନ କରିଛନ୍ତି । ଏହି ନାଟକରେ ଆଙ୍ଗିକ ସଂରଚନା ଶୈଳୀର ପ୍ରୟୋଗ କରାଯାଇଛି । ବାଚିକ ଅଭିନୟ ଅପେକ୍ଷା ଆଙ୍ଗିକ ଅଭିନୟରେ ବେଶି ଗୁରୁତ୍ୱ ଦିଆଯାଇଛି । ଚରିତ୍ର ମାନଙ୍କର ଶାରୀରିକ ଭଙ୍ଗୀ ବା ଶାରୀରିକ କୌଶଳ ପ୍ରଦର୍ଶନର ପ୍ରୟୋଗାତ୍ମକ କଳା ମାଧ୍ୟମରେ ନାଟ୍ୟକାର ବିଭିନ୍ନ ଦୃଶ୍ୟର ଉପସ୍ଥାପନା କରିଛନ୍ତି । ବାସ୍ତବରେ ଏହି ନାଟକଟିରେ ନାଟ୍ୟକାରଙ୍କର ସ୍ୱକୀୟ ମୌଳିକତା, ଅପୂର୍ବ କଳାକୁଶଳତା ଓ ମଞ୍ଚାୟନରେ ଅଭିନବତ୍ୱ ଫୁଟିଉଠିଛି ।

**ଉତ୍ତର ପୁରୁଷ (୧୯୮୯):** ଏହା ଏକ ସଫଳ ମଞ୍ଚ ନାଟକ । ଏଥିରେ ଲୋକନାଟ୍ୟ ଶୈଳୀର ପ୍ରୟୋଗ କରାଯାଇଛି । ରୁଗ୍‌ଣ, ଅବକ୍ଷୟଗ୍ରସ୍ତ ସମାଜ ଜୀବନର ଚିତ୍ର ସହିତ ଏକ ମଧ୍ୟବିତ୍ତ ପରିବାରର ଅଭାବ-ଅନାଟନ, ଦୁଃଖ-ଯନ୍ତ୍ରଣାର ଚିତ୍ର ଏଥିରେ ପ୍ରକଟିତ ହୋଇଛି । ନାଟକର ମୁଖ୍ୟ ନାୟକ ନିର୍ଭୀକ, ଆଦର୍ଶବାଦୀ ଚରିତ୍ର ବିଭୁପ୍ରସାଦଙ୍କ

ମାଧ୍ୟମରେ ନାଟ୍ୟକାର ସାମାଜିକ ଭ୍ରଷ୍ଟାଚାର, ଅନ୍ୟାୟ, ଅନୀତି ବିରୁଦ୍ଧରେ ବିଦ୍ରୋହର ସ୍ୱର ଟେକିଛନ୍ତି । ନାଟ୍ୟକାର ତଥାକଥିତ ପରାଙ୍ଗପୁଷ୍ଟ, ପଙ୍ଗୁ, ଅଥର୍ବ ମଣିଷ ସମାଜ ଭିତରେ ନୂତନ ଚେତନା, ସାମାଜିକ କ୍ରାନ୍ତି ଓ ପରିବର୍ତ୍ତନ ଆଣିବା ଆଶାରେ ଏକ ନୂତନ ସମ୍ଭାବନାଯୁକ୍ତ ସନ୍ତାନ 'ଉତ୍ତର ପୁରୁଷ' କୁ ଜନ୍ମଦେବାକୁ ଚାହିଁଛନ୍ତି । ଯେଉଁ ଉତ୍ତର ପୁରୁଷ ସାହସୀ, ନିର୍ଭୀକହୋଇ ସମାଜର ଦୁଷ୍ଟ, ଅସାଧୁ ଶକ୍ତିମାନଙ୍କର ପ୍ରତିରୋଧ, ଗତିରୋଧ କରିବା ସହିତ ସମାଜରେ କ୍ରାନ୍ତି ଓ ପରିବର୍ତ୍ତନ ଆଣିବାକୁ ସକ୍ଷମ ହୋଇପାରିବ । ପାରଂପରିକ ସମାଜର ରୁଗ୍ଣ, ଅବକ୍ଷୟୀ ଶକ୍ତି ଓ ଅସାମାଜିକ ତତ୍ତ୍ୱର ଗଣ୍ଡି ଭିତରୁ 'ଉତ୍ତରପୁରୁଷ' ହିଁ ମଣିଷ ଓ ସମାଜକୁ ମୁକ୍ତ କରିପାରିବ ।

**ଆସନ୍ନ ପ୍ରଳୟ (୧୯୯୦):** ଏହା ଏକ ମନୋରଞ୍ଜନଧର୍ମୀ ହାସ୍ୟରସାତ୍ମକ ଲଘୁନାଟକ । ଏ ନାଟକରେ ଶାରୀରିକ ଅଙ୍ଗବିନ୍ୟାସ ଶୈଳୀ ବା ଫିଜିକାଲ୍ ଥିଏଟର ଶୈଳୀର ପ୍ରୟୋଗ କରାଯାଇଛି । ମଣିଷ ବିଜ୍ଞାନର ଶକ୍ତି ବଳରେ ନିଜକୁ ବୁଦ୍ଧିମାନ ଏବଂ ଈଶ୍ୱରଙ୍କ ପ୍ରତିସ୍ପର୍ଦ୍ଧୀ ବୋଲାଇ କିପରି ଈଶ୍ୱର ଓ ସୃଷ୍ଟିବିରୋଧି କାର୍ଯ୍ୟମାନ କରି ଆସନ୍ନ ପ୍ରଳୟକୁ ଆବାହନୀ କରୁଛି, ସେହି ସୂଚନା ନାଟ୍ୟକାର ଏ ନାଟକରେ ଦେଇଛନ୍ତି । ନାଟ୍ୟକାର ପୁରାବୃତ୍ତ ବା ମିଥ୍ ଶୈଳୀର ପ୍ରୟୋଗକରି ମିଥିକ୍ ଚରିତ୍ରମାନଙ୍କୁ ନେଇ ମଣିଷର ଭଗବାନ ବିରୋଧୀ ଓ ସୃଷ୍ଟି ବିରୋଧୀ ଅଭିଯାନ ଓ କାର୍ଯ୍ୟକଳାପର ବିଷମୟ ପରିଣତିର ଚିତ୍ର ଦେଇଛନ୍ତି । ଏହା ସହିତ ନାଟ୍ୟକାର ସାଂପ୍ରତିକ ସମାଜ ଓ ରାଜନୀତିର ପଶାପାଲିରେ ଓ ଭୋଟ ରାଜନୀତିର ସଂରକ୍ଷଣ ଜୁଇ ରେ କିଭଳି ମେଧାବୀ, ଜ୍ଞାନୀ, ଗୁଣୀ, ପ୍ରତିଭାବାନ୍ ମାନେ ବଳି ପଡୁଛନ୍ତି, ତା'ର ଚିତ୍ର ମଧ ଦେଇଛନ୍ତି । ଏପରିକି ମର୍ତ୍ତ୍ୟରେ ସଂରକ୍ଷଣର ସବୁପ୍ରକାର ସୁବିଧା-ସୁଯୋଗ ହାସଲ କରିଥିବାବ୍ୟକ୍ତି ସ୍ୱର୍ଗରାଜ୍ୟରେ ସୁଖ ସୁବିଧା ପାଇଁ ମଧ କିପରି ସ୍ୱତନ୍ତ୍ର ସଂରକ୍ଷଣ ଦାବୀ କରୁଛି, ତା'ର ବ୍ୟଙ୍ଗାତ୍ମକ ଚିତ୍ର ନାଟ୍ୟକାର ମଧ ଦେଇଛନ୍ତି । ମୋଟାମୋଟି ଭାବରେ ଏହି ନାଟକଟି ଏକ ଆତ୍ମ ସଚେତନଧର୍ମୀ, ଶିକ୍ଷଣୀୟ, ମନୋରଞ୍ଜନ ମୂଳକ ନାଟକ ।

**ସୂର୍ଯ୍ୟପରାଗ (୧୯୯୨):** ଏହା ୬ ଗୋଟି ଦୃଶ୍ୟ ବିଶିଷ୍ଟ ଏକ ଛୋଟ ନାଟକ । ମଣିଷର ଜଟିଳ ମନସ୍ଥିତି ଓ ମାନବୀୟ ଭାବଚେତନାର ଅବତାରଣା ଏହି ନାଟକରେ କରାଯାଇଛି । ମଣିଷ ମନର ଅବିଶ୍ୱାସ ଓ ସନ୍ଦେହର ବିଷ କିପରି ଦାମ୍ପତ୍ୟ ଜୀବନର ପବିତ୍ର ସମ୍ପର୍କର ସୂର୍ଯ୍ୟକୁ ରାହୁ ପରିଗ୍ରାସକରେ, ତାହା ନାଟ୍ୟକାର ସୂଚିତ କରିଛନ୍ତି । ନାୟକ ତପନ ନିଜର ବନ୍ଧୁ ବାଦଲ ସହିତ ପତ୍ନୀ ଶିଳାର ମିଳାମିଶାକୁ ସନ୍ଦେହ ଦୃଷ୍ଟିରେ

ଦେଖିଛି । ଜନ୍ମନିୟନ୍ତ୍ରଣ ଅସ୍ତ୍ରୋପଚାର କରିଥିବା ତପନ ପତ୍ନୀ ଶିଳାର ଗର୍ଭବତୀ ହେବାକୁ ପାପ ଗର୍ଭ ବୋଲି ସନ୍ଦେହ କରିଛି । ଯା ଫଳରେ ତପନ ଓ ଶିଳାର ଦାମ୍ପତ୍ୟ ଜୀବନକୁ ସନ୍ଦେହ ଓ ଅବିଶ୍ୱାସର ରାହୁ ଗ୍ରାସ କରିଛି । ମାତ୍ର- ଯେତେବେଳେ ବାଦଲ ନିଜର ପୌରୁଷତ୍ୱ ପରୀକ୍ଷାକରି ଜାଣିପାରିଛି, ସେ ପିତୃତ୍ୱର ଅଧିକାରୀ ହେବାପାଇଁ ଜଣେ ସମର୍ଥ ପୁରୁଷ, ସେତେବେଳେ ତା ମନରୁ ସଂଶୟ ଓ ସନ୍ଦେହର ବାଦଲ ହଟି ଯାଇଛି । ମଣିଷ ମନର ଅବଚେତନ ସ୍ତରରେ ଦେଖାଦେଉଥିବା ଦ୍ୱନ୍ଦ୍ୱ, ସଂଶୟ ଓ ସନ୍ଦେହ କିପରି ପାରିବାରିକ ଜୀବନରେ ସୂର୍ଯ୍ୟପରାଗର ଅନ୍ଧାର ଭରିଦିଏ, ଜୀବନକୁ ବିଷମୟ କରିଦିଏ ତାହାର ଚିତ୍ର ନାଟ୍ୟକାର ଦେଇଛନ୍ତି ।

**ନ୍ୟାୟ (୧୯୯୩):** ଆଧୁନିକ ବସ୍ତୁବାଦୀ ମଣିଷର ଭୋଗବାଦୀ ଚିନ୍ତାଧାରା ଓ ତା'ର ନୈତିକ ଅଧୋଗତିର ଚିତ୍ର ଏ ନାଟକରେ ଫୁଟିଉଠିଛି । ମଣଷର ଜାନ୍ତବ କାମ-ବାସନାର ଶିକାର ହୋଇ ଧର୍ଷିତା ସୁହାସିନୀର ଯେଉଁ ଜାରଜ ସନ୍ତାନ ଜନ୍ମ ନେଇଛି, ତାକୁ କେନ୍ଦ୍ର କରି ନାଟ୍ୟକାର ଏହି ନାଟକରେ ଅସହାୟ ନାରୀତ୍ୱ , ପୁରୁଷମାନଙ୍କର ଚାରିତ୍ରିକ, ନୈତିକ ଅଧୋଗତି ଏବଂ ପୋଲିସ ପ୍ରଶାସନ ଓ ନ୍ୟାୟପାଳିକାର ତ୍ରୁଟି-ବିଚ୍ୟୁତି ପ୍ରତି ଅଙ୍ଗୁଳି ନିର୍ଦ୍ଦେଶ କରିଛନ୍ତି । ବୃଥା ମାନସମ୍ମାନ ଓ ଆଭିଜାତ୍ୟର ମୋହରେ ବିଳାସ ବାବୁଙ୍କପରି ଚରିତ୍ରମାନେ ନିଜର ପିତୃତ୍ୱକୁ ଅସ୍ୱୀକାର କରନ୍ତି । ସୁହାସିନୀପରି ଚରିତ୍ରମାନେ ନ୍ୟାୟ ନ ପାଇ ସମାଜର ନିନ୍ଦା, ଅପବାଦ ଭୟରେ ଆତ୍ମହତ୍ୟାର ପଥ ବାଛିନିଅନ୍ତି । ଅନାଥ, ଜାରଜ ଶିଶୁଟିକୁ ଗ୍ରହଣ କରିବାକୁ ମଧ୍ୟ କେହି ଆଗେଇ ଆସନ୍ତି ନାହିଁ । ସମାଜରେ ସତ୍ୟକୁ ଲୁଚାଇବାର ଅପଚେଷ୍ଟା କରାଯାଏ, ନ୍ୟାୟକୁ ହତ୍ୟା କରାଯାଏ । ବାସ୍ତବରେ ନାଟ୍ୟକାର ମାନବିକତାର ଘୋର ଅବକ୍ଷୟ ଦିଗଟିକୁ ଏ ନାଟକରେ ସୂଚିତ କରିଛନ୍ତି ।

**ଦ୍ୱିତୀୟ ଈଶ୍ୱର (୧୯୯୩):** ବିଜ୍ଞାନବଳରେ ମଣିଷ କିପରି ପ୍ରକୃତି ଓ ଈଶ୍ୱର ବିରୋଧୀ ଅଭିଯାନକରି ନିଜକୁ ଈଶ୍ୱରଙ୍କ ସମକକ୍ଷ ଓ ପ୍ରତିସ୍ପର୍ଦ୍ଧୀ କରାଇବାର ଅପଚେଷ୍ଟା କରିଚାଲିଛି, ବିଜ୍ଞାନର ଅପ ପ୍ରୟୋଗଦ୍ୱାରା ମଣିଷ ସମାଜରେ କିପରି ନାନାଦି ଜଟିଳ ସମସ୍ୟା ଓ ବିଭୀଷିକାମୟ ପରିସ୍ଥିତି ସୃଷ୍ଟି ହେଉଛି, ତା'ର ବାସ୍ତବ, ସତ୍ୟଶୀଳ ରୂପକୁ ନାଟ୍ୟକାର ଅତି କଳାତ୍ମକ ଭାବରେ ପରିପ୍ରକାଶ କରିଛନ୍ତି । ଏହି ନାଟକର ନାୟକ ବୈଜ୍ଞାନିକ ବିଭୂପ୍ରସାଦ ନିଜଦ୍ୱାରା ଉଦ୍ଭାବିତ ଏକ ଔଷଧୀୟ ଫର୍ମୁଲାକୁ 'ଦ୍ୱିତୀୟ ଈଶ୍ୱର' ନାମରେ ଅଭିହିତ କରିଛନ୍ତି । ଯେଉଁ ଫର୍ମୁଲା ବଳରେକି ମଣିଷ ଐଶ୍ୱରୀକ ଶକ୍ତିସମ୍ପନ୍ନ ହୋଇ ପୌରାଣିକ ଚରିତ୍ର ମହର୍ଷି ନାରଦ,ବଶିଷ୍ଠ ଏବଂ ସଞ୍ଜୟଙ୍କପରି ଦୂରବର୍ତ୍ତୀସ୍ଥାନର

ସବୁ ଦୃଶ୍ୟ ଦେଖିବାକୁ ସକ୍ଷମ ହୋଇପାରିବ । ଏହି ଫର୍ମୁଲାର ପରୀକ୍ଷଣ ଯେ ଈଶ୍ୱର ବିରୋଧି, ସୃଷ୍ଟି ଏବଂ ସମାଜ ବିରୋଧି ତାହା ନାଟ୍ୟକାର ଦର୍ଶାଇ ଏହି ବିପଦପୂର୍ଣ୍ଣ ଗବେଷଣା ପ୍ରୟାସ ବିରୁଦ୍ଧରେ ପ୍ରତିବାଦର ସ୍ୱର ତୋଳିଛନ୍ତି ।

**ବାର୍ତ୍ତା (୧୯୯୩):** ଏହି ନାଟକଟିରେ ନାଟ୍ୟକାର ଗଣତାନ୍ତ୍ରିକ ଶାସନ ବ୍ୟବସ୍ଥାର ତ୍ରୁଟି-ବିଚ୍ୟୁତି ସହିତ ଦୁର୍ନୀତି, ଭ୍ରଷ୍ଟାଚାର କିପରି ଶିକ୍ଷିତ ଯୁବଗୋଷ୍ଠୀକୁ ହତାଶ, ବିଭ୍ରାନ୍ତ ଓ ପଥଚ୍ୟୁତ କରାଉଛି, ତାହା ଦର୍ଶାଇଛନ୍ତି । ଆଜିର ସମାଜରେ ଜ୍ଞାନ, ପ୍ରତିଭା ଓ ମେଧା, ଅନ୍ୟାୟ, ପ୍ରିୟା-ପ୍ରୀତି ତୋଷଣର ଶିକାର ହେବାସହିତ ସଂରକ୍ଷଣ ଯୂଇରେ ବଳି ପଡୁଛି । ଯାହା ଫଳରେ ଉଚ୍ଚ ଶିକ୍ଷିତ ଯୁବଗୋଷ୍ଠୀ ବିପ୍ଳବ ଓ ସାମାଜିକ ପରିବର୍ତ୍ତନ ନାମରେ ଅବାଟରେ ଯାଇ ସଂନ୍ତ୍ରାସବାଦର ପଥ ବାଛିନେଉଛନ୍ତି । ସନାତନ, ଅରୁଣଭଳି ଆଦର୍ଶବାଦୀ ଚରିତ୍ରମାନେ ସାମାଜିକ ତାଡ଼ନା, ଅନ୍ୟାୟ ଅତ୍ୟାଚାରର ଶିକାର ହୋଇ ବିପ୍ଳବ, ସନ୍ତ୍ରାସର ପଥ ବାଛି ନିଅନ୍ତି । ମାତ୍ର ଏହି ସନ୍ତ୍ରାସବାଦୀ କାର୍ଯ୍ୟକୁ ନାଟ୍ୟକାର ଏକ ଭୀରୁତା, କାପୁରୁଷତା ରୂପେ ସୂଚିତ କରି ଉଦଭ୍ରାନ୍ତ ଯୁବସମାଜକୁ ରକ୍ତର ପଥରୁ ଓହରିଆସି ସମାଜର ମୁଖ୍ୟ ସ୍ରୋତରେ ସାମିଲ୍ ହେବାପାଇଁ ଆହ୍ୱାନ କରିଛନ୍ତି । ଏହାହିଁ ହେଉଛି ବାର୍ତ୍ତା ନାଟକର ମୁଖ୍ୟ ବାର୍ତ୍ତା ଏବଂ ପ୍ରାଣବାଣୀ ।

**ସିଦ୍ଧାନ୍ତ (୧୯୯୪):** ଏହି ନାଟକଟିରେ ସମାଜବାଦୀ ସିଦ୍ଧାନ୍ତ ଓ ପାରଂପରିକ ମୂଲ୍ୟବୋଧ ପ୍ରତି ନାଟ୍ୟକାର ଗୁରୁତ୍ୱ ଦେଇଛନ୍ତି । ଆଧୁନିକ ମଣିଷ ର ବସ୍ତୁବାଦୀ ଚିନ୍ତାଧାରା, ସ୍ୱାର୍ଥପରତା, ପାଶ୍ଚାତ୍ୟ ସଭ୍ୟତା ଓ ସଂସ୍କୃତି ପ୍ରତି ମଣିଷର ଅନ୍ଧାନୁକରଣ ମୋହ, ଜଗତୀକରଣର ଉଦଗ୍ରାସ ଓ ଶିଳ୍ପସଭ୍ୟତାର ପ୍ରସାର କିପରି ଆମର ଏକାନ୍ନବର୍ତ୍ତୀ ପରିବାର ଓ ମହାନ୍ ସଂସ୍କୃତିକୁ ବିନଷ୍ଟ, ବିପନ୍ନ କରିଚାଲିଛି, ଆମର ନୈତିକ ମୂଲ୍ୟବୋଧର ଅବକ୍ଷୟ ଘଟାଇ ଛାଲିଛି, ତା'ର ଚିତ୍ର ନାଟ୍ୟକାର ଦେଇଛନ୍ତି । ଏ ନାଟକର ମୁଖ୍ୟ ଚରିତ୍ର- ମାଧବ ସୁନ୍ଦର ରାୟ ହେଉଛନ୍ତି-ପ୍ରଚୀନ ପରଂପରା ଓ ମୂଲ୍ୟବୋଧର ପ୍ରତୀକ । ତାଙ୍କର ତିନି ପୁଅ- ପ୍ରଶାନ୍ତ, ପ୍ରଫୁଲ୍ଲ ଓ ପ୍ରଣବ ପରିବର୍ତ୍ତିତ ଆଧୁନିକ ରୁଗ୍ଣ ମାନସିକତାର ପ୍ରତୀକ । ମାଧବସୁନ୍ଦର ରାୟ ନିଜର ପୁତ୍ର ମାନଙ୍କ କଥାରେ ପୈତୃକସଂପତ୍ତି ବିକ୍ରୀ କରିବାକୁ କିମ୍ବା ଭାଗବତଟୁଙ୍ଗୀ ଭାଙ୍ଗି ସେଠାରେ ବ୍ୟବସାୟ କେନ୍ଦ୍ର ନିର୍ମାଣକୁ ପସନ୍ଦ କରିନାହାଁନ୍ତି । ମାତ୍ର-ପୁତ୍ର-ପୁତ୍ରବଧୂମାନେ ସ୍ଥାବର-ଅସ୍ଥାବର ସଂପତ୍ତିର ବିକ୍ରୀପାଇଁ ଆଗେଇ ଆସିଛନ୍ତି । ଏପରିକି ମାଧବ ସୁନ୍ଦର ରାୟଙ୍କୁ ନିଶା ଔଷଧ ଦେବାକୁ ମଧ ପଶ୍ଚାଦପଦ ହୋଇନାହାନ୍ତି । ମାଧବସୁନ୍ଦରଙ୍କର ନାତି ଅବୋଧ ବାଳକ 'ତାନି' ମଧ

ଠଜେଙ୍କର ମୃତ୍ୟୁ କାମନା କରିଛନ୍ତି । ଡାନ ଜେଜେ ମାଧବ ବାବୁଙ୍କୁ କହିଛି- "ତୁମେ ଜଲ୍‌ଦି ମରିଗଲେ ଆମେ ଗୋଟେ ଫରେନ୍ କାର କିଣିବୁ । ତୁମେ ଜଲ୍‌ଦି ମରୁନ କାହିଁକି ଗ୍ରାଣ୍ଡ୍‌ପା । ଅର୍ଥ-ସଂପଦର ମୋହ, ଆଧୁନିକ ରୁଗ୍‌ଣ ମାନସିକତା କିପରି ମଣିଷ ସମାଜକୁ ଗ୍ରାସକରି ଚାଲିଛି, ତାହା ନାଟ୍ୟକାର ଦର୍ଶାଇଛନ୍ତି ।"

**ରାଜାଘର ଖେଳ (୧୯୯୭):** ଏହା ଏକ ସଙ୍ଗୀତ ବହୁଳ, ଶାଣିତ ବ୍ୟଙ୍ଗଧର୍ମୀ ମଞ୍ଚ ନାଟକ । ଲୋକନାଟ୍ୟ ପରଂପରାର ସାଙ୍ଗୀତିକ ଆବେଦନ ଓ ସୁଆଙ୍ଗ ଶୈଳୀରେ ଏହି ନାଟକଟି ରଚିତ । ଏ ନାଟକଟିରେ ନୂତନ ସଂରଚନା ଶୈଳୀର ମଧ ପ୍ରୟୋଗ କରାଯାଇଛି । ଆଙ୍ଗିକ ଅଭିନୟ ମାଧ୍ୟମରେ ବିଭିନ୍ନ ବ୍ୟକ୍ତି, ଦୃଶ୍ୟ ଓ ଘଟଣାବଳୀକୁ ଦେଖାଇବାର ପ୍ରୟାସ କରାଯାଇଛି । ଏଥିରେ ଆଧୁନିକ ଗେମ୍-ପ୍ଲେ ବା କ୍ରୀଡ଼ାତତ୍ତ୍ୱର ପ୍ରୟୋଗମଧ ଲକ୍ଷଣୀୟ । ସ୍ୱାଧୀନତା ପରବର୍ତ୍ତୀ ଭାରତୀୟ ଗଣତାନ୍ତ୍ରିକ ଶାସନ ବ୍ୟବସ୍ଥାର ଅବକ୍ଷୟ, ନୀତି ଓ ନୈତିକତା ବିହୀନ ବଂଶାନୁକ୍ରମିକ ଦୁର୍ନୀତି ଗ୍ରସ୍ତ ଶାସନ ପଦ୍ଧତି କିପରି ଏ ଦେଶର ସମାଜ ଜୀବନ କୁ କଳୁଷିତ, ପର୍ଯ୍ୟୁଷିତ ଓ ପୂତିଗନ୍ଧମୟ କରିଦେଇଛି, ତାହା ନାଟ୍ୟକାର ଏ ନାଟକଟିରେ ସୂଚିତ କରିଛନ୍ତି । ସ୍ୱାଧିନତା ପରବର୍ତ୍ତୀ ଭାରତବର୍ଷର ରାଜନୈତିକ ପ୍ରେକ୍ଷାପଟରେ ଦେଶର ପ୍ରଥମ ପ୍ରଧାନମନ୍ତ୍ରୀ ପଣ୍ଡିତ ନେହେରୁଙ୍କ ଠାରୁ ଆରମ୍ଭକରି ଇନ୍ଦିରାଗାନ୍ଧୀ, ରାଜୀବ ଗାନ୍ଧୀ, ଦେବ ଗୌଡ଼ାଙ୍କ ପର୍ଯ୍ୟନ୍ତ ପ୍ରାୟ ସମସ୍ତ ପ୍ରଧାନମନ୍ତ୍ରୀଙ୍କୁ ନାଟ୍ୟକର ରଙ୍ଗମଞ୍ଚର କାଠଗଡ଼ାରେ ଅବତୀର୍ଣ୍ଣ କରାଇ ସେମାନଙ୍କର ଦୁର୍ନୀତିଗ୍ରସ୍ତ, ଭ୍ରଷ୍ଟାଚାରୀ ରୂପର ଉନ୍ମୋଚନ କରିବାର ପ୍ରୟାସ କରିଛନ୍ତି । ରାଜନେତା ମାନଙ୍କର ସ୍ୱାର୍ଥପରତା, ହୀନମନ୍ୟତା, ଛଳନା, ପ୍ରବଞ୍ଚନା ଓ ଶଠତାର ମୁଖା ଖୋଲି ସେମାନଙ୍କ ଭିତରର ନଗ୍ନସ୍ୱରୂପକୁ ପ୍ରକଟନ କରିବାରେ ନାଟ୍ୟକାର ଉଦ୍ୟମ କରିଛନ୍ତି । ଏହା ସହିତ ନାଟ୍ୟକାର ଏ ନାଟକରେ ଗଣତନ୍ତ୍ରର ବିକଳବିଧ୍ୱସ୍ତ ଅବକ୍ଷୟୀ ରୂପର ପ୍ରକଟନ ସହିତ ନ୍ୟାୟପାଳିକାର ବିଫଳତା ଓ ତ୍ରୁଟି-ବିଚ୍ୟୁତିର ଦିଗ ମଧ ନିର୍ଦ୍ଦେଶ କରିଛନ୍ତି । ଏଥିରେ ନାଟ୍ୟକାର ମଧୁର ହାସ୍ୟରସ ସହିତ ଶାଣିତ-ବୌଦ୍ଧିକ ବ୍ୟଙ୍ଗର ପରିପ୍ରକାଶ ଘଟାଇଛନ୍ତି ।

**ଆପଣ ସାକ୍ଷୀ ରହିଲେ ହଜୁର (୧୯୯୭):** ଏହା ଦୁଇଗୋଟି ଦୃଶ୍ୟ ବିଶିଷ୍ଟ ଏକ ହାସ୍ୟ-ମନୋରଞ୍ଜନ ଧର୍ମୀ ଲଘୁନାଟକ । ସମାଜର ଯୌତୁକ ସମସ୍ୟା ଓ ତା'ର ନିରାକରଣର ଦିଗଟିକୁ ନାଟ୍ୟକାର ହାସ୍ୟ-ମଧୁର ଭାବରେ ପରିପ୍ରକାଶ କରିଛନ୍ତି । ପିତା ହରିବନ୍ଧୁ ବିଶ୍ୱାଳଙ୍କର ଯୌତୁକ ନିଶାକୁ ଛଡ଼ାଇବାପାଇଁ ପୁତ୍ର ଶ୍ରୀକାନ୍ତ ନିଜର

ପ୍ରେମିକା ପଦ୍ମା ଓ ପଦ୍ମାର ପିତା ଗୌରାଙ୍ଗ ବାବୁଙ୍କ ସହ ମିଶି ଏକ ଗେମ୍-ପ୍ଲାନ୍ କରିଛନ୍ତି । ଯା' ଫଳରେ ହରିବନ୍ଧୁବାବୁ ପଦ୍ମାଙ୍କୁ ନିଜର ପୁତ୍ରବଧୂ ରୂପେ ସ୍ୱୀକାର କରିଛନ୍ତି ।

**ଭୋଳାନାଥ ଦାସ ହାଜର ହେ (୨୦୦୦):** ଏହା ଏକ ସଫଳ ମଞ୍ଚ ନାଟକ । ଏହି ନାଟକରେ ନାଟ୍ୟକାର ସାମାଜିକ ମୂଲ୍ୟବୋଧର ଅବକ୍ଷୟ, ନୈତିକ ଅଧୋଗତି, ସାଂସ୍କୃତିକ ବିପର୍ଯ୍ୟୟ ଓ ମାନବିକ ସଂପର୍କର ରୁଗ୍ଣ, ଅବକ୍ଷୟୀ ଦିଗର ନିର୍ଦ୍ଦେଶ କରିଛନ୍ତି । ଅର୍ଥ-ସଂପଦର ସର୍ବଗ୍ରାହୀ ମୋହ, ପ୍ରାଚୁର୍ଯ୍ୟ, ଭୋଗବିଳାସର କାମନା ସାଂପ୍ରତିକ ମଣିଷ ଓ ଯୁବମାନସକୁ କିପରି ବିକ୍ଷୁବ୍ଧ, ବିଡ଼ମ୍ବିତ ଓ ଅମାନବିକ କରିଚାଲିଛି, ତା'ର ଚିତ୍ର ନାଟ୍ୟକାର ଦେଇଛନ୍ତି । ଏହି ନାଟକର ମୁଖ୍ୟ ଆଦର୍ଶବାଦୀ ଚରିତ୍ର- ସ୍ୱାଧୀନତା ସଂଗ୍ରାମୀ ଭୋଳାନାଥ ଦାସ । ମାତ୍ର- ଦୁର୍ଭାଗ୍ୟର ବିଷୟ ତାଙ୍କ ପୁତ୍ର ଅର୍ଥ, ପ୍ରାଚୁର୍ଯ୍ୟ, ଭୋଗବିଳାସ ପଛରେ ଗୋଡ଼ାଇଛି । ଅଧିକ ଟଙ୍କା ରୋଜଗାର ଲୋଭରେ ଅଧାପକ ଚାକିରୀଛାଡ଼ି ବ୍ୟବସାୟ ରେ ମାତିଛି । ଭୋଳାନାଥ ଦାସ ତୀର୍ଥଭ୍ରମଣ ଯାଇଥିବା ଅବକାଶରେ ରେଳଦୁର୍ଘଟଣାରେ ତାଙ୍କର ମୃତ୍ୟୁହେବାର ସମ୍ବାଦ ଆସିଛି । ରେଳ ବିଭାଗରୁ ଦୁର୍ଘଟଣା ଜନିତ କ୍ଷତିପୂରଣ ଏବଂ ଏଲ୍.ଆଇ.ସି. ବାବଦକୁ ତାଙ୍କ ପୁତ୍ର ସିଦ୍ଧାନ୍ତ ପ୍ରଚୁର ଟଙ୍କା ପାଇଛନ୍ତି । ନାଟ୍ୟକାର ସିଦ୍ଧାନ୍ତ ଚରିତ୍ର ମାଧ୍ୟମରେ ସାଂପ୍ରତିକ ଯୁବ ସମାଜର ନୈତିକ ଅଧୋଗତିର ଚିତ୍ର ପ୍ରକଟନ କରିଛନ୍ତି । ସିଦ୍ଧାନ୍ତ ମଦ୍ୟପାନ କରି ପିତାଙ୍କ ତୈଳଚିତ୍ରକୁ ଚାହିଁ ଅସମ୍ମାନକରି କହିଛି- "ବାପା ବଞ୍ଚିଥିଲେ ହୁଏତ, କିଛି ଦେଇ ନଥାନ୍ତେ; ମାତ୍ର- ତାଙ୍କ ମୃତ୍ୟୁ ହିଁ ମୋତେ ସୌଭାଗ୍ୟ ଆଣି ଦେଇଛି ।" ନାଟ୍ୟକାର 'ସଂସାରୀ' ଚରିତ୍ର ମାଧ୍ୟମରେ ଭୋଳାନାଥ ଦାସ ଜୀବିତ ଥିବାର ଖବର ସିଦ୍ଧାନ୍ତ କୁ ଦେଇଛନ୍ତି । ମାତ୍ର- ସିଦ୍ଧାନ୍ତ ନିଜର ପତ୍ନୀ ଏବଂ ଶ୍ୱଶୁର ନୀଳାମ୍ବର ବାବୁଙ୍କ ସହ ମିଶି ପିତାଙ୍କର ବଞ୍ଚିଥିବାର ସମ୍ବାଦ ଗୁପ୍ତ ରଖିବାକୁ ସଂସାରୀକୁ ଅର୍ଥର ଲୋଭ ଦେଖାଇଛନ୍ତି । ଭୋଳାନାଥବାବୁ ବଞ୍ଚିଥିବାର କଥା ନୀଳାମ୍ବରବାବୁ ଏବଂ ତାଙ୍କ ଝିଅ ଆଗରୁ ଜାଣିଛନ୍ତି । ସେଇମାନେ ହିଁ ଭୋଳାନାଥ ଦାସ ବଞ୍ଚିଥିବାର ଜାଣି ତାଙ୍କୁ ଅପହରଣକରି କଲିକତାରେ ଏକ ପାଗଳ ଗାରଦାରେ ରଖିଥିଲେ । କାରଣ ଭୋଳାନାଥ ଦାସ ଫେରିଆସିଥିଲେ ହୁଏତ ନିଜର ଝିଅ-ଜ୍ୱାଇଁ ଙ୍କୁ ପାଇଥିବା ସମସ୍ତ ଅର୍ଥ ଫେରାଇବାକୁ ପଡ଼ିବ । 'ସଂସାରୀ' ଯେତେବେଳେ ଭୋଳାନାଥଙ୍କୁ ସଙ୍ଗରେ ନେଇ ଆସିଛି ସମସ୍ତଙ୍କର ମନ୍ଦ ଉଦ୍ଦେଶ୍ୟ ଧରାପଡ଼ିଯାଇଛି । ଅର୍ଥ-ସମ୍ପଦ ଓ ପ୍ରାଚୁର୍ଯ୍ୟର ମୋହ ମଣିଷକୁ କିପରି ଅମାନବିକ, ପଶୁ କରିଦିଏ, ତା'ର ନୈତିକ ଆଦର୍ଶ ଓ ବିବେକକୁ ବିନଷ୍ଟ କରିଦିଏ ତାହା ନାଟ୍ୟକାର ଏ ନାଟକ ମାଧ୍ୟମରେ ସୂଚିତ କରିଛନ୍ତି ।

**ସେଦିନ ଆସୁଛି (୨୦୦୮):** ଏହା ଏକ ସାମାଜିକ ସମସ୍ୟାମୂଳକ ନାଟକ । ଏ ନାଟକରେ ନାଟ୍ୟକାର ସମାଜର ଉଚ୍ଚ-ନୀଚ ଭେଦଭାବ, ଜାତିଆଣ ମନୋଭାବ, ସାମାଜିକ ନିଷ୍ଠୁର ନୀତି-ନିୟମ ଓ ସାମାଜିକ ଶୋଷଣ-କଷଣ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଛନ୍ତି । ଗୋଟିଏ ପଟେ ସବର୍ଣ୍ଣ ଉଚ୍ଚ ଜାତିର ଜମିଦାର ହିରଣ୍ୟଗର୍ଭ ଚୌଧୁରୀ ଓ ଅନ୍ୟପଟରେ ଅସବର୍ଣ୍ଣ ପାଣ ସମାଜର ମୁଖିଆ- ପଞ୍ଚୁଆ । ଯୁଗଯୁଗର ଏହି ସବର୍ଣ୍ଣ-ଅସବର୍ଣ୍ଣ ମଧ୍ୟରେଥିବା ପ୍ରାଚୀର କୁ ନାଟ୍ୟକାର ଭାଙ୍ଗି ଦେବାକୁ ଚାହିଁଛନ୍ତି । ଯେଉଁଥିପାଇଁ ଜମିଦାରଙ୍କ ପୁତ୍ର ପ୍ରଭାତ ଏବଂ ପାଣ ପଞ୍ଚୁଆର ଝିଅ ବାସନ୍ତୀ ମଧ୍ୟରେ ପ୍ରେମ-ପ୍ରଣୟର ସୂତ୍ରପାତ କରାଯାଇଛି । ମାତ୍ର- ଏଥିପାଇଁ ବାସନ୍ତୀକୁ ମୂଲ୍ୟ ଦେବାକୁ ପଡ଼ିଛି । ହିରଣ୍ୟଗର୍ଭଙ୍କ ଆକ୍ରୋଶର ଶିକାର ହୋଇ ବାସନ୍ତୀ ମରିଛି । ପ୍ରଭାତ ପିତାଙ୍କର ଏହି ପାପର ପ୍ରାୟଶ୍ଚିତ କରିବାପାଇଁ ନିଜ ଘରଛାଡ଼ି ହରିଜନ ସାହିରେ ହରିଜନ ମାନଙ୍କ ଉନ୍ନତି ପାଇଁ ସାହାଯ୍ୟ ଓ ସେବା କରିଛି । ନାଟ୍ୟକାର ସୂଚାଇଦେବାକୁ ଚାହିଁଛନ୍ତି ଯେ- ସେଦିନ ଆସୁଛି, ଯେଉଁଦିନ ମଣିଷ-ମଣିଷ ଭିତରେ ଏଭଳି ଉଚ୍ଚ-ନୀଚ, ଜାତି-ଅଜାତି ଭେଦଭାବ ରହିବ ନାହିଁ । ଜାତି-ଧର୍ମ-ବର୍ଣ୍ଣ, ଉଚ୍ଚ-ନୀଚ ନିର୍ବିଶେଷରେ ଏକ ଶ୍ରେଣୀହୀନ, ଶୋଷଣମୁକ୍ତ ସମାଜ ଗଠନ ହୋଇପାରିବ ।

**ସୂର୍ଯ୍ୟ ଉଇଁବାର ବେଳ (୨୦୧୪):** ଏହି ନାଟକଟି ଏକ ସାମାଜିକ ସମସ୍ୟା ଓ ସଂସ୍କାର ମୂଳକ ନାଟକ । ଏହି ନାଟକଟି ସାତଗୋଟି ଦୃଶ୍ୟ ସମ୍ବଳିତ । ଝିଅର ବିବାହ ପାଇଁ ପିତାମାତାଙ୍କର ଯେଉଁ ମାନସିକ ଯନ୍ତ୍ରଣା, ତାହା ଏହି ନାଟକଟିରେ ରୂପପାଇଛି । ଅଖିଳ ବାବୁଙ୍କ କନ୍ୟା ପଦ୍ମାର ବିବାହ ପାଇଁ ମୁଖ୍ୟ ପ୍ରତିବନ୍ଧକ ସାଜିଛି ପଦ୍ମା ମା'ଙ୍କ ମୁହଁରେ ଥିବା ଧଳାଛଉଦାଗ । ଏଇ ଧଳା ଛଉଦାଗ ପାଇଁ ଝିଅଦେଖି ଆସୁଥିବା ବରଘର ଫେରିଯାଇଛନ୍ତି । ନାଟ୍ୟକାର ଏ ନାଟକର ମୁଖ୍ୟ ଚରିତ୍ର ଡାକ୍ତର ସୂର୍ଯ୍ୟ ଙ୍କ ମାଧ୍ୟମରେ ସୂଚାଇଦେବାକୁ ଚାହିଁଛନ୍ତି ଯେ- ଛଉ ଏକ ଦୁଃରାରୋଗ୍ୟ ବ୍ୟାଧି ନୁହେଁ, ଏହା କୌଣସି ପୂର୍ବଜନ୍ମର ଅଭିଶାପ ମଧ୍ୟ ନୁହେଁ । ଡାକ୍ତର ସୂର୍ଯ୍ୟ ସମାଜର ଏଭଳି ମାନସିକତା ଓ ଅନ୍ଧବିଶ୍ୱାସ କୁ ପ୍ରତିହତ କରିବାପାଇଁ ନିଜେ ଆଗେଇ ଆସିଛନ୍ତି ପଦ୍ମାକୁ ବିବାହ କରିବାପରାଇଁ । ଏହି ବିବାହ ମାଧ୍ୟମରେ ନାଟ୍ୟକାର ଛଉ ଭଳି ବ୍ୟାଧିକୁ ନେଇ ଯେଉଁଭଳି ସାମାଜିକ ଅନ୍ଧବିଶ୍ୱାସ, ହୀନମାନସିକତା ଓ ହୃଦୟହୀନତା ରହିଛି ତା' ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଛନ୍ତି । ସୂର୍ଯ୍ୟ ଏବଂ ପଦ୍ମାର ବିବାହରେ ନାଟ୍ୟକାର ଏକ ନୂତନ ବାର୍ତ୍ତା ଦେଇଛନ୍ତି । ଏହି ନୂତନ ଚେତନା ଓ ନୂତନ ବାର୍ତ୍ତାକୁ ସୂର୍ଯ୍ୟ ଉଇଁବାର ବେଳ ରୂପେ ନାଟ୍ୟକାର ଅଭିହିତ କରିଛନ୍ତି ।

**ଶେଷଠିକଣା (୨୦୧୪):** ଏହା ଏକ ବଳିଷ୍ଠ ଚେତନାଧର୍ମୀ ସାମାଜିକ ସମସ୍ୟାମୂଳକ ନାଟକ । ଏହି ନାଟକଟି ଗାଳ୍ପିକ ଆନନ୍ଦଚନ୍ଦ୍ର ପହିଙ୍କର 'ପଣବନ୍ଦୀ' ଗଳ୍ପର ଛାୟାରେ ରଚିତ । ଏହି ନାଟକରେ ବାର୍ଦ୍ଧକ୍ୟର ନିଃସଙ୍ଗତା, ଅସହାୟତା, ଏକାକୀତ୍ୱବୋଧ ଓ ଯନ୍ତ୍ରଣାବୋଧର ପ୍ରକଟନ ସହିତ ନାଟ୍ୟକାର ଆଧୁନିକ ସମାଜର ପୁତ୍ର-ପୁତ୍ରବଧୂ ମାନଙ୍କର ସ୍ୱାର୍ଥପରତା, ହୀନମନ୍ୟତା, ନୈତିକ ଅଧୋଗତି, ମାନବିକ ଅବକ୍ଷୟର ଚିତ୍ର ପ୍ରକଟନ କରିଛନ୍ତି । ଆଧୁନିକ ସ୍ୱାର୍ଥ ସର୍ବସ୍ୱ ବସ୍ତୁତାନ୍ତ୍ରିକ, ହୃଦୟହୀନ ସମାଜରେ 'ଜରାନିବାସ' କିପରି ବାର୍ଦ୍ଧକ୍ୟର ଶେଷଠିକଣା ପାଲଟିଯାଏ, ତାହା ନାଟ୍ୟକାର ଏଥିରେ ସୂଚିତ କରିଛନ୍ତି । ଏହି ନାଟକର ଶିବାନନ୍ଦ, ସନାତନ ଆଦି ଚରିତ୍ରମାନେ ପୁତ୍ର-ପୁତ୍ରବଧୂ, ଆତ୍ମୀୟ ସ୍ୱଜନ ଥାଇବି କିପରି ଏକଲା, ନିଃସଙ୍ଗ ଜୀବନକୁ ଶ୍ରେୟରୂପେ ବରଣ କରିନିଅନ୍ତି, ତାହା ନାଟ୍ୟକାର ଦର୍ଶାଇଛନ୍ତି । ଏହି ରୁଗ୍ଣ ପରଂପରା ମାନବିକତା, ବିବେକ ଓ ନୈତିକତା ପ୍ରତି ଏକ କ୍ରୂର ଉପହାସ । ଆଜିର ସମାଜରେ ବୃଦ୍ଧ ପିତା-ମାତାମାନେ ସନ୍ତାନ ମାନଙ୍କପାଇଁ ଅସହ୍ୟ, ଅଖୋଜା, ଅଲୋଡା ଓ ବୋଝପରି ଅପାଙ୍‌କ୍ତେୟ ହୋଇଉଠନ୍ତି । ନାଟକର ମୁଖ୍ୟ ଚରିତ୍ର ସନାତନ ବାବୁ ନିଜର ପୁତ୍ର-ପୁତ୍ରବଧୂ ମାନଙ୍କର ଅର୍ଥଲୋଭ, ନିଷ୍ଠୁର ହୃଦୟ ଏବଂ ଅବିବେକିତା ଦେଖି ନିଜେ ଏକ 'ଜରାଶ୍ରମ' ନିର୍ମାଣ କରିଛନ୍ତି । ତାଙ୍କର ସ୍ୱପ୍ନ- ଏହି ଜରାଶ୍ରମ ହେବ ସମାଜର ଅସହାୟ, ଅଖୋଜା, ଅଲୋଡ଼ା ବୃଦ୍ଧ-ବୃଦ୍ଧା ମାନଙ୍କର ଅନ୍ତିମ ଆଶ୍ରୟସ୍ଥଳୀ । ଏହାହିଁ ବାର୍ଦ୍ଧକ୍ୟର ଶେଷ ଠିକଣା । ବାସ୍ତବରେ ଏହି ନାଟକଟି ଏକ ମଞ୍ଚସଫଳ ନାଟକ ।

**ଶ୍ରୀ ଧନେଶ୍ୱର ସାହୁ (୧୯୪୯- ):**

ଧନେଶ୍ୱର ସାହୁଙ୍କ ଜନ୍ମ ୧୯୪୯ ମସିହା ସେପ୍ଟେମ୍ବର ମାସ ୩୦ ତାରିଖରେ ଢେଙ୍କାନାଳ ଜିଲ୍ଲାର ଭୁବନ ଗ୍ରାମରେ । ତାଙ୍କ ପିତାଙ୍କ ନାମ- କୃଷ୍ଣଚନ୍ଦ୍ର ସାହୁ ଓ ମାତା- ବାସନ୍ତୀ ସାହୁ । ଶ୍ରୀଯୁକ୍ତ ସାହୁ ୧୯୬୭ ମସିହାରେ ଭୁବନ ହାଇସ୍କୁଲରୁ ମାଟ୍ରିକ୍ୟୁଲେସନ୍ ପାଶ ପରେ ରେଭେନସା କଲେଜରେ ଆଇ.ଏ. ଏବଂ ବି.ଏ. ଶ୍ରେଣୀରେ ଅଧ୍ୟୟନ କରିଥିଲେ । ୧୯୭୧ ମସିହାରେ ସେ ରେଭେନସା କଲେଜରୁ ଦର୍ଶନ ଅନର୍ସରେ ବି.ଏ. ପାଶ୍ କରି ବାଣୀବିହାରରେ ଦର୍ଶନ ଶାସ୍ତ୍ରରେ ଏମ୍.ଏ. ଶ୍ରେଣୀରେ ଅଧ୍ୟୟନ କରିଥିଲେ । ୧୯୭୩ ମସିହାରେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ଦର୍ଶନ ଶାସ୍ତ୍ରରେ ପ୍ରଥମ ଶ୍ରେଣୀରେ ପାଶ୍ କରି ୧୯୭୪ ମସିହାରେ ଅଧାପନା କାର୍ଯ୍ୟରେ ଯୋଗଦେଇଥିଲେ । ଦୀର୍ଘବର୍ଷକାଳ ଅଧାପନା କାର୍ଯ୍ୟ କରିବାପରେ ସେ ୨୦୦୭ ମସିହାରେ ଅଧ୍ୟକ୍ଷ ରୂପରେ ଅବସର ଗ୍ରହଣ କରିଛନ୍ତି ।

ଶ୍ରୀଯୁକ୍ତ ସାହୁ ଢେଙ୍କାନାଳ ମାଟିର ଜଣେ ବରେଣ୍ୟ ସ୍ରଷ୍ଟା । ମୁଖ୍ୟତଃ ସେ ଜଣେ ପ୍ରାବନ୍ଧିକ । ପ୍ରବନ୍ଧ ସାହିତ୍ୟ ପାଇଁ ସେ ୨୦୧୦ ମସିହାରେ ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର ଲାଭ କରିଛନ୍ତି । ପ୍ରବନ୍ଧ ରଚନା ସହିତ ସେ ଅନୁବାଦ ସାହିତ୍ୟ କ୍ଷେତ୍ରରେ ମଧ୍ୟ ସଫଳତା ଅର୍ଜନ କରିଛନ୍ତି । ହେତୁବାଦୀ ଦର୍ଶନର ଜଣେ ଚିନ୍ତାନାୟକ ଓ ସ୍ରଷ୍ଟା ହିସାବରେ ତାଙ୍କ ବ୍ୟକ୍ତିଗତ ଜୀବନ ଦର୍ଶନ ଓ ସୃଷ୍ଟି କର୍ମ ଭିତରେ ସମାଜ ସଂସ୍କାର ଲିପ୍‌ସା, ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଏବଂ ହେତୁବାଦୀ ଦର୍ଶନର ସିଦ୍ଧାନ୍ତ ଓ ଜିଜ୍ଞାସା ଫୁଟିଉଠିଛି । ଶ୍ରୀଯୁକ୍ତ ସାହୁଙ୍କ ରଚିତ ଗ୍ରନ୍ଥ ଗୁଡ଼ିକ ହେଲା- ୧- ଆବ୍ରାହାମ କୋଭୁର୍, ୨- ଧର୍ମର ଉର୍ଦ୍ଧ୍ୱରେ, ୩-ଧର୍ମ-ଦର୍ଶନ ଓ ସମାଜ, ୪- ସଂସ୍କୃତି ଓ ସର୍ବୋଦୟ, ୫- ଗାନ୍ଧୀ-ବିଜ୍ଞାନ ଓ ମାନବବାଦ,୬- ଭାରତୀୟ ଦର୍ଶନରେ ନିରୀଶ୍ୱରବାଦ, ୭- ଜୀବନ ଜୀଜ୍ଞାସା, ୮-Strawson's Concept of Descriptive Metaphysics, ୯-Philosophy- Society & Culture । ଏହିସବୁ ରଚନା ଗୁଡ଼ିକ ସହିତ ତାଙ୍କର ଅନୁଦିତ ଗ୍ରନ୍ଥ ଗୁଡ଼ିକ ହେଲା- ଗୋରାଙ୍କ ଦୃଷ୍ଟିରେ ଗାନ୍ଧୀ ଓ ନିରୀଶ୍ୱରବାଦ, ଭାରତରେ ଜାତିପ୍ରଥାର ଉତ୍ପତି ଓ ସ୍ୱରୂପ, ପେରିୟାର୍ ଙ୍କ ରଚନା । ଲେଖକଙ୍କର ଏହି ସମସ୍ତ ରଚନା ଗୁଡ଼ିକ ବେଶ୍ ତାତ୍ତ୍ୱିକ, ଭାବଗର୍ଭକ, ମନନଶୀଳ, ଦାର୍ଶନିକ ଏବଂ ବିଜ୍ଞାନ ସମ୍ମତ ଦୃଷ୍ଟିଭଙ୍ଗୀରେ ବେଶ୍ ବଳିଷ୍ଠ ଓ ଶବଳିତ ।

**ଆବ୍ରାହାମ୍ କୋଭୁର (୧୯୯୮):** ଏହା ଏକ ଜୀବନୀ ଗ୍ରନ୍ଥ । ଭାରତର କେରଳଠାରେ ଜନ୍ମିତ ଏବଂ ଶ୍ରୀଲଙ୍କାର ନାଗରିକତ୍ୱ ଗ୍ରହଣ କରିଥିବା ପ୍ରଖ୍ୟାତ ବୈଜ୍ଞାନିକ ଏବଂ ହେତୁବାଦୀ ଦାର୍ଶନିକ ଆବ୍ରାହାମ୍ କୋଭୁର୍ ଙ୍କ ସଂଗ୍ରାମଶୀଳ ଜୀବନ ଏବଂ ତାଙ୍କ ଚିନ୍ତାଦର୍ଶକୁ ନେଇ ଶ୍ରୀଯୁକ୍ତ ସାହୁ ଏହି ଜୀବନୀ ଗ୍ରନ୍ଥଟି ରଚନା କରିତଛନ୍ତି । କୋଭୁର୍ ଙ୍କ ଲିଖିତ 'Begone Godmen' ଏବଂ 'Gods-Demon's and Spirits' ପୁସ୍ତକ ଦ୍ୱୟର ଆଧାରରେ ଲେଖକ ଏହି ଗ୍ରନ୍ଥଟି ରଚନା କରିଛନ୍ତି । ଭାରତୀୟ ସମାଜରେ ଭରି ରହିଥିବା ନାନାଦି ରୁଢ଼ିବାଦୀ ପରମ୍ପରା, କୁ-ସଂସ୍କାର ଓ ଉଚ୍ଚ-ନୀଚ ଭେଦଭାବ ବିରୁଦ୍ଧରେ ଜୀବନବ୍ୟାପୀ ସଂଗ୍ରାମଶୀଳ ଏହି ମହାନ୍ ବ୍ୟକ୍ତିତ୍ୱଙ୍କ ଜୀବନୀ, ଚିନ୍ତାଦର୍ଶ ଓ ବିଚାରଧାରାକୁ ଲେଖକ ଏହି ଗ୍ରନ୍ଥରେ ଅତି ସୂକ୍ଷ୍ମ ଓ ମନନଶୀଳ ଭାବରେ ପରିପ୍ରକାଶ କରିଛନ୍ତି । କୋଭୁରଙ୍କ ହେତୁବାଦୀ ଅନୁଚିନ୍ତା, ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ, ଧର୍ମନିରପେକ୍ଷତା, ଜାତିପ୍ରଥା ବିରୋଧି ଆନ୍ଦୋଳନ, ସମାଜ ସଂସ୍କାର ଲିପ୍‌ସା, ଆତ୍ମା-ପରମାତ୍ମା ଓ ଜନ୍ମାନ୍ତରବାଦ ପ୍ରତି ଥିବା ଦୃଷ୍ଟିଭଙ୍ଗୀ, ଉଚ୍ଚମାନବୀୟ ମୂଲ୍ୟବୋଧ ଆଦିର ନିଚ୍ଛକ ପରିପ୍ରକାଶ ଘଟିଛି ଏହା ସହିତ ଲେଖକ ମନୋବିଜ୍ଞାନ, ପରାମନୋବିଜ୍ଞାନ, ବିଭିନ୍ନ ମାନସିକ **ରୋଗ** ଓ

ବିକୃତି, ଜ୍ୟୋତିଷଶାସ୍ତ୍ର, ସାମୁଦ୍ରିକ ବିଜ୍ଞାନ ପ୍ରଭୃତି ସମ୍ପର୍କରେ ସବିଶେଷ ଆଲୋଚନା କରିଛନ୍ତି । ଏହି ଗ୍ରନ୍ଥରେ ଲେଖକ 'ହେତୁବାଦ' ର ସରଳତମ ଅର୍ଥ ବ୍ୟାଖ୍ୟା କରିଛନ୍ତି । ଯେଉଁ ଚିନ୍ତନ ବୈଜ୍ଞାନିକ ଦୃଷ୍ଟିକୋଣ ସମ୍ମୁନ୍ନତ, ବୁଦ୍ଧି ସମ୍ମତ, ସ୍ୱାଧୀନ ଚିନ୍ତା, ବିଚାର ଓ ତର୍କ ସମର୍ଥିତ ତାକୁ ହିଁ ହେତୁବାଦ ରୂପେ ଲେଖକ ଅଭିହିତ କରିଛନ୍ତି । ବାସ୍ତବରେ ଏହି ଗ୍ରନ୍ଥଟି ହେତୁବାଦ ଦର୍ଶନ (Rationalism) ସମ୍ବଳିତ ଏକ ମନୋଜ୍ଞ ଗ୍ରନ୍ଥ । ମଣିଷ ସମାଜର ସାମୁହିକ ଉନ୍ନତି ଓ ବ୍ୟକ୍ତିର ଉତ୍କର୍ଷ ସାଧନପାଇଁ ଲେଖକ ଏହି ଗ୍ରନ୍ଥ ମାଧ୍ୟମରେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ, ଯୁକ୍ତି ଓ ବିଚାରଶୀଳତାର ଏକ ମାର୍ଗ ଦେଖାଇବାର ପ୍ରୟାସ କରିଛନ୍ତି ।

**ଧର୍ମ-ଦର୍ଶନ ଓ ସମାଜ :** ଏହା ଏକ ମୌଳିକ ପ୍ରବନ୍ଧ ସଙ୍କଳନ । ଏଥିରେ ଭାରତୀୟ ସମାଜ, ସଭ୍ୟତା, ସଂସ୍କୃତି, ଉଚ୍ଚାଙ୍ଗ ଜୀବନବୋଧ ଓ ଧର୍ମ-ଦର୍ଶନ ସମ୍ବଳିତ ୨୪ ଗୋଟି ପ୍ରବନ୍ଧ ସ୍ଥାନିତ ହୋଇଛି । ଏହି ପ୍ରବନ୍ଧ ଗୁଡ଼ିକ ବେଶ୍ ତତ୍ତ୍ୱନିଷ୍ଠ ଏବଂ ଜ୍ଞାନଗର୍ଭକ । ସ୍ରଷ୍ଟା ନିଜର ସୂକ୍ଷ୍ମ ମନନଶୀଳ ବିଚାରଧାରା ଓ ଅଭିନବ ଦୃଷ୍ଟିଭଙ୍ଗୀ ନେଇ ଭାରତୀୟ ସମାଜ, ସଂସ୍କୃତି, ଧର୍ମ-ଦର୍ଶନର ନିଗୂଢ଼ ସୂତ୍ର ଓ ତତ୍ତ୍ୱର ମହତ୍ତ୍ୱ ଉଦ୍‌ଘାଟନ କରିଛନ୍ତି ।

**ସଂସ୍କୃତି ଓ ସର୍ବୋଦୟ (୨୦୦୯):** ଏହା ମଧ୍ୟ ଏକ ପ୍ରବନ୍ଧ ସଂଙ୍କଳନ । ଏଥିରେ ୨୪ ଗୋଟି ପ୍ରବନ୍ଧ ସ୍ଥାନିତ ହୋଇଛି । ଏହି ଗ୍ରନ୍ଥଟିରେ ଭାରତୀୟ ଆର୍ଯ୍ୟସଭ୍ୟତା ଓ ସଂସ୍କୃତିର ଗଭୀର ବିଚାର-ବିଶ୍ଳେଷଣ ସହିତ ଗାନ୍ଧିଜୀଙ୍କ ସ୍ୱାଧୀନତା ସଂଗ୍ରାମ ଓ ସତ୍ୟାଗ୍ରହ ଆନ୍ଦୋଳନ ଏବଂ ସନ୍ଥ ବିନୋବାଭାବେଙ୍କର ସର୍ବୋଦୟ ଚେତନା ଓ ଆନ୍ଦୋଳନ ସମ୍ପର୍କରେ ଗଭୀର ତାତ୍ତ୍ୱିକ ଆଲୋଚନା ଓ ପର୍ଯ୍ୟାଲୋଚନା କରାଯାଇଛି । ବିଚାରଶୀଳ, ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଓ ମାନବିକ ଭାବଚେତନାନେଇ ଲେଖକ ଭାରତୀୟ ସମାଜ, ମହନୀୟ ସଂସ୍କୃତି, ନୈତିକ ଆଦର୍ଶ, ସୁ-ଉଚ୍ଚ ମୂଲ୍ୟବୋଧ, ଧର୍ମ-ଧାରଣା, ଆତ୍ମା-ପରମାତ୍ମାଚେତନା ଓ ପୁନର୍ଜନ୍ମବାଦ ସଂପର୍କରେ ସବିଶେଷ ଆଲୋଚନା କରିଛନ୍ତି । ଏହାସହିତ ଗାନ୍ଧିଜୀଙ୍କ ବିଚାରଧାରା, ସତ୍ୟ-ଅହିଂସାନୀତି, ଜାତୀୟ ଆନ୍ଦୋଳନ, ବିଶ୍ୱ ମାନବିକତା ସହିତ ସର୍ବୋଦୟ ଚେତନା ଓ ଆନ୍ଦୋଳନ ଉପରେ ବିଚାର-ବିମର୍ଷ କରାଯାଇଛି ।

**ଭାରତୀୟ ଦର୍ଶନରେ ନିରୀଶ୍ୱରବାଦ(୨୦୦୯):** ଏହା ଭାରତୀୟ ଧର୍ମ-ଦର୍ଶନ ଓ ଈଶ୍ୱରଚେତନା ସମ୍ବଳିତ ଏକ ଦାର୍ଶନିକ ଗ୍ରନ୍ଥ । ଏଥିରେ ଭାରତୀୟ ଧର୍ମ-ଦର୍ଶନରେ

ଈଶ୍ୱର ସିଦ୍ଧାନ୍ତ ଓ ନିରୀଶ୍ୱରବାଦର ତାତ୍ତ୍ୱିକ ବ୍ୟାଖ୍ୟା ଓ ବିଶ୍ଳେଷଣ ସହିତ ସାଂଖ୍ୟ ଦର୍ଶନ, ମୀମାଂସା ଦର୍ଶନ, ନ୍ୟାୟ, ବୈଶେଷିକ, ଜୈନ, ବୌଦ୍ଧ, ଚାର୍ବାକ୍ ଆଦି ଦର୍ଶନ ସଂପର୍କରେ ଗଭୀର ବିଶ୍ଳେଷଣ କରାଯାଇଛି । ଏହା ସହିତ ଯୋଗଦର୍ଶନ, ଅଦ୍ୱୈତ-ବେଦାନ୍ତଦର୍ଶନ, ବିଶିଷ୍ଟାଦ୍ୱୈତବାଦ ଆଦି ଭକ୍ତିବାଦୀ ସିଦ୍ଧାନ୍ତ ଓ ଦର୍ଶନ ଆଦିର ଆଲୋଚନା କରାଯାଇଛି । ଲେଖକ ବିଂଶ ଶତାବ୍ଦୀର କେତେକ ନିରୀଶ୍ୱରବାଦୀ ବ୍ୟକ୍ତିତ୍ୱ ଯଥା- ଦେବାତ୍ମା-ସତ୍ୟାନନ୍ଦ ଅଗ୍ନିହୋତ୍ରୀ, ମାନବେନ୍ଦ୍ର ରାୟ, ପେରିୟାର ଇ.ଭି. ସ୍ୱାମୀ, ଗୋପାଳରାଜୁ ରାମଚନ୍ଦ୍ର ରାଓ, ଭକତ୍ ସିଂ ପ୍ରଭୃତିଙ୍କର ଜୀବନ ଦର୍ଶନ ସମ୍ପର୍କରେ ମଧ୍ୟ ଆଲୋକପାତ କରିଛନ୍ତି ।

**ଭାରତରେ ଜାତିପ୍ରଥା(୨୦୧୩):** ଏହା ଏକ ଅନୁଦିତ ରଚନା । ଡକ୍ଟର ବାବାସାହେବ୍ ଭୀମରାଓ ଆମ୍ବେଦକରଙ୍କ 'ଭାରତରେ ଜାତିପ୍ରଥା-ଉତ୍ପତ୍ତି ଓ ସ୍ୱରୂପ' ରଚନାର ଏହା ଓଡ଼ିଆ ଅନୁବାଦ ମାତ୍ର । ଭାରତୀୟ ସମାଜରେ ଥିବା ବିଭିନ୍ନ ଜାତି ଓ ଜାତିପ୍ରଥାର ଉତ୍ପତ୍ତି, ତା'ର ସ୍ୱରୂପ, ଜାତିଆଣ ମନୋଭାବର କୁପରିଣତି, ଜାତିପ୍ରଥାର ବିଲୋପ, ଜାତି ଓ ଧର୍ମ ପରିବର୍ତ୍ତନ, ସମାଜ ସଂସ୍କାର ଓ ମାନବବାଦ ସମ୍ପର୍କୀତ ଏହା ଏକ ସମାଜତାତ୍ତ୍ୱିକ, ଶାସ୍ତ୍ରୀୟ ଅନୁଶୀଳନ । ଜାତିପ୍ରଥା, ଜାତିଭେଦ, ଜାତିଆଣ ମନୋଭାବ ଓ ସାମାଜିକ ବୈଷମ୍ୟର ବିଲୋପ ସହିତ ସଂସ୍କାରିତ ସମାଜ ଓ ମାନବବାଦର ପ୍ରତିଷ୍ଠାପାଇଁ ଲେଖକ ଆହ୍ୱାନ ଦେଇଛନ୍ତି ।

**ପେରିୟାର୍ ଙ୍କ ରଚନା (୨୦୧୩) :** ଭାରତର ବିଶିଷ୍ଟ ସମାଜ ସଂସ୍କାରକ, ହେତୁବାଦୀ ଦାର୍ଶନିକ ତାମିଲନାଡୁର ପେରିୟାର ଇ.ଭି. ରାମସ୍ୱାମୀଙ୍କ ଇଂରାଜୀ ପୁସ୍ତକ 'Collected works of Periyer E.V.R' ର ଏହା ଓଡ଼ିଆ ଅନୁବାଦ ମାତ୍ର । ଏଥିରେ ହିନ୍ଦୁଦର୍ଶନର ସାର-ନିର୍ଯ୍ୟାସ, ଅସ୍ପୃଶ୍ୟତା, ସରକାରୀ ସଂରକ୍ଷଣ ବ୍ୟବସ୍ଥା, ଆତ୍ମସମ୍ମାନ ଆନ୍ଦୋଳନ, ଗ୍ରାମ୍ୟ ଜୀବନର ବିକାଶ, ପରିବାର ନିୟନ୍ତ୍ରଣ, ଆଗାମୀ ପୃଥିବୀର ଭବିଷ୍ୟତ ରୂପରେଖ, ଭୌତିକବାଦ, ବିଭିନ୍ନ ଜାତି ଓ ଚରିତ୍ରମାନଙ୍କ ସମ୍ପର୍କରେ ମନନଶୀଳ, ତାତ୍ତ୍ୱିକ ଆଲୋଚନା କରାଯାଇଛି । ଏହାସହିତ ଏହି ଗ୍ରନ୍ଥରେ ଇ.ଭି. ରାମସ୍ୱାମୀଙ୍କ ସଂଗ୍ରାମ ବହୁଳ ଜୀବନର ଆଲେଖ୍ୟ ମଧ୍ୟ ସନ୍ନିବିଷ୍ଟ ହୋଇଛି । ଶ୍ରୀଯୁକ୍ତ ସାହୁଙ୍କର ସମସ୍ତ ରଚନା ଗୁଡ଼ିକୁ ଅନୁଧ୍ୟାନ କଲେ ସ୍ରଷ୍ଟାଙ୍କର ଗଭୀର ଅଧ୍ୟୟନ, ଯୁକ୍ତିନିଷ୍ଠତା, ଚିନ୍ତନ ଓ ସୂକ୍ଷ୍ମ ମନନଶୀଳତାର ପରିଚୟ ବାରିହୋଇପଡ଼େ ।

**ଶ୍ରୀ ଅନ୍ତର୍ଯ୍ୟାମୀ ମିଶ୍ର (୧୯୫୦- ):**

ଅନ୍ତର୍ଯ୍ୟାମୀ ମିଶ୍ରଙ୍କର ଜନ୍ମ ୧୯୫୦ମସିହାରେ ଢେଙ୍କାନାଳ ଜିଲ୍ଲାର ମାର୍ଥାପୁର ଶାସନରେ । ତାଙ୍କ ପିତାଙ୍କ ନାମ- ସତ୍ୟବାଦୀ ମିଶ୍ର ଓ ମାତା-ଦୁର୍ଗାବତୀ ମିଶ୍ର । ଶ୍ରୀଯୁକ୍ତ ମିଶ୍ର ବୃତ୍ତିରେ ଜଣେ କିରାଣୀ ହେଲେହେଁ; ସାରସ୍ୱତ ସାଧନାପ୍ରତି ତାଙ୍କର ପ୍ରଗାଢ଼ ନିଷ୍ଠା ଓ ଅନୁରକ୍ତି ଅନନ୍ୟ, ଅସାଧାରଣ । ସେ ମୁଖ୍ୟତଃ ଜଣେ ପ୍ରାବନ୍ଧିକ, ଗବେଷକ, ସମାଲୋଚକ, ସ୍ତମ୍ଭକାର, କବି ଓ ବାଗ୍ମୀ । ଓଡ଼ିଆ ଭାଷାକୁ ଶାସ୍ତ୍ରୀୟ ମାନ୍ୟତା ମିଳିବାରେ ତାଙ୍କର ଅବଦାନ ଉଲ୍ଲେଖଯୋଗ୍ୟ । ଓଡ଼ିଆଭାଷାର ପ୍ରାଚୀନତାକୁ ପ୍ରମାଣ କରିବାପାଇଁ ସେ ବହୁ ପ୍ରାମାଣିକ ତଥ୍ୟ ଓ ଦସ୍ତାବିଜମାନ ସଂଗ୍ରହକରି ଏ ଦିଗରେ ଆପ୍ରାଣ ଉଦ୍ୟମ କରିଛନ୍ତି । ଯେଉଁଥିପାଇଁ ସେ ମହୋଦୟ ଆମର ନମସ୍ୟ । ଶ୍ରୀଯୁକ୍ତ ମିଶ୍ର ନିଜର ସାରସ୍ୱତ ପ୍ରତିଭା ବଳରେ ଅନେକ ଗୁଡ଼ିଏ ମୌଳିକ କାବ୍ୟ, ଗବେଷଣାଧର୍ମୀ ଐତିହାସିକ ତଥ୍ୟ ସମ୍ବଳିତ ଗ୍ରନ୍ଥ, ଧର୍ମ-ଦର୍ଶନ, ସଂସ୍କୃତି ଓ ଭାଷା ସଂପର୍କୀତ ଗ୍ରନ୍ଥମାନ ରଚନା କରିଛନ୍ତି । ତାଙ୍କ ରଚିତ ମହାର୍ଘ ସୃଷ୍ଟି ସଂପଦ ଗୁଡ଼ିକ ହେଲା- ବ୍ରାହ୍ମଣୀ(କାବ୍ୟ), ସପ୍ତଶଯ୍ୟା, ପୁଣ୍ୟପୀଠ କପିଳାସ, ଅଭୁଲା ଐତିହ୍ୟ, ଦିବ୍ୟରଚନାମୃତ, ପୁରାଣ ପରିଚୟ, ମୋ ଦୃଷ୍ଟିରେ ଓଡ଼ିଶା, ଓଡ଼ିଆଭାଷା-ଜାତି ଓ ଜାତୀୟତା, ପୁରୁଷୋତ୍ତମ ଜଗନ୍ନାଥ ପ୍ରଭୃତି ।

**ପୁଣ୍ୟପୀଠ କପିଳାସ (୧୯୯୪):** ଓଡ଼ିଶାର ପ୍ରସିଦ୍ଧ ଶୈବକ୍ଷେତ୍ର ଢେଙ୍କାନାଳ ସ୍ଥିତ 'କପିଳାସପୀଠ' ସଂପର୍କରେ ଏହା ଏକ ଐତିହାସିକ ତଥ୍ୟ ସମ୍ବଳିତ ପ୍ରାମାଣିକ ଗ୍ରନ୍ଥ । ଏହି ଗ୍ରନ୍ଥରେ କପିଳାସପୀଠର ଅବସ୍ଥିତି, ଏହି ପୀଠର ରହସ୍ୟ, ଏଠାକାର ମନୋରମ ପ୍ରାକୃତିକ ସୌନ୍ଦର୍ଯ୍ୟ, ଏହି କ୍ଷେତ୍ର ସଂପର୍କୀତ ବିଭିନ୍ନ ପୌରାଣିକ ଆଖ୍ୟାନ ଓ କିମ୍ବଦନ୍ତୀ, ବିଭିନ୍ନ ମନ୍ଦିର ଓ ଦେବ-ଦେବୀଙ୍କ ବର୍ଣ୍ଣନା, କପିଳାସ ମନ୍ଦିର ନିର୍ମାଣର ଇତିହାସ, ମନ୍ଦିର ପରିଚାଳନା, ନୀତି-ନିଯୋଗ, ସେବା-ସେବାୟତ, ବିଭିନ୍ନ ଅନୁଷ୍ଠିତ ପର୍ବ-ପର୍ବାଣୀ ଆଦି ବିଷୟରେ ବିଶଦ ବିବରଣୀ ରହିଛି ।

**ପୁରୁଷୋତ୍ତମ ଜଗନ୍ନାଥ (୨୦୧୧):** ଏହା ଏକ ବୈଷ୍ଣବଧର୍ମ-ଦର୍ଶନ କୈନ୍ଦ୍ରିକ ତତ୍ତ୍ୱନିଷ୍ଠ ଗ୍ରନ୍ଥ । ଏଥିରେ ଉତ୍କଳୀୟ ଧର୍ମ-ଦର୍ଶନ ଓ ଆଧାତ୍ମିକ ପରଂପରାର ପରମ ଆରାଧ ଦେବତା ପୁରୁଷୋତ୍ତମ ଶ୍ରୀ ଜଗନ୍ନାଥଙ୍କର ମହିମା ପ୍ରକଟିତ । ଏହି ଗ୍ରନ୍ଥରେ ୩୧ ଗୋଟି ତତ୍ତ୍ୱପୂର୍ଣ୍ଣ ପ୍ରବନ୍ଧ ସ୍ଥାନିତ ହୋଇଛି । ଏଗୁଡ଼ିକ ହେଲା- ପୁରୁଷୋତ୍ତମ ଜଗନ୍ନାଥ ଉପାସନାର ଉନ୍ମେଷ ଓ ବିକାଶ, ବେଦ ଓ ପୁରାଣରେ ପୁରୁଷୋତ୍ତମ ଜଗନ୍ନାଥ, ବୈଦିକ

ଦେବତା ଶ୍ରୀଜଗନ୍ନାଥ, ପୁରାଣରେ ପୁରୁଷୋତ୍ତମ ଜଗନ୍ନାଥ, ଶାବର ସଂସ୍କୃତିରେ ଶ୍ରୀଜଗନ୍ନାଥ, ଶ୍ରୀଜଗନ୍ନାଥ ନାମର ଐତିହ୍ୟ, ଶ୍ରୀପୁରୁଷୋତ୍ତମଙ୍କ ଲୀଳା ମାଧୁର୍ଯ୍ୟ, ଜଗନ୍ନାଥ ଉପାସନାର ପ୍ରାଚୀନତା, ପୂର୍ଣ୍ଣବ୍ରହ୍ମ ପୁରୁଷୋତ୍ତମ, ତ୍ରିରଥ ବର୍ଣ୍ଣନା, ରଥାବରଣ ରହସ୍ୟ, ଲକ୍ଷ୍ମୀ-ନାରାୟଣ ଉପାସନା, ଜଗନ୍ନାଥଙ୍କ ରଘୁନାଥ ବେଶ, ରାଧାଦାମୋଦର ବେଶ, ଶ୍ରୀଜଗନ୍ନାଥଙ୍କର ଚନ୍ଦନଯାତ୍ରା, ମହାପ୍ରସାଦ ମହାତ୍ମ୍ୟ, ଭାରତୀୟ ଦର୍ଶନରେ ପୁରୁଷୋତ୍ତମ ଜଗନ୍ନାଥ ପ୍ରଭୃତି । ଏହିସବୁ ପ୍ରବନ୍ଧ ଗୁଡ଼ିକରେ ପ୍ରାବନ୍ଧିକ ମୁଖ୍ୟତଃ ଉତ୍କଳର ଆରାଧ ଦେବତା ଶ୍ରୀଜଗନ୍ନାଥଙ୍କର ବିଶ୍ୱବ୍ୟାପକତା, ଜଗନ୍ନାଥଙ୍କର ପୂର୍ଣ୍ଣ ବ୍ରହ୍ମତ୍ୱ, ଦାରୁବ୍ରହ୍ମରୂପର ସ୍ୱରୂପ, ବେଦ-ବେଦାନ୍ତ, ପୁରାଣ ସାହିତ୍ୟରେ ଜଗନ୍ନାଥଙ୍କ ମହାତ୍ମ୍ୟ, ପୁରୁଷୋତ୍ତମ କ୍ଷେତ୍ରର ମହିମା, ବିଶ୍ୱପ୍ରସିଦ୍ଧ ଘୋଷଯାତ୍ରାର ମହିମା, ଜଗନ୍ନାଥଙ୍କର ମହାପ୍ରସାଦର ମହାତ୍ମ୍ୟ ଆଦିର ମନୋଜ୍ଞ, ତତ୍ତ୍ୱପୂର୍ଣ୍ଣ, ଜ୍ଞାନଗର୍ଭକ ବର୍ଣ୍ଣନା କରିଛନ୍ତି ।

**ଓଡ଼ିଆ ଭାଷା, ଜାତି ଓ ଜାତୀୟତା (୨୦୧୨):** ଏହା ଏକ ମୌଳିକ ପ୍ରବନ୍ଧ ଗ୍ରନ୍ଥ । ଏଥିରେ ୨୪ ଗୋଟି ପ୍ରବନ୍ଧ ସ୍ଥାନିତ ହୋଇଛି । ଏହି ପ୍ରବନ୍ଧ ଗୁଡ଼ିକ ହେଲା- ଓଡ଼ିଶା ଭୂ-ଖଣ୍ଡର ଇତିବୃତ୍ତ, ଓଡ଼ିଆ ଜାତିର ପରିଚୟ, ଓଡ଼ିଶାର ଗୌରବୋଜ୍ଜ୍ୱଳ, ନୌ-ବାଣିଜ୍ୟ, ଓଡ଼ିଆ ଭାଷାର ଉନ୍ମେଷ, ଭାଷା ଓ ଜାତୀୟତା, ମାତୃଭାଷାର ମହତ୍ୱ, ମାତୃଭାଷା ଓ ଲୋକଶିକ୍ଷା, ଓଡ଼ିଆ ଭାଷାର ସାଂପ୍ରତିକ ସ୍ଥିତି, ଓଡ଼ିଆ ଭାଷାର ସମସ୍ୟା ଓ ସମାଧାନ, ଭାଷା ଜାତି ଓ ଜାତୀୟତା, ଓଡ଼ିଆ ଭାଷାର ଶାସ୍ତ୍ରୀୟତା, ଓଡ଼ିଆ ପତ୍ର-ପତ୍ରିକା, ଓଡ଼ିଆ ଜାତି - ଓଡ଼ିଆ ଭାଷା ଓ ଓଡ଼ିଶା ପ୍ରଦେଶ, ଓଡ଼ିଶା ପ୍ରଦେଶ ଗଠନର ଇତିହାସ, ଐତିହ୍ୟମୟୀ ଓଡ଼ିଶା, ଓଡ଼ିଆ ଭାଷା ବିଜ୍ଞାନ, ଓଡ଼ିଆ ଜାତୀୟତାର ଉନ୍ମେଷ ଓ ବିକାଶ, ଓଡ଼ିଶାର ପୋଥି ବିଭବ । ଏହିସବୁ ପ୍ରବନ୍ଧ ଗୁଡ଼ିକ ଭିତରେ ସ୍ରଷ୍ଟାପ୍ରାଣର ନିଛକ ଓଡ଼ିଆତ୍ୱ , ଓଡିଆର ଆତ୍ମ ସ୍ୱାଭିମାନ, ଓଡ଼ିଶା ଭୂ-ଖଣ୍ଡ, ଓଡ଼ିଆ ଭାଷା-ସାହିତ୍ୟ ପ୍ରେମ ଫୁଟିଉଠିଛି । ଓଡ଼ିଶା ଭୂ-ଖଣ୍ଡର ଭୌଗୋଳିକ ଉତ୍ସ ନିରୂପଣସହିତ ଓଡ଼ିଆ ଭାଷାର ଉନ୍ମେଷ, ବିକାଶ ଓ ତା'ର ପ୍ରାଚୀନ ଐତିହ୍ୟ, ସାଂସ୍କୃତିକ ମୂଲ୍ୟବୋଧ, ଐତିହାସିକ ଉପାଦାନ, ଅତୀତର ବାଣିଜ୍ୟ-ବିଭବ ଓ ଗୌରବମୟ ଗାଥା-ଏହି ପ୍ରବନ୍ଧ ଗୁଡ଼ିକ ଭିତରେ ପ୍ରକଟିତ ହୋଇଛି । ଗୋଟିଏ ଭୂ-ଖଣ୍ଡର ଭାଷା, ସଂସ୍କୃତି ଏବଂ ଉଚ୍ଚାଙ୍ଗ, ମହନୀୟ ଜୀବନଧାରାକୁ ନେଇ ଯେ, ଗୋଟିଏ ଜାତିର ଜାତୀୟତାର ଉନ୍ମେଷ ଘଟେ, ତାହା ପ୍ରାବନ୍ଧିକ ଏହି ଗ୍ରନ୍ଥରେ ସୂଚିତ କରିଛନ୍ତି । ବାସ୍ତବରେ ଶ୍ରୀଯୁକ୍ତ ମିଶ୍ର ଢେଙ୍କାନାଳ ମାଟିର ଜଣେ ସାର୍ଥକ ସ୍ରଷ୍ଟା, ମହନୀୟ ପ୍ରତିଭା ଓ ପାଣ୍ଡିତ୍ୟର ଅଧିକାରୀ ।

## ଶ୍ରୀ ଶଙ୍କର୍ଷଣ ଜେନା (୧୯୫୫- ):

ଶଙ୍କର୍ଷଣ ଜେନାଙ୍କର ଜନ୍ମ ୧୯୫୫ ମସିହା ଏପ୍ରିଲ୍ ମାସ ୯ ତାରିଖରେ ଢେଙ୍କାନାଳ ଜିଲ୍ଲାର ନୂଆପଡ଼ା ଗ୍ରାମରେ। ତାଙ୍କର ପିତା- ସର୍ଗତ ନାରାୟଣ ଜେନା ଓ ମାତା- ସର୍ଗୀୟା ପାନଦେବୀ। ଶ୍ରୀଯୁକ୍ତ ଜେନା ଉତ୍କଳ ବିଶ୍ୱବିଦ୍ୟାଳୟରୁ 'ଇତହାସ' ରେ ଏମ୍.ଏ. ପାଶ୍ ପରେ ଅଧ୍ୟାପନା କାର୍ଯ୍ୟରେ ଯୋଗଦେଇଥିଲେ। ଜଣେ ଜ୍ଞାନୀ, ଗୁଣୀ ଓ ଛାତ୍ରବତ୍ସଳ ଅଧ୍ୟାପକ ରୂପେ ସେ ଉଚ୍ଚ ପ୍ରଶଂସିତ। କେବଳ ଇତିହାସ ନୁହେଁ, ରାଜନୀତି ବିଜ୍ଞାନ ଏବଂ ଓଡ଼ିଆ ଭାଷା-ସାହିତ୍ୟରେ ମଧ୍ୟ ସେ ସ୍ନାତକୋତ୍ତର ଡିଗ୍ରୀ ଲାଭକରିଛନ୍ତି। ଅଧ୍ୟାପନା ସହିତ ସାରସ୍ୱତ ସୃଷ୍ଟି କର୍ମରେ ମନୋନିବେଶକରି ସେ ଅନେକ ଗୁଡ଼ିଏ ନାଟକ, ଗଳ୍ପ, କବିତା, ପ୍ରବନ୍ଧ ଓ ସମାଲୋଚନା ଗ୍ରନ୍ଥ ମାନ ରଚନା କରିଛନ୍ତି। ସାହିତ୍ୟ କ୍ଷେତ୍ରରେ ତାଙ୍କର ସାଧନା ଓ ସିଦ୍ଧିପାଇଁ ସେ ବ୍ୟାସକବି ସମ୍ମାନ, ମହିମା-ଗୌରବ, ମହିମା ସାହିତ୍ୟ ସମ୍ମାନ ଓ କପିଳାସ ସମ୍ମାନରେ ବିଭୂଷିତ ହୋଇପାରିଛନ୍ତି।

**ସାରସ୍ୱତ କୃତି:** ଶ୍ରୀଯୁକ୍ତ ଜେନା ଜଣେ ବହୁମୁଖୀ ସାରସ୍ୱତ ପ୍ରତିଭାର ଅଧିକାରୀ। ନାଟକ, ଏକାଙ୍କିକା, ଗଳ୍ପ, ପ୍ରବନ୍ଧ, ସମାଲୋଚନା, ଜୀବନୀ, କବିତା ଆଦି ରଚନା ସହିତ ସଂପାଦନା କ୍ଷେତ୍ରରେ ମଧ୍ୟ ନିଜର ଦକ୍ଷତା ପ୍ରତିପାଦନ କରିଛନ୍ତି। ତାଙ୍କ ରଚିତ ଓ ପ୍ରକାଶିତ ନାଟକ-ଏକାଙ୍କିକା ଗୁଡ଼ିକ ହେଲା- ଗାଡ଼ଭାଲୁ, ଜାନୁଭଗ୍ନ, ବିଜୟିନୀ କାରୁବାକୀ, ଗୋଟିଏ କୁସୁମ ଅନେକ ଭ୍ରମର, ମଣିଷକୁ ଚିହ୍ନିବା ଚାଲ, ମଣିଷ ଖୋଜା ଚାଲିଛି, ରାବଣର ନିଶ ନାହିଁ, ରାବଣ ଗିରଫ, ଏ ଯୁଗର ଗୋପବନ୍ଧୁ ପ୍ରଭୃତି। ଏହା ସହିତ ନାଟ୍ୟକାରଙ୍କ ଅନେକ ଅପ୍ରକାଶିତ ନାଟକ ମଧ୍ୟ ରହିଛି।

ଶ୍ରୀଯୁକ୍ତ ଜେନାଙ୍କର କବିତା ସଂକଳନ ହେଲା- 'ଈଶ୍ୱରଙ୍କ ଠିକଣା'। ଏହା ସହିତ ସେ 'କବି ଶ୍ରୀ ଯୁଧିଷ୍ଠିର ଗ୍ରନ୍ଥାବଳୀ' ର ମଧ୍ୟ ମନୋଜ୍ଞ ସଂପାଦନା କରିଛନ୍ତି। ସ୍ରଷ୍ଟାଙ୍କର ଏକ କାଳଜୟୀ ଗଳ୍ପ ଗ୍ରନ୍ଥ ହେଲା- ଗାଁ ମାଟିର କିଛି କଥା-କିଛି ବ୍ୟଥା। ଏକମାତ୍ର ଜୀବନୀ ଗ୍ରନ୍ଥ ହେଲା- 'ବିପ୍ଲବୀ କୁଳମଣି'। ତାଙ୍କ ଗବେଷଣାଧର୍ମୀ ପ୍ରବନ୍ଧ ଓ ସମାଲୋଚନା ଗ୍ରନ୍ଥ ଗୁଡ଼ିକ ହେଲା- ମହିମାଧର୍ମ ଏକ ପରିକ୍ରମା, ମହିମାଧର୍ମ ଓ ଶ୍ରୀମଦ୍ ଜଟିଆ ବାବା, ସନ୍ଥ କବି ଭୀମଭୋଇ, ମହିମା ଧର୍ମର ଗୃହସ୍ଥ ନୀତି ଏବଂ 'STUDIES ON MAHIMA DHARMA' ପ୍ରଭୃତି।

**ନାଟ୍ୟକୃତି:**

**ଗାଡ଼ଭାଲୁ (୧୯୮୨):** ଏହା ଏକ ସଫଳ ସାମାଜିକ ନାଟକ। ଆଧୁନିକ ବସ୍ତୁବାଦୀ ମଣିଷର ସାର୍ଥପରତା, ହିଂସ୍ରତା, ଛଳନା, ପ୍ରବଞ୍ଚନା ଓ ଶୋଷଣ -କଷଣର ଚିତ୍ର ଏହ

ନାଟକଟିରେ ପ୍ରକଟିତ । ସମାଜର ତଥାକଥିତ ଭଦ୍ରମୁଖାଧରୀ ପ୍ରବଞ୍ଚକ ମାନଙ୍କୁ ନାଟ୍ୟକାର 'ଗାଡ଼ଭାଲୁ' ରୂପରେ ଚିତ୍ରିତ କରିଛନ୍ତି । ସମାଜର ଏହି ଶଠ, ପ୍ରବଞ୍ଚକ, ପ୍ରତାରକ ଗାଡ଼ଭାଲୁମାନଙ୍କୁ ଭଲଭାବେ ଚିହ୍ନିବାପାଇଁ ନାଟ୍ୟକାର ଜନସାଧାରଣଙ୍କୁ ଆହ୍ୱାନ କରିଛନ୍ତି । ସାମାଜିକ ଶୋଷଣ, କଷଣ ର କର୍ଣ୍ଣଧାର ଏହି ଗାଡ଼ଭାଲୁ ମାନଙ୍କର ବିନାଶରେ ହିଁ, ସାମ୍ୟବାଦୀ ସମାଜ ଓ ନୂତନ ସମାଜ ବ୍ୟବସ୍ଥାର ପ୍ରତିଷ୍ଠା ସମ୍ଭବ ହେବବୋଲି ନାଟ୍ୟକାର ଚେତେଇ ଦେଇଛନ୍ତି ।

**ଜାନୁଭଗ୍ନ :** ଏହାଏକ ପୌରାଣିକ ନାଟକ । ପୁରାଣର କଥାବସ୍ତୁ ଓ ଚରିତ୍ରକୁ ନେଇ ନାଟ୍ୟକାର ଆଧୁନିକ ଜୀବନ ଓ ଚରିତ୍ର ମାନଙ୍କ ସହ ସଂଯୋଜିତ କରି ଏହି ମିଥ୍ ଧର୍ମୀ ନାଟକଟି ରଚନା କରିଛନ୍ତି । ଅସତ୍ୟ, ଅଧର୍ମ, ଅନ୍ୟାୟ ଓ ପାପ ଉପରେ ସତ୍ୟ, ଧର୍ମ, ନ୍ୟାୟ ଓ ପୂଣ୍ୟର ବିଜୟ ଚିତ୍ରିତ ହୋଇଛି । ଯୁଗେ ଯୁଗେ ଦୁର୍ଯୋଧନପରି ପାପୀ, ଅନ୍ୟାୟୀ, ଅତ୍ୟାଚାରୀ, ପରନ୍ତପ ନରାଧମ ମାନଙ୍କର ହିଁ ବିନାଶ ହୋଇଛି । ଏହି ବାର୍ତ୍ତା ନାଟ୍ୟକାର ଏହି ନାଟକରେ ପ୍ରକାଶିତ କରିଛନ୍ତି ।

**ବିଜୟିନୀ କାରୁବାକୀ (୨୦୦୩):** ଏହା ଏକ ଐତିହାସିକ କଥାବସ୍ତୁ ସମ୍ବଳିତ ଏକାଙ୍କିକା । ମଗଧ ସମ୍ରାଟ ଚଣ୍ଡାଶୋକ କଳିଙ୍ଗ କନ୍ୟା କାରୁବାକୀଙ୍କ ଅପୂର୍ବ ସୌନ୍ଦର୍ଯ୍ୟରେ ମୁଗ୍ଧହୋଇ ତାଙ୍କୁ ଲାଭ କରିବାପାଇଁ ଯେଉଁ ଲୋମହର୍ଷକ, ହୃଦୟବିଦାରକ କଳିଙ୍ଗ ଯୁଦ୍ଧର ଆୟୋଜନ କରିଥିଲେ, ତା'ର ନାଟ୍ୟରୂପ ଏହି ଛୋଟ ନାଟକଟିରେ ପ୍ରକାଶିତ । କଳିଙ୍ଗ ଯୁଦ୍ଧର ମୂଳ ଲକ୍ଷ୍ୟଯେ 'କାରୁବାକୀ' ଏହା ନାଟ୍ୟକାର ସୂଚିତ କରିଛନ୍ତି । ନାଟ୍ୟକାର ଏହି ନାଟକରେ କଳିଙ୍ଗ ବୀର ମାନଙ୍କର ଅପୂର୍ବ ସାହସ, ବୀରତ୍ୱ ଓ ଆତ୍ମତ୍ୟାଗର ମହିମା ଗାନ କରିଛନ୍ତି । ଏପରିକି ରାଣୀ କାରୁବାକୀଙ୍କର ଅପୂର୍ବ ସାହସ, ବୀରତ୍ୱ ଓ ରଣକୁଶଳତାର ଚିତ୍ର ନାଟ୍ୟକାର ଦେଇଛନ୍ତି । ଯୁଦ୍ଧରେ କଳିଙ୍ଗ ସମ୍ରାଟଙ୍କର ମୃତ୍ୟୁ ସହିତ ଅସଂଖ୍ୟ କଳିଙ୍ଗ ବୀର ଓ ରାଣୀ କାରୁବାକୀ ବନ୍ଦୀ ହୋଇଛନ୍ତି । କାରୁବାକୀ ବନ୍ଦୀମାନଙ୍କୁ ମୃତ୍ୟୁ ମୁଖରୁ ରକ୍ଷାକରିବାପାଇଁ ଏବଂ ଆଉ ଯୁଦ୍ଧ ବିଭୀଷିକା ସୃଷ୍ଟି ନହେବା ପାଇଁ ନରପିଶାଚ ଚଣ୍ଡାଶୋକର ବିବାହ ପ୍ରସ୍ତାବରେ କେତେକ ସର୍ତ୍ତ ରଖି ରାଜି ହୋଇଛନ୍ତି । କାରୁବାକୀଙ୍କ ସର୍ତ୍ତ ଅନୁସାରେ ନରପିଶାଚ ଚଣ୍ଡାଶୋକ ଅସ୍ତ୍ର ଓ ହିଂସାର ପଥ ତ୍ୟାଗକରି ବୌଦ୍ଧଧର୍ମ ଗ୍ରହଣକରି ସତ୍ୟ ଓ ଅହିଂସାର ପଥରେ ଯାଇ 'ଧର୍ମାଶୋକ'ରେ ରୂପାନ୍ତରିତ ହୋଇଛନ୍ତି । ଏ ଦେଶ, ଏ ମାଟି, ଏ ଜାତି ପାଇଁ ରାଣୀ କାରୁବାକୀଙ୍କର ତ୍ୟାଗ ବାସ୍ତବରେ ଅନନ୍ୟ ।

**ଗୋଟିଏ କୁସୁମ ଅନେକ ଭ୍ରମର (୨୦୦୩):** ଏହା ଐତିହାସିକ ପୃଷ୍ଠଭୂମି ଉପରେ ରଚିତ ଏକ ସାର୍ଥକ ସୃଷ୍ଟି । ଏକ ତ୍ରୈ-ଭୂଜିକ ପ୍ରେମକାହାଣୀ ହିଁ ଏ ନାଟକର ପ୍ରାଣବିନ୍ଦୁ । ମିବାରର ରାଜା ଭୀମସିଂହଙ୍କର କନ୍ୟାଥିଲେ- ରାଜଜେମା କୃଷ୍ଣାକୁମାରୀ । କୃଷ୍ଣାକୁମାରୀଙ୍କ ବିବାହ ସ୍ଥିର ହୋଇଥିଲା ମାର୍ବାର ର ରାଣାଙ୍କ ସହ । ମାତ୍ର- ମାର୍ବାର ରାଜାଙ୍କ ଅକସ୍ମାତ୍ ମୃତ୍ୟୁ ଯୋଗୁଁ ରାଜା ଭୀମସିଂହ ଜୟପୁରର ରାଜା ଜଗତ୍ ସିଂହଙ୍କ ସହିତ ନିଜ କନ୍ୟାର ବିବାହ ପାଇଁ ସ୍ଥିର କଲେ । ମାତ୍ର- ଏହିସମୟରେ ମାର୍ବାର ର ନୂତନ ରାଣା ମାନସିଂ କୃଷ୍ଣକୁମାରୀଙ୍କ ସହ ବିବାହ ପାଇଁ ପ୍ରସ୍ତାବ ପଠାଇଥିଲେ । ଏପଟେ ସିନ୍ଧିଆର ମରହଟ୍ଟା ରାଜାମଧ କୃଷ୍ଣକୁମାରୀଙ୍କ ସହ ବିବାହ ପାଇଁ ପତ୍ର ପଠାଇଲେ । ପିଣ୍ଡାରୀ ଦସ୍ୟୁ ଅମୀର ଖାଁ ମଧ ରାଜକୁମାରୀଙ୍କୁ ପାଇବାପାଇଁ ଲାଳାୟିତ ଥିଲା । କୃଷ୍ଣାକୁମାରୀଙ୍କୁ ଲାଭ କରିବାପାଇଁ ମିବାର ଚତୁଃପାର୍ଶ୍ୱରେ ଶତ୍ରୁମାନଙ୍କର ରଣ ହୁଙ୍କାର । ଏଭଳି ଏକ ଘଡ଼ିସନ୍ଧି ମୁହୂର୍ତ୍ତରେ ମିବାର ବାସୀଙ୍କୁ ଶତ୍ରୁ ଏବଂ ଯୁଦ୍ଧ କବଳରୁ ରକ୍ଷା କରିବାପାଇଁ ରାଜକୁମାରୀ ବିଷପାନକରି ଆତ୍ମ ବିସର୍ଜନ କଲେ । କୃଷ୍ଣାକୁମାରୀଙ୍କର ଏ ଆତ୍ମତ୍ୟାଗ କୁ ନାଟ୍ୟକାର ଜୀବନ୍ତଭାବରେ ଚିତ୍ରିତ କରିଛନ୍ତି ।

**ମଣିଷକୁ ଚିହ୍ନିବା ଚାଲ (୨୦୦୨):** ଏହା ଏକ ସାମାଜିକ ସମସ୍ୟା ମୂଳକ ଏକାଙ୍କିକା । ସମାଜର ତଥାକଥିତ ବଡ଼ପଣ୍ଡା ଓ ସମାଜପତି ମାନଙ୍କର ଉଚ୍ଚ-ନୀଚଭେଦ, ଜାତିଆଣ ମନୋଭାବ, ଧର୍ମ ଓ ନୀତି-ନୀୟମ ନାଁରେ ସରଳ ମଣିଷ ମାନଙ୍କ ଉପରେ ସେମାନଙ୍କର ଶୋଷଣ, କଷଣ ଓ ଅତ୍ୟାଚାରର ଚିତ୍ର ଏଥିରେ ପ୍ରକଟିତ । ସାମାଜିକ ସମାନତାର ପ୍ରତିଷ୍ଠା ଓ ଜାତିଆଣ ଭେଦଭାବର ବିନାଶ ପାଇଁ ନାଟ୍ୟକାର ଉଚ୍ଚବର୍ଗର ବ୍ରାହ୍ମଣ କନ୍ୟା 'ସବିତା' ସହିତ ନୀଚ ଜାତିର ପାଣ ଯୁବକ 'ଅମର' ର ବିବାହ ସ୍ୱୀକୃତି ଦେଇ ଏକ ନୂତନ ପରଂପରା ସୃଷ୍ଟି କରିଛନ୍ତି ।

**ମଣିଷ ଖୋଜାଚାଲିଛି (୨୦୦୨):** ଏହା ଏକ ସମାଜ ସଚେତନଧର୍ମୀ ନାଟକ । ଏଥିରେ ସାଂପ୍ରତିକ ରାଜନୀତିର କଳଙ୍କିତବଲ୍‌ଗା ଓ ରାଜନୈତିକ ଭ୍ରଷ୍ଟାଚାର, ଛଳନା, ପ୍ରବଞ୍ଚନା ଓ ଶଠତାର ଚିତ୍ର ପ୍ରକଟିତ । ମନ୍ତ୍ରୀ ସାଧୁଚରଣଙ୍କ ପରି ଦୁର୍ନୀତିଗ୍ରସ୍ତ, ଭ୍ରଷ୍ଟ ରାଜନେତା ମାନଙ୍କର ମୁଖା ଖୋଲିବାର ପ୍ରୟାସ ନାଟ୍ୟକାର କରିଛନ୍ତି । ଏହି.ଭ୍ରଷ୍ଟ ରାଜନେତାମାନେ ବିଭିନ୍ନ ବିଭାଗରୁ ଅନୈତିକ ଉପାୟରେ ଲାଞ୍ଚ ନେଇ କିପରି ନାନାଦ କୁକର୍ମ କରନ୍ତି, ଅର୍ଥ, ସମ୍ପଦ, ପତିପତ୍ତିର ମୋହରେ ଉଦ୍‌ଭ୍ରାନ୍ତ, ପଥଭ୍ରଷ୍ଟ ହୁଅନ୍ତି, ନୀତି-ନୈତିକତା, ବିବେକ ଓ ମାନବିକତା ହରାଇ ପଶୁ ପାଲଟି ଯାଆନ୍ତି, ତାଁ'ର ଚିତ୍ର

ନାଟ୍ୟକାର ଦେଇଛନ୍ତି । ଯେଉଁଥିପାଇଁ ନାଟ୍ୟକାର ମଣିଷ ଖୋଜିଛନ୍ତି । ମାନବିକତାର ପ୍ରତିଷ୍ଠାକରି ଏକ ନୂତନ ସମାଜ ଗଠନର ସ୍ୱପ୍ନ ଦେଖିଛନ୍ତି ।

**ରାବଣର ନିଶ ନାହିଁ (୨୦୦୩):** ଏହା ଏକ ଯୌତୁକ ସମସ୍ୟା ମୂଳକ ସାମାଜିକ ନାଟକ । 'ରାବଣ' ମିଥିକ୍ ଚରିତ୍ର ମାଧ୍ୟମରେ ନାଟ୍ୟକାର ଆଧୁନିକ ମଣିଷର ନଗ୍ନ ସ୍ୱରୂପକୁ ଉନ୍ମୋଚନ କରିଛନ୍ତି । ସମାଜର ମୁନାଫାଖୋର, ସୁଧଖୋର ମହାଜନ, ପୁଞ୍ଜିପତି ମାନଙ୍କୁ ନାଟ୍ୟକାର ରାବଣରୂପେ ଚିତ୍ରିତ କରି ସେମାନଙ୍କର ଅର୍ଥ-ସମ୍ପଦ ଲାଳସା ବିରୁଦ୍ଧରେ ସ୍ୱର ଉତ୍ତଳନ କରିଛନ୍ତି । ନାଟ୍ୟକାର ସିଦ୍ଧାନ୍ତ ଚରିତ୍ର ମାଧ୍ୟମରେ ଏହି ରାବଣ ମାନଙ୍କର ଅର୍ଥତୃଷ୍ଣା ଓ ଯୌତୁକରୂପୀ ବ୍ୟାଧି ବିରୁଦ୍ଧରେ ବିଦ୍ରୋହ ଘୋଷଣା କରିଛନ୍ତି । ଏ ନାଟକରେ ଅମରେନ୍ଦ୍ର, ସମରେନ୍ଦ୍ର, ଲାଲା ଭଳି ଅର୍ଥ ଓ ନାରୀମାଂସ ଲୋଭୀ ନରପିଶାଚ ମାନଙ୍କୁ ନାଟ୍ୟକାର ସେମାନଙ୍କ ପାପର ପ୍ରାୟଶ୍ଚିତ କରିବାକୁ ସୁଯୋଗ ଦେଇଛନ୍ତି । ଯୌତୁକ ଲୋଭୀ ଅର୍ଥପିପାସୁ ଅମରେନ୍ଦ୍ରଙ୍କୁ ନାଟ୍ୟକାର ପଙ୍ଗୁରୂପେ, ନାରୀମାଂସଲୋଭୀ ଲାଲାକୁ ଅନ୍ଧରୂପେ ସୂଚିତ କରି ଅଧର୍ମ, ଅସତ୍ୟର ପରାଜୟ ଚିତ୍ରିତ କରିଛନ୍ତି । ମାନବିକତାର ମୂଲ୍ୟବୋଧ ଓ ନୈତିକତାର ଅବକ୍ଷୟ ଦିଗକୁ ସୂଚିତ କରିବା ସହିତ ନାଟ୍ୟକାର ଏଥିରେ ସତ୍ୟ, ନ୍ୟାୟ ଓ ଆଦର୍ଶର ପ୍ରତିଷ୍ଠା ପ୍ରୟାସ କରିଛନ୍ତି ।

**ରାବଣ ଗିରଫ (୨୦୦୪):** ଏହା ମଧ୍ୟ ଏକ ସମାଜ ସଂସ୍କାରଧର୍ମୀ ନାଟକ । ଏଥିରେ ଅସାମାଜିକ ତତ୍ତ୍ୱ ମାନଙ୍କ ବିରୁଦ୍ଧରେ ନାଟ୍ୟକାର ସ୍ୱର ଉତ୍ତଳନ କରିଛନ୍ତି । 'ବାଦଲ' ପରି ଗୁଣ୍ଡା, ଅସମାଜିକ ଚରିତ୍ରମାନେ ଯୋର-ଜୁଲମ କରି ଚାନ୍ଦା ଆଦାୟ କରନ୍ତି । ଆଧୁନିକତା ନାମରେ ନାନାଦି ସ୍ୱେଚ୍ଛାଚାର ଓ ଅପସଂସ୍କୃତିର ପ୍ରୋତ୍ସାହନ କରନ୍ତି । ଗାଁ ମୁଖିଆ ଦୁର୍ଯ୍ୟୋଧନଙ୍କର ରାମପୋଡ଼ି ଉତ୍ସବର ଆୟୋଜନକୁ ନାଟ୍ୟକାର ଅପସଂସ୍କୃତି ଓ ଯଥେଚ୍ଛାଚାରରୂପେ ଚିତ୍ରିତ କରି ତା' ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଛନ୍ତି । ଏହାସହିତ ନାଟ୍ୟକାର ଏ ନାଟକରେ ଜାତିପ୍ରଥା ବିରୁଦ୍ଧରେ ମଧ୍ୟ ସ୍ୱର ଉତ୍ତୋଳନ କରିଛନ୍ତି । ଉଚ୍ଚଜାତିର ଦୁର୍ଯ୍ୟୋଧନ ମହାନ୍ତିଙ୍କ ପୁଅ ନିଶାକର ନୀଚ କଣ୍ଡରା ଜାତିର ଚକ୍ରଧର ମାଷ୍ଟ୍ରଙ୍କ ଝିଅ 'କଇଁ' କୁ ଭଲପାଇ ବିବାହ କରିବାକୁ ଚାହିଁଛି । ମାତ୍ର- ସମାଜର ନିଷ୍ଠୁର ଜାତିପ୍ରଥା ଏ ଦିଗରେ ଘୋର ପ୍ରତିବନ୍ଧକ ସୃଷ୍ଟିକରିଛି । ପ୍ରେମ ଓ ବିବାହ ରେ ଅସଫଳ ହୋଇ ଉଭୟେ ନିଶାକର ଏବଂ କଇଁ ଆତ୍ମହତ୍ୟା କରିଛନ୍ତି । ସମାଜର ଏହି ନିଷ୍ଠୁର ଜାତିପ୍ରଥା, ଜାତିଆଣ ମନୋଭାବ ଓ ଆଭିଜାତ୍ୟର ଭ୍ରାନ୍ତ ଅହମିକା ପାଖରେ ଦୁଇଟି ନିରୀହପ୍ରାଣ ବଳି ପଡ଼ିଛନ୍ତି । ମୋଟାମୋଟିଭାବରେ ନାଟ୍ୟକାର

ତାଙ୍କ ନାଟକ ଗୁଡ଼ିକରେ ସାମାଜିକ ଅନ୍ଧବିଶ୍ୱାସ, କୁସଂସ୍କାର, ଅପସଂସ୍କୃତି, ମାନବିକ ଓ ନୈତିକ ଅବକ୍ଷୟ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଛନ୍ତି । ଏହା ସହିତ ନାଟ୍ୟକାର ସତ୍, ନୀତି, ଆଦର୍ଶ ଓ ମାନବିକ ମୂଲ୍ୟବୋଧର ପ୍ରତିଷ୍ଠା ପାଇଁ ଉଦ୍ୟମ କରିଛନ୍ତି ।

**କବିତା କୃତି :**

**ଈଶ୍ୱରଙ୍କ ଠିକଣା (୨୦୦୮):** ଏହି କବିତା ସଙ୍କଳନଟିରେ ୬୨ ଗୋଟି ମନୋଜ୍ଞ କବିତା ସ୍ଥାନିତ ହୋଇଛି । ସେକୁଡ଼ିକ ହେଲା- ସତୀ, ଶାନ୍ତି, ଯାତ୍ରା, ଆହ୍ୱାନ, ହେ ସାରଥୀ, ସାଗରର ଆତ୍ମା, ରିକ୍ସାବାଲା, ରାଧାପାଇଁ କବିତାଟିଏ, ଅଭିଳାଷ, ସ୍ୱାଭିମାନ, ଲାଞ୍ଛ, ମାଟି, ବିଷ, ଜନ୍ମ, ଜୀବନ, ମୃତ୍ୟୁ, ମଣିଷ, ବାଘ, ସ୍ୱାଧୀନତା, ଶ୍ମଶାନ, ମୋପାଇଁ ବସନ୍ତ, ଈଶ୍ୱରଙ୍କ ଠିକଣା, ଈଶ୍ୱରଙ୍କ ଦର୍ଶନ ପ୍ରଭୃତି । ଏହିସବୁ କବିତା ଗୁଡ଼ିକରେ କବିପ୍ରାଣ ବେଶ୍ ଶାନ୍ତିକାମୀ, ସତ୍ୟଦ୍ରଷ୍ଟା ଓ ଆତ୍ମଅନ୍ୱେଷୀ । ପତମାନ ସଂସ୍କୃତି, ଅବକ୍ଷୟମୁଖୀ ଜୀବନଧାରାର ପୁନର୍ଗଠନ ଓ ମାନବୀୟ ମୂଲ୍ୟବୋଧର ପ୍ରତିଷ୍ଠା ପାଇଁ କବି ବେଶ୍ ତତ୍ପର । ବିଭିନ୍ନ ସାମାଜିକ ସମସ୍ୟା, ସଙ୍କଟ, ରାଜନୈତିକ ଭ୍ରଷ୍ଟାଚାର ଓ ମାନବୀୟ ସନ୍ତ୍ରାସ ଭିତରୁ କବି ମଣିଷର ମୁକ୍ତି ଚାହିଁଛନ୍ତି । ଆତ୍ମଅନ୍ୱେଷା ଓ ମୁକ୍ତିର ବିମୁକ୍ତ ଆନନ୍ଦରେ କବିପ୍ରାଣ ବିଭୋରିତ ହୋଇଉଠିଛି । ଅଧ୍ୟାତ୍ମଉତ୍ତରିତ କବିପ୍ରାଣ ଅନ୍ଧାରର ଦିଆଲ୍ ଭାଙ୍ଗି ଆଲୋକମୁଖୀ ଓ ଅମୃତ ଆଶାୟୀ ହୋଇଉଠିଛି । ଅନ୍ତର୍ମୁଖୀ କବିପ୍ରାଣ ମଣିଷ ଭିତରେ ହିଁ ଈଶ୍ୱରଙ୍କର ସନ୍ଧାନ କରିଛି । ମୋଟାମୋଟି ଭାବରେ ଏହି କବିତା ସଙ୍କଳନଟି ଏକ ଅଧ୍ୟାତ୍ମଉତ୍ତରିତ କଳାସୃଷ୍ଟି । ସ୍ରଷ୍ଟାହୃଦୟର ଭାବ, ଭାବନା, ଅନୁଭବ, ଅନୁଭୂତି, ତା'ର ଆତ୍ମଅନ୍ୱେଷା, ଆତ୍ମଜିଜ୍ଞାସା ଓ ଅତିନ୍ଦ୍ରୀୟ ଭାବଚେତନା ଏହି କବିତା ସଙ୍କଳନଟିକୁ ମହାର୍ଘ ମଣ୍ଡିତ କରିପାରିଛି ।

**କବି ଶ୍ରୀ ଯୁଧିଷ୍ଠିର ଗ୍ରନ୍ଥାବଳୀ (୨୦୧୨):** କବି ଶ୍ରୀ ଜେନାଙ୍କର ବଳିଷ୍ଠ ଭାବପୂର୍ଣ୍ଣ ସଂପାଦନା ରେ ଏହି ଗ୍ରନ୍ଥାବଳୀ ଟି ସଙ୍କଳିତ ହୋଇଛି । ପଣ୍ଡିତ କବି ସ୍ୱର୍ଗତ ଯୁଧିଷ୍ଠିର ମିଶ୍ରଙ୍କର ରଚନା ସମୂହର ଏହା ଏକ ମନୋଜ୍ଞ ଇସ୍ତାହାର ।

**ପ୍ରବନ୍ଧ - ସମାଲୋଚନା :**

**ବିପ୍ଳବୀ କୁଳମଣୀ (୨୦୧୧):** ଏହା ଏକ ଜୀବନୀ ଚରିତ ଗ୍ରନ୍ଥ । ଢେଙ୍କାନାଳ ଗଡ଼ଜାତ ପ୍ରଜା ଆନ୍ଦୋଳନର ଅନ୍ୟତମ ସାରଥୀ ବିପ୍ଳବୀ କୁଳମଣିଙ୍କର ସଂଗ୍ରାମଶୀଳ, ତ୍ୟାଗପୂତ ଜୀବନାଦର୍ଶ ଓ ଜୀବନ ଚରିତକୁ ନେଇ ଏହି ଗ୍ରନ୍ଥଟି ରଚିତ ।

କୁଳମଣିଙ୍କ ସଂଗ୍ରାମୀଜୀବନର ଚିତ୍ର ପ୍ରକଟନ ସହିତ ପ୍ରାବନ୍ଧିକ ପ୍ରସଙ୍ଗକ୍ରମେ ଢେଙ୍କାନାଳ ରାଜବଂଶର ଇତିହାସ, ଢେଙ୍କାନାଳ ଗଡ଼ଜାତ, ଗଡ଼ଜାତ ରାଜାମାନଙ୍କର ଅନ୍ଧାରୀ ଶାସନ, ଶୋଷଣ, କଷଣ ଓ ତା' ବିରୁଦ୍ଧରେ ପ୍ରଜାମେଳି ଓ ପ୍ରଜାଆନ୍ଦୋଳନର ବାସ୍ତବ ଚିତ୍ର ପ୍ରକଟନ କରିଛନ୍ତି ।

**ମହିମାଧର୍ମ ଏକ ପରିକ୍ରମା (୨୦୧୦):** ଏହି ଗ୍ରନ୍ଥଟିରେ ଲେଖକ ଭାରତୀୟ ନବଜାଗରଣ ପୃଷ୍ଠଭୂମିରେ ମହିମାଧର୍ମର ଉନ୍ମେଷ, ବିକାଶ, ତା'ର ଅନ୍ତଃସ୍ୱର, ଏହିଧର୍ମର ବିଶ୍ୱବ୍ୟାପକତା, ଏହି ଧର୍ମର ଉପାସ୍ୟ ଦେବତା, ଶୂନ୍ୟଉପାସନା ଆଦିର ତାତ୍ତ୍ୱିକ ବର୍ଣ୍ଣନା କରିଛନ୍ତି । ଏହା ସହିତ ଭୀମଭୋଇଙ୍କର ଜଗନ୍ନାଥ ମନ୍ଦିର ଆକ୍ରମଣ ପ୍ରସଙ୍ଗ ମଧ ଏଥିରେ ସ୍ଥାନିତ ହୋଇଛି । ମୋଟାମୋଟି ଭାବରେ ଏହି ଗ୍ରନ୍ଥଟିରେ ମହିମାଧର୍ମ ଦର୍ଶନ, ତା'ର ଆଧାତ୍ମିକ ମୂଲ୍ୟବୋଧ, ସାମାଜିକ ବିଚାରଧାରା ଓ ଧର୍ମୀୟ ସାହିତ୍ୟ ସଂପର୍କରେ ବିଶଦ-ବ୍ୟାପକ ଆଲୋଚନା କରାଯାଇଛି ।

**ସନ୍ଥକବି ଭୀମଭୋଇ (୨୦୧୧):** ଏହା ମହିମା ଧର୍ମ-ଦର୍ଶନ ଓ ଏହି ଧର୍ମର ଶ୍ରେଷ୍ଠଭକ୍ତ, ମହାନ୍ ପରିବ୍ରାଜକ ଭୀମଭୋଇଙ୍କ ଜୀବନୀ ଓ ସାରସ୍ୱତକୃତି ସଂପର୍କୀତ ଏକ ଗବେଷଣା ମୂଳକ ଗ୍ରନ୍ଥ । ସନ୍ଥକବି ଭୀମଭୋଇଙ୍କର ବାଲ୍ୟଜୀବନ, ଶିକ୍ଷା-ଦୀକ୍ଷା, ଧର୍ମ-ଧାରଣା ଓ ସାରସ୍ୱତ କୃତିର ମୂଲ୍ୟାଙ୍କନ ସହିତ ଏହି ଗ୍ରନ୍ଥରେ ମହିମାଧର୍ମ-ଦର୍ଶନର ତାତ୍ତ୍ୱିକ ବ୍ୟାଖ୍ୟା କରାଯାଇଛି ।

**STUDIES ON MAHIMA DHARMA (2012):** ଏହା ମହିମାଧର୍ମ-ଦର୍ଶନ ଓ ଏହି ଧର୍ମର ଦାର୍ଶନିକ ସିଦ୍ଧାନ୍ତ ସଂପର୍କୀତ ଏକ ଇଂରାଜୀ ରଚନା । ଏଥିରେ ମହିମାଧର୍ମର ସୃଷ୍ଟି, ବିକାଶକ୍ରମ ସହିତ ଏହି ଧର୍ମ-ଦର୍ଶନର ନିଗୂଢ଼ ଦାର୍ଶନିକ ତତ୍ତ୍ୱର ସରଳ ବ୍ୟାଖ୍ୟା କରାଯାଇଛି ।

**ମହିମାଧର୍ମର ଗୃହସ୍ଥନୀତି (୨୦୧୩):** ଏହା ଏକ ଧର୍ମୀୟ ଉପାସନା ଗ୍ରନ୍ଥ । ଏଥିରେ ମହିମାଧର୍ମର ସଂକ୍ଷିପ୍ତ ଇତିହାସ ସହ ମହିମାଧର୍ମର ମହତ୍ତ୍ୱ, ବିଧି-ବିଧାନ, ଉପାସନା ଓ ଏହି ଧର୍ମର ଗୃହସ୍ଥ ନୀତି ଗୁଡ଼ିକର ଅତି ସରଳ, ସାବଲୀଳ ଓ ଭାବଗର୍ଭକ ଆଲୋଚନା କରାଯାଇଛି ।

ଏହିସବୁ ରଚନା ଗୁଡ଼ିକ ସହିତ ଶ୍ରୀଯୁକ୍ତ ଜେନା ଆହୁରି ଅନେକ ଗବେଷଣାଧର୍ମୀ, ସମାଲୋଚନାମୂଳକ ପ୍ରବନ୍ଧମାନ ରଚନା କରିଚାଲିଛନ୍ତି ।

## ସରୋଜିନୀ ସାହୁ (୧୯୫୬- ):

ସରୋଜିନୀ ସାହୁ ଆଧୁନିକ ପ୍ରୟୋଗବାଦୀ କଥା ସାହିତ୍ୟର ଜଣେ ପ୍ରଚଣ୍ଡ ପ୍ରତିଭାଧାରିଣୀ ସ୍ରଷ୍ଟା । ସରୋଜିନୀଙ୍କ ଜନ୍ମ ୧୯୫୬ ମସିହାରେ ଢେଙ୍କାନାଳ ସହରର ମୀନାବଜାରଠାରେ । ଓଡ଼ିଆ ସାହିତ୍ୟର ପ୍ରଥିତଯଶା ସ୍ରଷ୍ଟା ଜଗଦୀଶ୍ ମହାନ୍ତିଙ୍କର ସେ ଧର୍ମପତ୍ନୀ । କାଚ-କାଞ୍ଚନର ଅପୂର୍ବ ସଂଯୋଗ ପରି ଜଗଦ୍ଦୀଶ-ସରୋଜିନୀଙ୍କର ମିଳନ ଓଡ଼ିଆ କଥାସାହିତ୍ୟର ଦିଗନ୍ତକୁ ସମୃଦ୍ଧ, ଋଦ୍ଧିମନ୍ତ ଓ ବର୍ଣ୍ଣୋଜ୍ଜ୍ୱଳମୟ କରିପାରିଛି । ସରୋଜିନୀ ନିଜର ସାରସ୍ୱତ ପ୍ରତିଭା ଯୋଗୁଁ ଅନେକ ପୁରସ୍କାର ଓ ସମ୍ମାନରେ ବିଭୂଷିତା ହୋଇଛନ୍ତି । ଏପରିକି 'ଅମୃତ ପ୍ରତୀକ୍ଷାରେ' ଗଳ୍ପ ସଙ୍କଳନପାଇଁ ସେ ୧୯୯୩ ମସିହାରେ ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର ଲାଭକରିଛନ୍ତି । ସରୋଜିନୀଙ୍କର ରଚିତ ଗଳ୍ପ ଗ୍ରନ୍ଥ ଗୁଡ଼ିକ ହେଲା-ସୁଖର ମୁହାଁମୁହିଁ (୧୯୮୧), ନିଜଗହୀରରେ ନିଜେ (୧୯୮୯), ଅମୃତ ପ୍ରତୀକ୍ଷାରେ(୧୯୯୩), ତରଳି ଯାଇଥିବା ଦୁର୍ଗ(୧୯୯୫), ଚୌକାଠ (୧୯୯୫), ଦୁଃଖ ଅପ୍ରମିତ(୨୦୦୫), ନିଜପରି ଅବିକଳ, ଦେଶାନ୍ତରୀ, ସ୍ୱପ୍ନ ଖେଳାଳୀମାନେ । ତାଙ୍କର କାଳଜୟୀ ଉପନ୍ୟାସ କୃତି ଗୁଡ଼ିକ ହେଲା- ଉପନିବେଶ, ପ୍ରତିବନ୍ଦୀ, ପକ୍ଷୀବାସ, ଗମ୍ଭିରୀଘର(୨୦୦୬), ବିଷାଦ ଈଶ୍ୱର (୨୦୦୭) । ସରୋଜିନୀଙ୍କର ଗଳ୍ପ-ଉପନ୍ୟାସ ଗୁଡ଼ିକରେ ମଣିଷର ମନଗହନର ଅନ୍ଧାରୀ, ଅବ୍ୟକ୍ତ ରୂପର ନିଛକ, ସତ୍ୟଶୀଳ ପରିପ୍ରକାଶ ଘଟିଛି । ମୁଖ୍ୟତଃ ନାରୀ ମନସ୍ତତ୍ତ୍ୱର ବାସ୍ତବ ଚିତ୍ର, ନାରୀମନର ସକଳ ଆବେଗ, ସ୍ୱପ୍ନ, କଳ୍ପନାପ୍ରବଣତା, ଆଶା-ଆକାଙ୍‌କ୍ଷାର ରୂପାୟନ ହୋଇଛି । ଏହା ସହିତ ନାରୀ ଜୀବନର ବ୍ୟର୍ଥତା, ଅସହାୟତା, ନାରୀତ୍ୱର ଅବକ୍ଷୟ ଓ ମାତୃତ୍ୱର ଆତ୍ମବିଳାପର ଚିତ୍ର ମଧ ପ୍ରକଟିତ । ତରଳିଯାଇଥିବାଦୁର୍ଗ, ଆଗ୍ନେୟଗିରି, ମୋହଭଙ୍ଗ, ଅପରାହ୍ଣ, ଉଡ଼ିବାର ବେଳ, ଚୌକାଠ, ପତଙ୍ଗ, ଦାମ୍ପତ୍ୟ ପ୍ରଭୃତି ଗଳ୍ପରେ ନାରୀର ଅବଦମିତ ମାତୃତ୍ୱ, ନାରୀତ୍ୱର ବିଫଳତା, ତା' ମନର ସୂକ୍ଷ୍ମ-କୋମଳ ଭାବାବେଗ ଓ ନାରୀର ଜୀବନ ଯନ୍ତ୍ରଣାର ମାର୍ମିକ ସ୍ୱର ପ୍ରକଟିତ । ସମାଜର ନିଷ୍ଠୁର ନୀତି-ନିୟମ, ରୁଢ଼ିବାଦୀ ପରଂପରା ଓ ବାଧା-ବନ୍ଧନ କିପରି ନାରୀ ମନରେ ଜଅଁଳି ଆସୁଥିବା ସ୍ୱପ୍ନ-ସମ୍ଭାବନା, ଆଶା-ଆକାଙ୍‌କ୍ଷାର ପରଗୁଡ଼ିକୁ କାଟିଦିଏ, ତା' ଜୀବନର ସମ୍ଭାବନା ଓ ସ୍ୱାଧୀନତାକୁ ସଙ୍କୁଚିତ କରିଦିଏ, ତା'ର ଚିତ୍ର ଗାଳ୍ପିକା ଦେଇଛନ୍ତି । ଗାଳ୍ପିକା 'ଆଗ୍ନେୟଗିରି' ଏବଂ 'ଚୌକାଠ' ରେ ଏହିସବୁ ସାମାଜିକ ପ୍ରତିବନ୍ଧକ ଓ ଶୃଙ୍ଖଳ ବିରୁଦ୍ଧରେ ପ୍ରତିବାଦର ସ୍ୱର ଉତ୍ତୋଳନ କରିଛନ୍ତି । ଆଜିର ନାରୀ ସ୍ୱାଧୀନ ଓ ମୁକ୍ତ ଭାବରେ

ଜୀବନ ଜୀଇଁବାକୁ ଚାହିଁଛି । ସାମାଜିକ କ୍ଷେତ୍ର ସହିତ ରାଜନୈତିକ, ଆର୍ଥନୀତିକ ସର୍ବୋପରି ଯୌନଗତ କ୍ଷେତ୍ରରେ ମଧ୍ୟ ନାରୀ ପୂର୍ଣ୍ଣ ସ୍ୱାଧୀନତା ଚାହିଁଛି । ସରୋଜିନୀଙ୍କର 'ଗମ୍ଭିରୀ ଘର' ଏବଂ 'ବିଷାଦ ଈଶ୍ୱରୀ' ଉପନ୍ୟାସ ଦୁଇଟିରେ ନାରୀ ମନସ୍ତତ୍ତ୍ୱର ବାସ୍ତବ ଚିତ୍ର ଫୁଟିଉଠିଛି । ନାରୀ ଜୀବନର ସମସ୍ତ ଗୋପନୀୟ ଆବେଗ, ନାରୀ ମନର ମୁକ୍ତ ଇଚ୍ଛା, କାମ-ବାସନା, ପ୍ରେମ ଓ ଭଲପାଇବା ବେଶ୍ ସହଜ, ସ୍ୱଚ୍ଛନ୍ଦ, ସ୍ୱାଭାବିକ ଭାବରେ ପ୍ରକଟିତ ହୋଇଛି । ନାରୀ ମନଗହନର ଅବ୍ୟକ୍ତ ରୂପ ଓ ଭାବନାର ଢାଙ୍କୁଣୀଖୋଲି ତାକୁ ଅନାବରଣକରି ତା'ର ସତ୍ୟଶୀଳ, ନଗ୍ନରୂପର ଉନ୍ମୋଚନ କରିଛନ୍ତି । ଏହି ଉପନ୍ୟାସ ଦୁଇଟି ନାରୀମୁକ୍ତି ଓ ନାରୀ ସ୍ୱାଧୀନତାର ସ୍ୱରରେ ବେଶ୍ ଉଗ୍ର ଓ ଶାଣିତ ହୋଇଉଠିଛି । ବିଶିଷ୍ଟ ମନସ୍ତତ୍ତ୍ୱବିତ୍ ସିଗ୍‌ମେଣ୍ଟ ଫ୍ରୟେଡ୍‌ଙ୍କର ସେଇ ଚିରନ୍ତନୀ ପ୍ରଶ୍ନ- 'What does a women desire' ର ବାସ୍ତବ ସତ୍ୟଶୀଳ ଉତ୍ତର ଏହି ଉପନ୍ୟାସ ଦୁଇଟିରେ ଫୁଟିଉଠିଛି । ଆଜିର ସମାଜରେ ନାରୀ-ପୁରୁଷ ସଂପର୍କରେ ପ୍ରେମ ଅପେକ୍ଷା 'ସେକ୍‌ସ' ର ଗୁରୁତ୍ୱ ଅଧିକ । ଗାଳ୍ପିକାଙ୍କ ଦୃଷ୍ଟିରେ ନାରୀ ପୁରୁଷ ହାତରେ ଏକ କ୍ରୀଡ଼ନକ ପରି । ପୁରୁଷହାତରେ ସେମାନେ ନାଚନ୍ତି, ବଞ୍ଚନ୍ତି ଏବଂ ମରନ୍ତି । ତେଣୁ ସରୋଜିନୀ ପୁରୁଷ କୈନ୍ଦ୍ରିକ ସମାଜ ବ୍ୟବସ୍ଥା ବିରୁଦ୍ଧରେ, ପୁରୁଷର ପଶୁପ୍ରବୃତ୍ତି ବିରୁଦ୍ଧରେ ସ୍ୱର ତୋଳିବା ସହିତ ନାରୀ ମନର ସକଳ ଇଚ୍ଛା, ଅଭୀପ୍‌ସା, ତା' ମନର ଜଟିଳ ସ୍ଥିତି ଓ ମାନସିକ ଦ୍ୱନ୍ଦ୍ୱ, ନାରୀ ମନଗହନର ଅବ୍ୟକ୍ତ ବେଦନା ଓ ଅସଲ ସ୍ୱରୂପ ଉନ୍ମୋଚନ କରିବାର ପ୍ରୟାସ କରିଚାଲିଛନ୍ତି ।

**ପ୍ରବାସିନୀ ମହାକୁଡ଼ (୧୯୫୭- ):**

ପ୍ରବାସିନୀ ମହାକୁଡ଼ଙ୍କର ଜନ୍ମ ୧୯୫୭ ମସିହା ନଭେମ୍ବର ମାସ ୨୪ ତାରିଖରେ ଢେଙ୍କାନାଳ ସହରର ଷ୍ଟେସନ୍ ବଜାରଠାରେ । ତାଙ୍କ ପିତାଙ୍କ ନାମ- ସଚ୍ଚିଦାନନ୍ଦ ମହାକୁଡ଼ । ପ୍ରବାସିନୀ ଓଡ଼ିଆ ଭାଷା ସାହିତ୍ୟରେ ଏମ୍.ଏ. ପାଶ୍ କରିଛନ୍ତି । ପ୍ରବାସିନୀ ମୁଖ୍ୟତଃ ଜଣେ କବୟିତ୍ରୀ । କବିତା ରଚନାରେ ସେ ବିଶେଷ ରୁଚି ରଖିଛନ୍ତି । କବିତା ରଚନା ସହିତ ଅନୁବାଦ କ୍ଷେତ୍ରରେ ମଧ୍ୟ ତାଙ୍କର ଦକ୍ଷତା ରହିଛି । ପ୍ରବାସିନୀ ନିଜର କବିତ୍ୱ ପ୍ରତିଭାଯୋଗୁଁ ଅନେକ ଛୋଟ-ବଡ଼ ସାଂସ୍କୃତିକ ଓ ସାରସ୍ୱତ ଅନୁଷ୍ଠାନ ମାନଙ୍କରୁ ପୁରସ୍କୃତ ହେବାସହିତ ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର ମଧ୍ୟ ଲାଭ କରିଛନ୍ତି । ତାଙ୍କ ରଚିତ କବିତା ସଂକଳନ ଗୁଡ଼ିକ ହେଲା- ମୁହୂର୍ତ୍ତ-ମୁହୂର୍ତ୍ତ (୧୯୯୧), ଆଧାରଶିଳା, ଧାଡ଼ିଏ ଶିମୁଳି ଫୁଲ ଓ ଅନ୍ୟାନ୍ୟ କବିତା, ଜିପ୍‌ସୀ ଝିଅ, ନଭେମ୍ବର ମୋ ଜନ୍ମମାସ, ପରମା, କେହିଜଣେ ସୁଭାଙ୍ଗୀ (୨୦୧୪) ।

ପ୍ରବାସିନୀ ପ୍ରଚଣ୍ଡ ଭାବରେ ଜଣେ ନାରୀବାଦୀ କବି । ତାଙ୍କ କବିତାରେ ବାମାବାଦୀ ଚିନ୍ତାଧାରା ସହିତ ପୁରୁଷ ସମାଜପ୍ରତି ପ୍ରଚଣ୍ଡ ବିଦ୍ୱେଷ ଓ ପୁରୁଷ ବିରୋଧି ବିଚାରଧାରା ଫୁଟିଉଠିଛି । ନାରୀପ୍ରତି ପୁରୁଷର ଅଶୋଭନୀୟ ଆଚରଣ, ପାଶବିକ ଅତ୍ୟାଚାର ଓ ପ୍ରତାରଣା ବିରୁଦ୍ଧରେ ସେ ସ୍ୱର ତୋଳିଛନ୍ତି । ପ୍ରବାସିନୀଙ୍କ କାବ୍ୟମନନ ବହୁଧା ବିଭକ୍ତ । ତାଙ୍କ କାବ୍ୟାନୁସଙ୍ଗ କଳ୍ପନା ଓ ବାସ୍ତବତାର ମିଶ୍ର ରାଗରେ ରାଗ ରଞ୍ଜିତ । ବାମାବାଦୀ ଚିନ୍ତାଧାରାର ଉଗ୍ରତା ତାଙ୍କ ଚେତନାକୁ କବଳିତ କରିଥିବାରୁ ତାଙ୍କ କବିତାରେ ପୁରୁଷ ବିଦ୍ୱେଷୀ ଚିନ୍ତାଧାରା ଅତିମାତ୍ରାରେ ପ୍ରକଟିତ । ନାରୀ ଜାଗରଣ, ନାରୀମୁକ୍ତି, ନରୀ ସ୍ୱାଧୀନତା, ନାରୀ ସ୍ୱାଭିମାନର ପ୍ରତିଷ୍ଠା ସହିତ ପୁରୁଷ କୈନ୍ଦ୍ରିକ ବିଚାରଧାରାର ସେ ଘୋର ବିରୋଧ ଓ ପ୍ରତିବାଦ କରିଛନ୍ତି । ନାରିପ୍ରତି ଥିବା ପୁରୁଷ ସମାଜର ଦୃଷ୍ଟିକୋଣ ଏବଂ ପୁରୁଷର ଅହଂକାରକୁ କବୟିତ୍ରୀ ତାଙ୍କ କବିତାରେ ଶାଣିତ ଭାବରେ ଆଘାତ କରିଛନ୍ତି । କବୟିତ୍ରୀ ତାଙ୍କ 'ଅହଂ' କବିତାରେ ଲେଖିଛନ୍ତି-

"ନାରୀ କୁ ନାରୀ ବୋଲି କହିବାର ସାହସ ରଖ
ତା' ଇଚ୍ଛାକୁ ସମ୍ମାନ ଦିଅ, ତା' ଦୁଃଖକୁ ବୁଝ

* * * *

ଜାଣେ ଏମିତି କେହି ପୁରୁଷ
ଏ କାମ କାରବାପାଇଁ ସାହସ କରିବନି
ଯଦି କରେ- ତେବେ ତା' ଅହଂର, ଛଳନାର କାନ୍ଥ ଫାଟିଯିବ । (୯)"

ନାରୀ ସ୍ୱାଧୀନତାର ପ୍ରତିଷ୍ଠା, ନାରୀ ଅଧିକାରର ସାବ୍ୟସ୍ତପାଇଁ କବୟିତ୍ରୀ ନିଜର ଉଦ୍ୟମ ଜାରି ରଖିଛନ୍ତି । ନାରୀର ଅସ୍ତିତ୍ୱ, ତା'ର ଅସ୍ମିତା ଖୋଜିବାରେ ସେ ଶତତ ଉଦ୍ୟମଶୀଳ । ଏକଦା ରୋମାଣ୍ଟିକ୍ ପ୍ରେମ-ପ୍ରଣୟରେ ତଲ୍ଲୀନ କବିପ୍ରାଣ ପରବର୍ତ୍ତୀ ସମୟରେ ନାରୀ-ପୁରୁଷର ସଂମ୍ପର୍କକୁ ବରଦାସ୍ତ କରିପାରି ନାହିଁ । ନାରୀ ପ୍ରତି ପୁରୁଷର ପାରଂପରିକ ଦୃଷ୍ଟିଭଙ୍ଗୀକୁ ସେ ବିରୋଧ କରିଛନ୍ତି । କବୟିତ୍ରୀଙ୍କ ବ୍ୟକ୍ତିଗତ ଜୀବନର ପ୍ରେମ, ବିଫଳତା, ଅସହାୟତା, ଏକାକୀତ୍ୱବୋଧ ଓ ଜୀବନଯନ୍ତ୍ରଣାର ସ୍ୱର ତାଙ୍କ କବିତାର ଦେହଳୀରେ ଗୁଞ୍ଜରିତ । କବି ଲେଖିଛନ୍ତି-

"ନାରୀଟିଏର ସ୍ୱପ୍ନ ଭାଙ୍ଗିଯାଏ
ଷୋହଳ ବର୍ଷର ଝିଅ ଟେ
ଛାତି ବିଦାରୀ କାନ୍ଦୁଥାଏ କେଉଁଠି
ହୁଏତ ବେଦୀଉପରେ, ନ ହେଲେ ପ୍ରସୂତି ଗୃହରେ ।"(୧୦)

କବି ନାରୀକୁ 'ମାଟିହାଣ୍ଡି' ରୂପେ ଦେଖିବାର ଯେଉଁ ସାମାଜିକ ଦୃଷ୍ଟିକୋଣ ତା'ର ବିରୋଧ କରିଛନ୍ତି । ନାରୀ ମାଟିହାଣ୍ଡି ପରି ଅସ୍ପୃଶ୍ୟ ବା କ୍ଷଣଭଙ୍ଗୁର ନୁହେଁ । ସେ ନାରୀକୁ 'ମାଟି' ପରି ମହାନ୍ ରୂପରେ ଦେଖାଇବାକୁ ଚାହିଁଛନ୍ତି । ତାଙ୍କ କାବ୍ୟଲୋକ ଅନେକ ସମୟରେ ପ୍ରଚଣ୍ଡ ବ୍ୟକ୍ତିକେନ୍ଦ୍ରିକ ହୋଇଉଠିଛି । ନିଜ ବ୍ୟକ୍ତିଗତ ଜୀବନର ବିଫଳତା, ଅସହାୟତା, ବ୍ୟଥା ଓ ବେଦନାର ସ୍ୱର ତାଙ୍କ କବିତାରେ ସ୍ପଷ୍ଟରୂପେ ପ୍ରତିଭାତ ହୋଇଛି । ତାଙ୍କର ସଦ୍ୟତମ କବିତା ସଂକଳନ 'କେହିଜଣେ ସୁଭାଙ୍ଗୀ' ରେ କବି ଲେଖିଛନ୍ତି-

"ଠିକ୍ ତୁମପରି,
ଯେହେତୁ ତୁମେ ପ୍ରବାସିନୀ
ଓ ପ୍ରବାସିନୀମାନେ
ଏମିତି ସବୁ ଜନ୍ମରେ କଷ୍ଟ ପାଆନ୍ତି
କିଛିଦିନ ବୋକାମୀରୁ
ଆଉକିଛି ନିୟତିର ଅଭିଶାପରୁ ।"(୧୧)

ଏହି କବିତାରେ କବୟିତ୍ରୀଙ୍କର ଆତ୍ମ ସ୍ୱୀକାରୋକ୍ତି ବେଶ୍ ନିର୍ଭୀକ, ସ୍ପର୍ଦ୍ଧିତ ଓ ସ୍ୱଚ୍ଛଶୀଳ ଭାବରେ ପ୍ରକଟିତ ହୋଇଛି । ବିଗତ ଦିନର ଅବଶୋଷହିଁ କବିପ୍ରାଣକୁ ଅସହାୟ ଓ ଯନ୍ତ୍ରଣାଜର୍ଜର କରିଛି । ମୋଟାମୋଟିଭାବରେ ତାଙ୍କ କବିତାରେ ନାରୀ ଜୀବନର ଅସହାୟତା, ବ୍ୟର୍ଥତା, ତା'ର ଏକଲାପଣ, ନାରୀମନର ଅବଶୋଷ, ଅମ୍ଳିକ ଦୁଃଖ-ଦହନର ଚିତ୍ର ପ୍ରକଟିତ । କବି ଅତ୍ୟଧିକ ନାରୀବାଦୀହୋଇ ନାରୀଜନ୍ମକୁ ପାପ ଏବଂ ନାରୀଜୀବନକୁ ଅଭିଶାପରୂପେ ସୂଚିତ କରିବାଟା ସମୀଚୀନ ମନେହୁଏ ନାହିଁ । ତାଙ୍କ ଭାଷାରେ-

"ଯେମିତି କି' ନାରୀ ହେବାମାନେ ନର୍କ
'ନାରୀ' ହେବାମାନେ 'ଖ' ଶ୍ରେଣୀର ନାଗରିକ
ନାରୀ ହେବାମାନେ ସଂବେଦକି ?
ଗତ ଜନ୍ମର ପାପକୁ
ଏ ଜନ୍ମର ଯୋନିରେ ଭୋଗିବ ।"(୧୨)

କବିଙ୍କର ନାରୀପ୍ରତି ଏଭଳି ସଂକୀର୍ଣ୍ଣ ଦୃଷ୍ଟିକୋଣ, ହୀନମନ୍ୟତା, ଏକାନ୍ତ ଏକଦେଶଦର୍ଶୀ ଏବଂ ବ୍ୟକ୍ତଗତ ବିକୃତି, ହତାଶାରୁ ସୃଷ୍ଟି ହୋଇଥିବାର ଅନୁମିତ ହୁଏ । ନିଜସ୍ୱ ବ୍ୟକ୍ତିଗତ

ଜୀବନର ବିଫଳତା ଓ ଅସହାୟତାକୁ ସାମଗ୍ରୀକ ସତ୍ତା ଓ ଚେତନା ଭିତରେ ଉକୁଟାଇ ନାରୀକୁ ପାପ ଓ ନର୍କ ରୂପେ ସୂଚିତ କରିବା ଅତୀବ ବିଡ଼ମ୍ବନାର ବିଷୟ। ନାରୀ କେବେ ନର୍କ ହୋଇନପାରେ, ପାପିନୀ ହୋଇନପାରେ, ସେ ପୁରୁଷ ଅଧୀନା, ପରାଧିନା, ବନ୍ଦିନୀ ମଧ ନୁହେଁ। ସେ ସ୍ୱତନ୍ତ୍ରା, ମୁକ୍ତା, ସ୍ୱୟଂସଂପୂର୍ଣ୍ଣା ଏବଂ ସ୍ୱାଭିମାନଦୀପ୍ତା। ସେ ହିଁ ସୃଷ୍ଟି ଓ ସଂହୃତି ବ୍ୟାପାରର ସର୍ବମୟ କର୍ତ୍ତ୍ରୀ।

ଏହିସବୁ କବିତା ସଙ୍କଳନ ଗୁଡ଼ିକ ବ୍ୟତୀତ ପ୍ରବାସିନୀ 'ସୁପର୍ଣ୍ଣା' ନାମକ ଖଣ୍ଡିଏ ଉପନ୍ୟାସ ମଧ ରଚନା କରିଛନ୍ତି। ଏହା ସହିତ ତାଙ୍କର ଅନେକ ଗୁଡ଼ିଏ ଅନୁଦିତ ଗ୍ରନ୍ଥ ରହିଛି। ସେଗୁଡ଼ିକ ହେଲା- ଫୁଲଓ୍ୱାରୀ, ନାଲିଟିଣର ଛାତ, ସାଦା କାଗଜ, ଯେଉଁ ରାସ୍ତା ମୋର ନିଜର।

**ଶ୍ରୀ ଶରତ୍ ଚନ୍ଦ୍ର ପତି (୧୯୬୬- ):**

ଶରତ୍ ଚନ୍ଦ୍ର ପତିଙ୍କର ଜନ୍ମ ୧୯୬୬ ମସିହା ମାର୍ଚ୍ଚମାସ ୧୨ ତାରିଖରେ ଢେଙ୍କାନାଳ ଜିଲ୍ଲାର ମହିମାଧର୍ମପୀଠ ଯୋରନ୍ଦା ନିକଟସ୍ଥ 'ବାଇଁଶିଆ' ଗ୍ରାମରେ। ପିତା ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ଓ ଢେଙ୍କାନାଳ ଗଡ଼ଜାତ ପ୍ରଜାଆନ୍ଦୋଳନର ଅନ୍ୟତମ ପ୍ରବାଦ ପୁରୁଷ ସ୍ୱର୍ଗତ କାହ୍ନୁଚରଣ ପତି ଓ ମାତା- ସ୍ୱର୍ଗୀୟା ପାର୍ବତୀ ଦେବୀ। ଶ୍ରୀଯୁକ୍ତ ପତି ୧୯୮୩ ମସିହାରେ ମାଟ୍ରିକ୍ୟୁଲେସନ୍, ୧୯୮୫ ରେ ଅଧି ସ୍ନାତକ, ୧୯୮୭ରେ କଳାରେ ସ୍ନାତକ, ୧୯୮୯ରେ ଉତ୍କଳ ବିଶ୍ୱବିଦ୍ୟାଳୟ ରୁ ଓଡ଼ିଆଭାଷା-ସାହିତ୍ୟରେ ସ୍ନାତକୋତ୍ତର ଡିଗ୍ରୀ ଲାଭ କରିଛନ୍ତି। ଏହାପରେ ସେହି ଉତ୍କଳ ବିଶ୍ୱବିଦ୍ୟାଳୟରୁ ୧୯୯୦ ମସିହାରେ ଏମ୍.ଫିଲ୍ ଡିଗ୍ରୀ ଓ ୧୯୯୨ ମସିହାରେ ପିଏଚ୍.ଡି. ଡିଗ୍ରୀ ହାସଲ କରିଛନ୍ତି। ଉଚ୍ଚଶିକ୍ଷା ସମାପ୍ତିପରେ ଅଧାପନାକୁ ନିଜ ଜୀବନର ବୃତ୍ତି ଓ ବ୍ରତରୂପେ ଗ୍ରହଣ କରିଛନ୍ତି।

ଶରତଚନ୍ଦ୍ର ପତି ଏକାଧାରରେ ଜଣେ ପ୍ରାବନ୍ଧିକ, ସମାଲୋଚକ, ଗବେଷକ, କଥାକାର, ନାଟ୍ୟସ୍ରଷ୍ଟା ଓ ଓଡ଼ିଆ ସାହିତ୍ୟ ଇତିହାସର ପ୍ରଣେତା। ସ୍ରଷ୍ଟାଙ୍କର ସାରସ୍ୱତ ପ୍ରତିଭାର ଆଦ୍ୟ ଉନ୍ମେଷ ଘଟିଥିଲା - ରହସ୍ୟ-ରୋମାଞ୍ଚଧର୍ମୀ ଉପନ୍ୟାସ ରଚନାରୁ। ସେ ଦୁଇଖଣ୍ଡି ରହସ୍ୟଧର୍ମୀ ଉପନ୍ୟାସର ସ୍ରଷ୍ଟା। ଏହି ଉପନ୍ୟାସ ଗୁଡ଼ିକ କଲେଜ ଜୀବନର ପ୍ରାରମ୍ଭିକ ପର୍ଯ୍ୟାୟରେ ରଚିତ ହୋଇଥିଲା। ଏହି ସମୟଭିତରେ ସ୍ରଷ୍ଟା ଗଳ୍ପ ରଚନାରେ ମଧ ମନୋନିବେଶ କରିଥିଲେ। ଗଳ୍ପ ରଚନା ସହିତ 'ସପ୍ତଫେଣୀ' ନାମକ ଖଣ୍ଡିଏ

ଏକାଙ୍କିକା ମଧ୍ୟ ଏହି ସମୟରେ ରଚିତ । ଏହିସବୁ ରଚନାଥିଲା-ମହାବିଦ୍ୟାଳୟ ସ୍ତରର ରଚନା । ବିଶ୍ୱବିଦ୍ୟାଳୟ ଅଧ୍ୟୟନ ସମୟରେ ଗଳ୍ପରଚନା ସହିତ ସ୍ରଷ୍ଟା ମୌଳିକ, ଗବେଷଣାତ୍ମକ ଓ ସମାଲୋଚନାମୂଳକ ପ୍ରବନ୍ଧ ରଚନାରେ ମଗ୍ନ ରହିଲେ । କ୍ରମେ ଗଳ୍ପରଚନାର ସ୍ରୋତଟି ମଉଳିଯାଇ ପ୍ରବନ୍ଧ ରଚନାର ଧାରା ଅବ୍ୟାହତ ରହିଲା । ପରବର୍ତ୍ତୀ ସମୟରେ ସ୍ରଷ୍ଟା ଦୁଇଖଣ୍ଡି ପରୀକ୍ଷାମୂଳକ, ପ୍ରୟୋଗାତ୍ମକ ନାଟକ ମଧ୍ୟ ରଚନା କରିଛନ୍ତି ।

**ସାରସ୍ୱତ ସୃଷ୍ଟି :**

**ଗଳ୍ପ-ଉପନ୍ୟାସ :** ସ୍ରଷ୍ଟାଙ୍କର ଦୁଇଖଣ୍ଡି ରହସ୍ୟ-ରୋମାଞ୍ଚଧର୍ମୀ ଅପ୍ରକାଶିତ ଉପନ୍ୟାସ ଏବଂ ପ୍ରାୟ ତିରିଶଟି ଗଳ୍ପ ରହିଛି ।

**ଏକାଙ୍କିକା :** ସପ୍ତଫେଣୀ (ରଚନା-୧୯୮୩)

**ନାଟକ :** ଶବ ଖୋଜାଚାଲିଛି (ରଚନା-୧୯୯୬), ସୁମନ୍ତ ଦାସ (ରଚନା-୨୦୧୦)

**ପ୍ରବନ୍ଧ-ସମାଲୋଚନା :** ଆଲୋଚନା ବର୍ଣ୍ଣାଳୀ (ପ୍ରକାଶ-୧୯୯୦) ଓ.ସା. ଇତିହାସ (ସାରଳାରୁ ସାଂପ୍ରତିକ) ପ୍ରକାଶ ୨୦୦୬

ସ୍ରୋତର ନାମ ସରସ୍ୱତୀ (ପ୍ରକାଶ-୨୦୧୧), ଦ୍ୱିତୀୟ ଈଶ୍ୱର ଓ ଅନ୍ୟାନ୍ୟ ପ୍ରବନ୍ଧ (ରଚନା ୨୦୧୩)

**ଗବେଷଣା ଗ୍ରନ୍ଥ :** ଆଧୁନିକ କବିତାର ଆଧୁନିକ ପ୍ରବୃତ୍ତି (ରଚନା ୧୯୯୦)

ଉପାସନା ଦୀପିକା ଗ୍ରନ୍ଥରେ ବର୍ଣ୍ଣିତ ବୈଷ୍ଣବତତ୍ତ୍ୱ (ରଚନା-୧୯୯୧)

ଭରତୀୟ ଭକ୍ତି ସିଦ୍ଧାନ୍ତ ଓ ପଞ୍ଚସଖା ଭକ୍ତିବାଦ (ଗବେଷଣା ନିବନ୍ଧ-୧୯୯୨)

ଓଡ଼ିଶାର ଜନଜୀବନ ଓ ଓଡ଼ିଆ ସାହିତ୍ୟରେ ଭକ୍ତି ଆନ୍ଦୋଳନର ପ୍ରଭାବ (୨୦୦୬)

**ଆଲୋଚନା ବର୍ଣ୍ଣାଳୀ (ପ୍ରକାଶ-୧୯୯୦):** ଏହା ଏକ ସମାଲୋଚନା ଗ୍ରନ୍ଥ । ଏଥିରେ ୧୫ ଗୋଟି ଆଲୋଚନା ସ୍ଥାନିତ ହୋଇଛି । ଓଡ଼ିଆ ସାହିତ୍ୟର କତିପୟ ମହାନ୍ ସ୍ରଷ୍ଟା ଓ ସେମାନଙ୍କ କେତେକ ସାରସ୍ୱତ କୃତିର ଆଲୋଚନା ସହିତ ସାହିତ୍ୟର ପ୍ରବୃତ୍ତି ଓ ରସଧାରା ସଂପର୍କରେ ମଧ୍ୟ ଏଥିରେ ଆଲୋଚିତ ହୋଇଛି ।

**ଓ.ସା. ଇତିହାସ (ସାରଳାରୁ ସାଂପ୍ରତିକ-ପ୍ରକାଶ-୨୦୦୬):** ଏହା ଓଡ଼ିଆ ସାହିତ୍ୟର ଇତିହାସ ଗ୍ରନ୍ଥ। ଏହି ଗ୍ରନ୍ଥଟି ତିନିଗୋଟି 'ଖଣ୍ଡ'ରେ ବିଭକ୍ତ। ପ୍ରଥମ ଖଣ୍ଡରେ ସାରଳାଙ୍କଠାରୁ ରୀତିଯୁଗ ପର୍ଯ୍ୟନ୍ତ ଓଡ଼ିଆ କାବ୍ୟଧାରାର ଆଲୋଚନା କରାଯାଇଛି । ଦ୍ୱିତୀୟଖଣ୍ଡରେ ଆଧୁନିକ ଯୁଗଠାରୁ ସତ୍ୟବାଦୀ ଯୁଗ ପର୍ଯ୍ୟନ୍ତ ଓଡ଼ିଆ କାବ୍ୟଧାରା ଆଲୋଚିତ ହୋଇଛି। ତୃତୀୟଖଣ୍ଡରେ ସବୁଜ ଓ ପ୍ରଗତିବାଦୀ କାବ୍ୟ ଚେତନାର ଆଲୋଚନା କରାଯାଇଛି। ଏହି ଗ୍ରନ୍ଥର ପ୍ରଥମଖଣ୍ଡ ପ୍ରକାଶିତ ହୋଇଥିଲେ ହେଁ, ଦ୍ୱିତୀୟ ଓ ତୃତୀୟଖଣ୍ଡ ପ୍ରକାଶ ଅପେକ୍ଷାରେ।

**ସ୍ରୋତରନାମ ସରସ୍ୱତୀ (ପ୍ରକାଶ-୨୦୧୧):** ଏହା ଏକ ମୌଳିକ ପ୍ରବନ୍ଧ ଗ୍ରନ୍ଥ। ଏଥିରେ ୧୭ ଗୋଟି ବୌଦ୍ଧିକ, ଯୁକ୍ତିନିଷ୍ଠ ଓ ତାତ୍ତ୍ୱିକ ପ୍ରବନ୍ଧ ସନ୍ନିବିଷ୍ଟ ହୋଇଛି । ସେଗୁଡ଼ିକ ହେଲା- ପ୍ରଳୟ ଆତଙ୍କ, ସ୍କାଇଲାବ୍ ରୁ ବିଗ୍‌ବ୍ୟାଙ୍ଗ, ଜଗତୀକରଣ ଓ ଆମ ସାଂସ୍କୃତିକ ବିପର୍ଯ୍ୟୟ, ନୂତନ ସାଂସ୍କୃତିକ ଜାଗରଣ, ଦ୍ୱିତୀୟ ଈଶ୍ୱର, ସାହିତ୍ୟର ଅପମୃତ୍ୟୁ, ଓଡ଼ିଆ କିଏ ?, ନାରୀ ସ୍ୱୈରାଚାର, ଗଣତନ୍ତ୍ରର ମେଧା ହତ୍ୟା, ସ୍ରେତର ନାମ ସରସ୍ୱତୀ, ମେଧାବଞ୍ଚାଅ ଆନ୍ଦୋଳନ, ଆମ ଉଚ୍ଚଶିକ୍ଷା ଓ ନୈତିକତା, ମଣିଷ, ନର-ନାରାୟଣ, ଅମୃତ-ଆଲୋକର ପଥ ପ୍ରଭୃତି। ଏହିସବୁ ପ୍ରବନ୍ଧ ଗୁଡ଼ିକ ସାଂପ୍ରତିକ ଶିକ୍ଷାବ୍ୟବସ୍ଥାର ଗୁଗ୍‌ଣି- ଅବକ୍ଷୟୀ ସ୍ଥିତି, ସାମାଜିକ ଓ ସାଂସ୍କୃତିକ ଦୁସ୍ଥିତି, ମଣିଷର ନୈତିକ ଅଧୋଗତି, ମେଧା ବା ଜ୍ଞାନ ବିପର୍ଯ୍ୟୟର ପୃଷ୍ଠଭୂମି ଉପରେ ରଚିତ। ଅପସଂସ୍କୃତି ସଂକ୍ରମିତ ଅବକ୍ଷୟିଷ୍ଣୁ ସମାଜ, ସଭ୍ୟତା ଓ ସଂସ୍କୃତିର ବିଷବଳୟରୁ ମୁକ୍ତ ହେବାପାଇଁ, ଆଦର୍ଶ ଓ ନୈତିକତାର ଅବକ୍ଷୟଗ୍ରସ୍ତ ମୂଲ୍ୟବୋଧରୁ ଉଦ୍ଧରଣପାଇଁ; ସର୍ବୋପରି ଗଣତାନ୍ତ୍ରିକ ଧୋକ୍କାବାଜି, ଛଳନା, ପ୍ରବଞ୍ଚନା ଓ ବ୍ୟକ୍ତିକୈନ୍ଦ୍ରିକ ସ୍ୱାର୍ଥ, ହୀନମନ୍ୟତାରୁ ମୁକ୍ତି ପାଇବାପାଇଁ ଏହି ପ୍ରବନ୍ଧ ଗୁଡ଼ିକ ମାଧ୍ୟମରେ ଦୁର୍ବାର ଆହ୍ୱାନ କରାଯାଇଛି । ଏହି ପ୍ରବନ୍ଧ ଗୁଡ଼ିକରେ ଉତ୍ତର-ଆଧୁନିକ ଚିନ୍ତା-ଚେତନାର ସଫଳ ପରିପ୍ରକାଶ ଘଟିଅଛି ।

**ଦ୍ୱିତୀୟ ଈଶ୍ୱର ଓ ଅନ୍ୟାନ୍ୟ ପ୍ରବନ୍ଧ (ରଚନା-୨୦୧୩):** ଏହା ଏକ ମୌଳିକ ପ୍ରବନ୍ଧ ରଚନା। ଏଥିରେ ମଧ୍ୟ ୧୭ ଗୋଟି ପ୍ରବନ୍ଧ ସ୍ଥାନିତ ହୋଇଛି। ସେଗୁଡିକ ହେଲା- ଜୀବନ ସତ୍ୟର କଳା, ଦାରିଦ୍ର୍ୟ ଓ ସୃଜନ କଳା, ଆଗାମୀ କାଲିର ସାହିତ୍ୟ, ଦୁର୍ନୀତି ବିରୁଦ୍ଧରେ ଭାରତ-ଏକ ଆନ୍ଦୋଳନ, ସଙ୍କଟର ସନ୍ଧିକ୍ଷଣରେ ଭାରତବର୍ଷ, ବ୍ରହ୍ମାଣ୍ଡ ସୃଷ୍ଟିର ରହସ୍ୟଭେଦ, ଗଣତନ୍ତ୍ରର ସନ୍ତ୍ରାସ, ଆଉଏକ ଭାଷା ଆନ୍ଦୋଳନ, କବିତାର ମଣିଷ, ସାହିତ୍ୟର ସମସ୍ୟା, ଦ୍ୱିତୀୟ ଈଶ୍ୱର, ଓଡ଼ିଆ ଅସ୍ମିତା ଓ ଆତ୍ମସ୍ୱାଭିମାନ, ଆଲୋକିତ

ଜୀବନ ଦର୍ଶନ ପ୍ରଭୃତି । ଏହିସବୁ ପ୍ରବନ୍ଧ ଗୁଡ଼ିକ ଭିତରେ ଜୀବନର ପ୍ରକୃତ ସତ୍ୟ, ସୃଜନକଳାର ଗୂଢ଼ ରହସ୍ୟ, ସାଂପ୍ରତିକ ସାହିତ୍ୟର ସମସ୍ୟା ଓ ଆଗାମୀ କାଲିର ସମାଜ ଗଠନପାଇଁ ସେଥିରେ ବାର୍ତ୍ତା, ଭାରତୀୟ ଗଣତାନ୍ତ୍ରିକ ମୂଲ୍ୟବୋଧର ବିପର୍ଯ୍ୟୟ, ମଣିଷର ନୈତିକ ଅଧୋଗତି ସର୍ବୋପରି ଆଧାତ୍ମିକ ଜୀବନର ଆଲୋକିତ ପଥ ପ୍ରଦର୍ଶିତ ହୋଇଛି ।

**ଶବ ଖୋଜାଚାଲିଛି (ରଚନା-୧୯୯୬) :** ଏହା ଏକ ପରୀକ୍ଷାଧର୍ମୀ, ପ୍ରୟୋଗବାଦୀ ନାଟକ । ଆଧୁନିକ ମଣିଷର ବସ୍ତୁବାଦୀ ଚିନ୍ତାଧାରା, ଅର୍ଥ ଓ କ୍ଷମତା ତୃଷ୍ଣା ଏହି ନାଟକଟିରେ ପ୍ରକଟିତ । ସମାଜର ପ୍ରତିଷ୍ଠିତ ବ୍ୟକ୍ତିମାନେ ଅର୍ଥ ଲୋଭରେ କିପରି ମଣିଷର 'ଶବ' କୁ ନେଇ ବ୍ୟବସାୟ କରନ୍ତି, ମଣିଷର ଆଖି, କିଡ଼ନୀ, ଚମଡ଼ା ଆଦି ଚୋରୀ କରି ସେଥିରୁ ପ୍ରଚୁର ମୁନାଫା ଉଠାନ୍ତି, ତାହାହିଁ ନାଟ୍ୟକାର ଏଥିରେ ସୂଚିତ କରିଛନ୍ତି । ଏହି ନାଟକଟିରେ ନାଟ୍ୟକାର ମଣିଷର ନୈତିକ ଅଧୋଗତି, ଚାରିତ୍ରିକ ଦୁର୍ଗତି, ମାନବିକ ମୂଲ୍ୟବୋଧର ଅବକ୍ଷୟ ଓ ରାଜନୀତିର କଳଙ୍କିତ ଦୃଶ୍ୟପଟ୍ଟ କୁ ଉନ୍ମୋଚିତ କରିଛନ୍ତି ।

**ସୁମନ୍ତ ଦାସ (ରଚନା-୨୦୧୦):** ଏହା ଏକ ବୌଦ୍ଧିକ ଚେତନାଧର୍ମୀ ବ୍ୟଙ୍ଗାତ୍ମକ ନାଟକ । ଗଣତାନ୍ତ୍ରିକ ଶାସନ ବ୍ୟବସ୍ଥା ର ଅବକ୍ଷୟ, ଭ୍ରଷ୍ଟ ଶାସନତନ୍ତ୍ର ଓ କଳଙ୍କିତ ଶାସନକଳର ବାସ୍ତବ, ବ୍ୟଙ୍ଗାତ୍ମକ ଚିତ୍ର ଏହି ନାଟକଟିରେ ପ୍ରକଟିତ । ଏହି ନାଟକର ବାସ୍ତବ, ସତ୍ୟଶୀଳ ଚରିତ୍ର- 'ସୁମନ୍ତ ଦାସ' । ଯେ' କି ଓଡ଼ିଶା ସରକାରଙ୍କର ଉଚ୍ଚଶିକ୍ଷା ବିଭାଗର ଜଣେ ଯୁଗ୍ମ ସଚିବ । ସୁମନ୍ତ ଦାସ ର ଅହଂକାର ଏବଂ ସ୍ୱେଛାଚାରୀ କାର୍ଯ୍ୟଧାରା କିପରି ଶହ ଶହ ମେଧା- ଅଧାପକଙ୍କର ଜୀବନକୁ ଦୁର୍ବିହ, ଦୁର୍ବିସହ କରିବା ସହିତ ସେମାନଙ୍କ ମନରେ ଅଶାନ୍ତି ଓ ବିଦ୍ରୋହର ଝଡ଼ ସୃଷ୍ଟି କରିଛି, ତାହା ଏ ନାଟକରେ ନାଟ୍ୟରୂପ ନେଇଛି । ମୋଟାମୋଟି ଭାବରେ ଶାସନତନ୍ତ୍ର ଓ ଶାସନକଳର ତ୍ରୁଟି ବିଚ୍ୟୁତି, ଉଚ୍ଚଶିକ୍ଷା ବିଭାଗର ଭ୍ରଷ୍ଟନୀତି ଓ ଅବକ୍ଷୟ ଦିଗଟିକୁ ଏଥିରେ ଦର୍ଶାଇ ଦିଆଯାଇଛି ।

## ସୁକାନ୍ତି ସାହୁ (୧୯୬୯- ):

ସୁକାନ୍ତି ସାହୁଙ୍କର ଜନ୍ମ ୧୯୬୯ ମସିହାରେ ଢେଙ୍କାନାଳ ଜିଲ୍ଲାର ସୁକିନ୍ଦାସ୍ଥିତ ବର୍ତ୍ତଣ୍ଡା ଗ୍ରାମରେ । ତାଙ୍କ ପିତାଙ୍କ ନାମ- ବେଣୁଧର ସାହୁ ଓ ମାତା- ଲଳିତା ଦେବୀ । ସୁକାନ୍ତି ଢେଙ୍କାନାଳ ସହର ନିବାସୀ ଅଞ୍ଜନକୁମାର ସାହୁଙ୍କର ଧର୍ମପତ୍ନୀ । ଶ୍ରୀମତୀ ସାହୁ ରାଜନୀତି ବିଜ୍ଞାନରେ ସ୍ନାତକୋତ୍ତର ଡିଗ୍ରୀ ଲାଭକରିଛନ୍ତି । ସେ ଏକାଧାରରେ ଜଣେ

କବି, ଗାଳ୍ପିକା ଓ ପ୍ରାବନ୍ଧିକା । ତାଙ୍କ ପ୍ରକାଶିତ ଦୁଇଖଣ୍ଡି କବିତା ସଙ୍କଳନ ହେଲା- 'ବିଷର୍ଣ୍ଣ ଗୋଧୂଳି' ଏବଂ 'ଚିତ୍ରିତ ଆକାଙ୍‌କ୍ଷା' । ଏହି ଦୁଇ କବିତା ଗନ୍ଥରେ କବୟିତ୍ରୀ ବେଶ୍ ଆତ୍ମଜିଜ୍ଞାସୁ ଓ ନୂତନତାର ଅନୁସନ୍ଧିତ୍ସୁ । ଭାଙ୍ଗିଯାଉଥିବା ମୂଲ୍ୟବୋଧ, ଅବକ୍ଷୟଗ୍ରସ୍ତ ଜୀବନଧାରା ପ୍ରତି କବିପ୍ରାଣ ବେଶ୍ କ୍ଷୋଭ ପ୍ରକାଶ କରିଛି । 'ବିଷର୍ଣ୍ଣ ଗୋଧୂଳି' ରେ ସମାଜଜୀବନ, ମଣିଷ ଜୀବନ ଓ ନାରୀଜୀବନର ଅବକ୍ଷୟ ତାଙ୍କ ମନ-ପ୍ରାଣକୁ ବ୍ୟାକୁଳିତ କରିଛି । ନାରୀ ଜୀବନର ବିଷର୍ଣ୍ଣତା, ଅବଷାଦ, ବ୍ୟର୍ଥତା ଓ ଅସହାୟତାର ପାଣ୍ଡୁର ଚିତ୍ର ଏଥିରେ ବର୍ଣ୍ଣିତ । ସେହିପରି ଚିତ୍ରିତ ଆକାଙ୍‌କ୍ଷା (୨୦୦୩) କବିତା ସଂକଳନଟିରେ ମଧ କବି ହୃଦୟର ଆବେଗିକ ଆଶା-ଆକାଙ୍‌କ୍ଷା, ସ୍ୱପ୍ନ, ସମ୍ଭାବନା ଓ ଆତ୍ମିକ ଅନ୍ୱେଷା ଫୁଟିଉଠିଛି । ଏହି ସଙ୍କଳନଟିରେ ୫୧ ଗୋଟି କ୍ଷୁଦ୍ର କ୍ଷୁଦ୍ର କବିତା ସ୍ଥାନିତ ହୋଇଛି । ନାରୀମନର ଅକୁହା ବେଦନା, ନାରୀପ୍ରତି ହେଉଥିବା ଅନ୍ୟାୟ, ଅତ୍ୟାଚାରର ଚିତ୍ର ତାଙ୍କ କବିତାରେ ପ୍ରକଟିତ । ମଣିଷମନର କାମ-ବାସନା ମୋହ. ଅର୍ଥ ଓ ସଂପଦର ତୃଷ୍ଣା କୁ କବି ଅସାର, ଅଳୀକ ଦର୍ଶାଇ ମଣିଷକୁ ଈଶ୍ୱରାଭିମୁଖୀ କରାଇବାକୁ ଚାହିଁଛନ୍ତି । କବିପ୍ରାଣ ମଧ ଈଶ୍ୱର ସମର୍ପିତ । ଈଶ୍ୱରଙ୍କ ସାନ୍ନିଧ ପାଇଁ ତାଙ୍କ ହୃଦୟ ବ୍ୟାକୁଳିତ । କବି ନିଜକୁ 'ଘାସଫୁଲ' ଟିଏ ହେବାପାଇଁ ଆଶା ପୋଷଣ କରିଛନ୍ତି । ଅଖୋଜା, ଅଲୋଡ଼ା ହେଲେବି ଘାସଫୁଲଟିଏ ପରି ନିଜର ପୁଷ୍ପିତ ସୌରଭରେ ଜଗତକୁ ସୁବାସିତ କରିବାକୁ ଚାହିଁଛନ୍ତି । ପ୍ରକୃତିର ସୌନ୍ଦର୍ଯ୍ୟ ବର୍ଣ୍ଣନାରେ କବି ଲେଖନୀ ଜୀବନ୍ତ ହୋଇଉଠିଛି । ବ ସନ୍ତ, ବର୍ଷା, ବୈଶାଖର ସୌନ୍ଦର୍ଯ୍ୟ ଚିତ୍ରଣକରି ତା ଭିତରେ କବି ଆତ୍ମା ତଲ୍ଲୀନ ହୋଇଯାଇଛି । କବି ମଣିଷର ଭଙ୍ଗା ସ୍ୱପ୍ନ ଓ ଅସଜଡ଼ା ସଂସାରକୁ ସଜାଡ଼ିବାକୁ ଚାହିଁଛନ୍ତି । ସେ ଚାହିଁଛନ୍ତି- ସମାଜରେ ଶାନ୍ତି, ସଂହତି, ମୈତ୍ରୀର ପ୍ରତିଷ୍ଠା ହେଉ । ମାନବିକ ମୂଲ୍ୟବୋଧର ପ୍ରତିଷ୍ଠା ସହିତ ସମାଜ ଜୀବନରେ କ୍ରାନ୍ତି ଆସୁ । କବୟିତ୍ରୀଙ୍କର ଏହି ମହନୀୟ ଇଚ୍ଛା ଓ ଅଭୀପ୍ସା ବାସ୍ତବରେ ପ୍ରସଂଶନୀୟ । ଏବେବି ତାଙ୍କର ଲେଖନୀ ଗତିମୁଖର । ତାଙ୍କ ସାରସ୍ୱତ ପ୍ରତିଭାର ବର୍ଣ୍ଣବିଭା ଢେଙ୍କାନାଳ ସାହିତ୍ୟର ଦିଗନ୍ତକୁ ନିଶ୍ଚିତରୂପେ ସମୃଦ୍ଧ, ଋଦ୍ଧିମନ୍ତ କରିବ, ଏଥିରେ ସନ୍ଦେହର ଅବକାଶ ନାହିଁ ।

## ଉତ୍ତର-ଆଧୁନିକ ଯୁଗର ଅନ୍ୟକତିପୟ ସ୍ରଷ୍ଟା

**ସଂଯୁକ୍ତା ଶରଣ (୧୯୫୯- ):**

ସଂଯୁକ୍ତାଙ୍କର ଜନ୍ମ ୧୯୫୯ ମସିହା ଫେବୃଆରୀ ମାସ ୨୯ ତାରିଖରେ ଢେଙ୍କାନାଳ ଜିଲ୍ଲାର 'ମାର୍ଥାପୁର' ଶାସନଠାରେ । ତାଙ୍କ ପିତାଙ୍କ ନାମ- ଶ୍ରୀ ଜଗଦାନନ୍ଦ

ମିଶ୍ର ଓ ମାତା- ଶାନ୍ତଶୀଳା ମିଶ୍ର । ଢେଙ୍କାନାଳ ସହର ନିବାସୀ ଶ୍ରୀ ସତ୍ୟପ୍ରିୟ ଶରଣଙ୍କର ସେ ଧର୍ମପତ୍ନୀ । ଶ୍ରୀମତୀ ଶରଣ କଳାରେ ସ୍ନାତକଡିଗ୍ରୀ ଲାଭସହିତ ହିନ୍ଦୀରେ କୋବିଦ ଏବଂ ଶାସ୍ତ୍ରୀୟ ସଂଗୀତରେ ବିଶାରଦ ଅଟନ୍ତି । ଶ୍ରୀମତୀ ଶରଣ ଉଭୟ କବିତା ଏବଂ ଗଳ୍ପ ରଚନାରେ ସିଦ୍ଧହସ୍ତ । ତାଙ୍କ ପ୍ରକାଶିତ କବିତା କୃତି ହେଲା- ପୟସ୍ୱିନୀ(୨୦୦୪), ଶ୍ୱେତପର୍ଣ୍ଣା (୨୦୧୩) । ତାଙ୍କର ଏକ ମନୋଜ୍ଞ ଗଳ୍ପ ଗ୍ରନ୍ଥ ହେଲା- ନିର୍ବିକଳ୍ପ (୨୦୦୯) ।

**ପୟସ୍ୱିନୀ (୨୦୦୪):** ଏହା ୨୮ ଗୋଟି କବିତାର ଏକ ମନୋଜ୍ଞ ସମାହାର । ଏଥିରେ ସନ୍ନିବିଷ୍ଟ କବିତା ଗୁଡ଼ିକ ହେଲା- ପ୍ରଭୁ ହେ, ପ୍ରତିବାଦ, ମୂକସାକ୍ଷୀ, ପରିଚୟ, ମଦର ଟେରେସା, ବିବର୍ଣ୍ଣ ପୃଥିବୀ, ତୁମେ ପୁଣି ବସନ୍ତରେ, ଶୂନ୍ୟ ପ୍ରୟାସ, ଆବାହନ, ପ୍ରତୀକ୍ଷା, ଜୀବନ ଜୁଇ, ଜାଗ୍ରତ ପ୍ରହରୀ, ସ୍ମୃତି ଏକ ଆଲେଖ୍ୟର, ଆବର୍ତ୍ତନ, ଆଶା ସ୍ୱପ୍ନ, ନାରୀ, ପଥ, ଘର, ନବବର୍ଷ, ଝରାଫୁଲ ମୃତ୍ୟୁ ଇତ୍ୟାଦି । ଏହିସବୁ କବିତା ଗୁଡ଼ିକରେ ସ୍ରଷ୍ଟା ହୃଦୟର ଭାବାବେଗ, ଆତ୍ମିକ ଅନୁଭବ, ଅନୁଭୂତି, ଈଶ୍ୱରୀୟ ଅନୁଚିନ୍ତା ସହିତ ସ୍ରଷ୍ଟା ପ୍ରାଣର ଅନିର୍ବଚନୀୟ ଦିବ୍ୟ ଆତ୍ମାନୁଭବର ମୁଗ୍ଧ ଅଭିବ୍ୟକ୍ତି ଘଟିଅଛି ।

**ଶ୍ୱେତପର୍ଣ୍ଣା (୨୦୧୩):** ଏହା ଏକ ଗୀତି କବିତା ଗୁଚ୍ଛ । ଏଥିରେ ୩୪ ଗୋଟି କ୍ଷୁଦ୍ର କ୍ଷୁଦ୍ର ଗୀତି କବିତା ସ୍ଥାନିତ ହୋଇଛି । ସେଗୁଡ଼ିକ ହେଲା- ଅତିଥି, ପୂର୍ଣ୍ଣମୟୀ ମାଆ, ଜୀବନ ଯାତ୍ରା, ପ୍ରଭୁ ହେ, ପ୍ରତ୍ୟାଶା, ମୁକ୍ତିର ସ୍ୱାଦ, ପ୍ରତୀକ୍ଷାରେ ପ୍ରତିକ୍ଷଣ, ଜ୍ୟୋତି, ମାନବିକତା, ସ୍ମୃତିର ଗୀତ, ଅସତ୍ୟ ସହର, ନିର୍ବିକଳ୍ପ, ଭାବାନ୍ତର, ପ୍ରତୀକ୍ଷା, ସାଥୀ, ପାରୁଛ ଯଦି, ଅଭିନୟ, ବଳିଆର ଭୁଜ, ପାଣିଓହଳା, ସନ୍ଥକବି ଭୀମଭୋଇ, ଜହ୍ନ ଓ ମୁଁ, ବର୍ଷାଭାବନା, ସ୍ମୃତି ପ୍ରଭୃତି । ଏହି କବିତା ଗୁଡ଼ିକରେ କବି ଆତ୍ମାର ସହଜ, ସରଳ ଭାବମୟ ପରିପ୍ରକାଶ ଘଟିଅଛି । କବିଙ୍କର ବ୍ୟକ୍ତିଗତ ଜୀବନର ଅନୁଭବ, ଅନୁଭୂତି ଓ ଅତୀତ ସ୍ମୃତିରାଜିର ମଞ୍ଜୁଳ ପରିପ୍ରକାଶ ସହିତ କବିପ୍ରାଣ ଈଶ୍ୱରୀୟ ଅନୁଚିନ୍ତା ଓ ପରମାତ୍ମାଙ୍କ ସହ ତଲ୍ଲୀନ ହେବାର ଭାବନା ଫୁଟିଉଠିଛି ।

**ନିର୍ବିକଳ୍ପ (୨୦୦୯):** ଏହା ଏକ ଗଳ୍ପ ସଂକଳନ । ଏହି ସଙ୍କଳନଟିରେ ୨୧ ଗୋଟି ଗଳ୍ପ ସ୍ଥାନିତ ହୋଇଛି । ସେଗୁଡ଼ିକହେଲା- ଅନ୍ତର୍ଦାହ, କାଳିଆଇ, ଭଙ୍ଗାସିଲଟ, ଶୂନ୍ୟ ପ୍ରୟାସ, ଶବଦାହ, ପ୍ରଶ୍ନବାଚୀ, ଯନ୍ତ୍ରଣାର ସ୍ୱର, ନିରାଶା, ସ୍ମୃତି ଏକ ସକାଳର, ବିବର୍ଣ୍ଣ ପୃଥିବୀ, ପ୍ରଦୀପ, ପ୍ରତୀକ୍ଷା, ଆସ୍ପୃହା, ପଶ୍ଚାତାପ, ଅଭୁଲା ଅତୀତ, ଆତ୍ମଲିପି ପ୍ରଭୃତି । ଏହିସବୁ ଗଳ୍ପ ଗୁଡ଼ିକ ଭିତରେ ସାମାଜିକ ସଚେତନତା ଓ ସମାଜ ପ୍ରତି ଅଙ୍ଗୀକାରବଦ୍ଧତା

ଫୁଟିଉଠିଛି । ସ୍ରଷ୍ଟା ବିଭିନ୍ନ ସାମାଜିକ ସମସ୍ୟାର ରୂପାୟନ ସହିତ ଏହି ସମସ୍ୟାର ସମାଧାନର ସୂତ୍ର ମଧ ଦେଇଛନ୍ତି । ଏହା ସହିତ ତାଙ୍କ ଗଳ୍ପ ଗୁଡ଼ିକରେ ଗଭୀର ମାନବିକ ସମ୍ବେଦନା ଓ ମଣିଷପ୍ରତି ମମତ୍ୱବୋଧ, ମୁଗ୍ଧ ସହାନୁଭୂତି ଫୁଟିଉଠିଛି । ମାନବିକତାର ମହାଦ୍ୟୁତିରେ ତାଙ୍କ ଗଳ୍ପଗୁଡ଼ିକ ଉର୍ଜ୍ଜସଳ ।

## ସୁମିତ୍ରା ରାୟ ପଟ୍ଟନାୟକ (୧୯୬୦- ):

ସୁମିତ୍ରାରାୟଙ୍କର ଜନ୍ମ ୧୯୬୦ ମସିହା ଡିସେମ୍ବର ମାସ ୨୯ ତାରିଖରେ । ଢେଙ୍କାନାଳ ସହର ଦେଉଳସାହି ନିବାସୀ ଶିଳ୍ପୀ ପରେଶଚନ୍ଦ୍ର ପଟ୍ଟନାୟକଙ୍କର ସେ ଧର୍ମ ପତ୍ନୀ । ଶ୍ରୀମତୀ ପଟ୍ଟନାୟକ ମୁଖ୍ୟତଃ ଜଣେ ନିରୋଳା କବି । ନିଜ ଜୀବନର ଅନୁଭବ, ଅନୁଭୂତି ଓ ଭାବନାରାଜିକୁ ନେଇ ସେ କବିତାମାନ ରଚନା କରିଛନ୍ତି । ତାଙ୍କ ପ୍ରକାଶିତ ଦୁଇଖଣ୍ଡ କବିତା ଗ୍ରନ୍ଥ ହେଲା- 'ସ୍ମୃତି' ଏବଂ 'ଲୁହୁପିଙ୍କ ମଜାକବିତା' । ଏହା ବ୍ୟତୀତ ଆହୁରି ଅନେକ ଅପ୍ରକାଶିତ କବିତା ତାଙ୍କର ରହିଛି । ସ୍ମୃତି (୨୦୦୩) କବିତା ସଂକଳନଟିରେ ୩୦ ଗୋଟି କ୍ଷୁଦ୍ର କ୍ଷୁଦ୍ର କବିତା ସ୍ଥାନିତ ହୋଇଛି । ଏସବୁ କବିତା ଗୁଡ଼ିକ କବି ହୃଦୟର ବିମଳ ଆଧାତ୍ମିକ ଚେତନା ଓ ଭକ୍ତିଭାବନାରେ ତଲ୍ଲୀନ । କବିଙ୍କର ବ୍ୟକ୍ତିଗତ ଜୀବନର ଅନୁଭବ, ଅନୁଭୂତିର ପରିପ୍ରକାଶ ସହିତ ସାଂପ୍ରତିକ ସମାଜ ଦୃଷ୍ଟି ଏଥିରେ ଫୁଟିଉଠିଛି । 'ଲୁହୁପିଙ୍କ ମଜା କବିତା(୨୦୧୦)' ଏକ ଯୁଗ୍ମ କଳାସୃଷ୍ଟି । ଏଥିରେ ସୁମିତାରାୟ ପଟ୍ଟନାୟକଙ୍କର ୨୪ ଗୋଟି ଏବଂ ପରେଶ ପଟ୍ଟନାୟକଙ୍କର ୩୬ ଗୋଟି ସ୍ଥାନିତ ହୋଇଛି । ଏହି କବିତା ଗୁଡ଼ିକ ଶିଶୁମନ ଉପଯୋଗୀ, ଶିକ୍ଷଣୀୟ ଏବଂ ସମାଜନିଷ୍ଠ । ନୀତି, ଆଦର୍ଶର ମହନୀୟ ବାର୍ତ୍ତା ଏଗୁଡ଼ିକରେ ପ୍ରକଟିତ । ଏହି କବିତା ଗୁଡ଼ିକ ବେଶ୍ ସରଳ ତରଳ ଓ ସାବଲୀଳ ।

## ଶ୍ରୀ ଶରତ କୁମାର ମିଶ୍ର (ଭରଦ୍ୱାଜ) ୧୯୬୧- :

ଶରତ କୁମାର ମିଶ୍ରଙ୍କର ଜନ୍ମ ୧୯୬୧ ମସିହା ନଭେମ୍ବର ମାସ ୧ ତାରିଖରେ ଢେଙ୍କାନାଳ ସହରର ଜବାହାରଚୌକ ଠାରେ । ତାଙ୍କ ପିତାଙ୍କ ନାମ- ଶ୍ରୀ ଦାମୋଦର ମିଶ୍ର ଓ ମାତା- ନକ୍ଷତ୍ରମାଳା ମିଶ୍ର । ଶ୍ରୀଯୁକ୍ତ ମିଶ୍ର ସ୍ନାତକୋତ୍ତର ଶିକ୍ଷାସହିତ ଏଲ୍.ଏଲ୍.ବି. ଡିଗ୍ରୀ ଲାଭପରେ ସାମ୍ବାଦିକତାକୁ ନିଜର ବୃତ୍ତିରୂପେ ଆପଣେଇ ନେଇଥିଲେ । ଏକଦା ସେ ନକ୍ଷତ୍ର ନିଉଜ୍, ଓ ଟିଭି, ସି-ସୋର ସାହିତ୍ୟଏକାଡ଼େମୀ ଏବଂ ଦୈନିକ ସମ୍ବାଦରେ ସିନିୟର ଏକ୍‌ଜିକ୍ୟୁଟିଭ୍ ପଦରେ ଅଧିଷ୍ଠିତଥିଲେ । ସଂପ୍ରତି ଶ୍ରୀଯୁକ୍ତ ମିଶ୍ର 'ପ୍ରିଣ୍ଟ୍ ଏଣ୍ଡ ପ୍ରିଣ୍ଟ୍' ପ୍ରକାଶନ ସଂସ୍ଥାର ମୁଖ୍ୟ ଅଛନ୍ତି । ଏହି ପ୍ରକାଶନ ସଂସ୍ଥା ମାଧ୍ୟମରେ

ସେ ଢେଙ୍କାନାଳ ସାହିତ୍ୟକୁ ଜୀବନ୍ୟାସ ଦେବାସହିତ ଢେଙ୍କାନାଳ ସାହିତ୍ୟକୁ ସମୃଦ୍ଧ, ପ୍ରାଣବନ୍ତ କରିଚାଲିଛନ୍ତି । ସେ ଏକଦା 'ସବୁରିକଥା' ନାମକ ଏକ ପତ୍ରିକାର ସଂପାଦନା ଓ ପ୍ରକାଶନା ଦାୟିତ୍ୱରେ ଥିଲେ । 'ସନ୍ଧ୍ୟାତାରା ସାହିତ୍ୟ ସଂସଦ'ର ସେ ପ୍ରତିଷ୍ଠାତା ସଦସ୍ୟ । ତାଙ୍କରି ଉଦ୍ୟମରେ ଢେଙ୍କାନାଳର ସାରସ୍ୱତ ଏବଂ ସାଂସ୍କୃତିକ ଆନ୍ଦୋଳନ ମୁଣ୍ଡ ଟେକି ପାରିଛି । ଶ୍ରୀଯୁକ୍ତ ମିଶ୍ର ଜଣେ ଫିଚର୍ ଲେଖକ ଓ ସ୍ତମ୍ଭକାର ରୂପରେ ନିଜର ଖ୍ୟାତି ଅର୍ଜନ କରିପାରିଛନ୍ତି । ବିଭିନ୍ନ ସାମାଜିକ ଓ ସାଂସ୍କୃତିକ ଅନୁଷ୍ଠାନ ସହ ସେ ଜଡ଼ିତରହି ସମାଜ ସେବା ଓ ସାରସ୍ୱତ ସେବାରେ ନିଜକୁ ଉତ୍ସର୍ଗ କରିଛନ୍ତି । ଢେଙ୍କାନାଳ ମାଟିର ସେ ଜଣେ ସୁଯୋଗ୍ୟ ସନ୍ତାନ ।

**ଶ୍ରୀ ଶାନ୍ତନୁ କୁମାର ସାହୁ ( ୧ ୯ ୬ ୩-    ):**

ଶାନ୍ତନୁ କୁମାର ସାହୁଙ୍କର ଜନ୍ମ ୧ ୯ ୬ ୩ ମସିହାରେ ଢେଙ୍କାନାଳ ଜିଲ୍ଲାର ହିନ୍ଦୋଳ ଉପଖଣ୍ଡର ମାଧପୁର ଗ୍ରାମରେ । ତାଙ୍କ ପିତାଙ୍କ ନାମ- ବ୍ରଜବନ୍ଧୁ ସାହୁ । ଶ୍ରୀଯୁକ୍ତ ସାହୁ ମୁଖ୍ୟତଃ ଜଣେ କବି । କାବ୍ୟକବିତା ରଚନାରେ ସେ ସିଦ୍ଧହସ୍ତ । ତାଙ୍କ ରଚିତ କାବ୍ୟ-କବିତା କୃତି ଗୁଡ଼ିକ ହେଲା- ଅନ୍ଧାର ମଧ୍ୟସ୍ଥି, ବୈଦର୍ଭୀଶ ବିଳାସ, ଚୌପଦୀ ଚନ୍ଦ୍ରୋଦୟ, ମାନସୁଧା ଚମ୍ପୂ, ଅନୁଚିନ୍ତା । ଏହିସବୁ ରଚନା ଗୁଡ଼ିକ ଆଧୁନିକ ଚିନ୍ତା-ଚେତନାର ଦ୍ୟୋତକ । ବୌଦ୍ଧିକ ଓ ଶାଣିତ ବ୍ୟଙ୍ଗ ମାଧ୍ୟମରେ କବି ସମାଜର ବିଭିନ୍ନ ତ୍ରୁଟି-ବିଚ୍ୟୁତିର ଦିଗ ଦର୍ଶାଇବା ସହିତ ମଣିଷ ଜୀବନର ପରିବର୍ତ୍ତନ ଓ ପରିଶୁଦ୍ଧତା ଚାହିଁଛନ୍ତି ।

**ରେଣୁବାଳା ନନ୍ଦ ( ୧ ୯ ୬ ୩-    ):**

ରେଣୁବାଳା ନନ୍ଦଙ୍କର ଜନ୍ମ ୧ ୯ ୬ ୩ ମସିହାରେ ସାଲେପୁରର ନାନ୍ଦୋଳ ଗ୍ରାମରେ । ସେ ଢେଙ୍କାନାଳ ସହରର ମନୋରଞ୍ଜନ ନନ୍ଦଙ୍କୁ ବିବାହକରି ଢେଙ୍କାନାଳ ମାଟିର ବୋହୂ ହୋଇଛନ୍ତି । ଶ୍ରୀମତୀ ନନ୍ଦ ଜଣେ ବହୁମୁଖୀ ପ୍ରତିଭାର ଅଧିକାରିଣୀ । ଗଳ୍ପ, କବିତାମାନ ସେ ରଚନା କରି ଚାଲିଛନ୍ତି । ମୁଖ୍ୟତଃ ସେ ଜଣେ ଶିଶୁ ସାହିତ୍ୟିକା । ଶିଶୁ ମନସ୍ତତ୍ତ୍ୱ ଉପଯୋଗୀ ଗଳ୍ପ ଓ କବିତାମାନ ସେ ରଚନା କରିଛନ୍ତି । ତାଙ୍କ ରଚିତ ସାରସ୍ୱତ କୃତି ଗୁଡ଼ିକ ହେଲା- ଶିଶୁଗଳ୍ପ ସଂକଳନ, ଗଳ୍ପ ସଙ୍ଗାଳୀ ଏବଂ କବିତା ସଂକଳନ 'ଉପାୟନ' । ତାଙ୍କ ପ୍ରତିଭାର ଅନ୍ୟଏକ ନିଦର୍ଶନ ହେଲା- ସେ ଜଣେ ପ୍ରକାଶିକା । ରେଣୁବାଳା ପ୍ରକାଶନୀର ସେ ନିର୍ଦ୍ଦେଶିକା ଅଛନ୍ତି । ନିଜର ପ୍ରତିଭାଯୋଗୁଁ ସେ ଛୋଟ ବଡ଼ ବହୁ ଅନୁଷ୍ଠାନରୁ ପୁରସ୍କୃତ ଓ ସମ୍ମାନିତ ହୋଇଛନ୍ତି ।

## ଶ୍ରୀ ଅକ୍ଷୟ କୁମାର ପାତ୍ର (୧୯୬୬):

ଅକ୍ଷୟ କୁମାର ପାତ୍ରଙ୍କର ଜନ୍ମ ୧୯୬୬ ମସିହାରେ ହିନ୍ଦୋଳ ଉପଖଣ୍ଡର ଖଜୁରିଆକଟା ଠାରେ । ତାଙ୍କ ପିତାଙ୍କ ନାମ- ଶ୍ରୀ ଅଭିରାମ ପାତ୍ର ଓ ମାତା- ବସନ୍ତମଞ୍ଜରୀ ପାତ୍ର । ଶ୍ରୀଯୁକ୍ତ ପାତ୍ର ଇଂରାଜୀ ସାହିତ୍ୟରେ ଏମ୍.ଏ. ଡିଗ୍ରୀ ଲାଭପରେ ଅଧ୍ୟାପନା ବୃତ୍ତିରେ ଯୋଗଦେଇଛନ୍ତି । ଅଧ୍ୟାପନା ସହିତ କବିତା ଏବଂ ପ୍ରବନ୍ଧ ରଚନାରେ ସେ ସିଦ୍ଧହସ୍ତ । ତାଙ୍କ ପ୍ରକାଶିତ ଦୁଇଟି କବିତା ସଂକଳନ ହେଲା- 'କାଳେ ସରିଯିବ ବେଳ' ଏବଂ 'ମରୀଚିକାର ମର୍ମର' । ତାଙ୍କ କବିତା ଗୁଡ଼ିକ ସାଂପ୍ରତିକ ସମୟର ସ୍ୱରରେ ଅନୁରଣିତ । ମଣିଷ ଓ ସମାଜ ଜୀବନର ବହୁବିଧ ରୂପ ବିଭବ ଓ ବିଭିନ୍ନ ସମସ୍ୟା ଓ ସଂକଟର ସଫଳ ପରିପ୍ରକାଶ ତାଙ୍କ କବିତା ଗୁଡ଼ିକରେ ପରିଲକ୍ଷିତ । ସେ ଉଭୟ ଓଡ଼ିଆ ଏବଂ ଇଂରାଜୀ ଭାଷାରେ ଅନେକ ପ୍ରବନ୍ଧମାନ ମଧ୍ୟ ରଚନା କରିଚାଲିଛନ୍ତି ।

## ଶ୍ରୀ ଅଥୟ କୁମାର ସାହୁ (୧୯୬୯- ):

ଅଥୟ କୁମାର ସାହୁଙ୍କର ଜନ୍ମ ୧୯୬୯ ମସିହା ଫେବୃୟାରୀ ମାସ ୨୦ ତାରିଖରେ ଢେଙ୍କାନାଳ ଜିଲ୍ଲାର ସାଆନ୍ଦା ଅନ୍ତର୍ଗତ ଶିଆରୀମାଳିଆ ଗ୍ରାମରେ । ତାଙ୍କ ପିତାଙ୍କ ନାମ- ଶ୍ରୀ ନିଧି ସାହୁ ଓ ମାତା- ସଜନୀ ସାହୁ । ଶ୍ରୀଯୁକ୍ତ ସାହୁ ସାମ୍ବାଦିକତା ଓ ସମାଜ ସେବା କ୍ଷେତ୍ରରେ ନିଜକୁ ଉତ୍ସର୍ଗ କରିଛନ୍ତି । ସଂପ୍ରତି ସେ ମାଇକ୍ରୋମିଡ଼ିଆ ସଂସ୍ଥାର ନିର୍ଦ୍ଦେଶକ ଅଛନ୍ତି । ଏହି ସଂସ୍ଥା ମାଧ୍ୟମରେ ସେ ଢେଙ୍କାନାଳରେ ସାରସ୍ୱତ ଓ ସାଂସ୍କୃତିକ ଜାଗରଣ ଆଣିବାରେ ପ୍ରଚେଷ୍ଟା କରିଚାଲିଛନ୍ତି । ତାଙ୍କ ପ୍ରକାଶିତ ଏକମାତ୍ର କବିତା ସଂକଳନ- 'ଜୀବନ ଉର୍ମି-୧୯୯୮' ଏହି ସଙ୍କଳନଟିରେ ୩୭ ଗୋଟି କବିତା ରହିଛି । ଏହି କବିତା ଗୁଡ଼ିକରେ କବିଙ୍କର ବ୍ୟକ୍ତିଗତ ଜୀବନର ସ୍ୱପ୍ନ, ସମ୍ଭାବନା, ଆଶା-ଆକାଙ୍‌କ୍ଷାର ପ୍ରାଣବାଣୀ ପ୍ରକଟିତ ।

## ପ୍ରକାଶ ଚନ୍ଦ୍ର ସାହୁ (୧୯୭୦- ):

ପ୍ରକାଶ ଚନ୍ଦ୍ର ସାହୁଙ୍କର ଜନ୍ମ ୧୯୭୦ ମସିହାରେ ଢେଙ୍କାନାଳ ଜିଲ୍ଲା ଭୁବନର ଯମୁନାକୋଟ ଗ୍ରାମରେ । ଶ୍ରୀଯୁକ୍ତ ସାହୁ ଜଣେ ବହୁମୁଖୀ ପ୍ରତିଭାର ଅଧିକାରୀ । କବିତା, ନାଟକ, ଉପନ୍ୟାସ ଆଦି କ୍ଷେତ୍ରରେ ତାଙ୍କର ଦକ୍ଷତା ରହିଛି । ତାଙ୍କର କବିତା ସଂକଳନ ହେଲା- 'ଧର୍ଷଣ' । ଏହା ସହିତ 'କଦମ୍ବବନ' ଶୀର୍ଷକ ଏକ ଉପନ୍ୟାସ ମଧ୍ୟ ରହିଛି । ଶ୍ରୀଯୁକ୍ତ ସାହୁ ମୁଖ୍ୟତଃ ଜଣେ ନାଟ୍ୟକାର । ତାଙ୍କ ରଚିତ ନାଟ୍ୟକୃତି ଗୁଡ଼ିକ ହେଲା- ସମସ୍ୟାର ସମାଧାନ, ନୀଳିମା ନର୍ସିଂହୋମ୍, ପଚାମାଂସର ବାସ୍ନା, ବେକାର, ଲଙ୍କାର

ଶେଷ ଯୁଦ୍ଧ, ରଘୁବଂଶ ଇତ୍ୟାଦି । ତାଙ୍କ ନାଟକ ଗୁଡ଼ିକରେ ସମାଜ ଓ ମଣିଷ ଜୀବନର ବିଭିନ୍ନ ସମସ୍ୟା ଓ ସଙ୍କଟ ପ୍ରକଟିତ । ଏହା ସହିତ ପୌରାଣିକ ଚେତନା ମାଧ୍ୟମରେ ନାଟ୍ୟକାର ସାଂପ୍ରତିକ ସମାଜ ଜୀବନର ବାସ୍ତବ ରୂପଚିତ୍ର ପ୍ରକଟନ କରିପାରିଛନ୍ତି ।

**ନଜ୍‌ରୁଲ୍ ଇସ୍‌ଲାମ୍ (୧୯୭୧- ):**

ନଜ୍‌ରୁଲ୍ ଇସ୍‌ଲାମ୍ ଙ୍କ ଜନ୍ମ ୧୯୭୧ ମସିହା ଜୁନ୍ ମାସ ୨୪ ତାରିଖରେ ଢେଙ୍କାନାଳ ସହରର କାରିଗର ସାହିରେ । ତାଙ୍କ ପିତାଙ୍କ ନାମ- ଅବଦୁଲ୍ ସତାର ଖାନ୍ ଓ ମାତା- ତାହେରା ବେଗମ୍ । ନଜ୍‌ରୁଲ୍ କଳାରେ ସ୍ନାତକ ଡିଗ୍ରୀ ଏବଂ ଏଲ୍.ଏଲ୍.ବି. ଡିଗ୍ରୀ ଲାଭକରି ଶିକ୍ଷକତାକୁ ଜୀବନର ବ୍ରତରୂପେ ବରି ନେଇଛନ୍ତି । ଶିକ୍ଷକ ଜୀବନର ନୀତି ଓ ଆଦର୍ଶନିଷ୍ଠା ତାଙ୍କ ଲେଖନୀକୁ ବଳିଷ୍ଠ କରିଛି । ସେ ମୁଖ୍ୟତଃ ଜଣେ ଶିଶୁ ସାହିତ୍ୟିକ । ଶିଶୁ ମନସ୍ତତ୍ତ୍ୱ ଉପଯୋଗୀ କବିତା ଓ ଗଳ୍ପମାନ ସେ ରଚନା କରିଚାଲିଛନ୍ତି । 'ପିଲାଙ୍କ କବିତା' ତାଙ୍କର ଏକ ଶିକ୍ଷଣୀୟ ଶିଶୁ କବିତା । ଶିଶୁ ଉପଯୋଗୀ ବହୁ ଶିକ୍ଷଣୀୟ କବିତା ଏଥିରେ ସ୍ଥାନପାଇଛି । ତାଙ୍କ କବିତା ଗୁଡ଼ିକରେ ବ୍ୟକ୍ତି ଓ ସମାଜ ଜୀବନର ବହୁବିଧ ରୂପବିଭବ ସାଙ୍ଗକୁ ସାମାଜିକ ଅବ୍ୟବସ୍ଥା ଓ ତ୍ରୁଟିବିଚ୍ୟୁତି ବିରୁଦ୍ଧରେ ପ୍ରତିକ୍ରିୟା ଓ ପ୍ରତିବାଦ ମଧ୍ୟ ଫୁଟିଉଠିଛି । କବି ତାଙ୍କର ସାରସ୍ୱତ ପ୍ରତିଭାର ନିଦର୍ଶନ ସ୍ୱରୂପ ବହୁ ସାଂସ୍କୃତିକ ଏବଂ ସାରସ୍ୱତ ଅନୁଷ୍ଠାନରୁ ସମ୍ମାନ ଓ ସ୍ୱୀକୃତି ପାଇଛନ୍ତି । ନବପ୍ରଜନ୍ମର ସେ ଜଣେ ସଫଳ କବି ।

**ଶ୍ରୀ ସୁଶାନ୍ତ ମହାଳିକ (୧୯୭୬- ):**

ସୁଶାନ୍ତ ମହାଳିକଙ୍କର ଜନ୍ମ ୧୯୭୬ ମସିହାରେ ଢେଙ୍କାନାଳ ଜିଲ୍ଲାର ଆଦିପୁରା ଠାରେ । ତାଙ୍କ ପିତାଙ୍କ ନାମ- ବିନୋଦ କୁମାର ମହାଳିକ ଓ ମାତା- ନିରୂପମା ମହାଳିକ । ଶ୍ରୀଯୁକ୍ତ ମହାଳିକ ସ୍ନାତକ ଡିଗ୍ରୀ ଲାଭପରେ ଶିକ୍ଷକତାକୁ ନିଜ ଜୀବନର ବୃତ୍ତିରୂପେ ବରିନେଇଚନ୍ତି । ଶ୍ରୀଯୁକ୍ତ ମହାଳିକଙ୍କର ପ୍ରତିଭାର ନିଦର୍ଶନ ଗୁଡ଼ିକହେଲା- କାବ୍ୟ ଏବଂ ଉପନ୍ୟାସ ସମୂହ । 'ମେଞ୍ଚେମଳୟ' ତାଙ୍କର ଏକ ସାର୍ଥକ ଉପନ୍ୟାସ । ତାଙ୍କ ପ୍ରକାଶିତ ଦୁଇଟି କାବ୍ୟକୃତି ହେଲା- ମାନସତନ୍ଦ୍ରା ଏବଂ ରାଈରାଗିଣୀ । ରାଈରାଗିଣୀ (୨୦୦୦) ଏକ ପୌରାଣିକ କାବ୍ୟ । ଏହି କାବ୍ୟଟି ୧୪ ଗୋଟି ଛାନ୍ଦବିଶିଷ୍ଟ ଏବଂ ରୀତିଯୁଗୀୟ କାବ୍ୟଶୈଳୀରେ ରଚିତ । ଓଡ଼ିଆ କୃଷ୍ଣକାବ୍ୟ ପରଂପରାରେ ରଚିତ ଏହି କାବ୍ୟଟିରେ ରାଧାକୃଷ୍ଣଙ୍କର ଅପ୍ରାକୃତ ପ୍ରେମଲୀଳାର ରସମୟ ବର୍ଣ୍ଣନା କରାଯାଇଛି ।

## ଦେବୀପ୍ରସାଦ ନାୟକ (୧୯୭୬- ):

ଦେବୀପ୍ରସାଦଙ୍କର ଜନ୍ମ ୧୯୭୬ ମସିହାରେ ଢେଙ୍କାନାଳ ଜିଲ୍ଲାର 'ତରଭା'ଠାରେ । ତାଙ୍କ ପିତାଙ୍କ ନାମ- କିଶୋରଚନ୍ଦ୍ର ନାୟକ ଓ ମାତା - କମଳିନୀ ନାୟକ । ଦେବୀପ୍ରସାଦ ମୁଖ୍ୟତଃ ଜଣେ କବି । ତାଙ୍କ ରଚିତ କାବ୍ୟକୃତି ଗୁଡକ ହେଲା- ପ୍ରୀତି ପୂର୍ଣ୍ଣତୋୟା, ରୂପମୟୀ, ଏ ଆକାଶ ମୋର । 'ଏ ଆକାଶ ମୋର' କବିତା ସଂକଳନଟିରେ ୩୮ ଗୋଟି କବିତା ସ୍ଥାନିତ ହୋଇଛି । ଏହି କବିତା ଗୁଡ଼ିକରେ କବି ହୃଦୟର ଅନୁଭବ, ଅନୁଭୂତି ଓ ଭାବନାରାଜିର ପରିପ୍ରକାଶ ସହିତ କବିପ୍ରାଣରେ ଅନନ୍ତ ପ୍ରତି ମିଳିତ ହେବାର ପିପାସା ପ୍ରକଟିତ ହୋଇଛି । କବି ଅସୀମକୁ ନିଜ ଭିତରେ ସମୀଭୂତକରି ଧରିରଖିବାକୁ ପ୍ରଚଣ୍ଡ ଆସ୍ପୃହା ଓ ଆସ୍ପର୍ଦ୍ଧା କରିଛନ୍ତି । ସାଂପ୍ରତିକ ନବ ପ୍ରଜନ୍ମର ଜଣେ ଶକ୍ତିଶାଳୀ କବି ସେ ।

## ଶ୍ରୀ ରାଜୀବ ଗୋପାଳ ସ୍ୱାଇଁ (୧୯୭୭):

ରାଜୀବ ଗୋପାଳ ସ୍ୱାଇଁଙ୍କର ଜନ୍ମ ୧୯୭୭ ସମିହା ଅଗଷ୍ଟମାସ ୧୨ ତାରିଖରେ ଢେଙ୍କାନାଳ ଜିଲ୍ଲାର କୁରୁଣ୍ଟି ଗ୍ରାମରେ । ତାଙ୍କପିତାଙ୍କ ନାମ ଶ୍ରୀ ଚୈତନ୍ୟ ସ୍ୱାଇଁ ଓ ମାତା- ଚଞ୍ଚଳା ସ୍ୱାଇଁ । ଶ୍ରୀଯୁକ୍ତ ସ୍ୱାଇଁ ଗଣମାଧ୍ୟମରେ ସ୍ନାତକୋତ୍ତର ଏବଂ ଏମ୍.ବି.ଏ. ଡିଗ୍ରୀଲାଭକରି ସଂପ୍ରତି ବି.ଆର୍.ଜି. ର ପର୍ସନାଲ ମ୍ୟାନେଜର ଅଛନ୍ତି । ସେ ମୁଖ୍ୟତଃ ଜଣେ ଗାଳ୍ପିକ । ସମାଜ ଓ ମଣିଷ ଜୀବନର ବାସ୍ତବ, ସତ୍ୟଶୀଳ କଥାବସ୍ତୁକୁ ନେଇ ସେ ତାଙ୍କ ଗଳ୍ପମାନ ରଚନାକରିଛନ୍ତି । ତାଙ୍କ ରଚିତ ଏବଂ ପ୍ରକାଶିତ ଏକ ମହାର୍ଘ ଗଳ୍ପ ସଂକଳନ ହେଲା- ସତ ସପ୍ନର ରାତି (୨୦୦୯) । ଏଥିରେ ୧୮ ଗୋଟି ମନୋଜ୍ଞ ଗଳ୍ପ ସ୍ଥାନିତ ହୋଇଛି । ସେଗୁଡ଼ିକ ହେଲା- ଅମୃତ ବନ୍ଧନ, ସଂପତ୍ତି, ବରଯାତ୍ରୀ, ଅସ୍ତିତ୍ୱ, ବୁଢ଼ା, ଡ଼େଣାକଟା ଚଢ଼େଇର ଶେଷ ସ୍ୱର, ଅନ୍ୟଏକ ଚନ୍ଦ୍ରଭାଗା, ଭିନ୍ନ ଏକ କୋଣାର୍କ, ସତ ସପ୍ନର ରାତିଟିଏ, ଠିକଣା କାହିଁ, ନୀରବ ମୂର୍ଚ୍ଛନା, ବଳିଦାନ, ନୀଳପରୀ, ବାଲିଘର, କାହାଣୀ ଏକ ଘାସଫୁଲର ପ୍ରଭୃତି । ଏହିସବୁ ଗଳ୍ପ ଗୁଡ଼ିକ ଭିତରେ ସମସାମୟିକ ସମାଜ ଜୀବନର ବାସ୍ତବଚିତ୍ର ସହିତ ମଣିଷର ସ୍ୱାଭାବିକ ଆବେଗିକ ଆବେଦନ, ପ୍ରେମ-ପ୍ରଣୟ, ପ୍ରତାରଣା ଓ ଜୀବନ ଯନ୍ତ୍ରଣାର ସ୍ୱର ପ୍ରକଟିତ ।

## ଶ୍ରୀ ଅବନୀ କୁମାର ମିଶ୍ର (୧୯୭୮- ):

ଅବନୀ କୁମାର ମିଶ୍ରଙ୍କର ଜନ୍ମ ୧୯୭୮ ମସିହାରେ ଢେଙ୍କାନାଳ ସହରର 'ରଥଗଡ଼ା' ଠାରେ । ତାଙ୍କପିତା- ✓ ଶ୍ରୀଯୁକ୍ତ ବୈକୁଣ୍ଠନାଥ ମିଶ୍ର ଓ ମାତା- ତିଳୋତ୍ତମା ମିଶ୍ର ।

ଶ୍ରୀମାନ୍ ମିଶ୍ର କଳାରେ ସ୍ନାତକୋତ୍ତର ଡିଗ୍ରୀଲାଭ ସହିତ ଏଲ୍.ଏଲ୍.ବି. ଡିଗ୍ରୀ ଲାଭକରିଛନ୍ତି । ସାମ୍ବାଦିକତା ଓ ସମାଜସେବା କ୍ଷେତ୍ରରେ ସେ ନିଜକୁ ଉତ୍ସର୍ଗ କରିଦେଇଛନ୍ତି । ଶ୍ରୀମାନ୍ ମିଶ୍ର ଜଣେ ବହୁମୁଖୀ ପ୍ରତିଭାର ଅଧିକାରୀ । ସେ ଏକାଧାରରେ ଜଣେ କବି, ଗୀତିକାର, କଳାକାର, ପ୍ରାବନ୍ଧିକ, ସଂଗଠକ ଓ ଉପସ୍ଥାପକ । ଢେଙ୍କାନାଳର ସାରସ୍ୱତ ଓ ସାଂସ୍କୃତିକ ଜଗତକୁ ତାଙ୍କର ଅବଦାନ ସ୍ୱଳ୍ପ ହେଲେହେଁ, ମହାନ୍ । ଜଣେ ଅମାୟିକ, ଶାନ୍ତଶୀଳ, ଉଦାର ଭାବାପନ୍ନ ବ୍ୟକ୍ତିତ୍ୱର ସେ ଅଧିକାରୀ । ତାଙ୍କବ୍ୟକ୍ତିତ୍ୱର ସ୍ୱଚ୍ଛଛାପ ତାଙ୍କ ଗୀତିକା ଏବଂ କବିତାକୃତିରେ ପ୍ରକଟିତ । ଏହାସହିତ ଆଧାତ୍ମିକ ଚେତନା ଓ ବିମଳ ଭକ୍ତିଭାବନାର ଅମନ୍ଦ ମନ୍ଦାକିନୀ ତାଙ୍କ ଗୀତିକା ଏବଂ କବିତା ଗୁଡ଼ିକରେ ନିସୃତ । ଅବନୀ କୁମାର ମିଶ୍ରଙ୍କ ରଚିତ ସାରସ୍ୱତ କୃତି ଗୁଡ଼ିକ ହେଲା- ଜୀବନ ଜିଜ୍ଞାସା (କବିତା), ଶୈବକ୍ଷେତ୍ର କପିଳାସ (ପ୍ରବନ୍ଧ), ଶ୍ରୀ ବଳରାମ କଥାମୃତ, ମା' ଦକ୍ଷୀଣକାଳୀ ଲୀଳାମୃତ, କପିଳାସ ରସାମୃତ, ମା' ବ୍ରାହ୍ମଣୀ ଅମୃତବାଣୀ, ବାବା ପଞ୍ଚିମେଶ୍ୱର, ମହିମା କଥାସାଗର, ଝଙ୍କଡ଼ରୁ ଶ୍ରୀକ୍ଷେତ୍ର, ମା' ରାମଚଣ୍ଡୀ ପ୍ରଭୃତି । ଶ୍ରୀ ବଳରାମ କଥାମୃତ ଠାରୁ ମା' ରାମଚଣ୍ଡୀ ପର୍ଯ୍ୟନ୍ତ କାବ୍ୟିକ ରଚନା ଗୁଡ଼ିକ ମୁଖ୍ୟତଃ 'କମ୍ପାକ୍ଟ ଡିସ୍କ' ର ରୂପଲାଭ କରିଅଛି । ଏଗୁଡ଼ିକ ଉଭୟ ଦୃଶ୍ୟ ଓ ଶ୍ରାବ୍ୟ ଉପଯୋଗୀ ହୋଇଥିବାରୁ ସମାଜ ଜୀବନରେ ଏହାର ବହୁଳ ପ୍ରଭାବ ପଡିଅଛି । ଏ ରଚନା ଗୁଡ଼ିକରେ ମୁଖ୍ୟତଃ ବିଭିନ୍ନ କିମ୍ବଦନ୍ତୀ ଓ କାହାଣୀ ଗୀତିମୟ ରୂପ ନେଇଛି । ଏଗୁଡ଼ିକ ଆଧୁନିକ ହାଇଟେକ୍ -ସାହିତ୍ୟ ରଚନା ପରଂପରାର ଏକ ଏକ ସାର୍ଥକ ସୃଷ୍ଟି ।

**ଜୀବନ ଜିଜ୍ଞାସା (୧୯୯୯):** ଏହା ଏକ ଅମଳିନ କଳାକୃତି । ଏଥିରେ 'ମାନବ ଧର୍ମ' ଶୀର୍ଷକ ଏକ ପ୍ରବନ୍ଧ ସ୍ଥାନିତ ହେବାସହିତ 'ଜୀବନକଥା' ସମ୍ବଳିତ ଏକ ଦୀର୍ଘ କବିତା ସ୍ଥାନିତ ହୋଇଛି । 'ମାନବଧର୍ମ' ପ୍ରବନ୍ଧରେ ବିଶ୍ୱସୃଷ୍ଟିର ମୂଳାଧାର ପରଂବ୍ରହ୍ମ ଭଗବାନଙ୍କର ଅପାର ମହିମାର ପ୍ରକଟନ ସହିତ ତାଙ୍କର ସାଧୁସନ୍ଥ ପରିପାଳନ ଓ ଦୁଷ୍ଟଦଳନର ପ୍ରସଙ୍ଗ ମଧ ବର୍ଣ୍ଣିତ ହୋଇଛି । ଏହାସହିତ ପଥଭ୍ରଷ୍ଟ, ଧର୍ମାନ୍ଧ ମଣିଷ ସମାଜକୁ ସତ୍ୟର ପଥ ଓ ଶିଖର ଆରୋହଣ କରାଇବା ଅଭିଲକ୍ଷ୍ୟରେ ଭଗବାନ ଶ୍ରୀକୃଷ୍ଣଙ୍କ ଗୀତାବାଣୀ ପ୍ରସଙ୍ଗର ଉପସ୍ଥାପନା କରାଯାଇଛି । ମଣିଷ ସମାଜକୁ ଉପଯୁକ୍ତ କର୍ମ ସହିତ ଜ୍ଞାନ ଓ ଭକ୍ତି ମାର୍ଗରେ ଗତି କରିବାପାଇଁ ଆହ୍ୱାନ ଦିଆଯାଇଛି । ମୋଟାମୋଟିଭାବରେ ମଣିଷ ଜୀବନର ପ୍ରକୃତ ଲକ୍ଷ୍ୟ, ଆଦର୍ଶ ସହିତ ମାନବିକ ଭାବଚେତନାର ମନୋଜ୍ଞ ପରିପ୍ରକାଶ ଏଥିରେ ଘଟିଛି । 'ଜୀବନକଥା' ଦୀର୍ଘ କବିତାଟିରେ

କର୍ମ ଓ ଭଗବତ୍ ପ୍ରାପ୍ତି ହିଁ ମାନବଜନ୍ମର ମୁଖ୍ୟ ସଫଳତା ବୋଲି କବି ସୂଚିତ କରିଛନ୍ତି । କବି ମଣିଷଜୀବନର ନିଗୂଢ଼ ଜନ୍ମରହସ୍ୟ ସହିତ ନିର୍ଗୁଣ-ନିରାକାର ପରଂବ୍ରହ୍ମ ପୁରୁଷଙ୍କର ଜୀବଜଗତ ସୃଷ୍ଟିର ଲୀଳା, ରହସ୍ୟର ଉନ୍ମୋଚନ କରିବାର ପ୍ରୟାସ କରିଛନ୍ତି । ଦୃଢ଼ ଈଶ୍ୱର ବିଶ୍ୱାସ, ଭଗବତ ଆରାଧନା ଓ ହୃଦୟର ଭକ୍ତିଭାବନାରେ ଏହି କବିତାଟି ମହାର୍ଘମଣ୍ଡିତ ହୋଇପାରିଛି । ଏହି କବିତାଟି ମାନବିକ ମହାଦ୍ୟୁତିର ମହାପ୍ଲାବନରେ ଏକ ଅଖଣ୍ଡ କଳାକଲ୍ଲୋଳର ଗୌରବ ଲାଭକରିପାରିଛି । ଜୀବନର ବିଭିନ୍ନ ଜଟିଳ ଜିଜ୍ଞାସା, ଆତ୍ମିକ ଅନ୍ୱେଷା କବିତାର କା' ନେଇ ସ୍ରଷ୍ଟା ହୃଦୟ କନ୍ଦରରୁ ଅମନ୍ଦ ମନ୍ଦାକିନୀ ରୂପେ ଝରିଆସିଛି । ଏହି ସୁଦୀର୍ଘ କବିତାଟି ସାଙ୍ଗୀତିକ ମୂର୍ଚ୍ଛନାରେ ଝଂକୃତହୋଇ ବେଶ୍ କାବ୍ୟିକ ଆବେଦନକ୍ଷମ, ଭକ୍ତିସ୍ନାତ ଓ ରସାଣିତ ହୋଇପାରିଛି। ଭାଷାର ସାରଲ୍ୟ, ଭାବପ୍ରକାଶର ସ୍ୱଚ୍ଛନ୍ଦ, ସାବଲୀଳ ଅଭିବ୍ୟକ୍ତି, କବିତାର ସରଳ, ତରଳ ସ୍ୱଚ୍ଛନ୍ଦ ଗତି ଏହି ଦୀର୍ଘ କବିତାଟିକୁ ପ୍ରକୃତ କବିତାର ପର୍ଯ୍ୟାୟବାଚୀ କରିପାରିଛି । ବାସ୍ତବରେ ଏହି କବିତାଟି କବିଙ୍କର ଆତ୍ମିକ ଜିଜ୍ଞାସା, ଆତ୍ମ ଅନ୍ୱେଷା, ହୃଦୟର ଭକ୍ତିଭାବନା ଓ ମାନବିକତାର ମହାଦ୍ୟୁତିରେ ସମୃଦ୍ଧ, ଋଦ୍ଧିମନ୍ତ, ଉଜ୍ଜ୍ୱଳ ଓ ଉର୍ଜ୍ଜସ୍ୱଳ ହୋଇପାରଛି । ତାଙ୍କର 'ଶୈବକ୍ଷେତ୍ର' ପ୍ରବନ୍ଧଟି କପିଳାସପୀଠ ସମ୍ପର୍କୀତ ଏକ ପ୍ରାମାଣିକ ଗ୍ରନ୍ଥ । ଏଥିରେ ପୁରାଣ, ଇତିହାସ ଓ କିମ୍ବଦନ୍ତୀର ମନୋଜ୍ଞ ସମନ୍ୱୟ ଘଟିଛି । ଏହିସବୁ ରଚନା ଗୁଡ଼ିକ ସହିତ ଶ୍ରୀମାନ୍ ମିଶ୍ର ଧର୍ମ, ଦର୍ଶନ, ସଂସ୍କୃତି ଓ ମହନୀୟ ପୁରୁଷ ମାନଙ୍କର ଜୀବନୀ ସମ୍ପର୍କୀତ ପ୍ରବନ୍ଧମାନ ମଧ୍ୟ ରଚନା କରିଛନ୍ତି । ନିଜର ସାରସ୍ୱତ ପ୍ରତିଭା ଏବଂ ସମାଜ ସେବାପାଇଁ ସେ ବହୁ ସାରସ୍ୱତ ଓ ସାଂସ୍କୃତିକ ଅନୁଷ୍ଠାନ ମାନଙ୍କରୁ ବହୁବାର ପୁରସ୍କୃତ ଓ ସମ୍ମାନିତ ହୋଇଛନ୍ତି ।

**ଦିନେଶ ଦାସ (୧୯୭୬- ):**

ଦିନେଶ ଦାସଙ୍କର ଜନ୍ମ ୧୯୭୬ ମସିହା ଜୁଲାଇ ମାସ ୭ ତାରିଖରେ ଢେଙ୍କାନାଳ ଜିଲ୍ଲାର ହିନ୍ଦୋଳ ଉପଖଣ୍ଡର 'ପଡ଼ା' ଗ୍ରାମରେ । ତାଙ୍କ ପିତାଙ୍କ ନାମ- ଶ୍ରୀ ନିତ୍ୟାନନ୍ଦ ଦାସ ଓ ମାତା- ପ୍ରମିଳା ଦାସ । ଦିନେଶ କଳାରେ ସ୍ନାତକ ଡିଗ୍ରୀ ସହିତ ସାମ୍ବାଦିକତା ଓ ଗଣଯୋଗାଯୋଗରେ ମଧ୍ୟ ଶିକ୍ଷାଲାଭ କରିଛନ୍ତି । ସେ ଏକାଧାରରେ ଜଣେ ସାମ୍ବାଦିକ, ସମାଜସେବୀ, ଦକ୍ଷ ସଙ୍ଗଠକ, ନାଟ୍ୟକାର ଓ ନାଟ୍ୟନିର୍ଦ୍ଦେଶକ । ନାଟକ ରଚନା ଓ ନିର୍ଦ୍ଦେଶନା ପାଇଁ ସେ ବହୁ ସାରସ୍ୱତ ଏବଂ ସାଂସ୍କୃତିକ ଅନୁଷ୍ଠାନରୁ ସମ୍ମାନୀତ ଓ ପୁରସ୍କୃତ ହୋଇଛନ୍ତି । ଶ୍ରୀଯୁକ୍ତ ଦାସଙ୍କ ପ୍ରକାଶିତ ନାଟ୍ୟକୃତି ଗୁଡ଼ିକ ହେଲା-

ତୁଠପଥର, ଆତଙ୍କ, ସୁଧିସାବଧାନ, ଯାତନା ନଈ, ଅନୁତାପର ଅଶ୍ରୁ, ଶୁଣ ସୁଜନେ ଦେଇ ମନ, ଡେଥ୍ ସେଣ୍ଟେନସ୍, ଅ-ଆ-ଇ, ମାୟା ଏବଂ ପୁନଶ୍ଚ ସତ୍ୟାଗ୍ରହ । ଏଗୁଡ଼ିକ ବ୍ୟତୀତ ତାଙ୍କର ଆହୁରି ଅନେକ ଅପ୍ରକାଶିତ ନାଟକ ରହିଛି ।

ଶ୍ରୀଯୁକ୍ତ ଦାସଙ୍କର ନାଟକ ଗୁଡ଼ିକରେ ଜୀବନର ବାସ୍ତବତା ଓ ସାମାଜିକ ଅଙ୍ଗୀକାରବଦ୍ଧତାର ଶାଣିତ ସ୍ୱର ଫୁଟିଉଠିଛି । ସମାଜ ଓ ବ୍ୟକ୍ତି ଜୀବନର ବହୁବିଧ ସମସ୍ୟା, ସଙ୍କଟ ଓ ଜୀବନ ସଂଗ୍ରାମର ରୂପାୟନ ସହିତ ସ୍ୱାଧୀନତା ପରବର୍ତ୍ତୀ ସମୟର ସ୍ୱପ୍ନ ଓ ସ୍ୱପ୍ନଭଙ୍ଗ, ଗଣତନ୍ତ୍ର ଶାସନର ବିଫଳତା, ରାଜନୈତିକ ଶଠତା ଓ ଭ୍ରଷ୍ଟାଚାର, ଗାନ୍ଧୀବାଦର ବିପର୍ଯ୍ୟୟ, ମଣିଷର ଚାରିତ୍ରିକ ଓ ନୈତିକ ଅଧୋପତନ ସର୍ବୋପରି ମାନବିକ ମୂଲ୍ୟବୋଧର ଅବକ୍ଷୟର ଚିତ୍ର ତାଙ୍କ ନାଟକ ଭିତରେ ପ୍ରକଟିତ ।

**ତୁଠପଥର :** ଏହା ୧୦ ଗୋଟି ଦୃଶ୍ୟ ସମ୍ବଳିତ ଏକ ଛୋଟ ନାଟକ ।ଏଥିରେ ଆଧୁନିକ ବସ୍ତୁବାଦୀ ମଣିଷର ଅର୍ଥଗତ ମୋହ, ପ୍ରାଚୁର୍ଯ୍ୟ ଲାଳସା ଓ ଦୈହିକ କାମ-ବାସନାର ବିଡ଼ମ୍ବିତ ଚିତ୍ର ପ୍ରକଟିତ । ପାର୍ଥିବ ସୁଖ-ସମ୍ଭୋଗର ମୋହ, ଗ୍ଲାମର୍ ଦୁନିଆଁର ଆକର୍ଷଣ କିପରି ନାରୀ ଜୀବନକୁ ବିଡ଼ମ୍ବିତ, ପର୍ଯ୍ୟୁଷିତ ଓ ପୂତିଗନ୍ଧମୟ କରିଦିଏ, ତାହା ନାଟ୍ୟକାର 'ମାଣିକ' ଚରିତ୍ର ମାଧମରେ ପ୍ରକଟିତ କରିଛନ୍ତି ।

**ଆତଙ୍କ :** ଏହା ଦଶଗୋଟି ଦୃଶ୍ୟ ସମ୍ବଳିତ ଏକ ଛୋଟ ନାଟକ । ଏ ନାଟକରେ ଗଣତାନ୍ତ୍ରିକ ଶାସନ ବ୍ୟବସ୍ଥାର ତ୍ରୁଟି-ବିଚ୍ୟୁତି ସହିତ ଭ୍ରଷ୍ଟ ରାଜନେତା ମାନଙ୍କର ଚାରିତ୍ରିକ ତ୍ରୁଟି ଓ ନୈତିକ ଅଧୋଗତିର ଦିଗଟିକୁ ନାଟ୍ୟକାର ଦର୍ଶାଇଛନ୍ତି । ଏ ନାଟକର ନାୟିକା ସନ୍ଧ୍ୟା, ମନ୍ତ୍ରୀ ମଙ୍ଗରାଜର କାମଲାଳସାର ଶିକାର ହୋଇଛି । ମନ୍ତ୍ରୀ ଏବଂ ତାଙ୍କ ଗୁଣ୍ଡାମାନେ ସନ୍ଧ୍ୟାକୁ ଧର୍ଷଣ, ତାକୁ ହତ୍ୟାକରି ନିରୀହ 'ସଞ୍ଜୟ' ମୁଣ୍ଡରେ ଏହି ଧର୍ଷଣ ଓ ହତ୍ୟାର ଦୋଷ ଲଦିଦେଇଛନ୍ତି । ଯା'ଫଳରେ ସଞ୍ଜୟ ପଳାତକ ସାଜି ପ୍ରତିଶୋଧ ପରାୟଣ ହୋଇ ଆତଙ୍କ ଓ ସନ୍ତ୍ରାସର ପଥ ବାଛିନେଇଛି । ଏହି ନାଟକରେ ନାଟ୍ୟକାର ସାମାଜିକ ଅନ୍ୟାୟ, ଅସତ୍ୟ ଓ ଅମାନବିକତା ବିରୁଦ୍ଧରେ ସ୍ୱର ଉତ୍ତୋଳନକରି ସମାଜରେ ଶାନ୍ତି, ସଂହତି ଓ ମୈତ୍ରୀର ପ୍ରତିଷ୍ଠାପାଇଁ ଆହ୍ୱାନ ଦେଇଛନ୍ତି ।

**ସୁଧି ସାବଧାନ :** ଏହା ଏକଅଙ୍କ ବିଶିଷ୍ଟ ପ୍ରଚାରଧର୍ମୀ ଏକ ଛୋଟ ନାଟକ । କୋଇଲାଖଣି ଏବଂ ବିଭିନ୍ନ କଳ-କାରଖାନା ମାନଙ୍କରେ ଘଟୁଥିବା ଦୁର୍ଘଟଣାର ନିରାକରଣ ଓ ସୁରକ୍ଷାପ୍ରତି କିପରି ଧ୍ୟାନ ଦିଆଯାଇପାରିବ, ତାହା ନାଟ୍ୟକାର

ଏହି ନାଟକ ମାଧ୍ୟମରେ ସୂଚିତ କରିଛନ୍ତି । ଏହି ନାଟକଟିରେ ଚକୁଳିଆ ପଣ୍ଡା ଗୀତ ଓ ଦାସକାଠିଆ ଶୈଳୀ ର ପ୍ରୟୋଗ ହୋଇଛି ।

**ଯାତନା ନଈ :** ଏହା ସତରଗୋଟି ଦୃଶ୍ୟ ସମ୍ବଳିତ ଏକ ନାଟକ । ଏ ନାଟକରେ ନାଟ୍ୟକାର ଆଧୁନିକ ବସ୍ତୁତାନ୍ତ୍ରିକ, ସ୍ୱାର୍ଥସର୍ବସ୍ୱ, ଦୁର୍ନୀତିଗ୍ରସ୍ତ, ଅବକ୍ଷୟୀ ସମାଜକୁ ଏକ 'ଯାତନାନଈ' ରୂପେ ସୂଚିତ କରିଛନ୍ତି । ନାଟ୍ୟକାର ମାଙ୍କଡ଼ର ମଣିଷ ହେବା ଚିତ୍ର ପ୍ରସଙ୍ଗରେ ପଶୁ ହୃଦୟରେ ମାନବିକତାର ପରିସ୍ଫୁରଣ ଘଟାଇଛନ୍ତି । ପ୍ରାକାରାନ୍ତରେ ମଣିଷଠାରେ ଅମାନବିକତା, ସ୍ୱାର୍ଥପରତା ଓ ହିଂସ୍ର ପାଶବିକତା ବଢ଼ି ବଢ଼ି ଚାଲିଛି । ତେଣୁ ନାଟ୍ୟକାର ଏହି ନାଟକ ମାଧ୍ୟମରେ ବ୍ୟକ୍ତି ଓ ସମାଜ ଜୀବନର ପରିଶୁଦ୍ଧତା, ସଂସ୍କାର, ପରିମାର୍ଜନ ସହିତ ନୈତିକତା ଓ ମାନବିକତାର ପୁନଃ ପ୍ରତିଷ୍ଠା ଓ ଉତ୍ତରଣ କାମନା କରିଛନ୍ତି ।

**ଅନୁତାପର ଅଶ୍ରୁ :** ଏହା ୧୧ ଗୋଟି ଦୃଶ୍ୟ ସମ୍ବଳିତ ଛୋଟ ନାଟକ । ସାମାଜିକ ଶୋଷଣ, କଷଣ, ନାରୀନିର୍ଯାତନା ଓ ଜୀବନ ଯନ୍ତ୍ରଣାର ମାର୍ମିକ ଚିତ୍ର- ଏ ନାଟକରେ ପ୍ରକଟିତ । ଏ ନାଟକର ନାୟକ ସୂରଜ ଏବଂ ନାୟିକା ସନ୍ଧ୍ୟା ଅନ୍ୟାୟ, ଅତ୍ୟାଚାର ର ଶିକାର ହୋଇ ପ୍ରତିଶୋଧପରାୟଣା ହୋଇଉଠିଛନ୍ତି । ନରମାଂସଲୋଭି ଇଞ୍ଜିନିୟର ରାହୁ କ୍ରିଷ୍ଣମୂର୍ତ୍ତି ନିଜର ଅଧସ୍ତନ କର୍ମଚାରୀ ସୂରଜର ନବ ବିବାହିତାପତ୍ନୀ ସନ୍ଧ୍ୟାକୁ ଧର୍ଷଣ କରିଛି । ମାତ୍ର- ନ୍ୟାୟାଳୟରେ ନ୍ୟାୟ ନ ପାଇବା କାରଣରୁ ସୁରଜ ଏବଂ ସନ୍ଧ୍ୟା ପ୍ରତିଶୋଧପରାୟଣା ହୋଇ ଇଞ୍ଜିନିୟର ରାହୁ କ୍ରିଷ୍ଣମୂର୍ତ୍ତିର ଦୁଇ ଶିଶୁପୁତ୍ର ଏବଂ ପତ୍ନୀକୁ ହତ୍ୟାକରି ସାରାଜୀବନ ଜେଲ୍ ର ଅନ୍ଧାରୀ କୋଠରୀର ଚାରିକାନ୍ଥ ଭିତରେ ଅନୁତାପର ଅଶ୍ରୁ ଢ଼ାଳିଛନ୍ତି ।

**ଶୁଣ ସୁଜନେ ଦେଇ ମନ :** ଏହା ୧୦ ଗୋଟି ଦୃଶ୍ୟ ସମ୍ବଳିତ ଯୌତୁକ ସମସ୍ୟାଧର୍ମୀ ଏକ ସାମାଜିକ ନାଟକ । ସମାଜର ଯୌତୁକ ସମସ୍ୟା ଓ ଯୌତୁକ ରାକ୍ଷାସର ସର୍ବଗ୍ରାସୀ କ୍ଷୁଧା କିପରି ଗୋଟିଏ ମଧ୍ୟବିତ୍ତ ପରିବାରର ସୁଖ-ସୌଭାଗ୍ୟକୁ ବିନିଷ୍ଟ କରିଦେଇଛି- ତାହା ନାଟ୍ୟକାର ଏହି ନାଟକ ମାଧ୍ୟମରେ ଦର୍ଶାଇଛନ୍ତି । ଏହି ଯୌତୁକ ସମସ୍ୟା ସହିତ ମଦ୍ୟପାନ ଓ ବିଭିନ୍ନ ନିଶା ସେବନ ବିରୁଦ୍ଧରେ ମଧ ନାଟ୍ୟକାର ଦୃଢ଼ ପ୍ରତିବାଦର ସ୍ୱର ତୋଳିଛନ୍ତି ।

**ଡେଥ୍ ସେଣ୍ଟେନସ୍ (ପ୍ରକାଶ- ୨୦୧୨):** ଏହା ଏକଅଙ୍କ ବିଶିଷ୍ଟ ଏକ ଛୋଟ ନାଟକ । ଏ ନାଟକଟିରେ ନାଟ୍ୟକାର ନ୍ୟାୟିକ ବ୍ୟବସ୍ଥାର ବିଭିନ୍ନ ତ୍ରୁଟି-ବିଚ୍ୟୁତିର ଦିଗ

ଦର୍ଶାଇବା ସହିତ ଜଣେ ନିଃରପରାଧ ବ୍ୟକ୍ତି କିପରି ମିଥ୍ୟା ସାକ୍ଷ୍ୟ-ପ୍ରମାଣ ବଳରେ ଫାଶୀଦଣ୍ଡାଦେଶ ପାଇଛି, ତାହା ଦର୍ଶାଇଛନ୍ତି ।

**ଅ-ଆ-ଈ (ପ୍ରକାଶ-୨୦୧୫):** ଏହା ଏକଅଙ୍କ ବିଶିଷ୍ଟ ଏକ ଛୋଟ ନାଟକ । ଏହି ନାଟକର ଚରିତ୍ର ଚିତ୍ରଶାଳାରେ ୧୨ଗୋଟି ଚରିତ୍ର ଦୃଶ୍ୟମାନ ହୋଇଛନ୍ତି । ପିତୃ-ମାତୃ ପରିଚୟହୀନ ଏକ ଜାରଜ ସନ୍ତାନର ସମ୍ଭାବନାହୀନ, ବିପର୍ଯ୍ୟସ୍ତ ଜୀବନଚିତ୍ର ମାଧ୍ୟମରେ ନାଟ୍ୟକାର ମଣିଷ ଜୀବନର ପ୍ରକୃତ ସତ୍ୟ, ତା' ଜୀବନର ଧର୍ମ ଓ ମାନବିକତାର ଅସଲ ସୂତ୍ର ଆବିଷ୍କାର କରିବାର ପ୍ରୟାସ କରିଛନ୍ତି । ପିତୃ-ମାତୃତ୍ୱର ପରିଚୟବିନା ଜାରଜ ସନ୍ତାନ 'ମୁକ୍ତି' ଭଳି ଚରିତ୍ରମାନେ ଅ-ଆ-ଈ ର ସଂକୀର୍ଣ୍ଣ ଗଣ୍ଡି ମଧ୍ୟରୁ ଉପରକୁ ଉଠିବାର ସୁଯୋଗରୁ ବଞ୍ଚିତ ହୁଅନ୍ତି । ସାମାଜିକ ଅବହେଳା ଓ ସ୍ନେହ-ସୌହାର୍ଦ୍ଦ୍ୟରୁ ବଞ୍ଚିତହୋଇ ସେମାନଙ୍କର ଜୀବନ ବିଡ଼ମ୍ବିତ ଓ ପର୍ଯ୍ୟୁଷିତ ହୋଇଯାଏ । ତେଣୁ ନାଟ୍ୟକାର 'ମୁକ୍ତି' କୁ ପିତୃତ୍ୱର ପରିଚୟ ଓ ମାତୃତ୍ୱର ଅମୃତମୟ ସ୍ୱାଦ ଦେବାପାଇଁ ତନୁ ଏବଂ ମନୋଜକୁ ପ୍ରତିବଦ୍ଧ କରାଇଛନ୍ତି । 'ମୁକ୍ତି' ଭଳି ଚରିତ୍ରମାନେ ନୂଆ ଦୁନିଆଁରେ ପାଦଦେବାର ଉଜ୍ଜ୍ୱଳ ସମ୍ଭାବନାକୁ ନାଟ୍ୟକାର ଦର୍ଶାଇଛନ୍ତି । ବାସ୍ତବରେ ଏନାଟକଟି ବେଶ୍ ବଳିଷ୍ଠ, ଆବେଦନକ୍ଷମ ଓ ଶିକ୍ଷଣୀୟ ହୋଇପାରିଛି ।

**ମାୟା (ପ୍ରକାଶ-୨୦୧୫):** ଏହା ୫ଗୋଟି ଦୃଶ୍ୟ ସମ୍ବଳିତ ଏକ ଛୋଟ ନାଟକ । ଏହାର ଚରିତ୍ର ଗ୍ୟାଲେରୀରେ ୧୦ ଗୋଟି ଚରିତ୍ର ଆତଯାତ ହୋଇଛନ୍ତି । ଆମ ଶାସନ ବ୍ୟବସ୍ଥାର ତ୍ରୁଟି-ବିଚ୍ୟୁତିର ପ୍ରକଟନ ସହିତ ତ୍ରୁଟିପୂର୍ଣ୍ଣ ଶିକ୍ଷା ଓ ଅନୁଦାନ ନୀତି ବିରୁଦ୍ଧରେ ନାଟ୍ୟକାର ସ୍ୱର ଉତ୍ତୋଳନ କରିଛନ୍ତି । ସରକାରଙ୍କର ତ୍ରୁଟିପୂର୍ଣ୍ଣ ଅନୁଦାନ ନୀତିର ଶିକାର ହୋଇ କିପରି ଜଣେ ଅଧ୍ୟାପକର ଜୀବନ ଓ ତା'ର ପରିବାର ଦୁଃଖ-ଦୁର୍ଦ୍ଦଶା ପୂର୍ଣ୍ଣ. ସ୍ୱପ୍ନ ଓ ସମ୍ଭାବନା ବିହୀନ, ଦୁର୍ବହ, ଦୁର୍ବିସହ ଜୀବନ ବଞ୍ଚନ୍ତି - ତାହା ନାଟ୍ୟକାର ଏହି ନାଟକ ମାଧ୍ୟମରେ ସୂଚିତ କରିଛନ୍ତି ।

**ପୁନଶ୍ଚ ସତ୍ୟାଗ୍ରହ (୨୦୧୫):** ଏହା ଏକ ଚରିତ୍ର ବହୁଳ ଛୋଟ ନାଟକ । ଆଧୁନିକ ମଣିଷର ବସ୍ତୁବାଦୀ ମୋହ, ସ୍ୱାର୍ଥସର୍ବସ୍ୱ ଚିନ୍ତାଧାରା, ଅର୍ଥ ଓ ସଂପଦ ତୃଷ୍ଣା, ହିଂସ୍ର-ପାଶବିକତା, ନୈତିକ ଅଧୋଗତି, ଗାନ୍ଧୀବାଦର ବିଲୟ ଓ ମାନବିକତାର ଅବକ୍ଷୟ ଦିଗଟିକୁ ନାଟ୍ୟକାର ଏହି ନାଟକ ମାଧ୍ୟମରେ ସୂଚିତ କରିଛନ୍ତି । ସ୍ୱାଧୀନତାର ୬୮ ବର୍ଷ ପରେ ବି ରାମରାଜ୍ୟର ପ୍ରତିଷ୍ଠା ଓ ମହାନ୍ ଭାରତବର୍ଷ ଗଠନର ସ୍ୱପ୍ନ ସାକାର ହୋଇପାରିନାହିଁ । ସୁନାର ଭାରତବର୍ଷ ଆଜି ମୁଠାଏ ପୋଡ଼ାମାଟି ଭଳି ମନେହେଉଛି ।

ଆର୍ଯ୍ୟାବର୍ତ୍ତର ଉତ୍ତର ଦାୟାଦମାନେ ସତେଯେପରି ନିର୍ବୀର୍ଯ୍ୟ, ନିଷ୍କ୍ରିୟ, ପଙ୍ଗୁ, ଅଥର୍ବ ପାଲଟି ଯାଇଛନ୍ତି । ସମାଜ, ସଂସ୍କୃତି, ଧର୍ମ, ରାଜନୀତି ସବୁ କଳୁଷିତ । ଏହି ପରିପ୍ରେକ୍ଷାରେ ନାଟ୍ୟକାର ଏକ ନୂତନ ସଂଗ୍ରାମପାଇଁ ପୁନଶ୍ଚ ଏକ ସତ୍ୟାଗ୍ରହର ଆହ୍ୱାନ ଦେଇଛନ୍ତି । ମୋଟା ମୋଟି ଭାବେରେ ଏକ ନୂତନ ମହାନ୍ ଭାରତବର୍ଷର ଗଠନ ପାଇଁ ଯେ' ଆଉ ଏକ ସତ୍ୟାଗ୍ରହର ଆବଶ୍ୟକତା ରହିଛି- ତାହା ନାଟ୍ୟକାର ଏଥିରେ ସୂଚାଇ ଦେଇଛନ୍ତି ।

**ପ୍ରଜ୍ଞାପ୍ରବର୍ତ୍ତିକା ଦାସ (୧୯୮୦- ):**

ପ୍ରଜ୍ଞାପ୍ରବର୍ତ୍ତିକାଙ୍କର ଜନ୍ମ ୧୯୮୦ ମସିହା ଜୁଲାଇ ମାସ ୧୫ ତାରିଖରେ ଢେଙ୍କାନାଳ ଜିଲ୍ଲାର କାମାକ୍ଷାନଗରଠାରେ । ସେ ଇଂରାଜୀ ସାହିତ୍ୟରେ ସ୍ନାତକୋତ୍ତର ଡିଗ୍ରୀଲାଭ ସହିତ ପି.ଏଚ୍.ଡ଼ି. ଡିଗ୍ରୀମଧ ଲାଭକରିଛନ୍ତି । ସଂପ୍ରତି ସେ ଅଧାପନା କାର୍ଯ୍ୟରେ ବ୍ରତୀ ରହିଛନ୍ତି । ସେ ଏକାଧାରରେ ଜଣେ କବି ଓ କଥାକାର । କବିତା, ଗଳ୍ପ, ଉପନ୍ୟାସମାନ ରଚନାରେ ତାଙ୍କ ଲେଖନୀ ଗତିମୁଖର । ତାଙ୍କ ପ୍ରକାଶିତ କବିତା ସଂକଳନ 'ତୁମପାଇଁ' ଏକ ମହାର୍ଘ କଳାକୃତି । ତାଙ୍କର ଏକ ପ୍ରମୁଖ ଗଳ୍ପ ସଂକଳନ ହେଲା- ଦୁଷ୍ଟପରୀ ଓ ଅନ୍ୟାନ୍ୟ କାହାଣୀ । ତାଙ୍କ ରଚିତ ଉପନ୍ୟାସ ଗୁଡ଼ିକ ହେଲା- ନୂଆ ସକାଳ, ଶେଷଚିଠି, ପ୍ରତିଚୀର ସୂର୍ଯ୍ୟ, ବହ୍ନିକନ୍ୟା, ତଥାପି ପୁନଶ୍ଚ ।

**ଶୁଚିସ୍ମିତା ମିଶ୍ର (୧୯୮୦- ):**

ଶୁଚିସ୍ମିତା ମିଶ୍ରଙ୍କର ଜନ୍ମ ୧୯୮୦ମସିହା ଅକ୍ଟୋବର ମାସ ୧୦ ତାରିଖରେ ଢେଙ୍କାନାଳ ସହରର କୁଞ୍ଜକାନ୍ତଠାରେ । ତାଙ୍କ ପିତା- ଶ୍ରୀ ଗଗନ ବିହାରୀ ନନ୍ଦ ଓ ମାତା - ଅନିମା ନନ୍ଦ । ଶୁଚିସ୍ମିତା ମୁଖ୍ୟତଃ ଜଣେ କବି । ତାଙ୍କ ପ୍ରକାଶିତ କବିତା ସଂକଳନ- କସ୍ତୁରୀ (୨୦୦୯) । ଏଥିରେ ୨୫ ଗୋଟି କବିତା ସ୍ଥାନିତ ହୋଇଛି । ସେଗୁଡ଼ିକ ହେଲା- ଜନ୍ମଦାତା, ଅସ୍ତିତ୍ୱ, ନନା, ଆଜିବି ଖୋଜୁଛି, ନୂଆ ସକାଳ, ବର୍ଷା, ସ୍ୱପ୍ନ, ଶୀତ ଆସିଗଲା, ହାଏରେ ଆଜିର ନାରୀ, ଆତ୍ମ ବିଶ୍ଳେଷଣ, ତୁମପାଇଁ କବିତାଟିଏ, ସେଇ ସନ୍ଧ୍ୟା, ଏକାନ୍ତ, ବାସ୍ତବତା, ଅଜ୍ଞାତବାସ, ମନର ମଣିଷ, ମୁଁ ଏକାକୀ ନୁହେଁ, ମଣିଷ ଓ ଈଶ୍ୱର, କୁନ୍‌ମୁନି, ସ୍ମୃତି, କ୍ଷୋଭ ପ୍ରଭୃତି । ଏହିସବୁ କବିତା ଗୁଡ଼ିକ ଭିତରେ କବିପ୍ରାଣର ଆଶା, ଆକାଙ୍‌କ୍ଷା, ସପ୍ନ- ସମ୍ଭାବନା ଓ ଆବେଗମୟତା ଫୁଟିଉଠିଛି ।

ଏ ସମସ୍ତ ସ୍ରଷ୍ଟାମାନଙ୍କ ସହିତ ନିବେଦିତା ରଥ, ଓଁ ଈଶ୍ୱରୀ କବିକନ୍ୟା, ନିରଞ୍ଜନ ପତି, ବିରଞ୍ଚିନାରାୟଣ ସାମଲ, ପ୍ରଦୀପ କୁମାର ମହାପାତ୍ର ପ୍ରମୁଖ ନବ ପ୍ରଜନ୍ମର ସ୍ରଷ୍ଟାମାନେ ଢେଙ୍କାନାଳ ସାହିତ୍ୟର ଦିଗ ଓ ଦିଗନ୍ତକୁ ନିଜର ସାରସତ ପ୍ରତିଭାର ବର୍ଣ୍ଣବିଭାରେ ବର୍ଣ୍ଣୋତ୍ସବମୟ ଓ ମହିମୋଜ୍ଜ୍ୱଳ କରିଚାଲିଛନ୍ତି ।

## -: ପାଦଟୀକା :-

୧. (ସଂ) ପରେଶ ଚନ୍ଦ୍ର ପଟ୍ଟନାୟକ - ଶ୍ରୀବତ୍ସ ସଂଚୟନ, ମୁଖବନ୍ଧ

୨. ଶ୍ରୀବତ୍ସ ନାୟକ - ମୁହୂର୍ତ୍ତ, ଜଳମର୍ମର, ଶ୍ରୀବତ୍ସ ସଂଚୟନ, ପୃ-୭

୩. ତତ୍ରୈବ - ପୃ-୯

୪. ଶ୍ରୀବତ୍ସ ନାୟକ - କାଳବୈଶାଖୀ, ନିଶାନ୍ତ-ଶ୍ରୀବତ୍ସ ସଂଚୟନ-ପୃ-୧୬୬

୫. ଶ୍ରୀବତ୍ସ ନାୟକ - ସାରଥୀ ମୁକ୍ତି ରଥର, ନିଶାନ୍ତ, ତତ୍ରୈବ-ପୃ-୧୬୭

୬. ଶ୍ରୀବତ୍ସ ନାୟକ - ଆଗାମୀ କାଲିର ବାର୍ତ୍ତା, ନିଶାନ୍ତ, ତତ୍ରୈବ-ପୃ-୧୮୯

୭. ଶ୍ରୀବତ୍ସ ନାୟକ - ତୂର୍ଯ୍ୟନାଦ, ନିଶାନ୍ତ, ତତ୍ରୈବ-ପୃ-୨୨୮-୨୨୯

୮. ଶ୍ରୀବତ୍ସ ନାୟକ - ମଳୟ ଓ ମର୍ମର, ତତ୍ରୈବ-ପୃ-୫୪

୯. ପ୍ରବାସିନୀ ମହାକୁଡ - 'ଅହଂ', କେହିଜଣେ ସୁଭାଙ୍ଗୀ, ପୃ-୯

୧୦. ପ୍ରବାସିନୀ ମହାକୁଡ - 'ଶୋହଳ ବର୍ଷରେ', କେହିଜଣେ ସୁଭାଙ୍ଗୀ, ପୃ-୧୫

୧୧. ପ୍ରବାସିନୀ ମହାକୁଡ - 'ବିଷାଦ କବିତା', କେହିଜଣେ ସୁଭାଙ୍ଗୀ, ପୃ-୪୨

୧୨. ପ୍ରବାସିନୀ ମହାକୁଡ - 'ନାରୀ', କେହିଜଣେ ସୁଭାଙ୍ଗୀ, ପୃ-୮୦



# ସପ୍ତମ ଅଧ୍ୟାୟ

## (ଢେଙ୍କାନାଳର ମହିମାଧର୍ମ - ସାହିତ୍ୟ)

ମହିମାଧର୍ମ ଓଡ଼ିଶାର ଏକ ନିଜସ୍ୱ, ମୌଳିକ ଧର୍ମ । ଏହି ଧର୍ମ ଢେଙ୍କାନାଳ ମାଟିରୁ ଉତ୍ସରିତ ହୋଇ ସମଗ୍ର ଓଡ଼ିଶାଭୂଇଁକୁ ପରିପ୍ଲାବିତ ଓ ଅଭିମନ୍ତ୍ରିତ କରିଥିଲା । ଭାରତୀୟ ସନାତନ ହିନ୍ଦୁଧର୍ମର ଏହା ଏକ ସଂସ୍କାରିତ, ପରିମାର୍ଜିତ ଧର୍ମଧାରା । ଉପନିଷଦୀୟ ନିର୍ଗୁଣବ୍ରହ୍ମ ଚେତନା, ବେଦାନ୍ତ ସମ୍ମତ ବ୍ରାହ୍ମଧର୍ମର ଏକେଶ୍ୱରବାଦ ଓ ଉତ୍କଳୀୟ ପଞ୍ଚସଖାଙ୍କର ନିର୍ଗୁଣ-ବ୍ରହ୍ମ ଉପାସନାକୁ ଭିତ୍ତିକରି ଏହି ଧର୍ମ ଗଢ଼ିଉଠିଛି । ଏହିଧର୍ମରେ ମୁଖ୍ୟତଃ ନିର୍ଗୁଣ, ନିରାକାର, ଶୂନ୍ୟବ୍ରହ୍ମଙ୍କର ପରିକଳ୍ପନା ଓ ଉପାସନା କରାଯାଇଛି ।

ଉନ୍ନବିଂଶ ଶତାବ୍ଦୀ ବେଳକୁ ତତ୍କାଳୀନ ଓଡ଼ିଶାର ସାମାଜିକ, ସାଂସ୍କୃତିକ, ରାଜନୈତିକ, ଆଧ୍ୟାତ୍ମିକ ଓ ନୈତିକ ଜୀବନ ଘୋର ବିଡ଼ମ୍ବିତ, କଳୁଷିତ, ଦୁର୍ବହ ଓ ଦୁର୍ବିସହ ହୋଇଉଠିଥିଲା । ମୁସଲମାନ୍ , ମରହଟ୍ଟା ଓ ଇଂରେଜ ଶାସନ କାଳରେ ଓଡ଼ିଶାବାସୀ ସାମାଜିକ ଶୋଷଣ-କଷଣ ସହ ଧାର୍ମିକ ଉତ୍ପୀଡ଼ନ ଓ ସାଂସ୍କୃତିକ ବିପର୍ଯ୍ୟୟର ସମ୍ମୁଖୀନ ହୋଇଥିଲେ । ଓଡ଼ିଶାରେ ବିଜାତୀୟ ଖ୍ରୀଷ୍ଟଧର୍ମ ଓ ପାଶ୍ଚାତ୍ୟ ସଂସ୍କୃତିର ବହୁଳ ପ୍ରଭାବ ସହିତ ହିନ୍ଦୁଧର୍ମର ପୌତ୍ତଳିକତା, ବିଭିନ୍ନ ଅନ୍ଧବିଶ୍ୱାସ ଓ ସାମାଜିକ କୁ-ସଂସ୍କାର କ୍ରମେ ଆମ ଧର୍ମୀୟ ଜୀବନ, ସମାଜ ଓ ସାଂସ୍କୃତିକ ଜୀବନକୁ କଳୁଷିତ, ସଙ୍କଟଗ୍ରସ୍ତ ଓ ଅବକ୍ଷୟମୁଖୀ କରିପକାଇଲା । ସାଧାରଣ ଜନତା ହିନ୍ଦୁଧର୍ମର ଏହି ଅଧୋଗତି, ହିନ୍ଦୁମାନଙ୍କର ଧାର୍ମିକ ବିପର୍ଯ୍ୟୟ ଓ ସାଂସ୍କୃତିକ ଅବକ୍ଷୟରେ ବିବ୍ରତ ଓ ବିଚଳିତ ହୋଇପଡ଼ିଲେ । ଏକ ପରିବର୍ତ୍ତିତ ନୂତନ ଜୀବନବୋଧ ଓ ନୂତନ ଧର୍ମୀୟ ଚେତନାର ପ୍ରତୀକ୍ଷାରେ ଉତ୍କଳବାସୀ ରହିଥିଲେ । ଏହିଭଳି ଏକ ଧର୍ମ-ସଙ୍କଟର ସନ୍ଧିକ୍ଷଣରେ ଓଡ଼ିଶାର ଧର୍ମ ଦିଗ୍‌ବଳୟ ରେ ଏକ ନୂତନ ଧର୍ମୀୟ ଚେତନାର ଆତ୍ମପ୍ରକାଶ ଘଟିଥିଲା । ଯାହାକି - 'ସତ୍ୟ-ସନାତନ-ମହିମାଧର୍ମ' ନାମରେ ସୁବିଦିତ ହେଲା । ଏହି ସତ୍ୟ-ସନାତନ-ମହିମାଧର୍ମର ମୁଖ୍ୟ ପ୍ରବର୍ତ୍ତକ ଥିଲେ- ମହିମା ଗୋସ୍ୱାମୀ ବା ମହିମା ଗୋସାଇଁ । ଗବେଷକମାନେ ଏହି ମହିମା ଗୋସାଇଁଙ୍କୁ ସନ୍ଥ ମୁକୁନ୍ଦ ଦାସ

ରୂପରେ ଅଭିହିତ କରିଛନ୍ତି । ଯାହାଙ୍କର ପ୍ରକୃତ ନାମଥିଲା- ମୁକୁନ୍ଦ ମିଶ୍ର । ଯେ' କି ଜଣେ ପଶ୍ଚିମା ବ୍ରହ୍ମଣଥିଲେ । ଏହି ମୁକୁନ୍ଦ ମିଶ୍ର ବୈଷ୍ଣବଧର୍ମ ଗ୍ରହଣ କରି ନିଜକୁ ମୁକୁନ୍ଦ ଦାସ ରୂପେ ପରିଚିତ କରାଇଥିଲେ । ଖ୍ରୀ:ଅ: ୧୮୨୬ ବେଳକୁ ଏହି ମହିମା ଗୋସାଇଁ ବା ମହିମାସ୍ୱାମୀ ଉତ୍କଳୀୟ ସଂସ୍କୃତିର ପ୍ରାଣକେନ୍ଦ୍ର ପୁରୀଠାରେ ଆବିର୍ଭୂତ ହୋଇଥିବାର ଜଣାଯାଏ । ମହିମାଧର୍ମ-ଦର୍ଶନର ବିଶିଷ୍ଟ ଆଲୋଚକ ଓ ଗବେଷକ ଶ୍ରୀଯୁକ୍ତ ଶଙ୍କର୍ଷଣ ଜେନା ଏହି ମହିମା ଗୋସାଇଁଙ୍କୁ 'ଧୂଳିଆ ଗୋସାଇଁ' ରୂପରେ ଅଭିହିତ କରିଛନ୍ତି । ତାଙ୍କ ମତରେ- ମହିମାସ୍ୱାମୀ ଖ୍ରୀ:ଅ: ୧୮୨୬ ରେ ଓଡ଼ିଶାର ଆଧାତ୍ମିକପୀଠ ନୀଳାଚଳଧାମ ପୁରୀଠାରେ ଅବିଭୂତ ହୋଇଥିଲେ । ସେ ପୁରୀର ବିସ୍ତୀର୍ଣ୍ଣ ବଡ଼ଦାଣ୍ଡର ଧୂଳିରେ ଶୟନ କରୁଥିବାରୁ ତାଙ୍କୁ 'ଧୂଳିଆଗୋସାଇଁ' ରୂପେ ନାମିତ କରାଯାଇଥିଲା ।(୧) ମହିମା ଗୋସାଇଁ ପୁରୀଠାରେ ଅବସ୍ଥାନ କାଳରେ ପୁରୀର ମୁକ୍ତିମଣ୍ଡପଠାରେ ପଣ୍ଡିତମାନଙ୍କ ସମ୍ମୁଖରେ ପରଂବ୍ରହ୍ମଙ୍କ ସ୍ୱରୂପ ସଂପର୍କରେ ନୂତନ ଆଭିମୁଖ୍ୟ ଓ ପାଣ୍ଡିତ୍ୟପୂର୍ଣ୍ଣ ତଥ୍ୟ ଉପସ୍ଥାପନକରି ପଣ୍ଡିତମଣ୍ଡଳୀଙ୍କୁ ଚମତ୍କୃତ କରିଦେଇଥିଲେ । କ୍ରମେ ପୁରୀର ପଣ୍ଡିତ ମାନଙ୍କ ସହିତ ମହିମା ଗୋସାଇଁଙ୍କର ବିବାଦ ଓ ବିଦ୍ୱେଷ ସୃଷ୍ଟି ହୋଇଥିଲା । ଏହି ବିବାଦ ଓ ବିଦ୍ୱେଷ କାରଣରୁ ମହିମାସ୍ୱାମୀ ପୁରୀ ତ୍ୟାଗକରିବାକୁ ବାଧ ହୋଇଥିଲେ । ପୁରୀତ୍ୟାଗ ପରେ ସେ ଖଣ୍ଡଗିରି, ଉଦୟଗିରି, ଧଉଳିଗିରି ଆଦି ସ୍ଥାନମାନଙ୍କରେ ଅବସ୍ଥାନ କରି ଖ୍ରୀ:ଅ: ୧୮୩୮ ବେଳକୁ ଢେଙ୍କାନାଳ ଆଗମନ କରି ଢେଙ୍କାନାଳର ପ୍ରସିଦ୍ଧ ଶୈବକ୍ଷେତ୍ର କପିଳାସଠାରେ ଅବସ୍ଥାନ କରିଥିଲେ । କପିଳାସଠାରେ ମହିମାସ୍ୱମୀ ଆତ୍ମଯୋଗ ସମାଧି ରେ ନିବିଷ୍ଟ ରହି ବ୍ରହ୍ମଜ୍ଞାନ ଲାଭକରିଥିଲେ । ବ୍ରହ୍ମ ଜ୍ଞାନଲାଭ ଓ ବ୍ରହ୍ମତତ୍ତ୍ୱର ଉପଲବ୍ଧିପରେ ସେ 'ସତ୍ୟ-ସନାତନ ମହିମାଧର୍ମ' ର ପ୍ରଚାର ଓ ପରିପ୍ରସାର ପାଇଁ ପ୍ରଥମେ ଯୋରନ୍ଦା ଆଗମନକରି ସେଠାରେ ଅବସ୍ଥାନ କରିଥିଲେ । ତତ୍ପରେ ସେ ପଦବ୍ରଜରେ ଓଡ଼ିଶାର ବିଭିନ୍ନ ଅଞ୍ଚଳକୁ ଯାଇ ଏହିଧର୍ମର ପ୍ରଚାର କରିଥିଲେ । ତାଙ୍କରି ଉଦ୍ୟମରେ ଓଡ଼ିଶାର ସମାଜ, ସଂସ୍କୃତି, ଧର୍ମୀୟ ଜୀବନ ଓ ବ୍ୟକ୍ତିଗତ ଜୀବନରେ ବୈପ୍ଳବିକ ଆଲୋଡ଼ନ, ଆନ୍ଦୋଳନ, ବ୍ୟାପକ ପରିବର୍ତ୍ତନ, ଅଭିନବ ସଂସ୍କାର ଓ ନୂତନ ଜାଗରଣ ଆସିଥିଲା । ଢେଙ୍କାନାଳରେ ମଧ ମହିମାସ୍ୱାମୀଙ୍କୁ ମହିମାଧର୍ମ ବିଦ୍ୱେଷୀ ମାନଙ୍କ ଠାରୁ ପ୍ରବଳ ପ୍ରତିବାଦ ଓ ବିରୋଧର ସମ୍ମୁଖୀନ ହେବାକୁ ପଡ଼ିଥିଲା । ଢେଙ୍କନାଳର ମହିମା ବିଦ୍ୱେଷୀମାନଙ୍କ ସହିତ କଟକର ଖ୍ରୀଷ୍ଟଧର୍ମାବଲମ୍ବୀମାନେ ମଧ ମହିମାସ୍ୱାମୀଙ୍କ ବିରୋଧରେ ଅପପ୍ରଚାର ଓ ଷଡ଼ଯନ୍ତ୍ରମାନ କରିଥିଲେ । ଯା' ଫଳରେ କଟକର ତତ୍କାଳୀନ

କମିଶନର୍ ସାହେବ୍ ମହିମାସ୍ୱାମୀଙ୍କ ନାମରେ ଗିରଫ ପରୱାନା ମଧ୍ୟ ଜାରିକରିଥିଲେ । ଏହାପରେ ପରେ ମହିମାସ୍ୱାମୀ ଢେଙ୍କନାଳ ଛାଡ଼ି ସୁଦୂର ପଶ୍ଚିମ ଓଡ଼ିଶା ଯାତ୍ରାକରିଥିଲେ । ମହିମାସ୍ୱାମୀ ଢେଙ୍କାନାଳର ରାଜା ଭଗୀରଥ ମହୀନ୍ଦ୍ର ବାହାଦୂରଙ୍କ ଶାସନ କାଳରେ ଖ୍ରୀ:ଅ: ୧୮୩୮ ରୁ ଖ୍ରୀ:ଅ: ୧୮୬୨ ପର୍ଯ୍ୟନ୍ତ ଦୀର୍ଘ ଚବିଶବର୍ଷକାଳ ଢେଙ୍କାନାଳ ମାଟିରେ ଅବସ୍ଥାନ କରିଥିଲେ । ଢେଙ୍କାନାଳ ମାଟିରୁ ଉଦ୍ଭୁତ ଏଇ ପବିତ୍ର ଆଧାତ୍ମିକ ଅନ୍ତଃସ୍ରୋତ କ୍ରମେ ପଶ୍ଚିମ ଓଡ଼ିଶାର ଜନ-ଜୀବନକୁ ପରିପ୍ଳୁତ କରିଥିଲା । ମହିମାସ୍ୱାମୀଙ୍କର ଏହି ସାମାଜିକ, ସାଂସ୍କୃତିକ ଓ ଧର୍ମୀୟ ଆନ୍ଦୋଳନକୁ ପଶ୍ଚିମ ଓଡ଼ିଶାରେ ଗଭୀର ଜନସମର୍ଥନ ମିଳିଥିଲା । ସମୟକ୍ରମେ ଏହି ଧର୍ମ ସମଗ୍ର ଭାରତଭୂଖଣ୍ଡକୁ ପରିପ୍ଲୁତ ଓ ପରିପ୍ଲାବିତ କରିଥିଲା । ମହିମାସ୍ୱାମୀଙ୍କର ବ୍ୟକ୍ତିତ୍ୱ ଓ ତାଙ୍କ ଧର୍ମାଚରଣପ୍ରତି ଆକୃଷ୍ଟହୋଇ ଭାରତବର୍ଷର କୋଣ ଅନୁକୋଣରୁ ବହୁବ୍ୟକ୍ତି ତାଙ୍କର ଶିଷ୍ୟତ୍ୱ ଗ୍ରହଣ କରିବା ସହିତ ମହିମାଧର୍ମରେ ଦୀକ୍ଷିତ ହୋଇଥିଲେ । ପରବର୍ତ୍ତୀ ସମୟରେ ମହିମାସ୍ୱମୀ ଢେଙ୍କାନାଳ ପ୍ରତ୍ୟାବର୍ତ୍ତନ କରି ଯୋରନ୍ଦା ଆଶ୍ରମରେ ଅବସ୍ଥାନ କରିଥିଲେ । ଏଠାରେ ଅବସ୍ଥାନ କାଳରେ ତାଙ୍କର ମହାପ୍ରୟାଣ ଘଟିଥିଲା । "ମହିମାସ୍ୱମୀ ୧୮୭୬ ମସିହା ଫାଲ୍‌ଗୁନ କୃଷ୍ଣପକ୍ଷ ଦଶମୀ ତିଥି ପ୍ରାତଃ ବ୍ରାହ୍ମମୁହୂର୍ତ୍ତରେ ଢେଙ୍କାନାଳର ଯୋରନ୍ଦା ଆଶ୍ରମ ଠାରେ ଚିର ଶୁଭ୍ରସମାଧିରେ ଅନ୍ତର୍ଦ୍ଧ୍ୟାନ ହୋଇଥିଲେ । (୨)" ମହିମାସ୍ୱମୀଙ୍କ ଅନ୍ତର୍ଦ୍ଧ୍ୟାନ ଓ ଶୂନ୍ୟସମାଧି ପରେ ତାଙ୍କର ପ୍ରିୟଭକ୍ତ ଓ ଅନୁଗାମୀ ମାନଙ୍କ ଦ୍ୱାରା ଏହି ଧର୍ମର ପ୍ରଚାର-ପ୍ରସାର ହୋଇଥିଲା । ଏହି ଧର୍ମର ସାଧୁ, ସନ୍ଥ ଓ ଭକ୍ତମାନେ ଏହି ଧର୍ମ-ଦର୍ଶନକୁ ନେଇ ଅନେକ ଭଜନ, ଜଣାଣ, କାବ୍ୟ, କବିତାମାନ ରଚନା କରିଯାଇଛନ୍ତି । ଏହି ରଚନା ଗୁଡ଼ିକ ସାହିତ୍ୟିକ ମୂଲ୍ୟବୋଧ ଦୃଷ୍ଟିରୁ ଗୁରୁତ୍ୱପୂର୍ଣ୍ଣ ହେଉ ବା' ନହେଉ; ଧର୍ମ-ଦର୍ଶନ ଓ ଆଧାତ୍ମିକ ମୂଲ୍ୟବୋଧ ଦୃଷ୍ଟିରୁ ବେଶ୍ ସୁ-ଉଚ୍ଚ ଏବଂ ମହନୀୟ । ସମାଜ ସଂସ୍କାର, ସାମାଜିକ ଅଙ୍ଗୀକାର ବଦ୍ଧତା ଓ ଧର୍ମୀୟ ଭାବନାର ପରିପ୍ରସାର ସହିତ ବ୍ୟକ୍ତିଗତ ଓ ଗାର୍ହସ୍ଥ୍ୟ ଜୀବନକୁ ନୀତିନିଷ୍ଠ, ଶୃଙ୍ଖଳିତ, ଶୁଦ୍ଧ-ପୂତ କରିବାପାଇଁ ଏହି ସାହିତ୍ୟ ଭିତରେ ଧର୍ମୀୟ, ନୈତିକ ଖସଡ଼ା ପ୍ରସ୍ତୁତ କରାଯାଇଛି । ଏହା ସହିତ ଏହି ସାହିତ୍ୟରେ ବିଭିନ୍ନ ସାମାଜିକ ତ୍ରୁଟି-ବିଚ୍ୟୁତି, ସାମାଜିକ ଶୋଷଣ, କଷଣ, ମଣିଷର ଅହଂକାର ବିରୁଦ୍ଧରେ ବିଦ୍ରୋହ ଓ ପ୍ରତିବାଦର ବୈପ୍ଲବିକ ସ୍ୱର ଫୁଟିଉଠିଛି ।

**ମହିମାଧର୍ମ ସାହିତ୍ୟ :** ମହିମାଧର୍ମର ସାହିତ୍ୟ ଭିତରେ ମୁଖ୍ୟତଃ ସମାଜ ସଂସ୍କାର ଲିପ୍‌ସା ସହିତ ଆତ୍ମିକ ଅନ୍ୱେଷା, ଆତ୍ମଜିଜ୍ଞାସା ଓ ବ୍ରହ୍ମାନୁସନ୍ଧାନ ଅଭୀପ୍‌ସା ଫୁଟିଉଠିଛି ।

ଏହି ଧର୍ମ ହିନ୍ଦୁଧର୍ମର ପୌତ୍ତଳିକତାକୁ ବିରୋଧ କରି ନିର୍ଗୁଣ, ନିରାକାର, ଶୂନ୍ୟବ୍ରହ୍ମର ପ୍ରତିଷ୍ଠା, ଉପାସନା କରି ତାଙ୍କର ସ୍ୱରୂପ ଓ ମହିମାର ପ୍ରକଟନ କଲା । ଏହି ଧର୍ମରେ ସତ୍ୟ-ସନାତନ, ଅବିନାଶୀ, ନିର୍ଗୁଣ ବ୍ରହ୍ମଙ୍କର ଉପଲବ୍ଧି ଓ ତାଙ୍କ କୃପାଲାଭ ପାଇଁ ମାର୍ଗଦର୍ଶନ ସହିତ ଆହ୍ୱାନ ଦିଆଗଲା । ମଣିଷ ନିଜର ନିବିଡ଼ ଅଧ୍ୟାତ୍ମ ଉପଲବ୍ଧି ଓ ଗଭୀର ଅନ୍ତର୍ଦୃଷ୍ଟି ବଳରେ ସତ୍ୟ-ସନାତନ ସ୍ୱରୂପ ଅଣାକାର ଶୂନ୍ୟବ୍ରହ୍ମଙ୍କୁ ଉପଲବ୍ଧି କରିପାରିଲେ ହିଁ; ସେ ସଂସାରର ଯାବତୀୟ ତୁଚ୍ଛତା, ସଂକୀର୍ଣ୍ଣତା, ବିଭେଦ, ବୈଷମ୍ୟର ସଂକୀର୍ଣ୍ଣ ଗଣ୍ଡିମଧ୍ୟରୁ ମୁକ୍ତହୋଇ ଶୁଦ୍ଧ, ସୁନ୍ଦର ହୋଇପାରିବ । ଏହି ବାଣୀ ଓ ଆହ୍ୱାନ ମହିମା ଧର୍ମୀୟ ସାହିତ୍ୟ ଭିତରେ ପ୍ରତିଭାତ । ଏହି ସାହିତ୍ୟରେ ହିନ୍ଦୁଧର୍ମ ସହିତ ବେଦ, ବେଦାନ୍ତ, ଉପନିଷଦ, ବୌଦ୍ଧ ଆଦି ବିଭିନ୍ନ ଧର୍ମ-ଦର୍ଶନର ମନୋଜ୍ଞ-ମଞ୍ଜୁଳ ସମାହାର ଓ ସମନ୍ୱୟ ଘଟିଅଛି । ଏହି ଧର୍ମ-ଦର୍ଶନର ମହତ୍ତ୍ୱ, ସାରତତ୍ତ୍ୱ ଓ ବାଣୀକୁ ଏହି ଧର୍ମର ବହୁ ସାଧୁ, ସନ୍ଥ, ଭକ୍ତମାନେ ବିଭିନ୍ନ ଭଜନ, ଜଣାଣ, କବିତା ଓ କାବ୍ୟ ଭିତରେ ପ୍ରକଟିତ କରିଯାଇଛନ୍ତି । ଏହ ମହିମାଧର୍ମ, ଦର୍ଶନ ଓ ସାହିତ୍ୟର ମହାନ ସାଧକ, ସ୍ରଷ୍ଟାମାନେ ହେଲେ- ସନ୍ଥ ଭୀମଭୋଇ, ଗୋବିନ୍ଦ ବାବା, ବିଶ୍ୱନାଥ ବାବା, ମହୀନ୍ଦ୍ର ବାବା, ଚକ୍ରଧରବାବା, ଚନ୍ଦ୍ରମଣି ବାବା, ଅନନ୍ତଚରଣବାବା, ଅନିରୁଦ୍ଧ ବାବା, କ୍ଷେତ୍ରବାସୀ ବାବା ପ୍ରମୁଖ । ଏହି ସାଧୁ ସନ୍ଥମାନେ ସେମାନଙ୍କର ରଚିତ ଭଜନ, ଜଣାଣ, ଗୀତିକା ଓ କାବ୍ୟକୃତି ଗୁଡ଼ିକ ଭିତରେ ମହିମାଧର୍ମ-ଦର୍ଶନର ସାରତତ୍ତ୍ୱ, ଆଦର୍ଶ ଓ ନୀତିବାଣୀ ସହିତ ମଣିଷ ଜୀବନର ଅସଲ ଜୀବନଗ୍ରାହୀ ସୂତ୍ରର ଆବିଷ୍କାର କରିଯାଇଛନ୍ତି । କ୍ରମେ ଅନେକ ଜିଜ୍ଞାସୁ ଗବେଷକ ଓ ସମାଲୋଚକମାନେ ମଧ୍ୟ ଏହି ଧର୍ମ-ଦର୍ଶନ ଓ ସାହିତ୍ୟ ସଂପର୍କରେ ବହୁ ଆଲୋଚନା, ସମାଲୋଚନା ଓ ଗବେଷଣା ମୂଳକ ଗ୍ରନ୍ଥମାନ ରଚନା କରିଚାଲିଛନ୍ତି ।

**ସନ୍ଥ କବି ଭୀମଭୋଇ:**

ଭୀମଭୋଇ ମୁଖ୍ୟତଃ ଜଣେ କବି । ସେ ଥିଲେ ମହିମା ସ୍ୱାମୀଙ୍କର ପ୍ରମୁଖ ଅନୁଗାମୀ ଓ ଶିଷ୍ୟ । ଭୀମଭୋଇଙ୍କର ଜନ୍ମ ସମୟ ଊନବିଂଶ ଶତାବ୍ଦୀର ମଧ୍ୟଭାଗ । ସମ୍ଭବତଃ ସେ ଖ୍ରୀ:ଅ: ୧୮୫୦ ବେଳକୁ ପଶ୍ଚିମ ଓଡ଼ିଶାର ଏକ ଦରିଦ୍ର କନ୍ଧ ପରିବାରରେ ଜନ୍ମ ଗ୍ରହଣ କରିଥିଲେ । ଭୀମଭୋଇଙ୍କର ଜନ୍ମସ୍ଥାନ ସଂପର୍କରେ ବହୁମତଭେଦ ରହିଛି । କେହି କେହି ଗବେଷକ ଭୀମଭୋଇଙ୍କର ଜନ୍ମ ସମ୍ବଲପୁର ଜିଲ୍ଲାର ରେଢ଼ାଖୋଲ ଅନ୍ତର୍ଗତ 'ଗ୍ରାମଡିହ୍ମା' ଠାରେ ବୋଲି ସୂଚିତ କରିବା ସ୍ଥଳେ କେହି କେହି ସୋନପୁର

ଜିଲ୍ଲାର କୁମରପାଲି ବା ଜଟାସିଙ୍ଗା ଗ୍ରାମ ରୂପେ ନିର୍ଣ୍ଣୀତ କରିଛନ୍ତି । ସେହିପରି ଭୀମଭୋଇଙ୍କର ପ୍ରକୃତ ଜନ୍ମଦାତାଙ୍କ ସଂପର୍କରେ ମଧ କୌଣସି ସଠିକ ପ୍ରାମାଣିକ ତଥ୍ୟ ମିଳିପାରିନାହିଁ । କେହି କେହି ଗବେଷକ ଦନାର ଭୋଇ, କେହି ଜନାର୍ଦ୍ଦନ ଭୋଇ ଓ କେହି କେହି ଧନେଶ୍ୱର ଭୋଇଙ୍କୁ ଭୀମଭୋଇଙ୍କର ପିତାରୂପେ ସୂଚିତ କରିଛନ୍ତି । ଭୀମଭୋଇ ତାଙ୍କର ଏକ ରଚନାରେ ନିଜକୁ ଧନେଶ୍ୱର ଭୋଇଙ୍କ ସନ୍ତାନ ରୂପେ ସୂଚିତ କରିଛନ୍ତି । ତାଙ୍କ ଭାଷାରେ-

"ବିନ୍ଧି ପଞ୍ଚ ବାଣ ଭଣେ ଭୀମସେନ
ଧନେଶ୍ୱର ଭୋଇ ବସ୍ନ ।"

ମାତ୍ର- ଏହି ଧନେଶ୍ୱର ଭୋଇ, ଜନାର୍ଦ୍ଧନ ଭୋଇଙ୍କର ଭାଇଥିଲେ, ଯେ'କି ଜନାର୍ଦ୍ଧନଙ୍କ ମୃତ୍ୟୁପରେ ଭୀମଭୋଇଙ୍କର ଲାଳନ-ପାଳନ କରିଥିଲେ । ସେହପରି ଗବେଷକମାନେ ଗୁରୁବାରୀ (ମହରଗୀ)ଙ୍କୁ ଭୀମଭୋଇଙ୍କର ମାତାରୂପେ ସୂଚିତ କରିଛନ୍ତି । ଏହା ସତ୍ୟଯେ- ଭୀମଭୋଇ ଖୁବ୍ କମ୍ ବୟସରେ ପ୍ରଥମେ ପିତୃହରା ଓ ପରେ ପରେ ମାତୃହରା ହୋଇ ଅସହାୟ ଜୀବନ ବଞ୍ଚିଥିଲେ । ଯେଉଁଥିପାଇଁ ସେ ଈଶ୍ୱରଙ୍କୁ ନିଜର ପିତା-ମାତା ରୂପେ ମାନି ନେଇଥିଲେ । ଭୀମଭୋଇ ତାଙ୍କ 'ସ୍ତୁତିଚିନ୍ତାମଣି' କାବ୍ୟ ଗ୍ରନ୍ଥରେ ଲେଖିଛନ୍ତି -

"ପିତା ଅଟନ୍ତି ମୋ ଅନାଦି ଠାକୁର
ମାତା ଆଦିଶକ୍ତି ନାରୀ"
ଦୂତୀ ଯୁଗଳରୁ ଜନମ ଲଭିଛି
କବିକୃତ କଳାଧରି ।"(୩)

ପିତୃ-ମାତୃହରା ଅସହାୟ ବାଳକ ଭୀମ ନିଜର ଜୀବନ ବଞ୍ଚାଇବାପାଇଁ ୪-୫ ବର୍ଷ ବୟସରେ ରେଢ଼ାଖୋଲ କାଙ୍କଣପଡ଼ା ନିବାସୀ ଶ୍ରୀ ଚୈତନ୍ୟ ପ୍ରଧାନଙ୍କ ଘରେ ଆଶ୍ରୟ ନେଇଥିବାର ଜଣାଯାଏ । ସେଠାରେ ସେ ଗାଈଚରାଇବା ସହ ଧାନକୁଟିବା କାର୍ଯ୍ୟ ମଧ କରୁଥିଲେ । ଭୀମଭୋଇ ଗାଈଚରାଇବା କାର୍ଯ୍ୟ କରୁଥିବା ସମୟରେ ହିଁ, ତାଙ୍କର ମହିମାସ୍ୱାମୀଙ୍କର ସହ ସାକ୍ଷାତ ହୋଇଥିଲା । ଯାହାର ବିସ୍ତୃତ ସୂଚନା 'ସ୍ତୁତିଚିନ୍ତାମଣି'ରେ ରହିଛି । ଭୀମଭୋଇ ମହିମାସ୍ୱାମୀଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ତାଙ୍କୁ ଗୁରୁରୂପେ ଗ୍ରହଣ କରି ମହିମାଧର୍ମରେ ଦୀକ୍ଷିତ ହୋଇଥିଲେ । ମହିମାଧର୍ମ ଗ୍ରହଣ କରିବାପରେ ଭୀମଭୋଇ 'ଅନ୍ନପୂର୍ଣ୍ଣା' ନାମ୍ନୀ ଜଣେ ବ୍ରାହ୍ମଣକନ୍ୟାଙ୍କୁ ବିବାହ କରିଥିବାର ଜଣାଯାଏ । ପରବର୍ତ୍ତୀ ସମୟରେ ଭୀମଭୋଇ ରେଢ଼ାଖୋଲ ପରିତ୍ୟାଗକରି

ସୋନପୁରର ଖଲିଆପାଲି ଓ ପରେ ପୂର୍ବ ଓଡ଼ିଶା ଯାତ୍ରାକରି ଢେଙ୍କାନାଳ ଜିଲ୍ଲାର 'ଯୋରନ୍ଦା' ଠାରେ ଦୀର୍ଘକାଳଧରି ଅବସ୍ଥାନ କରିଥିଲେ । ମହିମାସ୍ୱମୀ ତାଙ୍କର ପ୍ରମୁଖ ଶିଷ୍ୟ ଗୋବିନ୍ଦ ଦାସ ଏବଂ ଭୀମଭୋଇଙ୍କୁ ମହିମାଧର୍ମ-ଦର୍ଶନର ସାରତତ୍ତ୍ୱ କୁ ସାହିତ୍ୟିକ ରୂପପ୍ରଦାନ କରିବାପାଇଁ ନିର୍ଦ୍ଦେଶ ଦେଇଥିଲେ । ଯା' ଫଳରେ ଗୋବିନ୍ଦ ଦାସ ଏବଂ ଭୀମଭୋଇ ମହିମାଧର୍ମ-ଦର୍ଶନର ପ୍ରଚାର, ପ୍ରସାର ନିମନ୍ତେ ବିଭିନ୍ନ ଭଜନ, ଜଣାଣ ସହିତ ଦର୍ଶନ ଓ ତତ୍ତ୍ୱଗ୍ରନ୍ଥମାନ ରଚନାରେ ମନୋନିବେଶ କରିଥିଲେ । ପରବର୍ତ୍ତୀ ସମୟରେ ଏହିଧର୍ମର ସାଧୁ-ସନ୍ଥ ଓ ଭକ୍ତମାନେମଧ ବହୁ ଭଜନ, ଜଣାଣ, କାବ୍ୟକୃତିମାନ ରଚନା କରିଛନ୍ତି ।

**ଭୀମଭୋଇଙ୍କ ରଚନାବଳୀ :** ଭୀମଭୋଇଙ୍କ କବିତ୍ୱ ପ୍ରତିଭା ସତସ୍ଫୂର୍ତ୍ତ, ଅପୂର୍ବ । ସେ ତାଙ୍କ ଜୀବଦ୍ଦଶା ଭିତରେ ଅନେକ ଭଜନ, ଜଣାଣ, କାବ୍ୟ, ଚଉତିଶା, ଗୀତିକା, ମାଳିକା ଆଦି ରଚନା କରିଯାଇଛନ୍ତି । ସେଗୁଡ଼ିକ ହେଲା- ସ୍ତୁତିଚିନ୍ତାମଣି, ବ୍ରହ୍ମନିରୂପଣଗୀତା, ଆଦିଅନ୍ତଗୀତା, ଅଷ୍ଟକ ବିହାରୀ ଗୀତା, ନିର୍ବେଦ ସାଧନ, ଶ୍ରୁତିନିଷେଧ ଗୀତା, ଅବ୍ୟକ୍ତଗୀତା, ନିର୍ଗୁଣଗୀତା, ପଦ୍ମକଳ୍ପ, ମହିମା ବିନୋଦ, ମନୁ ସଭାମଣ୍ଡଳ, ବ୍ରହ୍ମଚାଳକ, ବ୍ରହ୍ମସଂଯୁକ୍ତ ଗୀତା, ନବୀନ ବିହାରୀ ଗୀତା, କଳି ଭାଗବତ, , ଭବିଷ୍ୟତ ମାଳିକା, ଯଶୋବନ୍ତ ମାଳିକା, ପୂର୍ଣ୍ଣସଂହିତା, କଳିଯୁଗ ଗୀତା, ମହିମାଗୋପ୍ୟାନ, ଭଜନମାଳା, ଚଉତିଶା ମଧୁଚକ୍ର, ହଳିଆ ଗୀତ, ରସର୍‌କେଳି ଗୀତ, ଡାଲ୍‌ଖାଇ ଗୀତ, ବଉଳ ଗୀତ ପ୍ରଭୃତି । ଏହିସବୁ ଭଜନ, ଜଣାଣ, ଚଉତିଶା, ଗୀତିକା ଓ କାବ୍ୟକୃତି ଗୁଡ଼ିକ ଭିତରେ ମହିମାଧର୍ମ-ଦର୍ଶନର ନିଗୂଢ଼ତତ୍ତ୍ୱ, ଦର୍ଶନ ସହିତ ଏହି ଧର୍ମର ଭକ୍ତ, ସାଧକ ଓ ଗାର୍ହସ୍ଥ୍ୟମାନଙ୍କ ପାଇଁ ବହୁ ନୀତି, ଉପଦେଶମାନ ରହିଅଛି । ଭୀମଭୋଇ ମହିମାଧର୍ମର ଥିଲେ ଜଣେ ଗାର୍ହସ୍ଥ୍ୟ ଭକ୍ତ । ସେ ଗୃହସ୍ଥ ଜୀବନରେ ରହି ମଧ ଜ୍ଞାନ ସାଧନା ଓ ଭଗବତ୍ ଉପାସନାରେ ବ୍ରତୀ ରହିଥିଲେ । ତତ୍କାଳୀନ ସାମନ୍ତ ରାଜା ମାନଙ୍କର ଉତ୍ପୀଡ଼ନ, ଅତ୍ୟାଚାର, ସମାଜର ଧର୍ମାଧିକାରୀ ଓ ବଡ଼ପଣ୍ଡାମାନଙ୍କର ଧର୍ମନାମରେ ଯେଉଁ ଭଣ୍ଡାମି, ଶଠତା, ଧର୍ମପୀଠ ମାନଙ୍କରେ ଚାଲିଥିବା ଯାବତୀୟ ଭ୍ରଷ୍ଟାଚାର ବିରୁଦ୍ଧରେ ଭୀମଭୋଇ ସ୍ୱର ଉତ୍ତୋଳନ କରିଥିଲେ । ଯେଉଁଥିପାଇଁ ତାଙ୍କ ସାରସ୍ୱତ କୃତି ଗୁଡ଼ିକ ଯୁଗ ଯୁଗ ଧରି ବିଦ୍ରୋହ, ବିପ୍ଳବ, ପରିବର୍ତ୍ତନ ଓ ଅମୃତ-ଆଲୋକର ବାର୍ତ୍ତା ବହନ କରିଚାଲିଛି । ଭୀମଭୋଇ ତାଙ୍କ 'ସ୍ତୁତିଚିନ୍ତାମଣି' ଗ୍ରନ୍ଥରେ ତତ୍କାଳୀନ ଧର୍ମାନୁଷ୍ଠାନ ଓ ଧର୍ମପୀଠ ମାନଙ୍କରେ ଯେଉଁ ଅନୀତି, ଦୁର୍ନୀତି, ଛଳନା, ଶଠତା ଓ ଭଣ୍ଡାମ ଲାଗିରହିଥିଲା,

ତା'  ବିରୁଦ୍ଧରେ ବୈପ୍ଲବିକ ସ୍ୱର ଉତ୍ତୋଳନ କରିଛନ୍ତି । କବିଙ୍କ ଭାଷାରେ -

"ଶ୍ରୀ ପୁରୁଷୋତ୍ତମ, କପିଳାସ ଧାମ
ତହୁଁ ଉଠିଲାଣି ଧର୍ମ ।
ତୀର୍ଥମାନ ସବୁ ଭ୍ରଷ୍ଟ ହୋଇଲାଣି
କାହିଁରେ ନାହିଁ ନା' ବ୍ରହ୍ମ ।
ଗଙ୍ଗା, ଗୟା, କାଶୀ, ପ୍ରୟାଗ ସହିତେ
ସେତୁବନ୍ଧ, ରାମନାଥ
ଏ ତୀର୍ଥମାନଙ୍କ ଧର୍ମ ଉଠିଲାଣି
କାହିଁରେ ନାହିଁ ନା' ସତ୍ୟ ।"(୪)

କେବଳ ସେତିକିନୁହେଁ, ଏହି ଧର୍ମପୀଠ ମାନଙ୍କରେ ପୂଜିତ ପ୍ରତିମାଙ୍କ ବିରୁଦ୍ଧରେ ମଧ ଭୀମ ବିଦ୍ରୋହର ସ୍ୱର ତୋଳିଛନ୍ତି । କବିଙ୍କ ଭାଷାରେ-

"ମୂର୍ତ୍ତିସିନା ସେହି, ଜୀବ ଆତ୍ମା ନାହିଁ
କାହୁଁ ଯାଚିଦେବ ବର ।
ବିଷ୍ଣୁ ନଟ-କୂଟ ମାୟାରେ ନ' ଜାଣି
ଅଜ୍ଞାନରେ ମୂଢ଼ ନର ।
*  *  *  *  *
ମନୁଷ୍ୟହୋଇ ନିର୍ଜୀବ ସଙ୍ଗେ ଭାବ
ଦେଖଚି କେଡ଼େ ଅଜ୍ଞାନ ।
ଶୂନ୍ୟରୁ ଯେହୁ ପିଣ୍ଡ-ପ୍ରାଣ ଗଢ଼ିଲା
ତାକୁ ନାହିଁ ଅନୁମାନ ।
ଦୁର୍ଲ୍ଲଭ ଜନମ ବିଅର୍ଥ ହୋଇଛି
ପରମେଶ୍ୱରଙ୍କୁ ନ' ଚିହ୍ନି
ଅଜ୍ଞାନରେ ନରେ ସବୁକୁ ପୂଜିଲେ
ପ୍ରକୃତିରେ ସୁଖମଣି ।" (୫)

ସେଥିପାଇଁ ଭୀମଭୋଇ ଅପଥଗାମୀ ମଣିଷ ସମାଜକୁ ପ୍ରକୃତ ଜ୍ଞାନ ଓ ପରମ ସତ୍ୟର ସନ୍ଧାନ ଦେଇଛନ୍ତି । ଭୀମଭୋଇଙ୍କ ଦୃଷ୍ଟିରେ ନିର୍ଗୁଣ, ନିରାକାର, ପରମ ବ୍ରହ୍ମ ହିଁ ପରମ ସତ୍ୟ । ଯେଉଁଥିପାଇଁ ସେ ତାଙ୍କ ସାରସ୍ୱତ କୃତି ଭିତରେ ନିର୍ଗୁଣ, ନିରାକାର ପରଂବ୍ରହ୍ମଙ୍କର

ମହାନ୍ ସ୍ୱରୂପ ଓ ମହିମାର ବର୍ଣ୍ଣନା କରିଛନ୍ତି । କବି ଲେଖିଛନ୍ତି-

"ସେ ନିରାକାର ବ୍ରହ୍ମ ହରି
ଅର୍ଦ୍ଧେ ପୁରୁଷ, ଅର୍ଦ୍ଧେ ନାରୀ ।"(୬)

କବି 'ନିର୍ବେଦସାଧନ' ରେ ଏହି ନିରାକାର ଶୂନ୍ୟ ବ୍ରହ୍ମଙ୍କର ଅଖଣ୍ଡ ମହିମାର ବର୍ଣ୍ଣନା କରିଛନ୍ତି । କବିଙ୍କ ଭାଷାରେ-

"ଯେ ବ୍ରହ୍ମ ଜ୍ୟୋତି ନିରାକାର
ଦ୍ୱିତୀୟ ରୂପ ଏକାନ୍ତର ।
ଜନ୍ମିଲା ନିଶବଦ ଠାରୁ
ପଡ଼ିଲା ଉଜାଣି ଶିଖରୁ ।"(୭)

'ବ୍ରହ୍ମ ନିରୁପଣ ଗୀତା' ରେ ଭୀମଭୋଇ ଏହି ଅରୂପ ବ୍ରହ୍ମଙ୍କର ଅଦେହ ସ୍ୱରୂପର ବର୍ଣ୍ଣନା କରିଛନ୍ତି । କବିଙ୍କ ଭାଷାରେ-

"ରୂପପ୍ରାୟେ ଦିଶୁଅଛି, ସାକ୍ଷାତେ ଅରୂପ
ଦେହ ପ୍ରାୟେ ଦିଶୁଅଛି, ଅଦେହ ସ୍ୱରୂପ ।"(୮)

ଏହି ପରମସତ୍ୟ, ଅଦେହ, ଅରୂପ. ନିର୍ଗୁଣ ବ୍ରହ୍ମଙ୍କର ସାକ୍ଷାତକାର ଓ ଉପଲବ୍ଧି ପାଇଁ କବି ଦୁରୂହ ଜ୍ଞାନମାର୍ଗ ବା ଜଟିଳ ଯୌଗିକ ପଦ୍ଧତିର ସୂଚନା ଦେଇଛନ୍ତି । କବିଙ୍କ ଭାଷାରେ-

"ଯେହ୍ନେ ଜଳଧାର, ସେହି ପରକାର
ଯନ୍ତ୍ରରେ ସୂତ୍ରକୁ ଧରି
ଚିଆଁଇ ଚୈତନ୍ୟ ଜୀବ-ପରମକୁ
ଭେଟା-ଭେଟି କର ହରି ।"(୯)

କବି ମଣିଷ ସମାଜକୁ ଅଧ୍ୟାତ୍ମ ଅନୁଭବ, ଈଶ୍ୱର ସାନ୍ନିଧ ଓ ମୁକ୍ତିର ମାର୍ଗ ଦେଖାଇବା ସହିତ ସାମାଜିକ କ୍ରାନ୍ତି, ପ୍ରଗତି ଓ ପରିବର୍ତ୍ତନ ପାଇଁମଧ ଆହ୍ୱାନ ଦେଇଛନ୍ତି । ସମାଜର ସ୍ୱାର୍ଥପରତା, ପରଶ୍ରୀକାତରତା ଓ ହିଂସ୍ରଭାବନାର ବିଲୋପ ଘଟାଇ ଏକ ନୂତନ ସମାଜର ପ୍ରତିଷ୍ଠା ଓ ନୂଆ ପୃଥିବୀ ଗଠନର ପରିକଳ୍ପନା କବି କରିଛନ୍ତି । ଯେଉଁଥିପାଇଁ କବି ଲେଖିଛନ୍ତି-

"ନବଖଣ୍ଡ ମହୀ ଥାଳି ପ୍ରାୟ ହୋଇ
ହେଜିଲେ ମନକୁ ଆସେ

ଏ ମୋର ନେତ୍ରକୁ ଛପ୍ନ କୋଟି ଜୀବ
ତିରଣ ପରାଏ ଦିଶେ ।
ଏକା ଦିବସରେ କ୍ଷଣକ ଭିତରେ
ଦ୍ୟନ୍ତି ପୃଥ୍ୱୀ ଲେଉଟାଇ
ଦନ୍ତ କାମୁଡ଼ି, କିସ ବୁଦ୍ଧି କରିବି
ଶ୍ରୀ ଗୁରୁଙ୍କ ଆଜ୍ଞା ନାହିଁ ।"(୧୦)

ତଥାପି ଭୀମଭୋଇ ଅଖଣ୍ଡ ଧୈର୍ଯ୍ୟ ଓ ନିଷ୍ଠାର ସହିତ ମଣିଷ ସମାଜକୁ ଶୃଙ୍ଖଳିତ ଓ ନୀତିନିଷ୍ଠ କରାଇବାକୁ ଉଦ୍ୟମ କରିଯାଇଛନ୍ତି । ସମାଜର ସାମୂହିକ ମଙ୍ଗଳ ପାଇଁ, ମାନବ ଜୀବନରେ ଶୁଦ୍ଧ, ପୂତ, ପବିତ୍ର ଓ ତ୍ୟାଗଦୀପ୍ତ ପ୍ରେମର ପତିଷ୍ଠାପାଇଁ ସେ ଉଦାର, ମାନବବାଦୀ, ବିଶ୍ୱ ବ୍ୟାପକ ଚିନ୍ତାଧାରାର ପରିପ୍ରଚାର କରିଛନ୍ତି । ଯେଉଁଥିପାଇଁ କବି ଉଦାତ୍ତ କଣ୍ଠରେ ଗାଇ ଉଠିଛନ୍ତି-

"ପ୍ରାଣୀଙ୍କ ଆରତ ଦୁଃଖ ଅପ୍ରମିତ
ଦେଖୁ ଦେଖୁ କେବା ସହୁ
ମୋ ଜୀବନ ପଛେ ନର୍କେ ପଡ଼ିଥାଉ
ଜଗତ ଉଦ୍ଧାର ହେଉ ।"(୧୧)

ବାସ୍ତବରେ ଭୀମଭୋଇ ଜଣେ ମହାନ୍ ସ୍ରଷ୍ଟା ଓ ଦ୍ରଷ୍ଟା । ସେ ତାଙ୍କର ଧର୍ମୀୟ ଭାବନା ଓ ସାରସ୍ୱତ ରଚନା ମାଧ୍ୟମରେ ସମାଜ, ସଂସ୍କୃତି, ଧର୍ମ ଓ ବ୍ୟକ୍ତି ଜୀବନରେ ପରିମାର୍ଜନ, ପରିବର୍ତ୍ତନ ଓ କ୍ରାନ୍ତି ଆଣିବାକୁ ଚାହିଁଛନ୍ତି । କୁ-ସଂସ୍କାର, ଅଜ୍ଞାନରୂପୀ ଅନ୍ଧକାରର ଜରାୟୁ ଚିରି ସତ୍ୟ ଓ ଆଲୋକର ପଥ ଦେଖାଇବାର ପ୍ରୟାସ କରିଛନ୍ତି ।

**ବିଶ୍ୱନାଥ ବାବା :**

ଗୋବିନ୍ଦ ଦାସ ଏବଂ ଭୀମଭୋଇଙ୍କପରି ବିଶ୍ୱନାଥ ମଧ ଥିଲେ ମହିମାସ୍ୱାମୀଙ୍କ ଜଣେ ପ୍ରମୁଖ ଶିଷ୍ୟ । ମହିମାଧର୍ମ ଦର୍ଶନର ପ୍ରଚାର, ପରିପ୍ରସାର ଓ ସାହିତ୍ୟ ସାଧନା କ୍ଷେତ୍ରରେ ତାଙ୍କର ଅବଦାନ ଉଲ୍ଲେଖ ଯୋଗ୍ୟ । ସେ ମହିମାଧର୍ମ-ଦର୍ଶନର ବହୁ ପ୍ରମାଣିତ ଇତିହାସ ଓ ତତ୍ତ୍ୱ ଗ୍ରନ୍ଥମାନ ରଚନାକରି ଯାଇଛନ୍ତି । ତାଙ୍କ ରଚିତ ଗ୍ରନ୍ଥ ଗୁଡ଼ିକ ହେଲା- ମହିମାଧର୍ମର ଇତିହାସ, ମହିମାଗାଦି ଇତିହାସ, ସତ୍ୟ-ମହିମାଧର୍ମ ପ୍ରତିପାଦକ, ସତ୍ୟ ମହିମାଧର୍ମ ତତ୍ତ୍ୱସାର, ସତ୍ୟ-ମହିମାଧର୍ମ ପ୍ରଦୀପ, ସତ୍ୟ ମହିମାଧର୍ମର ସ୍ୱରୂପ, ସତ୍ୟ-ମହିମାଧର୍ମ ସଚେତନ ବାଣୀ, ସତ୍ୟ-ମହିମାଧର୍ମ ଦର୍ଶନ ତତ୍ତ୍ୱ, ସତ୍ୟ-ମହିମାଧର୍ମ ନବ

ଜ୍ଞାନାଲୋକ, ଅଲେଖ ବାଲ୍ୟଲୀଳାଗୀତି, ସାଧୁଗୀତି, ଅଲେଖ ପରମ ବ୍ରହ୍ମ ଦର୍ଶନ, ଶ୍ରୀମଦ୍ ଚିନ୍ମୟ ବ୍ରହ୍ମ ଗୀତି ପ୍ରଭୃତି । ଏହିସବୁ ଗ୍ରନ୍ଥ ଗୁଡ଼ିକରେ ବେଦାନ୍ତ ଓ ଉପନିଷଦୀୟ ଦର୍ଶନର ପରିପ୍ରକାଶ ସହିତ ମହିମାଧର୍ମ-ଦର୍ଶନର ଶୂନ୍ୟ ବା ନିରାକାର ତତ୍ତ୍ୱ, ପରଂବ୍ରହ୍ମ ତତ୍ତ୍ୱ, ଜ୍ଞାନ -ଭକ୍ତି ଯୋଗ, ପରମାତ୍ମାଙ୍କ ଅନୁଭବ ଓ ମୁକ୍ତିର ମାର୍ଗ ଆଦି ସାରତତ୍ତ୍ୱ ଗୁଡ଼ିକ ପ୍ରକଟିତ ହୋଇଛି । ବିଶ୍ୱନାଥ ବାବା ମୁଖ୍ୟତଃ ଜଣେ ଜ୍ଞାନ-ଭକ୍ତିଯୋଗର ସାଧକ ଓ ପ୍ରଚାରକ ଥିଲେ । ତାଙ୍କ 'ସାଧୁଗୀତି' ରେ ଶୂନ୍ୟପୁରୁଷ ପରଂବ୍ରହ୍ମଙ୍କର ସ୍ୱରୂପ ଉଦ୍‌ଘାଟନ ସହିତ ଜ୍ଞାନ-ଭକ୍ତି ଯୋଗର ମହତ୍ତ୍ୱ ପ୍ରକଟିତ ହୋଇଛି । ବାବା ବିଶ୍ୱନାଥଙ୍କ ଭାଷାରେ-

"ହେ ମହିମା ଅବ୍ୟକତ ଅଖିଳ ଈଶ୍ୱର
ଶରଣ ପଶୁଛି ସଦା ନିତ୍ୟ ବାର ବାର
ଜ୍ଞାନ-ଭକ୍ତି ଦାତା ଗୁରୁ
ସୁଦୟାରେ ତାରିନିଅ ଏ ମାୟା-ମୋହରୁ ।"

ସେହିପରି 'ଚିନ୍ମୟ ବ୍ରହ୍ମ ଗୀତା' ରେ ମଧ୍ୟ ପରଂବ୍ରହ୍ମଙ୍କର ସ୍ୱରୂପ ଉଦ୍‌ଘାଟନ ସହିତ ମଣିଷକୁ ସଂସାରର ମୋହ-ମାୟା ବନ୍ଧନରୁ ମୁକ୍ତି ପାଇବାପାଇଁ 'ଜ୍ଞାନ-ଭକ୍ତିଯୋଗ' ହିଁ ସର୍ବଶ୍ରେଷ୍ଠ ମାଧ୍ୟମ ବୋଲି ବାବା ସୂଚିତ କରିଛନ୍ତି । ବିଶ୍ୱନାଥବାବା 'ଚିନ୍ମୟ ବ୍ରହ୍ମଗୀତା' ରେ ଲେଖିଛନ୍ତି-

"ଜ୍ଞାନ-ଭକ୍ତିଯୋଗ ସର୍ବ ଯୋଗଠାରୁ ଶ୍ରେଷ୍ଠ
କୈବଲ୍ୟ ମୁକ୍ତି ଦେଇଣ ନାଶେ ସର୍ବ ରିଷ୍ଟ
ସେହି ବିଶୁଦ୍ଧ ଭକତି କରି ସୁଜ୍ଞନର
ପ୍ରଭୁଙ୍କ କୃପାରୁ ନିଷ୍ଠେ ଭବୁ ହେବପାର ।"

ବାସ୍ତବରେ ବିଶ୍ୱନାଥ ବାବା ମହିମାଧର୍ମ-ଦର୍ଶନର ଜଣେ ବିଶିଷ୍ଟ ସନ୍ଥ, ସାଧକ ଓ ସାହିତ୍ୟିକ ।

ବିଶ୍ୱନାଥ ବାବାଙ୍କ ପରେ ଆହୁରି ଅନେକ ସନ୍ଥ, ସାଧକ, ଭକ୍ତ ଓ ଅନୁଗାମୀମାନେ ମହିମାଧର୍ମ-ଦର୍ଶନକୁ ନେଇ ବହୁ ଗ୍ରନ୍ଥମାନ ରଚନା କରିଛନ୍ତି । ମହୀନ୍ଦ୍ରବାବାଙ୍କର ସତ୍ୟ-ମହିମାଧର୍ମର ପରିଚୟ, ମହୀନ୍ଦ୍ର ଭଜନ ମାଳା, ଚକ୍ରଧର ବାବାଙ୍କର- ମହିମାଧର୍ମ ସୁଧାକର, ଅଲେଖ ଭଜନାମୃତ, କ୍ଷେତ୍ରବାସୀ ବାବାଙ୍କର- ମହିମା ପ୍ରଭୁ, ସତ୍ୟ-ମହିମାଧର୍ମ ଉପଦେଶାମୃତ, ଅନନ୍ତଚରଣ ବାବାଙ୍କର- ଅନନ୍ତ ଗୀତା, ପ୍ରଣବ ବ୍ୟାହୃତି ଗୀତା, ମହିମା ଭଜନ ରତ୍ନାକର, ମହିମା ଭଜନ ଚମ୍ପୂ, ବ୍ରହ୍ମଜ୍ଞାନ ଚମ୍ପୂ, ଅନିରୁଦ୍ଧ

ବାବାଙ୍କର-ମହିମା ଭଜନ ପ୍ରଭାକର, ଗଙ୍ଗାଧର ବାବାଙ୍କର- ମହିମା ସଂହିତା, ଚନ୍ଦ୍ରମଣି ବାବାଙ୍କର- ସତ୍ୟ- ମହିମାଧର୍ମ ଧାରା, ରାଜକିଶୋର ବାବାଙ୍କର- ମହିମା ଧର୍ମର ଇତିହାସ, ଘନଶ୍ୟାମ ଦାସଙ୍କର- ଅଲେଖ ଲୀଳା, ଅବିନାଶୀ ବାବାଙ୍କର- ଭକ୍ତି ନୈବେଦ୍ୟ, ବୀଣାକାର ବାବାଙ୍କର- ଭଜନ, ଜଣାଣ, ସଂଗୀତ ଆଦି ମହିମାଧର୍ମ-ସାହିତ୍ୟର ଏକ ଏକ ଅମୂଲ୍ୟ ରତ୍ନ । ସଂପ୍ରତି ବହୁ ଆଲୋଚକ ଓ ଗବେଷକମାନେ ମଧ ମହିମାଧର୍ମ-ଦର୍ଶନ ଓ ସାହିତ୍ୟ ସଂପର୍କରେ ବହୁ ପ୍ରବନ୍ଧ, ନିବନ୍ଧ ଓ ଗବେଷଣା ମୂଳକ ଗ୍ରନ୍ଥମାନ ରଚନା କରିଚାଲିଛନ୍ତି । ମହିମାଧର୍ମ-ଦର୍ଶନର ଏହି ସାରସ୍ୱତ କୃତି ଗୁଡ଼ିକ ଢେଙ୍କାନାଳ ସାହିତ୍ୟର ଏକ ଏକ ଅମୂଲ୍ୟ ସଂପଦ ।

### -: ପାଦଟୀକା :-

| | | | |
|---|---|---|---|
| ୧. | ଶ୍ରୀ ଶଙ୍କର୍ଷଣ ଜେନା | - | ସନ୍ଥ କବି ଭୀମଭୋଇ-ପୃ- ୨ |
| ୨. | ମହିମା ମୟୁଖ | - | ଫେବୃୟାରୀ ସଂଖ୍ୟା-୧୯୮୪ |
| ୩. | ଭୀମଭୋଇ | - | ସ୍ତୁତି ଚିନ୍ତାମଣି- ତ୍ରିଂଶ ବୋଲି-ପୃ-୫୯ |
| ୪. | ତତ୍ରୈବ | - | ୯୫ ବୋଲି |
| ୫. | ତତ୍ରୈବ | - | ୯୫ ବୋଲି |
| ୬. | ଭୀମଭୋଇ | - | ଶ୍ରୁତି ନିଷେଧ ଗୀତା, ପ୍ରଥମ ଅଧ୍ୟାୟ-ପୃ- ୨ |
| ୭. | ଭୀମଭୋଇ | - | ନିର୍ବେଦ ସାଧନ- ଅଷ୍ଟମ ଅଧ୍ୟାୟ-ପୃ-୨୬ |
| ୮. | ଭୀମଭୋଇ | - | ବ୍ରହ୍ମନିରୂପଣ ଗୀତା, ଚତୁର୍ଥ ଅଧ୍ୟାୟ-ପୃ-୨୭ |
| ୯. | ଭୀମଭୋଇ | - | ସ୍ତୁତି ଚିନ୍ତାମଣି, ପଞ୍ଚଦଶ ବୋଲି-ପୃ-୩୦ |
| ୧୦. | ତତ୍ରୈବ | - | ଷଡବିଂଶ ବୋଲି |
| ୧୧. | ତତ୍ରୈବ | - | ସପ୍ତବିଂଶ ବୋଲି-ପୃ-୫୩ |





ପ୍ରାବନ୍ଧିକ ଡକ୍ଟର ଶରତ୍ ଚନ୍ଦ୍ର ପତିଙ୍କର ଜନ୍ମ ୧୯୬୬ ମସିହା ମାର୍ଚ୍ଚମାସ ୧୨ ତାରିଖରେ, ଢେଙ୍କାନାଳ ଜିଲ୍ଲାର ପ୍ରସିଦ୍ଧ ମହିମାଧର୍ମ ପୀଠ ଯୋରନ୍ଦା ନିକଟସ୍ଥ 'ବାଇଁଶିଆ' ଗ୍ରାମରେ । ପିତା- ସାଧୀନତା ସଂଗ୍ରମୀ ସର୍ଗତ କାହ୍ନୁଚରଣ ପତି ଓ ମାତା- ପାର୍ବତୀ ଦେବୀ ।

ଉତ୍କଳର ବାଣୀପୀଠ 'ଉତ୍କଳ ବିଶ୍ୱବିଦ୍ୟାଳୟ' ରୁ ୧୯୯୦ ମସିହାରେ ଓଡ଼ିଆଭାଷା ସାହିତ୍ୟରେ ସ୍ନାତକୋତ୍ତର ଡିଗ୍ରୀଲାଭ ସହିତ ୧୯୯୧ ମସିହାରେ କଳାଭୂଷଣ ଓ ୧୯୯୨ ମସିହାରେ କଳାବିଭୂଷଣ ଉପାଧିଲାଭ । ସଂପ୍ରତି ସେ ବୌଦ୍ଧଜିଲ୍ଲା ସଦରମହକୁମାସ୍ଥିତ ବୌଦ୍ଧ ପଞ୍ଚାୟତ ଡିଗ୍ରୀ ମହାବିଦ୍ୟାଳୟରେ ଅଧ୍ୟାପନାରତ ।

ଡକ୍ଟର ପତି ମୁଖ୍ୟତଃ ଓଡ଼ିଆ ଭାଷା-ସାହିତ୍ୟର ଜଣେ ଏକନିଷ୍ଠ ଗବେଷକ, ବିଜ୍ଞ ସମାଲୋଚକ, ଦକ୍ଷ ପ୍ରାବନ୍ଧିକ ଏବଂ ଓଡ଼ିଆ ସାହିତ୍ୟ ଇତିହାସର ପ୍ରଣେତା । ବିଭିନ୍ନ ଗବେଷଣାଧର୍ମୀ ରଚନା, ସମାଲୋଚନା ସହିତ ଅନେକ ସୃଜନଶୀଳ ମୌଳିକ ପ୍ରବନ୍ଧର ସେ ସ୍ରଷ୍ଟା । ତାଙ୍କ ରଚିତ ପ୍ରବନ୍ଧ ଓ ଗବେଷଣା ନିବନ୍ଧ ଗୁଡ଼ିକ ହେଲା- ଦ୍ୱିତୀୟ ଈଶ୍ୱର ଓ ଅନ୍ୟାନ୍ୟ ପ୍ରବନ୍ଧ, ଆଧୁନିକ କବିତାରେ ଆଧୁନିକ ପ୍ରବୃତ୍ତି, ଉପାସନାଦୀପିକ ଗ୍ରନ୍ଥରେ ବର୍ଣ୍ଣିତ ବୈଷ୍ଣବତତ୍ତ୍ୱ, ଭାରତୀୟ ଭକ୍ତି ସିଦ୍ଧାନ୍ତ ଓ ପଞ୍ଚସଖା ଭକ୍ତିବାଦ, ଓଡ଼ିଶାର ଜନଜୀବନ ଓ ଓଡ଼ିଆ ସାହିତ୍ୟରେ ଭକ୍ତିଆନ୍ଦୋଳନର ପ୍ରଭାବ । ଏହା ସହିତ ଗଳ୍ପ ଓ ନାଟକ ରଚନାରେ ମଧ୍ୟ ସେ ସିଦ୍ଧହସ୍ତ । ତାଙ୍କ ରଚିତ ଦୁଇଖଣ୍ଡ ନାଟ୍ୟକୃତି ହେଲା- ଶବ ଖୋଜା ଚାଲିଛି ଓ ସୁମନ୍ତ ଦାସ । ତାଙ୍କର ପ୍ରକାଶିତ ଗ୍ରନ୍ଥ ଗୁଡ଼ିକ ହେଲା- ଆଲୋଚନା ବର୍ଣ୍ଣାଳୀ, ଓଡ଼ିଆ ସାହିତ୍ୟର ଇତିହାସ- ସାରଳାରୁ ସାଂପ୍ରତିକ, ସ୍ରୋତରନାମ ସରସତୀ (ପ୍ରବନ୍ଧ) । ସଂପ୍ରତି ତାଙ୍କର ଢେଙ୍କାନାଳର ଇତିହାସ, ସଂସ୍କୃତି ଓ ସାହିତ୍ୟ ଆଧାରିତ ଗବେଷଣା ଗ୍ରନ୍ଥ 'ଢେଙ୍କାନାଳ ସାହିତ୍ୟର ଇତିହାସ' ପ୍ରକାଶିତ ହେବାକୁ ଯାଉଛି ।

ପ୍ରକାଶକ

